# ବିଦ୍ୟୁତ୍ପ୍ରଭା ଗ୍ରନ୍ଥାବଳୀ

[ ଦ୍ୱିତୀୟ ଭାଗ ]




ଫ୍ରେଣ୍ଡସ୍ ପବ୍ଲିଶର୍ସ

ପୁସ୍ତକ ପ୍ରକାଶକ ଓ ବିକ୍ରେତା

ବିନୋଦ ବିହାରୀ . କଟକ-୨

ବିଦ୍ୟୁତ୍‌ପ୍ରଭା ଗ୍ରନ୍ଥାବଳୀ ( ୨ୟ ଭାଗ ) ଲେଖିକା : ବିଦ୍ୟୁତ୍‌ପ୍ରଭା ଦେବୀ ।
ସଂକଳକ : ଡକ୍ଟର ନିତ୍ୟାନନ୍ଦ ଶତପଥୀ, ସ୍ୱତ୍ୱ : ଶ୍ରୀ ପଞ୍ଚାନନ ମହାନ୍ତି,
ପ୍ରକାଶକ : ସହଦେବ ପ୍ରଧାନ, ଫ୍ରେଣ୍ଡ୍‌ସ୍ ପବ୍ଲିଶର୍ସ, ବିନୋଦବିହାରୀ,
କଟକ-୭୫୩୦୦୨, ପ୍ରଥମ ସଂସ୍କରଣ : ୧୯୮୩, ମୁଦ୍ରଣ : ପ୍ରଜାତନ୍ତ୍ର ପ୍ରେସ,
ଚାନ୍ଦିନୀଚୌକ, କଟକ-୨

**BIDYUTPRABHA GRANTHAVALI.** Part. II, Authoress : Bidyutprabha Devi, Edited by : Dr. Nityananda Satpathy, Copyright : Sri Panchanan Mohanty, Publisher : Sahadev Pradhan, Friends' Publishers, Binodbehari, Cuttack-753002, First Edition 1983, Printer : Prajatantra Press, Chandinichouk Cuttack-753002, Price : Rs 75

# ସୂଚୀପତ୍ର

## ● ପରିଶିଷ୍ଟ





# ମୁଖବନ୍ଧ

## ବିଦ୍ୟୁତ୍‌ପ୍ରଭା ଗ୍ରନ୍ଥାବଳୀ—୨ୟ ଭାଗ

କବି ବିଦ୍ୟୁତ୍‌ପ୍ରଭାଙ୍କ ଉତ୍ତରକାଳୀନ କେତେକ କବିତା ଗୋଟିଏ ଅପ୍ରକାଶିତ ଉପନ୍ୟାସ ଓ ଏକାଙ୍କିକାର ସମାହାରରେ ଗ୍ରନ୍ଥାବଳୀର ୨ୟ ଭାଗ ପ୍ରକାଶିତ ହେଉଛି । ମୁଖ୍ୟତଃ ୧୯୫୬-୫୭ ପରବର୍ତ୍ତୀ କବିତା ସୃଷ୍ଟି ଏହି ସଂକଳନରେ ସନ୍ନିବେଶିତ ହୋଇଛି । ୧ମ ଭାଗରେ ସୂଚନା ଦିଆଯାଇଛି ଯେ ବିଦ୍ୟୁତ୍‌ପ୍ରଭାଙ୍କ ସୃଷ୍ଟିର ସ୍ପଷ୍ଟ ଅବକ୍ଷୟ ୧୯୫୭ ପରବର୍ତ୍ତୀ କାବ୍ୟକବିତାରେ ପରିଲକ୍ଷିତ ହୁଏ । ଏ ସମୟରେ କାବ୍ୟା-ବେଗର ବିପୁଳ ପ୍ରେରଣା ହରେଇ ବସି କବି ଶିଶୁ-ସାହିତ୍ୟ ସୃଷ୍ଟିରେ ଅଧିକରୁ ଅଧିକ ମନୋନିବେଶ କରିଛନ୍ତି । ଏସବୁ ସୃଷ୍ଟିରେ କବିତାର ସୁକୁମାର ଲଳନା ବହୁ ପରିମାଣରେ କ୍ଷୁଣ୍ଣ ହୋଇ ଥିଲେ ବି ତାଙ୍କ କବିତାର ଆଉ ଏକ ଦିଗ ଉନ୍‌ମୋଚିତ ହୋଇଛି । ଏ ପର୍ଯ୍ୟାୟରେ ସେ ଭଗବତ୍ ଚେତନା ଓ ଆଧ୍ୟାତ୍ମିକ ଚିନ୍ତାରେ ଉଦ୍‌ବୁଦ୍ଧ ହୋଇଛନ୍ତି । ଏହା ତାଙ୍କ କାବ୍ୟମାନସର ଏକ ସ୍ୱାଭାବିକ ପରିଣତି ବୋଲି କୁହାଯାଇ-ପାରେ । ପଣ୍ଡିଚେରୀର ପରିବେଶ ଓ ଶ୍ରୀମାଙ୍କ ଆକର୍ଷଣ ତାଙ୍କ କବିତାର ମୁଖ୍ୟ ବିଷୟବସ୍ତୁ । 'ପୁଷ୍ପାଞ୍ଜଳି', 'ଜ୍ୟୋତିଶିଖା' ଓ 'ସୂର୍ଯ୍ୟମୁଖୀ' କବିତାଗୁଡ଼ିକରେ ମା'ଙ୍କ ଆଶିଷ ଓ ସାନ୍ନିଧ କାମନାର ସ୍ପଷ୍ଟ ସୂଚନା ମିଳେ । ଜୀବନକୁ ଏକ ନିରବଚ୍ଛିନ୍ନ ମାତୃପୂଜା ବୋଲି ଘୋଷଣା କରି କବି କହିଛନ୍ତି—

"ପୂଜୁଥିଲି ଦିନେ ଓଷା ପରବରେ
ତୁମରି ମୂରତି କାଠ ପାଷାଣରେ
ଅରପି ପ୍ରଦୀପ ଚନ୍ଦନ ଧୂପ
କରି ଉପବାସ ମାନସ-ଭୁଖା
ଜାଣି ନ ଥିଲି ମୁଁ ଜୀବନ ଯେ ଏକ ନିରବଚ୍ଛିନ୍ନ ମାତୃପୂଜା ।"

୨୮ଟି ପ୍ରଗୀତର ସମାହାରରେ ରଚିତ 'ପୁଷ୍ପାଞ୍ଜଳି' ମୁଖ୍ୟତଃ ମାଆଙ୍କ ପଦାରବିନ୍ଦରେ କବିଙ୍କର କାବ୍ୟ ନୈବେଦ୍ୟ ମାତ୍ର । କବି ନିଜର ସମସ୍ତ ମାନସିକ ଆଟୋପ, ଦର୍ପ, ଆଭିଜାତ୍ୟକୁ ନିଃଶେଷ କରି ମା'ଙ୍କ ପାଦତଳେ ଲୋଟିଯିବାକୁ ଆଶାୟୀ । **She wants to be melted away like a piece of ice at the lotus feet of the Mother.** ସେଠି ତେଣୁ ନିଜର ବୋଲି ଗର୍ବ କରିବାର ଆଉ କିଛି ନାହିଁ । ନିଜକୁ ଗଳାଇ ଦେବାରେ, ନିଜକୁ ସମ୍ପୂର୍ଣ୍ଣ ଭାବେ ସମର୍ପଣ କରିଦେବାରେ ତା'ର ସାର୍ଥକତା—

"ନିଜକୁ ଖାଲି ଦେଉଚି ଭେଟି
ନିଜର ବୋଲି
ନାହିଁ ତ ଆଉ କିଛି ।"

କବି ମନରୁ ତା'ର ଅହଂ (ego)ର ସମସ୍ତ ସମ୍ଭାବନା ଲୁଚିଗଲା ପରେ କବିତା ରଚନା ଯେ କଳାଦୃଷ୍ଟିରୁ ସ୍ୱାଭାବିକ କ୍ଷତିଗ୍ରସ୍ତ ହେବ, ଏଥିରେ ସନ୍ଦେହ ନାହିଁ । ବିଦ୍ୟୁତ୍‌ପ୍ରଭାଙ୍କ କାବ୍ୟସୃଷ୍ଟିରେ ତାହା ହିଁ ଘଟିଛି । କାବ୍ୟଚେତନାର ଅନେକ ସୁକୁମାର ଅନୁଭୂତିକୁ ହରାଇ ସେ ଶ୍ରୀମାଙ୍କ ପଦପାତରେ ନିଜକୁ ସମ୍ପୂର୍ଣ୍ଣ ସମର୍ପଣ କରିଦେବାରେ କେବଳ ଅତିମାନସର ଚେତନାଟି ଏ ପର୍ଯ୍ୟାୟ କବିତାରେ ଉଦ୍ଭାସ ହୋଇ ଉଠିଛି । କିନ୍ତୁ ଏଥିରେ ଅତିସରଣ ବା ଅତିକ୍ରମଣ ( **transcendentalism** ) ନାହିଁ । କେବଳ ଏକ ଅସହାୟ ଆତ୍ମସମର୍ପଣର ଭାବ ହିଁ ମୁଖ୍ୟ । ମାନବ ଜୀବନରେ ଯେ ଦିନେ ଅତିମାନସର ଅବତରଣ ଘଟିବ, ଏଥିରେ କବିଙ୍କର ବଳିଷ୍ଠ ବିଶ୍ୱାସ ଥିଲା । ବିଶେଷତଃ ପଣ୍ଡିଚେରୀ ଅବସ୍ଥାନ କାଳରେ କ୍ରମେ କବିଙ୍କ ମନରେ ଏପରି ବିଶ୍ୱାସ ଦୃଢ଼ୀଭୂତ ହୋଇଥିଲା; ନଚେତ୍ କବି ପଣ୍ଡିଚେରୀରେ ଦୀର୍ଘକାଳ ଅବସ୍ଥାନ କରି ନ ଥା'ନ୍ତେ । 'ପୁଷ୍ପାଞ୍ଜଳି'ର ୮ମ 'ପ୍ରଗୀତ'ରେ ସେ ସ୍ପଷ୍ଟ ସୂଚନା ଦେଇଛନ୍ତି—

"ଅତିମାନସର ଆଲୋକ ଝରଇ
ଆକାଶେ ବତାସେ ଜଳେ
ଗଗନ ପରଶୀ ବିରାଟ ସଉଧେ
ମାଟିର କୁଟୀର ତଳେ

ନୀରବ ନିଶ୍ୱାସେ ସେବଇ ଧରଣୀ
ସେ ଅତିମାନସ ଜ୍ୟୋତି
ନିସ୍ପୃହରେ ନିଧ ବୃଥା ବଳପିବା
ଦୁଃଖେ ଆଜ ମଥା ପୋତି ।"

ଏଇ ବଳିଷ୍ଠ ବିଶ୍ୱାସ କ୍ରମେ ଏତେ ଘନୀଭୂତ ହୋଇଛି ଯେ ଆଶାବାଦୀ କବି ମଣିଷ ଜଗତରେ ଏକ ବିପୁଳ ପରିବର୍ତ୍ତନର ସ୍ପଷ୍ଟ ସ୍ୱପ୍ନ ଦେଖିଛନ୍ତି । ଅତିମାନସର ଅବତରଣରେ ମଣିଷ ଜଗତରୁ ସବୁ ଦୁଃଖ-କଷ୍ଟ ଦୂର ହୋଇଯିବ ଏବଂ ଏକ ବିମଳ ଶାନ୍ତି ବିରାଜିତ୍ତ କରିବ ବୋଲି ତାଙ୍କର ବିଶ୍ୱାସ ।

"ମାନବ ଜଗତେ ଦେଖାଦେବେ ଆସି
ଅତିମାନସର ନୂତନ ଜାତି
ମାଟିର ଧରଣୀ ସରଗ ହୋଇବ
ବିରାଜିବ ଚିର ଆନନ୍ଦ ଶାନ୍ତି ।"

ବହୁ କବିତାରେ ଶ୍ରୀମାଙ୍କ ଆଶିଷ ଓ ସାନ୍ନିଧ କାମନାର ଭାବନାଟି ସମ୍ପୂର୍ଣ୍ଣ ସମ୍ମୋହିତ । ଏପରିକି ଓଡ଼ିଶାରେ ଥାଇ ମଧ ସେ ପଣ୍ଡିଚେରୀରେ ଥିଲା ପରି ଅନୁଭବ କରନ୍ତି । ପଣ୍ଡିଚେରୀର ଗୋଡ଼ିମାଟି ସତେ ଯେପରି କବିଙ୍କ ପାଇଁ ଏକ ନୂତନ ଚେତନାର କଥା କୁହେ । ସବୁ ତୃଷିତ ଆତ୍ମା ପାଇଁ ତାହା ଶୀତଳ ଚନ୍ଦନ ପରି । ଆମର ଅତିଭୌତିକବାଦୀ (Metaphysical) କବିମାନେ ପାରତ୍ରିକ ଜୀବନ ପରିକଳ୍ପନାରେ ଯେଉଁ ପରମ ସୁଖ ପରିକଳ୍ପନା କରିଛନ୍ତି କବି ପଣ୍ଡିଚେରୀରେ ସେଇ ସୁଖ ଆସ୍ୱାଦନ କରିଛନ୍ତି । ସମସ୍ତ 'ଜ୍ୟୋତିଶିଖା'ର କବିତାବଳୀ ଶ୍ରୀଅରବିନ୍ଦ ଆଶ୍ରମର ବିଭିନ୍ନ ଅତିଜାଗତିକ ଅନୁଭବର ଚିହ୍ନ ବହନ କରେ । 'ଆଶ୍ରମୁ ବିଦାୟ' କବିତାରେ ତାଙ୍କ ମନର ଗଭୀର ଆକୁଳତା ଓ ଆନ୍ତରିକତା ପ୍ରକାଶ ପାଇଛି । କାବ୍ୟାନୁଭୂତିର ଏଇ ଅକପଟ ଅଭିବ୍ୟକ୍ତି ତାଙ୍କ କବିତାର ମୁଖ୍ୟ ବିଷୟ ବୋଲି କହିବାକୁ ହେବ ।

"ବନ୍ଧା ପଡ଼ନ୍ତି ଆତ୍ମା ମୋର ଏ
ମହା ସମାଧିର ପାଶେ
ତେଜ ଆଶ୍ରମ ଜନ୍ମଭୂମି ମୁଁ
ଯାଏ ଆଜ ପରବାସେ ।"

ଏଠାରେ ଓଡ଼ିଶା ହିଁ ପ୍ରବାସ ବୋଲି ପରିକଳ୍ପିତ ଓ ପରିବେଶ ଚିରନ୍ତନ ପୀଠ—ଜନ୍ମଭୂମି । ଇଂରେଜୀ ସାହିତ୍ୟରେ ମିଷ୍ଟିକ୍ କବି-ମାନେ ଓ ଆମ ସାହିତ୍ୟର ରହସ୍ୟବାଦୀ କବିମାନେ ଏହିପରି ପୃଥିବୀକୁ ପ୍ରବାସ ବୋଲି ପରିକଳ୍ପନା କରିଛନ୍ତି । ଉଦାହରଣ ସ୍ୱରୂପ **Lord Tennyson**ଙ୍କ **Crossing the Bar** ଓ **John Masefield**ଙ୍କ **The Seekers** କବିତା ଦୁଇଟିକୁ ଉଲ୍ଲେଖ କରାଯାଇ ପାରେ । ସେହିପରି ରହସ୍ୟବାଦୀ କବି ବୈକୁଣ୍ଠନାଥଙ୍କ 'ପଥଗ୍ରସ୍ତ' ଓ 'ପାନ୍ଥଶାଳା' କବିତାରେ ମର୍ତ୍ତ୍ୟକୁ ସ୍ପଷ୍ଟଭାବେ ପ୍ରବାସ ବୋଲି ପରିକଳ୍ପନା କରାଯାଇଛି । ଦିବ୍ୟଧାମ ପରିବେଶକୁ ଜନ୍ମଭୂମି ଓ ଓଡ଼ିଶାକୁ ପ୍ରବାସ ବୋଲି ପରିକଳ୍ପନାରେ ଆଧିଭୌତିକବାଦୀ କବିର ସେଇ ରହସ୍ୟବାଦୀ ଅନୁଭୂତି ହିଁ ସ୍ପଷ୍ଟ ହୁଏ । 'ଜ୍ୟୋତିଶିଖା'ର କବିତାବଳୀ ମଧ୍ୟରେ ପ୍ରାଣର ଆକୂତି, ଅନ୍ତରର କାରୁଣ୍ୟ ଓ ଅନୁଭବର ଗଭୀର ଅନ୍ତରଙ୍ଗତା ପାଇଁ 'ଆଶ୍ରମୁ ବିଦାୟ' କବିତାଟି ଶ୍ରେଷ୍ଠ ବୋଲି କହିବାକୁ ହେବ । କବି ଯେ ଆଶ୍ରମ ପ୍ରତି କେତେ ବେଶୀ ଆସକ୍ତ ଥିଲେ ଏହି କବିତାଟି ତା'ର କରୁଣ କଥପ୍ରିକା ହୋଇ ରହିବ ।

'ଜ୍ୟୋତିଶିଖା'ର ପ୍ରତ୍ୟେକ କବିତାରେ କବି-ଅନ୍ତରର ଅଭିଳାଷ ଏକାନ୍ତ ସ୍ୱାଦ୍ୟ ଭାବେ ପ୍ରକଟିତ । କବି ଆଶା ପୋଷଣ କରିଥିଲେ ସେ ପ୍ରତିଦାନ ଅନାଶାପ୍ସୀ ଫୁଲଟିଏ ହୋଇ ଫୁଟି ଉଠନ୍ତେ ଓ ନିଜର ସୁରଭିରେ ପରିପାର୍ଶ୍ୱକୁ ଆମୋଦିତ କରିଦିଅନ୍ତେ ।

"ପ୍ରତିଦାନହୀନ ଫୁଲଟିଏ ମତେ କର
ପ୍ରତି ପାଖୁଡ଼ାରେ ଖୋଲିଦେବି ଅନ୍ତର ।
ହେ ପରମ ପିତା, ଭଲପାଅ ଯେବେ ଅତି
କର ମତେ ତୁମ ଆସ୍ଥା ହା ଧୂପବତି ।

ମୋ ପାଇଁକ ନୁହେଁ ନିଖିଳ ବିଶ୍ୱ ଲାଗି
ଦୂରପଥ ଭ୍ରମ ହୋଇ ଉଠୁ ଏବେ କାନ୍ତ ।"

—ନୂତନ ବର୍ଷ ଓ ନୂତନ ପ୍ରଭାତ । ତାଙ୍କ କାବ୍ୟାଭିବ୍ୟକ୍ତିରେ ନିଖିଳ ପାଇଁ ଏଇ ଦରଦ ଓ ଆତ୍ମିକ ବ୍ୟାକୁଳତା ସନ୍ଥକବି ଭୀମଭୋଇଙ୍କ ସେଇ ଉଚ୍ଚାରଣ "ମୋ ଜୀବନ ପଛେ ନର୍କେ ପଡ଼ିଥାଉ ଜଗତ ଉଦ୍ଧାର ହେଉ ।" କାବ୍ୟପଙ୍‌କ୍ତି ସହ ସ୍ପଷ୍ଟ ସାମଞ୍ଜସ୍ୟ ରକ୍ଷା କରେ । ତାଙ୍କ ପାଇଁ ପରମ ପିତା ହେଉଛନ୍ତି ଶ୍ରୀ ଅରବିନ୍ଦ ଓ ଜଗଜ୍ଜନନୀ ଶ୍ରୀମା । 'ଅଗ୍ନେଇଲ୍' ବିଧିଜନ୍ମା ଆତ୍ମାର ଶିଶୁସ୍ୱରୂପ । ନିଶ୍ଚେତନାର ବିଷ ବ୍ୟାଧିରୁ ମୁକ୍ତ ହୋଇ ମର୍ତ୍ତ୍ୟଜୀବନରେ ଅମୃତର ଉତ୍ସ ସୃଷ୍ଟି କରିବା ପାଇଁ 'ଅଗ୍ନେଇଲ୍'ର ଜନ୍ମ ।

କାବ୍ୟଚେତନାର ଏଇ ଯେ ମହାର୍ଘ ଅନୁଭୂତି କବି ଆହରଣ କରିଥିଲେ ତାହାକୁ ଖୁଚୁରା ପଇସା ପରି ଖର୍ଚ୍ଚ କରି ମଧ୍ୟ ତାହା ଶେଷ ହୋଇ ନଥିଲା । ଅହରହ ଦିବ୍ୟଚେତନା ପାଇଁ ପିପାସିତ ପ୍ରାଣଟି ଛଟପଟ ହେଉ ହେଉ ଶେଷରେ ସେଇ ଦିବ୍ୟଧାମକୁ ଚାଲିଗଲା । ମର୍ତ୍ତ୍ୟଜୀବନକୁ ଅମୃତମୟ କରିବା ଆଶାରେ ଭକ୍ତକବି ମଧୁସୂଦନଙ୍କ ପରି ତାଙ୍କ ପ୍ରାଣର ବିରଳ ବ୍ୟାକୁଳତା ଏଇ ପର୍ଯ୍ୟାୟର କାବ୍ୟପଙ୍‌କ୍ତିମାନଙ୍କରେ ବାରମ୍ବାର ଉଚ୍ଚାରିତ ହୋଇଛି । ସୌନ୍ଦର୍ଯ୍ୟାନୁଭୂତି ଅପେକ୍ଷା ଆତ୍ମାର ଉଚ୍ଚାଟିତ ଅନୁଭୂତିରେ ଏ କବିତା ଗୁଡ଼ିକ ନିର୍ଣ୍ଣିତ ଭାବେ ମଧୁସୂଦନ—କୁନ୍ତଳାକୁମାରୀ—ମାନସିଂହ କାବ୍ୟସ୍ୱର ସହିତ ସାମଞ୍ଜସ୍ୟ ରକ୍ଷା କରିବ । ଗୋଟିଏ ପଟେ ସମାଧି ଓ ଅପର ପଟେ ସମୁଦ୍ର । କବିଙ୍କ ମନ ଓ ପ୍ରାଣରେ ଉଭୟର ସମାନ ଆକର୍ଷଣ । ଗୋଟିଏ ବିଶାଳତାର ସଘୋଷ ପ୍ରତୀକ ତ ଅନ୍ୟଟି ନୀରବ, ଶାନ୍ତ, ସମାହିତ ପ୍ରାଣର ଉଚ୍ଛଳ ଅନ୍ତଃସଲିଳା ଫଲ୍‌ଗୁ । ମହାସମାଧି ଓ ମହାସାଗର—ଗୋଟିଏ ତାଙ୍କ ଆତ୍ମାର ଜ୍ୟୋତି ଓ ଅନ୍ୟଟି ଆତ୍ମାର ନିଃଶବ୍ଦ ଉଚ୍ଚାରଣ । କବି ଉଭୟ ମଧ୍ୟରେ ଥଳକୂଳ ନ ପାଇ ବୁଦ୍‌ବୁଦ୍ ପରି ମିଳାଇ ଯାଆନ୍ତି । ଜଣେ ସୌନ୍ଦର୍ଯ୍ୟପ୍ରାଣ କବିପରି ସାଗରର ଊର୍ମିଳ ଗାନ ଶୁଣନ୍ତି; ପୁଣି ଜଣେ ଅନାସକ୍ତ ସଂସାର ବିରାଗୀ ସନ୍ନ୍ୟାସୀ ପରି ସମାଧିର ମହାଶୂନ୍ୟତା ଭିତରେ ହଜିଯାଆନ୍ତି । ବସ୍ତୁତଃ ଏହା ହିଁ ଥିଲା

ତାଙ୍କ କାବ୍ୟସାଧନାର ମାନସିକ ଦ୍ୱନ୍ଦ୍ୱ । ସୌନ୍ଦର୍ଯ୍ୟାଭିଳାଷୀ କବି ଆତ୍ମାର ସୌନ୍ଦର୍ଯ୍ୟ ଲୋଡ଼ିବାରେ, ଆତ୍ମାର ନିର୍ବାକ ନିନାଦ ଶୁଣିବାରେ ଓ ତାରି ମଧ୍ୟରେ ନିଜକୁ ହଜେଇ ଦେବାରେ ଏ ଦ୍ୱନ୍ଦ୍ୱର ସମାଧାନ ହୋଇଛି ।

'ଜ୍ୟୋତିଶିଖା'ରେ ଯେଉଁ ଅଭିଳାଷ ଥିଲା ଅପ୍ରତିହତ 'ସୂର୍ଯ୍ୟମୁଖୀ'ରେ ତାହା ଅଧିକ ଘନିଷ୍ଠ ଓ ବିଶ୍ୱାସ-ଦୀପ୍ତ ହୋଇ ଉଠିଛି । ବୋଧହୁଏ ଅନ୍ତରରେ ମୁକୁଳ ଅବସ୍ଥାରେ ଥିବା ପଦ୍ମକୋରକଟି ପାଇ ଯାଇଛି ସୂର୍ଯ୍ୟର ସାନ୍ନିଧ୍ୟ । ତେଣୁ ତାହା ବିକଚ ହୋଇ ଉଠିବା ସ୍ୱାଭାବିକ । ଏଠାରେ କବି ନିଜର ସକଳ ଦୈନ୍ୟ ଓ ଯାଚ୍‌ଞାକୁ ନିଃଶେଷିତ କରିଦେଇ ଚରମ ତୃପ୍ତି ଓ ପ୍ରାପ୍ତିରେ ଏକ ନୂତନ ଶକ୍ତିର ସ୍ପୃହା ଅନୁଭବ କରିଛନ୍ତି । ସେଇ ବିଶ୍ୱାସରେ ତପ୍ତ ମରୁଭୂମିରେ ମନ୍ଦାକିନୀର ସ୍ରୋତ ଓ ଆଗ୍ନେୟଗିରି ମଧ୍ୟରେ ସହସା ଶୀତଳ ଜଳଧାରା ପ୍ରବାହିତ ହୋଇପାରେ । କିନ୍ତୁ କବିଙ୍କ କ୍ଷୋଭ ହେଉଛି ଯେ ମଣିଷ ମନରୁ ଏଇ ବିଶ୍ୱାସର ଧନକୁ ଆଜି ଯେପରି କେଉଁ ଖଣ୍ଡ ଚୋରିକରି ନେଇଛି । ତାକୁ ଖୋଜି ଖୋଜି ମାଯୁ୍ୟ ମରୁପଥରେ ଯେତେ କ୍ଲାନ୍ତ ହେଲେ ବି ସେ ଅପହୃତ ସମ୍ପତ୍ତି ଆଉ ମିଳୁ ନାହିଁ ('ଦ୍ୱୈତଲୀଳା') । ଏ କବିତାଗୁଡ଼ିକର ଭାବ ଓ ଭାଷା ପାଠକର ମନକୁ ଛୁଇଁପାରେ, ଏଥିରେ ସନ୍ଦେହ ନାହିଁ । ଏ ପର୍ଯ୍ୟାୟର ଅନେକ କବିତା ପରିବେଶର ପ୍ରାତ୍ୟହିକ ଅନୁଭୂତିର ସ୍ୱାକ୍ଷର ଧରି ରଖିଥିଲେ ବି କେତୋଟି କବିତାରେ ଦିବ୍ୟାନୁଭୂତିର ବିପୁଳ ପରିପ୍ରକାଶ ଘଟି କବି ବିଦ୍ୟୁତ୍‌ପ୍ରଭଙ୍କ କାବ୍ୟଚେତନାର ଉତ୍ତରଣକୁ ଚିହ୍ନାଇ ଦେଉଛି । ଏ ସବୁ କବିତାରେ ଏକ ଆଧ୍ୟାତ୍ମିକ ଉଦ୍‌ବୋଧନଶୀଳତାର ସ୍ୱର ସ୍ପଷ୍ଟ । ଉଦାହରଣ ସ୍ୱରୂପ 'ନବପ୍ରକାଶ' କବିତାରେ କବି କୁହନ୍ତି—

"ପାହି ପାହି ଆସେ ସୃଷ୍ଟିର ଅମାରାତି,
ଉଠ ଦେଶବାସୀ, ଜାଗ ଏବେ ମୋର ଜାତି ।"

ଏହା ନିଶ୍ଚିତ ଭାବେ ଦିବ୍ୟଜୀବନର ଅବଧାରଣା (realisation) ପାଇଁ କବିଙ୍କର ଆହ୍ୱାନ; ତାଙ୍କ ଆତ୍ମାର ବଳିଷ୍ଠ

ବିଶ୍ୱାସର ପ୍ରତିଧ୍ୱନି—ସମଗ୍ର ମାନବ ସମାଜର କଲ୍ୟାଣ କାମନାରେ ଯେଉଁ ସ୍ୱର ଓତପ୍ରୋତ । ପାର୍ଥିବ ସ୍ନେହ ପାଶରୁ ମନପ୍ରାଣକୁ ଛିନ୍ନ କରି ଏକ ଦିବ୍ୟଧାମକୁ, ମହାମିଳନର ମହାଧାମକୁ ଯାହା ତାଙ୍କ ଅତିଲୌକିକ କାବ୍ୟସ୍ୱରର ପରିଚୟ ବହନ କରେ । ସମଗ୍ର ମାନବ ସମାଜ ପାଇଁ ସେ ଏକ ମହା ପରିବାରର ପରିକଳ୍ପନା କରିଛନ୍ତି ଓ ଅତିମାନସର ଚେତନାରେ ଉଦ୍‌ବୁଦ୍ଧ ହେବା ପାଇଁ ଆହ୍ୱାନ ଦେଇଛନ୍ତି । ଏପରିକି ତାଙ୍କ ଶିଶୁକବିତା ଗୁଡ଼ିକରେ ମଧ୍ୟ ଏହି ଭାବନାର ସ୍ପଷ୍ଟ ପ୍ରକାଶ ଘଟିଥିବା ଲକ୍ଷ୍ୟ କରାଯିବ ।

ସମସାମୟିକ ଭାବେ କବି କେତେ ଗୁଡ଼ିଏ ଶିଶୁ କବିତା ରଚନା କରିଥିଲେ—ଯାହା ଅତ୍ୟନ୍ତ ଗଠନମୂଳକ ଓ ଶିକ୍ଷଣୀୟ । ‘ମାଟି ପାଣି ପବନ’, ‘ଯାହାକୁ ଯିଏ’, ‘କଅଁଳ ଜୀବନ’, ‘ମୋ’ ସେଁକାଳୀ ବଜାଇ ଦେ’, ‘ଗଛ ପଥର’, ‘ମୁଁ କେମିତି ପିଲା’, ‘କାହିଁକି ତୁମେ’, ‘ପଢ଼ୁଥା, ହସି ହସି ଗଢ଼ୁଥା’ ଶିଶୁ ଓ କିଶୋର କବିତା ସଂକଳନ ଗୁଡ଼ିକରେ ବିଦ୍ୟୁତ୍‌ପ୍ରଭାଙ୍କ କବି-ବ୍ୟକ୍ତିତ୍ୱର ଏକ ଭିନ୍ନ ଦିଗର ସନ୍ଧାନ ମିଳେ । ଏ ସବୁ କବିତାରେ ବିଦ୍ୟୁତ୍‌ପ୍ରଭାଙ୍କ ଦାର୍ଶନିକ ଅଭିବ୍ୟକ୍ତିର ପ୍ରକାଶ ଘଟିଛି । ‘ମାଟି ପାଣି ପବନ’ ସହିତ ମଣିଷ ଜୀବନର ଆନ୍ତରିକ ସମ୍ପର୍କ ନିରୂପଣ କରୁ କରୁ ଏ ସବୁ ଦାନ ପାଇଁ ସେ ସବୁଠାରେ ସେଇ ଅଦୃଶ୍ୟ ପରମପୁରୁଷଙ୍କ ପ୍ରତି କୃତଜ୍ଞତା ଜଣାଇଛନ୍ତି । ବ୍ୟକ୍ତି ଜୀବନ, ସମଗ୍ର ଜୀବଜଗତ ଓ ମଣିଷ ସମାଜ ପାଇଁ ମାଟି, ପାଣି, ପବନର ପ୍ରାକୃତିକ ଆଦର୍ଶ ଯେ କେତେ ତାତ୍ପର୍ଯ୍ୟପୂର୍ଣ୍ଣ ତାହା ବାରମ୍ବାର ଏସବୁ କାବ୍ୟ-ପଙ୍‌କ୍ତିରେ ପ୍ରତିପାଦିତ ହୋଇଛି । ଭଗବାନଙ୍କ ସୃଷ୍ଟିର ବିପୁଳ ଅବଦାନ ମାଟି-ପାଣି-ପବନ । ଏହାର ଅଭାବରେ ଧରାପୃଷ୍ଠରେ ମଣିଷ ସୃଷ୍ଟି ହୋଇଥା’ନ୍ତା ଏକାନ୍ତ ଅସମ୍ଭବ । ତେଣୁ ଭକ୍ତକବି ମଧୁସୂଦନଙ୍କ ପରି ଏସବୁ କବିତାରେ କବି ବିଦ୍ୟୁତ୍‌ପ୍ରଭା ସେଇ ପରମ ସ୍ରଷ୍ଟାଙ୍କ ପାଖରେ ତାଙ୍କ ଅନ୍ତରର ଅନାବିଳ ଅର୍ଘ୍ୟ ପ୍ରଦାନ କରିଛନ୍ତି—

“ସଦା ରଖି ସମଭାବ ଏକମଣ ମାନ ଅପମାନ
ଗାଇ ଆଲୋକ ଅନ୍ଧାରେ ବିଧାତାର ଶୁଭ ଜୟଗାନ ।”

ସଳିତାର ଜୀବନ ପରି କେତେ କ୍ଷଣସ୍ଥାୟୀ ମଣିଷର ଜୀବନ । ପରମାତ୍ମାଙ୍କ ଦେହରେ ଲୀନ ହୋଇଯିବାକୁ ଆତ୍ମାର ଆକୁଳ ପିପାସା ଚିରନ୍ତନ । ମାଟିଦୀପର ପ୍ରତୀକ ମାଧ୍ୟମରେ ସେ ବୁଝାଇଛନ୍ତି—

"ସଳିତାର ଆୟୁ ମୋର ଯାଏ ବୋଲି ବେଗେ ପୋଡ଼ି
ପରମାତ୍ମା ଆଲୋକେ ମୁଁ ଶିଖା ଆତ୍ମା ଦଏ ଯୋଡ଼ି ।"

ନଶ୍ୱର ଦେହ ଓ ଅବିନଶ୍ୱର ଆତ୍ମାକୁ ସଳିତା ଓ ଶିଖା ମଧ୍ୟରେ ଏକ ଚମତ୍କାର ରୂପକଳ୍ପ ମାଧ୍ୟମରେ କବି ସମନ୍ୱିତ କରିଛନ୍ତି । ବନ୍ଧୁ ସଙ୍ଗେ ସାକ୍ଷାତ୍ ପାଇଁ ମଣିଷ ଜୀବନରେ କେତେ ବାଧା-ବନ୍ଧ ଠିଆ ହୁଏ । ତଥାପି ଆତ୍ମାପୁରୁଷ ବାରମ୍ବାର ସେ ରୁଦ୍ଧ କପାଟରେ ହାତ ବାଡ଼ାଏ— ବିଶ୍ୱାସ ରଖେ ଦିନେ ନା ଦିନେ ତାହା ଉନ୍ମୁକ୍ତ ହୋଇଯିବ ।

"ବନ୍ଧୁ ସଙ୍ଗେ ଭେଟଲାଗି
ବହୁ ବାଧା ମୋ' ବାଟେ
ଘନ ଘନ ମାରେ ହାତ
ସେ ମନ୍ଦିର କବାଟେ ।" (ଝରଣା)

ମାଟି-ପାଣି-ପବନର କଳନା ପାଇଁ ସେ ବାରମ୍ବାର ଆହ୍ୱାନ କରିଛନ୍ତି । ସହିଷ୍ଣୁତା ଓ ତ୍ୟାଗରେ ଏମାନେ ଚିର ଉଦାର ଓ ସ୍ନେହ-ଶୀଳ । ମଣିଷ ତା'ର ଶେଷ ପରିଣତିର ଶୂନ୍ୟତା କଥା ଚିନ୍ତା କରି ପାରିଲେ, ଜୀବନର ଗତି ବୁଝିପାରିଲେ ସ୍ୱତଃ ତା'ଠାରୁ ରାଗ, ଦ୍ୱେଷ, ଲୋଭ, ମୋହ ଓ ସ୍ୱାର୍ଥପରତା ଦୂରେଇ ଯିବ ।

"ଘନ ଏ ଅନ୍ଧାର ସମାଧି ନେବ
ହୋଇବ ଯେଦିନ ମାଟିର ପୂଜା
ଓହ୍ଲେଇ ଆସିବ ଅମର ନର
ଜୀବନର ଗତି ଗଲେଟି ବୁଝା ।"
—'ମାଟିବଇଦ'

ମହାକାଳର ମହାସାଗରରେ ମଣିଷର ଜୀବନ ପାଣି ଫୁଟୁକା ପରି । ତଥାପି ମଣିଷ ତା'ର ଏଇ କ୍ଷଣିକ ସ୍ଥିତିକାଳରେ କେତେ ବଢ଼େଇ

ଓ ଲଢ଼େଇରେ ମଗ୍ନ ରହୁଛୁ । ଧର୍ମକୁ ସର୍ବ ଜ୍ଞାନ କରୁଛୁ । ଏହି ଉପଲବ୍‌ଧିର ଅଭାବ ହିଁ ତା'ର ଦୁଃଖର କାରଣ । ତେଣୁ କବିଙ୍କର ମାଟି ପାଖରେ ନିବେଦନ—

"ଚେତନ ଗରଭା ମାଟି,
କେଉଁଠି ହଜଇ ଖୋଜ ଦେଏ ମୋର
ଚେତନାର ଶୃଙ୍ଖଳକାଠି ।"

(ସର୍ବଂସହା ମାଟି)

ଏକ ବୃହତ୍ତମ ସୃଷ୍ଟି ଓ ତାଙ୍କ ସ୍ରଷ୍ଟା ମହାଭୂତମାନଙ୍କ ପାଖରେ ଆତ୍ମ-ଜିଜ୍ଞାସା ଓ ଆତ୍ମ-ସମର୍ପଣର ଭାବ ଏ କବିତାଗୁଡ଼ିକରେ ଅତି ସ୍ପଷ୍ଟ । ସେ ମଳୟର ସ୍ରଷ୍ଟା, ସେ ପୁଣି ଝଡ଼ର ସ୍ରଷ୍ଟା । ସବୁ ତାଙ୍କ ସୃଷ୍ଟି ପାଇଁ ଅଭିପ୍ରେତ ଓ ମଙ୍ଗଳର ଅଭିଳାଷୀ । ସେଇ ଅରୂପ ପରମପୁରୁଷ ପାଖରେ ନିଜକୁ ସମର୍ପଣ କରି ଦେଇ ଓ ତାଙ୍କର ଜୟଗାନ କରି କବି ଏ ସବୁ କବିତା ଯେ ରଚନା କରିଛନ୍ତି ତାହା ଆମ କାବ୍ୟଚେତନାର ଏକ ପାରମ୍ପରିକ ବଳିଷ୍ଠ ସ୍ୱର ସହିତ ଯୋଗାଯୋଗ ରକ୍ଷା କରେ । ଆଧୁନିକ କବିତାରେ ପ୍ରୟୋଗବାଦ ନାମରେ ନାନା ପରୀକ୍ଷା ନିରୀକ୍ଷା ଚାଲୁଥିଲାବେଳେ କବି ବିଦ୍ୟୁତ୍‌ପ୍ରଭା ଯେ ସେ ସବୁଥିରୁ ନିରାପଦ ଦୂରତ୍ୱରେ ଅବସ୍ଥାନ କରନ୍ତି, 'ମାଟି-ପାଣି-ପବନ'ର ପ୍ରତ୍ୟେକ କବିତା ଏହାର ସାକ୍ଷ ବହନ କରେ । ଅଥଚ ବେଳେ ବେଳେ ଆଧୁନିକ କାବ୍ୟ-କଳାର ଉଚ୍ଚତା ମଧ୍ୟ ତାଙ୍କ କବିତାରେ ପ୍ରକାଶ ପାଇଛି ନାନା ରୂପକଳ୍ପ ଓ ପ୍ରତୀକ ମାଧ୍ୟମରେ । ନିସ୍ତରଙ୍ଗ ପୁଷ୍କରିଣୀକୁ କବି ସୁପ୍ତା ଜଳଜେମା ଓ ଝରଣାକୁ ନୂପୁର ନିକ୍ୱଣା ଛଳ ଛଳ ନବବଧୂଟିଏ ଭାବେ ପରିକଳ୍ପନା କରିଛନ୍ତି । ସେ ଜଳଜେମା ଶଢ଼େ କଇଁର ଆଖିରେ ଅନାଏ; ତା'ର ଫୁଟନ୍ତା ମାଳ କଇଁଟି ସୂର୍ଯ୍ୟଙ୍କୁ ସକାଳରେ ଡାକେ; ତା'ର ପଦ୍ମମୃଣାଳ ବାହୁରେ ମୁକ୍ତାର ହାର ଶୋଭାପାଏ । ପୂତିର ସନ୍ଦୋହ ଦେହ ମଧ୍ୟରେ ଆତ୍ମାପରି ଜଳଜେମାର ପଙ୍କ ମଧ୍ୟରୁ ସୁନ୍ଦର ବିକଚ ଶତଦଳ ହସି-ଉଠେ । ପଙ୍କ ମଧ୍ୟରୁ ଶୋଭାର ଉତ୍ସ ପଦ୍ମ ଜନ୍ମ ନେଲେ ବି ତା' ଦେହରୁ ସୁରଭି ଛୁଟିଯାଏ । କବି ଏ ସବୁ ପ୍ରାକୃତିକ ବୈଚିତ୍ର୍ୟ ଅନୁଧ୍ୟାନ କରୁ

କରି ଭାବନା ରାଜ୍ୟରେ ନିମଗ୍ନ ହୋଇ ଯାଇଛନ୍ତି ଓ ଦାର୍ଶନିକ ମନନଶୀଳତା ପ୍ରକାଶ କରିଛନ୍ତି ।

"ଆପଣାର ଥିଲେ ମହା ଯଶ
କିଏ ଖୋଜେ ରୂପ ଜାତି ବଂଶ ?
ନରକର ଅନ୍ଧାରିଆ ବାଟ
ଉଭି ମେଲ ସରଗ କବାଟ ।
ବିଧାତାର କି ରହସ୍ୟ ଭଲି
ପଦ୍ମିଣୀଙ୍କି ପଙ୍କେ ଠୁଳ କଲି ।
ମୁକ୍ତା ଦେଲି ଛାର ଶାମୁକାରେ
ହେୟ କରୁ ନାହିଁ ତା' ବିଷୟରେ ।"

(ପୁଷ୍କରିଣୀ)

କବି କୁନ୍ତଳା କୁମାରୀ ଯେଉଁପରି ଏକଦା ତାଙ୍କ 'ଶେଫାଳୀ ପ୍ରତି' କବିତାରେ ବିସ୍ମୟ ପ୍ରକାଶ କରିଥିଲେ, କବି ବିଦ୍ୟୁତ୍‌ପ୍ରଭା ତାହା ହିଁ କରିଛନ୍ତି । ଆତ୍ମିକ ଅନୁଭୂତିରେ ଓ ଭଗବତ୍ ଅନୁଚିନ୍ତାରେ ଏ ଉଭୟ କବି ପ୍ରାୟ ସମାନ ଅନୁଭବ ଓ ଅଭିଳାଷ ପୋଷଣ କରିଛନ୍ତି ।

ତାଙ୍କ ଶିଶୁ ଓ କିଶୋର କବିତା ଗୁଡ଼ିକ ମଧ୍ୟରେ 'ମାଟି-ପାଣି ପବନ' ଯେ ଏକ ସାର୍ଥକ ସୃଷ୍ଟି ଏ କଥା ଦୁହାଇ କହିବାର ଆବଶ୍ୟକତା ନାହିଁ । କାବ୍ୟିକ ଅନୁଭୂତି, ଦାର୍ଶନିକ ମନନଶୀଳତା ଓ ଏହାର ସୁଷମ ପରିପ୍ରକାଶ ଓ ଲଳିତ ଶବ୍ଦ ଯୋଜନାରେ ଏ ସଂକଳନଟି ଏକ ଆଦର୍ଶ ସୃଷ୍ଟି ଭାବେ ପରିଗଣିତ ହେବ । ଅନ୍ୟ ଶିଶୁ-କବିତା ସଂକଳନ ଗୁଡ଼ିକ ବିଷୟରେ ଏଠାରେ ମୁଁ ଆଲୋଚନା କରୁ ନାହିଁ—ପାଠକେ ସେ ସବୁ ପଢ଼ି ରସାସ୍ୱାଦନ କରିବେ ଓ ସେ ସବୁର ଉପଯୋଗିତା ଉପଲବ୍ଧି କରିବେ—ସେମାନଙ୍କ ବିଚାର ଉପରେ ସେ ସବୁକୁ ଛାଡ଼ି ଦେଉଛୁ ।

ଅନେକେ ହୁଏତ ଜାଣି ନଥିବେ ଯେ ବିଦ୍ୟୁତ୍‌ପ୍ରଭା 'ନିଃସ୍ୱ ଜଗତ' ନାମରେ ଗୋଟିଏ ଶ୍ରେଷ୍ଠ ଉପନ୍ୟାସ ରଚନା କରିଥିଲେ, କିନ୍ତୁ ତାହା ମୁଦ୍ରିତ ହୋଇ ନଥିଲା । ବୋଧହୁଏ କବିଙ୍କର ଏ ଉପନ୍ୟାସର କଳାଗତ

କୃଷ୍ଣି ପ୍ରତି ଯଥେଷ୍ଟ ଭରସା ନଥିଲା, ଯେଉଁଥିପାଇଁ ତାକୁ ପ୍ରକାଶ ନ କରି ଗୋପନୀୟ ରଖିଥିଲେ । ଏବେ, ପାଣ୍ଡୁଲିପିରୁ ଦେଖିବାକୁ ମିଳୁଛି ଯେ, ଏହାର ରଚନାକାଳ ଶ୍ରୀପଞ୍ଚମୀ ତା୫।୨।୪୭ ଓ ସମାପ୍ତିକାଳ ତା୨୦।୨।୪୭ । ମାତ୍ର ୧୫ଦିନ ମଧ୍ୟରେ ରଚିତ ଉପନ୍ୟାସଟିରେ ସେ ତାଙ୍କ ସମସାମୟିକ କାବ୍ୟ କୁଶଳତାର କରାମତି ଦେଖେଇ ପାରି ନ ଥିଲେ ମଧ୍ୟ ପ୍ରାକ୍-ସ୍ୱାଧୀନତା କାଳରେ ରଚିତ ଉପନ୍ୟାସମାନଙ୍କ ମଧ୍ୟରେ ଏହା ଯେ ଏକ ସଂଖ୍ୟା ଯୋଗ କରିବ, ଏଥିରେ ସନ୍ଦେହ ନାହିଁ । ଏହି ଉପନ୍ୟାସର କଥାନକ ବା ଗଳ୍ପ-ପଞ୍ଜର ଅନେକ ପରିମାଣରେ ଔପନ୍ୟାସିକ କାଳନ୍ଦୀଚରଣଙ୍କ 'ମାଟିର ମଣିଷ' କଥାବସ୍ତୁ ଦ୍ୱାରା ପ୍ରଭାବିତ ହୋଇଥିବା ଲକ୍ଷ୍ୟ କରାଯିବ । ସେଠାରେ ବରଜୁ ଯେପରି ଭାଇ ଭାଉଜଙ୍କ କଳିରୁ ଘର ଓ ଗ୍ରାମ ଛାଡ଼ି ଚାଲିଯାଇଛି, ଏଠାରେ ମଧ୍ୟ ଠିକ୍ ସେହିପରି ବଡ଼ଭାଇ ନିତ୍ୟାନନ୍ଦ ନିଜ ପିତାଙ୍କୁ ଦେଇଥିବା ପ୍ରତିଶ୍ରୁତି ରକ୍ଷା କରି ସାନଭାଇଙ୍କୁ ପ୍ରତିପାଳନ କରି ବଡ଼ କରିଥିଲେ ବି, ତାର ଅସଦ୍‌ବ୍ୟବହାରରୁ ଗ୍ରାମ ଛାଡି ସପରିବାର ପୁରୀକୁ ପଳାଇ ଆସିଛି । 'ମାଟିର ମଣିଷ'ର ଘର ଭଙ୍ଗା ହରି ମିଶ୍ରଙ୍କ ସହିତ 'ନିଃସ୍ୱ-ଜଗତ'ର ଗୋବିନ୍ଦ ମିଶ୍ରଙ୍କୁ ତୁଳନା କରାଯାଇ ପାରେ । ଜଣେ ଅନ୍ୟଜଣଙ୍କର ଅବିକଳ ପ୍ରତିଛବି ମାତ୍ର । ଆଚରଣରେ ଅଭିନ୍ନ ମଧ୍ୟ । ଗ୍ରାମଛାଡ଼ି ଆସିଥିବା ନିତ୍ୟାନନ୍ଦଙ୍କର ଅତି ଆକସ୍ମିକ ଭାବେ ଟ୍ରେନ୍‌ରେ ଜଣେ ଉଦାର ବ୍ୟକ୍ତିଙ୍କ ସହ ସାକ୍ଷାତ୍ ହୁଏ—ସେ ଏମାରମଠର ମ୍ୟାନେଜର । ତା'ପରେ ସବୁ ସୁଧୁରିଯାଏ । ନିତ୍ୟାନନ୍ଦ ପରିବାର ପାଇଁ ଅନ୍ନ ସଂସ୍ଥାନର ସେ ବ୍ୟବସ୍ଥା କରି ଦିଅନ୍ତି । ଏକମାତ୍ର ପୁତ୍ର ନଗେନ୍‌କୁ ମଣିଷ କରିବାକୁ ନିତ୍ୟାନନ୍ଦ ଅବଶିଷ୍ଟ ଜୀବନସାରା କଠିଣ ପରିଶ୍ରମ କରନ୍ତି, କିନ୍ତୁ ହତଭାଗ୍ୟ ନିତ୍ୟାନନ୍ଦଙ୍କ ଆକସ୍ମିକ ମୃତ୍ୟୁ ତାଙ୍କ ଉତ୍ତୁଙ୍ଗ ଆଶାର ଏକ ଅଶୁଭକ ପରିସମାପ୍ତି ଘୋଷଣା କରୁଥିଲେ ବି ପୁନଶ୍ଚ ଆଉଜଣେ ବଦାନ୍ୟ ବ୍ୟକ୍ତିଙ୍କ ଦୟାରୁ ତାଙ୍କ ପୁତ୍ର ଓ ବିଧବାପତ୍ନୀ ଥଇକୂଳ ପାଇଛନ୍ତି । ନଗେନ୍ ତାଙ୍କରି ଦୟାରୁ ଉଚ୍ଚ ଶିକ୍ଷାଲାଭ କରି ଚାକିରି ପାଇଛନ୍ତି । କିନ୍ତୁ ଗ୍ରାମରେ ତାଙ୍କ ପିତୃବ୍ୟ ଅଦ୍ୱୈତ ନାନା ଉତ୍ପାତ ଓ ଅନାଚାର କରି ନାନା ଭାବରେ ନିଜକୁ ଉଜାଡ଼ି ଦେଇ ଶେଷରେ କୁଷ୍ଠ ରୋଗାକ୍ରାନ୍ତ ହୋଇଛନ୍ତି । ସେ ଗ୍ରାମବାସୀଙ୍କ ଘୃଣାର ପାତ୍ର ହୋଇଛନ୍ତି ଓ

ଶେଷରେ ପତ୍ନୀ ମଧ୍ୟ ପାଗଳୀ ହୋଇ ତାଙ୍କୁ ଛାଡ଼ି ଚାଲିଯାଇଛି । ମୋଟ ଉପରେ ବିଦ୍ୟୁତ୍‌ପ୍ରଭା, ଫକୀରମୋହନ ଓ କାହ୍ନୁଚରଣଙ୍କ ପରି ତାଙ୍କ ଉପନ୍ୟାସରେ ଭାଗ୍ୟବାଦ ଓ ଆକସ୍ମିକତାକୁ ଅଧିକ ଗୁରୁତ୍ୱ ଦେଇଛନ୍ତି । ନିୟତିବାଦକୁ ପ୍ରତିଷ୍ଠା କରିବା ପାଇଁ ସେ ଯତ୍ନଶୀଳା । ଯଦିଓ ଉପନ୍ୟାସଟିରେ ବାସ୍ତବତା ପ୍ରତି ବହୁସ୍ଥାନରେ ଆକର୍ଷଣ ରହିଛି ଓ ବର୍ଣ୍ଣନାରେ ସ୍ୱାଭାବିକତା ରକ୍ଷା କରାଯାଇଛି ତଥାପି ଅତି ସରଳଭାବେ କାହାଣୀଟିଏ କହିବା ଉପରେ ଲେଖିକା ଗୁରୁତ୍ୱ ଦେଇଛନ୍ତି । ଗ୍ରାମ୍ୟ-ଜୀବନ ଓ ପରିବେଶ ଠାରୁ ସହର ପର୍ଯ୍ୟନ୍ତ ଛବି ଆଙ୍କିବାରେ ସେ ଫକୀର ମୋହନଙ୍କ ପରି ବର୍ଣ୍ଣନାତ୍ମକ ରୀତିକୁ ହିଁ ବେଶି ପସନ୍ଦ କରିଛନ୍ତି । ଉପନ୍ୟାସଟି ସରଳ କାହାଣୀଟିଏ ମାତ୍ର—ଯାହା ପ୍ରାୟ ୪୦ ବର୍ଷର ଘଟଣାବଳୀକୁ ନେଇ ସଂଗଠିତ । ପ୍ରାୟ ଦୁଇଟି ପୁରୁଷର ସୁଖଦୁଃଖର ମିଶ୍ରିତ କାହାଣୀ । ଉପନ୍ୟାସର ଆଙ୍ଗିକ ବୈଶିଷ୍ଟ୍ୟ ପ୍ରତି ବିଦ୍ୟୁତପ୍ରଭା ଆଦୌ ଧ୍ୟାନଶୀଳା ନୁହନ୍ତି, କିନ୍ତୁ ଘଟଣାର କ୍ରମିକ ଅଭିବୃଦ୍ଧି ଓ ଓ ଏହାର ସ୍ୱାଭାବିକତାକୁ ଉପେକ୍ଷା କରି ହେବନାହିଁ । ସଚରାଚର ଘଟୁଥିବା ଗ୍ରାମ୍ୟ ଓ ପାରିବାରିକ ବିଷୟ ବସ୍ତୁକୁ ନେଇ ସେତେବେଳେ ଉପନ୍ୟାସ ଓ ନାଟକ ରଚିତ ହେଉଥିଲା । ବିଦ୍ୟୁତ୍‌ପ୍ରଭା ତହିଁରେ ଅତି ସରଳ ମନରେ ଅର୍ଘ୍ୟଟିଏ ବାଢ଼ି ଦେଇଛନ୍ତି । ଉପନ୍ୟାସର ମନୋବୈଜ୍ଞାନିକ ବିଶ୍ଳେଷଣ ପ୍ରତି ଧ୍ୟାନ ଦେବାର ବୟସ ସେତେବେଳେ ତାଙ୍କର ହୋଇନାହିଁ, ବା ଗଦ୍ୟ-ସାହିତ୍ୟ ସୃଷ୍ଟି ପାଇଁ ଯଥେଷ୍ଟ ଦକ୍ଷତା ମଧ୍ୟ ଆସିନାହିଁ । ସେତେବେଳକୁ ତାଙ୍କ ବୟସ ମାତ୍ର ସତରବର୍ଷ । ଅନୁଭୂତିରେ ଯଥେଷ୍ଟ ପୋଖତ ନ ହେଲେ ସାର୍ଥକ ଉପନ୍ୟାସଟିଏ ରଚନା କରିବା ଯେ କି କଷ୍ଟକର ବ୍ୟାପାର ବିଦ୍ୟୁତ୍‌ପ୍ରଭାଙ୍କ 'ନିଃସ୍ୱ ଜଗତ' ଏହାର ଉଦାହରଣ । ତଥାପି ଏଥିପାଇଁ ତାଙ୍କ ଆନ୍ତରିକ ପ୍ରୟାସ ଯେ ଏକାନ୍ତ ବିସ୍ମୟପ୍ରଦ, ଏହା ମୁକ୍ତ କଣ୍ଠରେ ସ୍ୱୀକାର କରାଯାଇ ପାରେ ।

ତାଙ୍କର ଅନ୍ୟ ଏକ ଗଦ୍ୟ ରଚନା—'ବିବାହ' ନାମକ ଏକାଙ୍କିକା । ଗାଁ ଗହଳର ରକ୍ଷଣଶୀଳ ଜନସାଧାରଣଙ୍କ ମଧ୍ୟରେ ଶ୍ରୀ ଅରବିନ୍ଦ ଓ ଶ୍ରୀମାଙ୍କ ଆଦର୍ଶକୁ ପ୍ରଚାର କରିବା ପାଇଁ ଏ ଏକାଙ୍କିକାର

ସୃଷ୍ଟି—ଚିନ୍ତା ଓ ଉପସ୍ଥାପନାରେ ବେଶ୍ ଶକ୍ତିଶାଳୀ। ବିଦ୍ୟୁତ୍‌ପ୍ରଭା ଜୀବନର ଯେଉଁ ସମସ୍ୟାତକ ଓଡ଼ିଶାର ଗାଁ ଗହଳରେ ବୁଲି ଅରବିନ୍ଦ ପାଠଚକ୍ର ଗଢୁଥିଲେ ଓ ତା' ମାଧ୍ୟମରେ ଅନ୍ତମାନସର ଜାଗରଣ ଆଣିବାକୁ ପ୍ରୟାସ କରୁଥିଲେ ସେଇ ସମୟର ଫଳଶ୍ରୁତି ଏ ଏକାଙ୍କିକା। ସୃଷ୍ଟିଟି ଉଦ୍ଦେଶ୍ୟମୂଳକ ହେଲେ ବି ସଂଳାପ ବେଶ୍ ବୁଦ୍ଧିଦୀପ୍ତ ଓ ଯୁକ୍ତିପୂର୍ଣ୍ଣ। ପରିବାରର ଗତାନୁଗତିକ ଜୀବନଧାରା ମଧ୍ୟରେ ଏକ ନୂତନ ଚେତନାର ଝଡ଼ ସୃଷ୍ଟି କରି ଜୀବନକୁ ସରସ, ସୁନ୍ଦର ଓ ଅର୍ଥପୂର୍ଣ୍ଣ କରିବା ପାଇଁ ଯେଉଁ ଯଶସ୍ୱିନୀ କବି ଅରବିନ୍ଦ ପାଠଚକ୍ର ଗଢ଼ୁଥିଲେ ଜୀବନର ଅସାର ଅଳୀକତାକୁ ସାମ୍ନା କରି ନ ପାରି ସେ ଯେ ଶେଷରେ ରେଲଗାଡ଼ି ତଳେ ଆତ୍ମହତ୍ୟା କଲେ, ଏହା ଏକ ପରମ ବିସ୍ମୟର କାହାଣୀ ହୋଇ ରହିବ।

ଡକ୍ଟର ନିତ୍ୟାନନ୍ଦ ଶତପଥୀ
ରିଡ଼ର, ଓଡ଼ିଆ ବିଭାଗ,
ଉତ୍କଳ ବିଶ୍ୱବିଦ୍ୟାଳୟ।



# ସମର୍ପଣ

ପରମାରାଧ୍ୟ ଶ୍ରୀମା ଶ୍ରୀଅରବିନ୍ଦେ

ଲେଖିକା

# ଏକ

ଶ୍ରୀମା   ଦେବୀ ଭଗବତୀ ଆସ ଆସ
କର   ସତ୍ୟର ଆଲୋକ ପରକାଶ ।
ତୁମେ   ପ୍ରକାଶିତ ହୁଅ ପ୍ରତି ମନେ
ଦୟା   କର ମହେଶ୍ୱରୀ ବିଶ୍ୱଜନେ ।

ଆସ   ଚିନ୍ମୟୀ ଜନନୀ ଆସ ଆସ
ଘନ   ଅନ୍ଧାର ଶକତି ହୁଉ ନାଶ ।
ଯଜ୍ଞ   ଏ ଜୀବନ ତୁମ ଅରଚନେ
ଦୟା   କର ମହାକାଳୀ ଦୀନଜନେ ।

ଆସ   ମହାଲକ୍ଷ୍ମୀ ଆସ ମହେଶ୍ୱରୀ
ମହା   ଉଲ୍ଲାସେ ଅନ୍ତର ଦିଅ ଭରି ।
ଶୂନ୍ୟ   ପାତ୍ର କର ପୂର୍ଣ୍ଣ ପ୍ରେମଧନେ
ମହା   ଲକ୍ଷ୍ମୀ ଦୟା କର ବିଶ୍ୱଜନେ ।

ମହା   ଆଶ୍ୱାସରେ ଦୃଢ଼ ବିଶ୍ୱାସରେ
ସତ୍ୟ   ପୂଜା ହେଉ ପ୍ରତି ହୃଦୟରେ ।
ଦିଅ   ଶୁଦ୍ଧଜ୍ଞାନ ନାଶି ଘୋର ତମ
ଦେବୀ   ମହା ସରସ୍ୱତୀ ନମୋ ନମଃ ।

ଦେବୀ   ମୂର୍ତ୍ତିମତୀ ଦିବ୍ୟ ଆଲୋକର
ବିଶ୍ୱ   ପ୍ରକୃତିକୁ କର ରୂପାନ୍ତର ।
ଘେନ   ଶକ୍ତି ଚତୁଷ୍ଟୟୀ ମୋ'ର ନତି
ମହା   ଦେବୀ କାଳୀ ଲକ୍ଷ୍ମୀ ସରସ୍ୱତୀ ।



# ଜୁଇ

କନକୋଜ୍ଜ୍ୱଳ
ଆଲୋକବରଣୀ
ଆଲୋକ ଦଅ ଗୋ
ଆଲୋକ ଦଅ—
ଆଲୋକ ବାଇଜେ ଆଲୋକର ପଥେ
ରୂପାନ୍ତରିତ କର ନଅ ମତେ
ଏତେଦିନେ ଯେବେ ପାଷାଣ ହୃଦୟ
ସରସ କରିଛ
ପରମା ପ୍ରିୟ
ଆଲୋକବରଣୀ ଆଲୋକର ରାଣୀ
ଆଲୋକ ସାଇଜେ
ନଅ ଗୋ ନଅ ।

ଆଲୋକବରଣୀ ହେ ଜ୍ୟୋତିର ରାଣୀ
ଶକତି ଦଅ ଗୋ
ଶକତି ଦଅ
ତାମସହରଣୀ ଦେବୀ ଚିନ୍ମୟୀ
ମାନବ ଦୁଃଖେ ହେଲ ମୃଣ୍ମୟୀ
ସକଳେ ଆଲୋକ ସେ ଆଲୋକ ବେଶେ
ସେ ଆଲୋକ ପଥେ
ନଅ ଗୋ ନଅ
କନକୋଜ୍ଜ୍ୱଳ ଆଲୋକବରଣୀ
ଆଲୋକେଶ୍ୱରୀ
ଆଲୋକ ଦଅ ।



# ଜନ

ମା !

କଷ୍ଟ ଦଉ ଯେବେ
ଦୁଃଖ ଦେଉଛୁ
ସେହି ମୋ' ପରମ ସୁଖ

ତେବେ କମ୍ପା ଆଉ
ବୃଥାରେ କହ ମା,
ବିରସ କରିବ ମୁଖ ।

କଷ୍ଟ ଦଉ ଯେବେ
ଦେଉଅଛୁ ରୋଗ
ନିରୋଗ ମଣିବି ଦେହ

ଯେବେ ପାପ ତାପ
ଭିତରେ ରହିଛି
ଲୁଚି ତୋ ଗୁପତ ସ୍ନେହ ।

ତୁ ବାଛୁଛୁ ଯେବେ
ଜନମ ମରଣ
ମୋର ଉଲ୍ଲାସ ବ୍ୟଥା

ସାଗ୍ରହେ ତାହା
ମାନିନେବି ସବୁ
ନତ କରି ଟିକି ମଥା

ତୁ ବଣ୍ଟିଛୁ ଯାହା
ହେବ ତା' ମୁକର
ମନ ସୁଖେ ସବୁ ବରି

ଗୋଡ଼ାଇଥିବି ମୁଁ
ପଛେ ପଛେ ତୋ'ର
ଯେତେ ଗଲେ ଅପସରି ।

ପଥେ ଆସୁ ଯେତେ
ବାଧା ବା ବିପତ୍ତି
ସରସ କରିବ ମୁଖ
ମା—ଦୟାକର ଯେବେ
ଦୁଃଖ ଦେଇଛୁ
ସେ ତ ମୋ' ପରମ ସୁଖ ।



## ଗୀତ

ଜଗତ-ଜନନୀ ମାଆ
ତୁମ୍ଭ ଏକା ମୋର ସାହା
ତୋ ପଦେ ଅଜାଡ଼ି ଦେଇଛି ମୋହର
ଆପଣାର ଥିଲା ଯାହା
ଜଗତ-ଜନନୀ ମାଆ ।
ଚିହ୍ନି ନାହିଁ କଏ ନିଜକୁ ମୁଁ ମତେ
ନେଉଅଛନ୍ତି ଯହିଁ ଭୁଲିଛି ସେ ପଥେ
ପଡ଼ିଯିବା ପାଇଁ ଭୟ ମୋର ନାହିଁ
ଧରିଛୁ ଯେଣୁ ମୋ ବାହା
ଜଗତ-ଜନନୀ ମାଆ ।
କ୍ଷଣିକ ମାତର ମମତା ବେଭାର
ଦୁନିଆର ଯେତେ ନିତି କାରବାର
ଧରେ ଯେଉଁ ଡାଳ ହୁଏ ସେ ଦ' ଫାଳ
ମୂଳ ଏକା ତୁମ୍ଭ ସାହା
ଜଗତ-ଜନନୀ ମାଆ ।
ଦେଇଅଛୁ ଡାକ ଯେବେ ମତେ ଥରେ
ନେଏ ମାଆ ଏବେ ସପ୍ରେମେ ସାଦରେ
ଦୋଷ-ଧୂଳି ଝାଡ଼ି କରୁଣା-ହଣତେ
କୋଳେ ତୋର ଦେଏ ଠାଆ
ଜଗତ-ଜନନୀ ମାଆ ।



# ପାଞ୍ଚ

## ଯୌବନ

ଶିଶିର ପଖାଳି ସଜ ଗୋଲପଟି
ଅରପେ ତୁମରି ପାଦେ
ସରସି ଉଠେ ଏ ନୀରସ ଜୀବନ
ମା ଗୋ ! ତୁମ ପରସାଦେ ।

ଶ୍ୱେତକମଳଟି ହସ୍ତେ ତୋଳି ମୁଁ
ଥାପିଦେଲେ ତୁମ କରେ
ତୁମରି ଚେତନା ଲଭିବାର ଆଶେ
ପୁଲକେ ପରାଣ ଥରେ ।

କଅଁଳ ଶୀର୍ଷେ କୁସୁମ ସ୍ତବକ
ସଜାଇଲେ ତୁମ ପାଶେ
ସହସା ତୁମରି ନୀରବ ପ୍ରେରଣା
ଅତଳ ଗର୍ଭରୁ ଆସେ ।

ସଜ ଫୁଲଟିଏ ଯତନେ ଅଧର
ସ୍ପର୍ଶେ ଯେବେ ମୁଁ ଦିଏ
କ୍ରୋଧ-ବହ୍ନିଶିଖା କ୍ଷଣକେ ପାଲଟେ
ମୃଦୁ ମଳୟର ସ୍ନେହେ ।

ସୂର୍ଯ୍ୟମୁଖୀରେ ଜାଣେ ଗୋ ଚେତନା
ହୁଅଇ ଆଲୋକମୁଖୀ
ତା' ପରଶେ ମୁହିଁ ଅନ୍ତେ ଶେଷେ ବୁଝିଁ
ହୋଇବ ପରମ ସୁଖୀ ।

ଶକ୍ତି ଦିଅ ଗୋ    ଶକ୍ତିଦାୟିନୀ
ରକ୍ତ ଜବାର ହାରେ
ଗନ୍ଧହୀନର    ପୁଣ୍ୟ ସୁଷମା
ଭରିଦିଅ ଚେତନାରେ ।

ଅଳି ମାନସିକ    ସିଦ୍ଧି ହେଉ ମୋ
ସ୍ୱର୍ଣ୍ଣ ଚମ୍ପା ଦାନେ
ନବ କରବୀର    ଚନ୍ଦ୍ରା ମଧୁର
ଜାଗୁ ଅନ୍ତର ଜ୍ଞାନେ ।

ଚୈତନ୍ୟ ଚେତନା    ଶୁଦ୍ଧ କର ମୋ
ପ୍ରଭାତ ମଲ୍ଲିଫୁଲେ
ଦୁଦୁରର ଗାତ୍ର    ତପସ୍ୟାରେ ଟି
ନିଜକୁ ଯେସନେ ଭୁଲେ ।

ଅଶୋକେ ହେଉ ମୋ    ଶୋକର ମୋଚନ
ବକୁଳେ ଧରମ ଦିଅ ।
ଶେଫାଳି ପ୍ରଦାନେ    ଆସ୍ପୃହା ବନ୍ଧୁ
ହେ ମୋର ପରମପ୍ରିୟ ।

ମୃଦୁଳ ବାସିତ    ଟଗର ପରଶେ
ସୃଷ୍ଟିର ହେଉ ମନ
ଭ୍ରମର ଚରଣେ    ତୁଳସୀର ଦାନେ
ବନ୍ଧୁ ଭକତର ଧନ ।

ଅଞ୍ଜଳି ଦାନେ    ଫୁଲ ହୃଦ ପର
ନିଜ ହୃଦ ହେଉ ପ୍ରଭୁ
ଫୁଲ ମାଧ୍ୟମେ    ଶ୍ରୀପଦେ ଆକୁତ
ଅରପଣ କରେଁ ସବୁ ।



## ଛଅ

ମୁଖରେ ମୋ ବାଣୀ ମା' ଗୋ !
ହେଉ ତୁମ ଜପ ପରି
ହସ୍ତର ସକଳ କର୍ମ
ସାଧେ ଯେହ୍ନେ ମୁଦ୍ରା ପରି ।

ଭ୍ରମଣର ସ୍ଥଳ ହେଉ
ଆଶ୍ରମର ପ୍ରଦକ୍ଷିଣ
ଯଜ୍ଞର ଆହୁତି ପ୍ରାୟେ
ହେଉ ସାତ୍ତ୍ୱିକ ଭୋଜନ ।

ଅଙ୍ଗଙ୍କ ପ୍ରଣାମ ସମ
ଶୟନ ମୋ' ହେଉ ପ୍ରଭୁ
ଯେତେ ପ୍ରିୟ କରବ ମୋ
ହେଉ ସେ ତୁମର ସବୁ ।

ଯେତେ କର୍ମ ପଜା ପରି
କରେ ସଦା ଆଚରଣ
ସବୁ ସେବା ପଦେ ତୁମ
ହେଉ ଶେଷେ ସମର୍ପଣ ।

ଶୟନେ ପ୍ରଣାମ କରେଁ
ମାଗୋ ! ତୁମ ଶ୍ରୀଚରଣେ
ସୁପ୍ତିରେ ସଚେତ ରହେଁ
ରହେ ପୁଣି ଜାଗରଣେ ।

ଶ୍ରବଣେ ତୁମର ବାଣୀ
ସୁଧା ଢାଳୁ ଅନୁକ୍ଷଣ
ନୟନେ ତୁମର ରୂପ-
ଶୋଭା କରେ ଦରଶନ ।

ହେ ପରମା ପ୍ରିୟତମା
ବସ ସଦା ହୃଦାସନେ
ନୀରବ ନିଶ୍ଚଳ ହୋଇ
ବୁଡ଼ିଥାଏଁ ତୁମ ଧ୍ୟାନେ ।

କରମେ ଜଡ଼ିତ ରହି
ନିଷ୍କରମ ପରି ଶାନ୍ତେ
ସେହି ପଦ୍‌ପାଦେ ମନ
ପଡ଼ିଥାଉ ଅବିରତେ ।



# ସାଥି

ତୁମ ପଛେ ପଛେ                    ଯେତିକ ଆଗକୁ
ଯାଉଛୁ ଧାଇଁ, ଯାଉଛୁ ଧାଇଁ;
ସେତିକ ସେତିକ                    ଦୂରେଇ ଯାଉଛ
ସତେ ଶୀତଦିନ
ଦେହର ଛାଇ
ଦେହର ଛାଇ ।

ସ୍ମରଣେ ତୁମକୁ                    ବାନ୍ଧବ ନସୂତ
ଭାବଇ ମନେ, ଭାବଇ ପ୍ରାଣେ
କ ଛଟକେ ପୁଣି                    ଭୁଲାଇ ଦଅଛି
ଛଳେ କଉଶଳେ
ଜାଣେ ତା ଜାଣେ
ଜାଣେ ତା ଜାଣେ ।

ନଜକୁ ଯେବେଳେ                    ନରମଳ ଭାବେଁ
ଆବଳତା କାହୁଁ ଆସଇ ଉଠି
ଯେତେ ଆଉଁସିଲେ                    ପ୍ରାଣର ନାଗୁଣୀ
ଫଣା ଫୁତ୍କାରେ
ବଷ ଉଦ୍‌ଗାରେ
ସଘନେ ଛୁଟି ।

ରହସ୍ୟର ଗ୍ରବ                    ତୁମ୍ଭେ ନ ଖୋଲଲେ
ଭତରେ ତା'ହାର
ନ ପାରେ ପଶି
ନପାରେ ପଶି
ଆପଣାକୁ ଯେତେ                    ଧରବାକୁ ଲୋଡ଼େଁ
ଜାଲୁଁ ମୀନ ସମ
ଯାଏ ସେ ଖସି ।



## ୪୦

ଘୋର ବାସ୍ତବତା ଝଲସିବା ବୃଥା
କିପାଇଁ ଏ ହାହାକାର
ଏ ଦେବ ମୁହୂର୍ତ୍ତେ ଝରେ ନବଜ୍ୟୋତି
ଅପାର କରୁଣା ଧାର ।
ପୀଡ଼ିତା ଧରଣୀ ଲୁହ ପୋଛିବାକୁ
ଜଗତଜନନୀ ଆଜ
ଜନ୍ମ ହୋଇଛନ୍ତି ମାନବ ପୁରତେ
ମାନବୀର ତନୁ ସାଜ ।
ଦୁଃଖ ଆଉ କର ନାହିଁ
ଅଶ୍ରୁ ଅଡ଼ୁଆଳେ ଅପେକ୍ଷି ଅଛନ୍ତି
ସେ ଆଜ ତୋହର ପାଇଁ ।

ଅନ୍ତମାନସର ଆଲୋକ ଝରଇ
ଆକାଶେ ବତାସେ ଜଳେ
ଗଗନପରଶୀ ବୈକୁଣ୍ଠ ସଉଧେ
ମାଟିର କୁଟୀର ତଳେ ।
ମରକ ନିଶ୍ୱାସେ ସେବଇ ଧରଣୀ
ସେ ଅନ୍ତମାନସ ଜ୍ୟୋତି
ନିସ୍ତବ୍ଧରେ ନିଦ ବୃଥା ଝଲସିବା
ଦୁଃଖେ ଆଜ ପଥାପୋତ ।
ଶୁଣ୍ ତୁ ହୃଦୟେ ବାହିଁ
ନବଜ୍ୟୋତି ଆଜ କି ନବ ବାରତା
ଆଣିଛି ତୋ ଲାଗି ଭାଇ ।



# ମଅ

ମେରୁ ସମ ମୋର
ସେହି ବିଶ୍ୱାସେ
ଦୃଢ଼ ବିଶ୍ୱାସ
ଭବ-ଅର୍ଣ୍ଣବ

ତୁମରେ ଲଭିବା
ତ୍ୟାଗିବ ସବୁ
ଦୁର୍ଗୁଣ ଯେତେ
ଜଗତଜନନୀ

ଆତ୍ମତା-ବଣା
ତୁମଠୁ ମିଳନ
ନବପରିଣୀତା
ତବ ଦରଶନ-

ସକଳ ସାଧନା
ଟେକ ଦେଇଅଛୁ
ଭେଟିବାର ବାଗ
ସମର୍ପଣଟି

"ବି. ପ୍ର. ଆ. ସ."-ଏ *
ତୁମର ଶ୍ରୀକରେ
କରମେ ବଚନେ
ତୁମରି ଇଚ୍ଛା

ଉଚ୍ଛ୍ୱାସ କର ଦୂର
ଅଜ୍ଞତା ହେଉ ଦୂର ।
ଅନ୍ତରେ ଥିଲେ କରି
କ୍ଷଣକେ ମୁଁ ଯିବ ତରି ।

ମୁଖ୍ୟ ଲକ୍ଷ୍ୟ ଯେତେବେ
କାମନା ବାସନା ଛାଡ଼ିବ ।
ଧୂଳ ଚରି ଦେବ ଟାଢ଼
ବସ ମୋ ହୃଦୟ ମାଢ଼ ।

ରକ୍ଷିବ ନିସ୍ପୃହ ଜାଣି
ହେଉ ମୋର ଜପମାଳ
ବିରହିଣୀ ଜାୟା ସମ
ବ୍ୟାକୁଳତା ଜାଗୁ ମମ ।

ପୂରୁ ତୁମ ନିର୍ଦ୍ଦେଶରେ
କ୍ଷମା ଗୋ ! ତୁମରି କରେ !
ଦୁଏ ନାହିଁ ଯନ୍ତ୍ରୀ ଭାବ
ତନ୍ତ୍ରୀର ଅସଲ ଭାବ ।

ଯୋଗର ମନ୍ତ୍ର ଜପି
ଦେଇଛୁ ନିଜକୁ ସଁପି ।
ସତ୍ୟ ହେଉ ମୋ ସାଧ
ପୂର୍ଣ୍ଣ ହେଉ ଗୋ ମାଆ ।

●

* ବି: ପ୍ର: ଆ: ସ.—ବିଶ୍ୱାସ, ପ୍ରତ୍ୟାଖ୍ୟାନ, ଆତ୍ମତା, ସମର୍ପଣ ।

## ଦଶା

ମୁଁ କହେ ମୋହର    ଘର ପରିବାର
ସୁନା ରୂପା ଗୋରୁଗାଈ
ତୁମେ ଯେ ଏହାର    ପ୍ରକୃତ ମାଲିକ
ମୁଁ—ଜାଣେ ନାହିଁ, ଜାଣେ ନାହିଁ ।

ଯେ ଗରବ ମୋର    ରୂପ ଯଉବନ
ବୁଝି ନାହିଁ ପ୍ରଭୁ !    ସେ ତୁମରି ଦାନ
ଜାଣି ବି ଅଜଣା    ବୁଝି ବି ଅବୁଝା
ସେ ସବୁ ତ' ଧନ ପାଇଁ
ମୁହିଁ ଭଜୁଥାଏ    ମୋ ଜମି ଅମାର
ପୁଅ ଝିଅ ଗୋରୁଗାଈ ।

ଧନ ଦଗାଦିଏ    ଖଣ୍ଡେ ହାତେ ପଡ଼ି
ପୁଅ ଧକ୍କା ଦିଏ    ଶମଶାନେ ଗଡ଼ି
ଶେଷ ଶେଯେ ବନ୍ଧୁ    ପ୍ରୀତି ଦଗା ଦିଏ
ନିତି ପ୍ରତି ଦେଖୁଥାଇ
ତେବେ କହୁଥାଏ    ମୋ ଘର ସଂସାର
ମୋ—ଜମିବାଡ଼ି ଗୋରୁଗାଈ ।

ଦଗା ଦେବ ନାହିଁ    ତୁମେ ଏକା ମତେ
ବୁଝିଲି ମାଆ ଗୋ    ଆସି ଯୋଗ ପଥେ
ଜାଣିଲି ଏବେ ମୁଁ    ତୁମେ ମୋର ସବୁ
ଆଉ—ତୁମ ବିନା କିଛି ନାହିଁ
ମୋ ସର୍ବସ୍ୱ ନିଅ    ସବୁ ଗୋ ତୁମରି
ଯାହା କିଛି ଅଛି ଦେଇ ।



# ଏଗାର

ସ୍ୱର୍ଗାଲୋକର ପଥେ
ଚାଲିଛି ଏକା
ବୁକୁରେ ଅସୀମ ଆଶା
ମିଳିବ ଦେଖା
ଏବେ ପାଇଛି ବାଧା
ତାଙ୍କୁ ଭେଟି ଅବଶେଷେ
ହେବି ମୁଁ ରାଧା ।

ମୁଁ ଚାଲୁ ନା, ଚଳାଇ ସେ
ନେଉଛି ମତେ
କୁସୁମ କି କଣ୍ଟକ
ଅଛି ସେ ପଥେ
ମତେ ନ ପଡ଼େ ଜଣା
ବୁଝିଛି ନ ହେବି କେବେ
ମୁଁ ବାଟବଣା ।

ଅବିରତ ଚାଲିବାରେ
କ୍ଳାନ୍ତ ନାହିଁ
ଉଲ୍ଲାସ—ମିଳନକୁ
ରହିବା ଚାହିଁ
ଏହି ପ୍ରତୀକ୍ଷାରେ
କି ମହାନନ୍ଦ ଅଛି
କହି ନ ପାରେଁ ।



## ଭାର

ରାତି ପାହିଲେ ତ        ତେଲ ଲୁଣ ଚିନ୍ତା
ସଭିଙ୍କୁ ଲାଗିଛୁ ଭାଇ
କାର ପୁଅ ଝିଅ-        ଭାତ ଡାଲି ଲୁଗା
ଭଣ୍ଡାରେ ସକଳ ଥାଇ ।

କିଏ କହେ ମୋର        ଧନ ଖାଲି ଲୋଡ଼ା
କିଏ କହେ ମୋର ପାଠ
କେହୁ ଯଶେ ବାଇ        ନ ଖୋଜେ ତ କେହୁ
କାମନା ବିନାଶ ବାଟ ।

ପ୍ରଭୁ !
ତୁମକୁ ଭାବିବା ପାଇଁ
ଯାହାକୁ ପଚାର        ସେ କହଇ ସିଧା
ବେଳ ମତେ ଆଉ କାହିଁ ?

ହୃଦେ ଅସନ୍ତୋଷ        ବଦନ ବିରସ
ଜଳଇ ଯେ ଧନମାନ
ପ୍ରସନ୍ନ ତା ଚିତ୍ତ        ମୁଖ ଉଦ୍ଭାସିତ
ଚିନ୍ତେ ଯେହୁ ଭଗବାନ ।

ଆନନ୍ଦ ଶାନ୍ତିର        ଯନ୍ତର ହୁଏ ସେ
ହୃଦୟେ ଯେ ବୁଡ଼ିଥାଏ
ଚିନ୍ତା ଦୂର ଥାଇ        ଅଚିନ୍ତ୍ୟ ନନ୍ଦକ
ସେହି ପ୍ରେମାମୃତ ପାଏ ।

ପ୍ରଭୁ !
ତୁମର ପ୍ରେମଟି ସାର
ତୁମକୁ ଛାଡ଼ିଲେ        ଆଉ ଯେତେ ଚିନ୍ତା
ସବୁ ତ ପାଣିର ଗାର ।



## ଛେଉର

ଜୀବନ ଯେ ଏକ          ନିରବଚ୍ଛିନ୍ନ
          ମାତୃପୂଜା
ଜାଣି ନ ଥିଲି ମୁଁ          ଶୁଣି ନ ଥିଲି ମୁଁ
          ହେ ପଗ-ଜନନୀ
               ହେ ଦଶଭୁଜା !

ପୂଜୁଥିଲି ଯବେ          ଉଷା ପରବରେ
ତୁମରି ମୂରତି          କାଠ ପାଷାଣରେ
ଅରପି ପ୍ରଦୀପ          ଚନ୍ଦନ ଧୂପ
     କରି ଉପବାସ
          ମାନସ ବୁଝା
ଜାଣି ନ ଥିଲି ମୁଁ          ଜୀବନ ଯେ ଏକ
     ନିରବଚ୍ଛିନ୍ନ
          ମାତୃପୂଜା ।

ହୃଦାସନେ ତୁମେ          କରିଅଛ ଯବେ
ଯୋଗ-ପଥେ ଆଣି          ବୁଝାଇଲ ନିଜେ
ଦେହ-ମନ୍ଦିରେ          ହୃଦୟର ପୀଠେ
     ଅଣ୍ଡାଳ ହୁଏ
          ମୁଁ ଆଖିବୁଜା
ଅନ୍ଧାର ଖାଲି          ଅନ୍ଧାର ଦେଖେଁ-
     କରିବ ଗୋ ଚନ୍ଦ୍ରି
          କାହାର ପୂଜା !

ଜାଗ୍ରତ କର          କର ସଚେତନ
ବିନାଶ କର ମୋ          ସକଳ ଦ୍ୱନ୍ଦ୍ୱ
ଯୋଗର ଗ୍ରନ୍ଥ          ଯେତେ ଘୋଷିଥିଲେ
     ନୋହିଲା ତ କିଛୁ
          ତୁମକୁ ବୁଝା

ଅନ୍ତରତମା ଅନ୍ତରେ ଲୁଚି
ତୁମେ ହିଁ କରୁଛ
ତୁମର ପୂଜା—
ହେ ସର୍ବ-ଜନନୀ ଶକ୍ତିଦାୟିନୀ
ଜ୍ୟୋତିସ୍ୱରୂପିଣୀ
ଅଯୁତଭୂଜା !

●

## ଚଉଦ

ନୟନୁ ମୋହର ମାୟା-ଯବନିକା
ତୁମ୍ଭେ ମା ଦେଇଛୁ କାଟି
ଏ ଜନମ ମୋର କରିଅଛୁ ସୁନା
ଥିଲା ଯାହା ଗୋଡ଼ ମାଟି ।

ସେ କଣ୍ଠା ପରଦା ପୁଣି ଯୋଡ଼ିଦେଲେ
ନ ଦିଶେ ଆଉ ତୋ ମୁହଁ
ହୃଦୟ-ନଦୀରେ ମାଡ଼ି ଆସେ ପୁଣି
ଅଶାନ୍ତିର ଖର ସୁଅ ।

ଅଦଭୂତ ଏହି ମାୟାର ଭେଳିକି
ନ ବୁଝି ଅବୋଧ ମନେ
ମଣିହରା ଫଣୀ ପରାଏ କେବଳ
ଖୋଜିବୁଲେ ବନେ ବନେ ।

ତୋହର ମଣ୍ଡିତ ପୋଛିଦେଲେ ତୁମ୍ଭ
ତୋ ସୁତ ଆଖିରୁ ଲୁହ
ଦୁଃଖ-ମରୁ ବୁକେ ଛୁଟେ ପୁଣି ସୁଖ
କୁଳୁ କୁଳୁ ଝର ସୁଅ ।

●

## ପନ୍ଦର

ଆଜ ତୁମର ଜନ୍ମଦିନେ
କି ଦେବି ଭେଟି
ଶ୍ରୀପଦେ ନୁହଁ ମାଆ
ଏଇ ଯେ ସବୁ ତୁମରି ଫୁଲ
ଘରେ ବା ବଣେ
ଫୁଟାଇଅଛ ଯାହା।
ଯୋଗ୍ୟ ପ୍ରଭୁ !   ହୋଇ ତ ନାହିଁ
ନିଜକୁ ନିଜେ   ଭେଟିବା ପାଇଁ
ନିର୍ଗୁଣ ସଦା ହୋଇଛ ତୁମେ
ସନ୍ତାନଠୁଁ
ଲୁହିଁଛ ଯେବେ ଯାହା।
ଆଜ ଏ ତୁମ ଜନ୍ମଦିନେ
କି ଦେବି ଭେଟି
ଶ୍ରୀପଦେ ତଳେ ମାଆ !
ଦେଖୁଛୁ ଯାହା, ତୁମରି ସବୁ
କହିବା ପାଇଁ
ନିଜର ନାହିଁ କିଛୁ
ନିଜର ବୋଲି, ଯା ଥିଲି ଭାବି
ବୁଝାଇ ଦେଲ
ସେ ସବୁ ମିଛୁମିଛୁ।
ତେଣୁ ଗୋ ସେହି   ଶରଣକୁ ହିଁ
ଅରପେ ତୁମ   ଚରଣେ ମୁହିଁ
ଚାପିତ ଏହି ମରମେ ଦିଅ
ଜନନୀ ତୁମେ
ପ୍ରେମର ବାରି ସିଞ୍ଚି
ନିଜକୁ ଖାଲି ଦେଉଛି ଭେଟି—
ନିଜର ବୋଲି
ନାହିଁ ତ ଆଉ କିଛୁ।



## ଷୋହଳ

ନିଜ ସେବା ନିଜେ କରି ମୁଁ ପାରିଲେ
ଦେଶ ସେବା ହେବ ପଛେ
ସମୀରେ ସୁବାସ ଚହଟି ଉଠିବ
ଫୁଲଟି ଫୁଟିଲେ ଗଛେ ।

ହେ ମାଆ ଶାରଦା ତୁମେ ଦେଲ ଜ୍ଞାନ
ଏତେ ଜନେ ଦୟା କରି
ଆପଣାକୁ ଆପେ ଉଦ୍ଧରିଲେ ତୁ
ଜଗତ ହେବ ତୋ ପରି ।

ସ୍ୱଦେଶ ସ୍ୱାଧୀନ କରିବାର ପଥ
ନିଜକୁ ସ୍ୱାଧୀନ କର
ଆପଣା ଇଷ୍ଟ ସାଧିଲେ ହୋଇବ
ଇଷ୍ଟାର ସମାଜର ।

ଜାତିର ଗଠନେ ବ୍ୟଗ୍ର ନ ହୋଇ
ନିଜେ ଆଗେ ହୁଅ ଗଢ଼ି
ଶିକ୍ଷ୍ୟରେ ଗୁରୁ ଶିଖାଉଇ ନିଜେ
ବିଦ୍ୟା ସାଧନ କରି ।

ଦେଖିବାକୁ ଯାହା କରୁଛୁ ଇଚ୍ଛା
ନିଜେ ହୁଅ ସେହିପରି
ନିଜେ ହେଲେ ବଡ଼ କାମ ବଡ଼ ବଡ଼
ହେବ ନିଜ ରୁଚି ପରି ।



# ସତର

ସାଧନ ପୂଜନ କିଛି ତ ଜାଣେ ନା
ଜାଣିଅଛି ଖାଲି ଭୁଲିବ ମୋ ମାଆ
ତୋହର ପଣତେ ଲୁହ ପୋଛୁ ପୋଛୁ
ଜନମେ ଜନମେ ହୋଇଛୁ ସାହା ।

ଗିଆନ ଧିଆନ ମୋ ସାତ ସପନ
ନପୂତ ସ୍ମରଣ ନ ପାରେ କରି
ବାନ୍ଧିଅଛି ଆଶା ତଥାପି ଭେଟିବି
ଏହି ଦେହେ ନବ ଜନମ ଧରି ।

ମାନବ ଜଗତେ ଦେଖାଦେବେ ଆସି
ଅତି ମାନବର ନୂତନ ଜାତି
ମାଟିର ଧରଣୀ ସରଗ ହୋଇବ
ବିରାଜିବ ଚିର ଆନନ୍ଦ ଶାନ୍ତି ।

କୋଟି ପୁଅ ଝିଅ ଭେଟିବେ ସେଦିନ
ଶ୍ରୀ ଚରଣେ ତୋର ନୁଆଇଁ ମଥା
ଭୁଲିବୁ କି ମାଆ ଗୋଟିଏ ଝିଅର
ସକଳ ହୃଦୟ ଗୋପନ କଥା !

ମାଆ ଜାଣେ ସାହା— ଭଜନ ପୂଜନ
ଜ୍ଞାନ ଧ୍ୟାନ ପଛେ ନ ଥାଉ ଜଣା
କୋଟିକ ଭିତରେ ଏ ଗୋଟିକ ତୋର
ସେ ତାଲିକାରେ କି ନ ହେବ ଗଣା !

ଜନମଦାୟିନୀ ଜନନୀ କୃପାରୁ
ବଞ୍ଚିତ କେବେ ମୁଁ ହୋଇବି ନାହିଁ
କୃପା ମୋ ସମ୍ବଳ ଆଶା ଶେଷବଳ
ଆଶାରେ ରହିଛି ସେ ପଥେ ଚାହିଁ ।



# ଅଠର

ପାଦେ ମୁଁ ଭୁଲିଲେ ଚୋହର ଆଡ଼କୁ
ଆସୁ ଶହେ ପାଦ ଧାଇଁ ମା,
ନିତ ନିତ ଶୁଣେ ଯୋଗ ଦରଶନେ
ତଥାପି ତ ଯାଏ ନାହିଁ ମା ।

ବଏ ଉପଦେଶ ଭୁଲ ସତ ବାଟେ
ନଜେ କନ୍ତୁ ଭୁଲେ ଅମଡ଼ା ଅବାଟେ
ଧୂଳି ବଏ ପିଲା ସକଳ ଆଖିରେ
ସବୁ ଦେଖୁଥାଉ ଭୁହିଁ ମା
ପାଦେ ମୁଁ ଭୁଲିଲେ ଚୋହର ଆଡ଼କୁ
ଆସୁ ଶହେ ପାଦ ଧାଇଁ ମା ।

ପୁତ୍ର ଅପରାଧେ ପିତା ବଏ ଦଣ୍ଡ
ରାଜଦ୍ରୋହେ ପ୍ରଜା ଯେବେ ହାତକଡ଼
ଯେତେ ଦୋଷ କଲେ କିଛୁ ତ ଧରୁ ନା
ସ୍ନେହଶୀଳା କ୍ଷମାମୟୀ ମା
ପାଦେ ମୁଁ ଭୁଲିଲେ ଚୋହର ଆଡ଼କୁ
ଆସୁ ଶହେ ପାଦ ଧାଇଁ ମା ।

ତତେ ନ ଖୋଜଲେ ମତେ ଭୁହ ଖୁନ୍ତୁ
ଡାକବ ବୋଲି ମୁଁ କାନ ଡେରିଥାଉ
ମୁଁ ପାସୋରିଲେ ବି ଭୁ ପାସୋରୁ ନାହିଁ
ତେତାଉ ଯାତନା ଦେଇ ମା
ପାଦେ ମୁଁ ଭୁଲିଲେ ଚୋହର ଆଡ଼କୁ
ଆସୁ ଶହେ ପାଦ ଧାଇଁ ମା ।

ଏ ଯୁଗେ ଜନମି ରୂପେ ଅବତରି
ନଜେ ସବୁ ଦୁଃଖ ନେଇଅଛୁ ବରି
ନେବ ମାଆ ଏବେ ହାତ ଧରି ଧରି
ନ ପାରେ ମୁଁ ଏକା ଯାଇ ମା
ଯାଦେ ମୁଁ ଭୁଲିଲେ ତୋହରି ଆଡ଼କୁ
ଆସୁ ଶବ୍ଦେ ପାଦ ଧାଇଁ ମା ।



## ଉନ୍ମେଷ

କ୍ଷୁଦ୍ର !
ପଥ କାହିଁ—
ପଥ କାହିଁ......
ଜନମ ଜନମ କେତେ ବିତିଲାଣି
ଖୋଜି ତାକୁ
ପାଉ ନାହିଁ—
ପଥ କାହିଁ !
ପଥ କାହିଁ—

ସୃଷ୍ଟିର ଶୁଭ ଦେବ ମୁହୂର୍ତ୍ତେ
ଆସିଛି ଜନମି ମୋର
ଟାଣିଅଛୁ ମୋତେ ତୁମର ଦିବ୍ୟ-
ପ୍ରେମ କରୁଣାର ଡୋର ।

ଯିବି କେଉଁ ପଥେ ସେ ମହାତୀର୍ଥେ
ସେଇ ବାଟ ବତାଅ କହି
ପଥ କାହିଁ—
ପଥ କାହିଁ !

ତୁମେ କହୁଅଛ — ପଥ ନୁହେଁ ଦୂର
ପଡ଼ିଛି ତା ହୃଦୟରେ
ମାତ୍ର ପୂରତେ — ଖୋଲିଲେ ନିଜକୁ
ଖୋଲିବ ତା' ସହଜରେ ।

ଖୋଜ ହେଲେ ସଦା — ସେହି ପଥ ଲାଗି
ମିଳିବ ଆପଣା ଛୁଏଁ
ଶୟନେ ସପନେ — ଏ ମନ ଯେସନେ
ତୋର ପାଖେ ପଡ଼ିଥାଏ ।

ନୟନୁ ଫିଟାଇ — ମାୟାବନ୍ଧନ
ହେ ମାତଃ ମୁକ୍ତିଦାୟି !
କୁହ
ସେ ପଥ ପଡ଼ିଛି କାହିଁ !



## ଡକାଡ଼ଏ

ଦିବ୍ୟ ଯନ୍ତ୍ର — କରିଦେଏ ମତେ
ଦିବ୍ୟ କରମ କରେଁ
ଦିବ୍ୟ ଜନନୀ — ଦିବ୍ୟ ଆଲୋକ
ଭର ଦେ ମୋ ହୃଦୟରେ ।

ତୋହର କର୍ମ — ତୁହି କରୁଥାଉ
ମୁଁ କହେ କରଇ ମୁହିଁ
ମୁହିଁ ରଥ, ତୁହି — ରଥୀ ଗୋ ତହିଁର
ମୁଁ ଘର, ଘରଣୀ ତୁହି ।

ମୁହିଁ ଜୀବ, ତୁହି ପରମ ହେ ଦେବ
ଆତ୍ମା ତୁ—ମୁହିଁ ଦେହ
ମୁହିଁ ଯନ୍ତ୍ର, ତୁ ଯନ୍ତ୍ରୀ ଚତ୍ତିର
ହୃଦସ୍ଥ ମୁହିଁ, ତୁ ସ୍ନେହ ।

ମୁହିଁ ଦୀପ, ତୁହି ଶିଖାଟି ତାହାର
ମୁହିଁ ନଦୀ, ତୁହି ଜଳ
ମୁହିଁ ସରୋବର ତୁହି ସରସିଜ
ନିର୍ମଳ ଢଳଢଳ ।

ମୁହିଁ ନାସା; ତୁ ମୋ ଶ୍ୱାସ ପ୍ରଶ୍ୱାସ,
ମୁଁ ନୟନ, ତୁହି ଜ୍ୟୋତି
ସୁନ୍ଦର ମାଳ ସୂତାଖିଅ ମୁହିଁ,
ତୁ କନକ ମଣି ମୋତି ।

ମୁଁ ଫୁଲ ପାଖୁଡ଼ା ତୁହି ତା ଗୋପନ
ମୃଦୁଳ ମଧୁର ବାସ
ତୁହି ମୋର ସ୍ନେହ— ବତ୍ସଳ ପ୍ରଭୁ
ମୁଁ ତୋ ପଦତଳ ଦାସ ।

ସାଧନାର ଧାର ଏତିକ ମାତର
ମୁଁ ଝୁଅ, ତୁ ମୋର ମାଆ
ଅଳ ଅଇଦୋଳ ସବୁକୁ ସମାଳ
ହେବୁ କଡ଼େ କଡ଼େ ସାହା ।



# ଏକୋଇଶି

ଯେଉଁଠି ଥାଏ ଯହିଁ ବା ଯାଏ
ଯୁଆଡ଼େ ଅବା ଚାହେଁ
ମାଆର ହସ ମାଆର ରୂପ
ସବୁଠି ମୁହିଁ ପାଏ ।

ଡର ମୋ ନାହିଁ ଥର ମୋ ନାହିଁ
ଦବକ ଟିକେ ନାହିଁ
ଯୁଆଡ଼େ ଚାହେଁ ମାଆର ଆଖି
ରହିଚ ମୋତେ ଚାହିଁ ।

ମାଆର କୋଳ ଅସଲ ଘର
ଘର ମୋ ନାହିଁ ଲୋଡ଼ା
ପଣତେ ତାର ପଣତ ମୋର
ରହିଛି ସଦା ଯୋଡ଼ା ।

ଯୁଗେ ଯୁଗେ ମୁଁ ତାହାର ଶିଶୁ
ସେ ମୋର ଚିର ମାଆ
ମାୟା ମମତା ବାଡ଼କୁ ବତା
ସେହି ମୋ ଏକା ସାହା ।

'ମୀରମ୍ବିକା' ନାମଟି ଏକା
ସବୁ ନାମର ସାର
ମୁଁ ଜ୍ୟୋତିକଣା ସେ ମହାଜ୍ୟୋତି
ମୁଁ ଟୋପା, ସେ ସାଗର ।



# ବାଇଶି

ସକଳ ଭରସା ଛାଡ଼ି ଶେଷେ ପ୍ରଭୁ
ଧରିଛୁ ତୁମରି ପଥ
ତୁମେ ଜାଣ ଏକା ପୂରବ କି ନାହିଁ
ଜୀବନର ମନୋରଥ ।

ପ୍ରତି ପଦକ୍ଷେପେ ଅନୁଭବେ ମାତଃ
ଚଳାଉଛ ତୁମେ ଧରି ମୋର ହାତ
ତୁମରି ଚରଣେ ପଶିଛୁ ଶରଣ
ଛାଡ଼ି ନାନା ମୁନି ମତ
ସକଳ ଭରସା ଛାଡ଼ି ଶେଷେ ପ୍ରଭୁ
ଧରିଚି ତୁମରି ପଥ ।

ରୋଗ ଶେଯେ ଶୋଇ ରହିଥାଏ ଚାହିଁ
ତୁମରି ପ୍ରସାଦ ଫୁଲେ
କି ଲୋଡ଼ା ଭେଷଜ ଅଥବା ଭିଷକ
ଥାଉଁ ଜନନୀ ତୁମ କୂଳେ ।

କରିବାକୁ ମତେ ତୁମେ ଚିରପ୍ରିୟ
ବିହାଣୀ ହସରେ ଆଶୀର୍ବାଦ ଦିଅ
"କରିବୁ ଜୟ ତୁ ଛାଡ଼ ଦେ ଭୟ ତୁ"
କହେ କିଏ ଅବିରତ
ସକଳ ଭରସା ଛାଡ଼ି ଏବେ ପ୍ରଭୁ
ଧରିଛୁ ତୁମରି ପଥ ।

ତୁମ ଶୁଭାଶିଷ ରକ୍ଷାକବଚ ମୋ
ସକଳ ବିପଦ ଦୁଃଖେ
ଶୋକ ତାପ ନଭେ ତୁମରି ମଧୁର
ନାମ ସୁମରିଲେ ମୁଖେ ।

ଲମ୍ଫଦଏ ହୃଦ- ବିଶ୍ୱାସ ସାଗରେ
ଜୀବନ ମରଣ ତୁମ ଦାୟିତ୍ୱରେ
ଛାଡ଼ିଦେଇ ମାତଃ ରହିବଟି ନଦକ
କୋଳେ ତବ ଶିଶୁବତ
ସକଳ ଭରସା ଛାଡ଼ି ଶେଷେ ପ୍ରଭୁ
ଧରିଛି ତୁମରି ପଥ ।



## ତେଇଶି

ଅନ୍ତର ମୋର ଜାଗ୍ରତ କର
ଅନ୍ତରଯାମୀ ହେ
ସତ୍ୟର ପଥେ ଶିଶୁ ସୈନ୍ୟ ମୁଁ
ସତ୍ୟର କାମୀ ହେ ।

କାର୍ଯ୍ୟେ ତୁମର ବାଧା ନ ଘଟାଏ
ବିଶ୍ୱଜନନୀ ଗୋ
ଗର୍ଭକକ୍ଷଣୁ ଉଦ୍ଧାର କରେ
ବ୍ୟଥିତା ଧରଣୀ ଗୋ ।

ଚିନ୍ତାରେ ମତେ କର ସଚେତନ
ସକଳ କର୍ମେ ମୋ
ତୁମରି ନାମଟି ଜପଇ ଯେସନେ
ନିଭୃତ ମର୍ମେ ଗୋ ।

ତୁମ ଶୁଭେଚ୍ଛା ପୂର୍ଣ୍ଣ ହେଉ ମୋ
ପ୍ରତିଟି ନିଃଶ୍ୱାସେ
ତୁମରି ଇଚ୍ଛା ପୂର୍ଣ୍ଣ ହେଉ ମୋ
ଗଭୀର ବିଶ୍ୱାସେ ।

ହେଉ ସାନନ୍ଦ ସମର୍ପଣ ମୋ
ଆସ୍ପୃହା ପ୍ରବଳ
ଅନ୍ତରୁ ତମ ବନାଶି ସମୂଳେ
କର ହେ ନର୍ମଳ ।

ତୁମ ସିଦ୍ଧିରେ ପ୍ରତି ଅଙ୍ଗ ମୋ
ପ୍ରସ୍ତୁତ ହେଉ ଗୋ
ମା ! ତୁମ ଇଚ୍ଛାରେ ମୋହର ଇଚ୍ଛା
ସଦା ଯୋଗ ହେଉ ଗୋ ।



## ତଦ୍ବଶି

ଆଜି—

ପ୍ରଣତି ଡାଳଇ ଭକ୍ତିଭରେ ମୁଁ
ପରମାଶକ୍ତି ଚରଣେ
ଦିବ୍ୟ କରୁଣା ମୂର୍ତ୍ତିମନ୍ତ ଯେ
ଶୁଭ୍ର ଜ୍ୟୋତି ବରଣେ ।

ସେ ମହାଜ୍ୟୋତିର ଦୀପ୍ତ ସୁଷମା
ଶାରଦ ଚନ୍ଦ୍ରକାନ୍ତ
ପରମ ସତ୍ୟ ପରମାନନ୍ଦ
ପରମ ପୂର୍ଣ୍ଣ ଶାନ୍ତ ।

ଅଭୟ ହସ୍ତ ପ୍ରସାରି ସର୍ବେ
କରନ୍ତୁ ଯେ ଆଶୀର୍ବାଦ
ଶ୍ୱେତପଦ୍ମେ ଆସୀନ ଯାଙ୍କ
ଯୁଗ୍ମ ଶ୍ୱେତପଦ୍ମ ପାଦ ।

ସ୍ୱର୍ଗ-ମର୍ତ୍ତ୍ୟ ସ୍ୱର୍ଣ୍ଣ ସେତୁ ଯେ
ସର୍ବ ସାଧନା ସାର
ପରମାସୁଧା ମାତୃକା ପଦେ
ପ୍ରଣତି ଜଣାଏ ବାରମ୍ବାର ।



## ପ୍ରାର୍ଥନା

ଅନ୍ତର ମୋର ବିକଶିତ କର
ଅୟି ତ୍ରିଭୁବନମୋହିନୀ
ନିର୍ମଳ କର ଉଜ୍ଜ୍ୱଳ କର
ଜନକ-ଜନନୀ-ଜନନୀ ।

ନୀରବ କର ମୋ ମନର ଚିନ୍ତା
ସୁମଧୁର କର ବାଣୀ ମୋ
ଶାନ୍ତି ବୁକେ ଭର ବୀର ମହାତେଜ
ମଧୁମୟୀ ରାଜରାଣୀ ଗୋ ।

ସୁନ୍ଦର କର ଭାବନା ମୋହର
ସୁନ୍ଦର କର ଧର୍ମ
ଶୂନ୍ୟ ଜୀବନ ପୂର୍ଣ୍ଣ କର ମା
ସୁନ୍ଦର କର କର୍ମ ।।

ହେ କରୁଣାମୟୀ ! ଜ୍ୟୋତିର ଜ୍ୟୋତି ମା
ଉଦ୍ଭାସ ସ୍ଥୂଳ ନୟନେ
ତମିସ୍ରା ପଥ ହେଉ ପରିଣତ
ସୂର୍ଯ୍ୟ-ଧାତ୍ର-ଅୟନେ ।

ଜଡ଼ ମୁଁ ଯେସନେ ଚେତନ ପାଲଟେ
ତୁମର ଚରଣ ଛୁଇଁ ଗୋ
ତୁମ କୃପା କଣେ ଯେସନେଟି ଶେଷେ
ତୁମେ ହୋଇଯାଏ ମୁହିଁ ଗୋ ।

●

## ଛବିଟି

ଆଜ ରବିବାର ପାଠଚକ୍ର ଯେ—
ସନ୍ଧ୍ୟାର ସାଢ଼େ ଛଅଟାବେଳେ
ଆଶ୍ରମ ଶାଖା ସାଧନା ପୀଠ
ହସିକଣି ବାସ କୁସୁମ ମେଳେ ।

ତଳପ ତିଆଗି ଉଠୁଁ ନ ଉଠୁ
ହୃଦୟେ ମଧୁର ଚମକ ଲାଗେ
ମାତୃ ପ୍ରତୀକ ନବ ଜ୍ୟୋତିର
ମାତୃ ଛବଟି ମରମେ ଜାଗେ ।

ଯନ୍ତ୍ର ପରଶେ ଲାଗେ ମୁଁ କାମେ
କଏ ସେ ଯନ୍ତ୍ରୀ ନ ପାରେ ଜାଣି
ଯେତିକ ଯେତିକ ଗଢ଼ଇ ବେଳ
ପାଠ ମଧ୍ୟରେ ତୁଅଇ ଟାଣି ।

ପୁଷ୍ପ ଧୂପ ମୁଁ ଚରଣେ ଥାପି
ପ୍ରଣମଇ ଯେବେ ଭକତିଭରେ
କି ଆଶିଷ ତା'ର ପରଶେ ଝଅ
ପରମ ଅଶ୍ରୁ ନୟନୁ ଝରେ ।

ଅରୂପ ରତନ    ଭକତ ଧନ
କରେ ଅରଜନ ଏ ଭବବାରେ
ଶ୍ରୀ ଅରବିନ୍ଦ    ସ୍ତୋତ୍ର ପାଠେ
ନମଜେ ସରଗ ଗଙ୍ଗାଧାରେ ।

ସାଧକ ସାଧିକା    ମିଳନ ସତେ
ଜନମ ଜନମ ଭଗିନୀ ଭ୍ରାତା
ଅପୂର୍ବ ନବ    ନିମନ୍ତ୍ରଣେ
ଏକାଠି କରନ୍ତୁ ଜଗତମାତା ।

ଶାସ୍ତ୍ରାଲୋଚନା    ଅମୃତ ମୋ'
ବୁଡ଼ିଯାଏ ଯେବେ ମନ ଓ ପ୍ରାଣ
କେଉଁ ଜଗତେ ମୁଁ    ସେ ବେଳେ ଥାଏଁ
ବଖାଣି ନ ପାରେ ଏ ସ୍ଥୂଳ ଜ୍ଞାନ ।

ମଜନ ଧୂପର    ମୃଦୁଳ ବାସ
ସନ୍ଧ୍ୟାରେ ପୂତ ମଧୁର ସ୍ତବ
ତୁମ ଇଚ୍ଛାରେ    କରୁଣା ତୁମ
ଦେବ-ଦେବ-ଧନେ-ଧନେ-ନା ଲଭ ।

ଧ୍ୟାନ ଗଢ଼ିଯାଏ    ଧ୍ୟାନକ ପରେ
ଯୁଅାନ୍ତେ ଥାଏ ବା ଯୁଆନ୍ତେ ଯାଏ
ସପତାହ ଶେଷ    ରବିବାସରେ
କୋଟିନିଧି ପରି ମୁଁ ସୁଖ ପାଏ ।



## ସତେଇଣି

"ଦେବ ମୂର୍ତ୍ତି" ସମାଗତ ଏବେ
କହୁଲ ସେ ଧନ ପ୍ରଭୁ !
"ପ୍ରସ୍ତୁତ ହୁଅ—ପ୍ରସ୍ତୁତ ହୁଅ ସବୁ ।"

ତା' ପରେ ଶୁଭଲ ଆଶ୍ରମୁଁ ତବ
"ପ୍ରସ୍ତୁତ ଅଛ ?" ବାଣୀ
ନ ଥିଲୁ ଆମେ ଯା' ଚନ୍ତ ଅଥବା ଜାଣି ।

"ନୂତନ ସତ୍ୟ ଅଭିନନ୍ଦନ
ଜଣାଅ ।" ସକଳେ ମିଣି
ଏହୁ ଉକ୍ତି ଉଦ୍‌ଘୋଷିତ ହେଲା
ପରେ ପରେ ଦଣଢଣି ।

ଏବେ ଜଣାଇଛ ସନ୍ତାନେ ତୁମ
"ସତ୍ୟର ସେବା କର
ସତ୍ୟକୁ ତୁମ ହୃଦୟେ ଜାବୁଡ ଧର ।"

କେତେ ଦୂର ମୁହିଁ ପ୍ରସ୍ତୁତ ଆଜ
ତୁମେ ଥିବ ଅବା ଜାଣି
ଚଲାପଥେ ମୋର ଘୁଲଛୁ କ ନାହିଁ
ସତ୍ୟର ଗାର ଟାଣି ।

ହିଲେକ ଜନମ ଚରବଦନ
ତୁମେ ଜଣାଇଛ ଅଭିନନ୍ଦନ
ଆମର ଜାଣିବା ପାଇଁ
ମୁଁ
ସତ୍ୟ ସ୍ୱରୂପ ଦେଖି ନାହିଁ-ଦେଖି ନାହିଁ ।

ସାଧନାର ଘର ତୋଳିଛୁ ଅରପି
ତୁମର ଚରଣ ତଳେ
ସିଦ୍ଧି ହେବ ଯା ତୁମରି କରୁଣା ବଳେ ।

ଏକ୍ କି ବିଶ୍ୱାସ ସମ୍ବଳ କରି
ଚାଲିଛୁ ତୁମରି ପଥେ
ମା' ଗୋ ! ମତେ ତୁମ ହସ୍ତ ପ୍ରସାରି
କୋଳ କରି ନେବ ସତେ ।



## ଅଠେଇଶି

ତୁ ରହୁ ନୁ ଦୂର ପଣ୍ଡିତେଶ୍ୱରେ
ମୁଁ ରହେ ନ ଓଡ଼ିଶାରେ ମା
ତୁ ରହୁଚୁ ମୋର ବାହାରେ ଭିତରେ
କହେ କଏ ବାରେ ବାରେ ମା !

ଜନମେ ଜନମେ ତୋର ଦେଖା ପାଇଁ
ଥକିଲିଣି ବୁଲି କେତେ ମରୁଭୂଇଁ
ଏ ଜୀବନେ ଆଜ ସନ୍ଦେହ ନାହିଁ
ତତେ ମୁହିଁ ଭେଟିବାରେ ମା,
ତୁ ରହୁ ନୁ ଦୂର ପଣ୍ଡିତେଶ୍ୱରେ
ମୁଁ ରହେ ନ ଓଡ଼ିଶାରେ ମା !

ବୃଥା ଗାଦ ଗାଦ ପୋଥି ଲେଖା ପଢ଼ା
ଦରଶନ ବନା ସବୁ ତ ବ କଢ଼ା
ଯୁକ୍ତି ତର୍କେ ନ ସିଏଇ ଖଡ଼ା
ତୋର କୃପା ବନା ବାରେ ମା ।
ତୁ ରହୁ ନୁ ଦୂର ପଣ୍ଡିତେଶ୍ୱରେ
ମୁଁ ରହେ ନ ଓଡ଼ିଶାରେ ମା !

ରଖିଛୁ ଯେପରି ରହିଛୁ ସେପରି
ଜଗଜ୍ଜନ୍ତୁ ଯାହା କରେ ସେହିପରି
ଏତକ କେବଳ ପାରିଲେ ସୁନ୍ଦର
ଲୋଡ଼ା ନାହିଁ ସାଧନାରେ ମା !
ତୁ ରହି ନୁ ଦୂର ପଣ୍ଡିତେଷାରେ
ମୁଁ ରହି ନ ଓଢ଼ଣାରେ ମା !

ସବୁ କରେଁ ବୋଲି କଟେ ଅହମିକା
କାଞ୍ଚନ ହୁଏ କାଚ ମୂଲେ ବିକା
ଶରଣ ପଶିଲେ ଚରଣେ ତୋର ଗୋ
ତୋଳ ନେଇ ଶରଧାରେ ମା,
ତୁ ରହି ନୁ ଦୂର ପଣ୍ଡିତେଷାରେ
ମୁଁ ରହି ନ ଓଢ଼ଣାରେ ମା !



# ଉତ୍ସର୍ଗ

ଦିବ୍ୟ ଜନନୀଙ୍କ

ଶ୍ରୀଚରଣ କମଳେ

# ପଣ୍ଡିଚେରୀ

ଏହି ପଣ୍ଡିଚେରୀ—
ଏହି ପଣ୍ଡିଚେରୀ—
ଯା'ରେ ମହାମାୟା-
ମହାଲୋକ
ଉଦ୍ଭଟ ଘେର
ଏହି ହେଇ ମହାପୀଠ
ପଣ୍ଡିଚେରୀ ।

ଏଇ ପଣ୍ଡିଚେରୀ ।......
ଦକ୍ଷିଣ ଭାରତର
ସାଗର ତୀରେ
ଅମ୍ବାର ଗାଥା ଶୁଭେ
ଲହରୀ ଗିରେ
ଶୁଣି କି ହେ ପାରୁଛ ତା'
ଶ୍ରବଣ ଡେର ?
ମହା ଆନନ୍ଦ ତୀର୍ଥ ଏ
ପଣ୍ଡିଚେରୀ ।
ଏଇ ପଣ୍ଡିଚେରୀ ।......

ମଧୁ ବେଦ ଗାନେ ଡେଉଁ କାନ
ଥିଲା ଯେ ଶୋଇ
ଆଜ ହସଇ ସେ ଏ ମାଟିର
ସରଗ ହୋଇ ।

ଝମଢକାଶର ଘଥେ
ପଡ଼ିଲା ଛକ
ରତନ ସେ ଧରଣୀର
ନବ ଜାତକ ।
ଅନ୍ତରେ ଅନ୍ତରେ
ବଜାଇ ଭେରୀ —
ଏଇ ପରମ ସୁଖର ଧାମ
ପଣ୍ଡିଚେରୀ ।
ଏଇ ପଣ୍ଡିଚେରୀ ।......

ଚେତନାର କଥା କହେ
ଯା’ ଗୋଡ଼ ମାଟି
ଶୁଣେ ତୃଣ ଚତୁର୍ମୁଖେ
ନୀରବ ପାଟି ।
“ସବୁ ତୃଷିତ ଆତ୍ମା ଶୁଣ
ଧୈର୍ଯ୍ୟ ଧର
ଦିନେ ଏ ପଥେ ଆସିଲେ ନୋହେ
ଅପଥେ ଫେର ।”
ମହାଜ୍ୟୋତିର କେନ୍ଦ୍ର ଏଇ
ପଣ୍ଡିଚେରୀ ।
ଏଇ ପଣ୍ଡିଚେରୀ ।......

ଅଶ୍ରୁ ସେ ପୋଛୁ-
ନିଏ ହସର ସୁଏ
ଫୁଲ ପର ଖୋଲି ଖୋଲି
ହୃଦୟ ଛୁଏଁ ।

ତାର ଶାନ୍ତ ବାତାବରଣ
ଶାନ୍ତି ଆଣେ
ଯେତେ ରକ୍ତ ତପ୍ତ ଶୋକ-
ଦଗଧ ପ୍ରାଣେ ।
ଶୁଭ ଆଶିଷର ଧାର ସର୍ଞ୍ଚି
ଗଢ଼ଇ ଘର
ସେହି ସତ୍ୟର ତୀର୍ଥ ଏ
ପଣ୍ଡିଚେରୀ ।
ଏଇ ପଣ୍ଡିଚେରୀ ।......

ସର୍ବଜୟୀ ପ୍ରେମର
କାଞ୍ଚନ କାଠି
ଛୁଇଁ ଏ ମାଟି
ଘନ ଘୋର ଅନ୍ଧାର
ସଧୀରେ କାଟି —
ଆଜି ଡାକ ଦିଏ ବିଜୟର
ପତାକା ଧରି
ମହା ସାଧନାର କ୍ଷେତ୍ର ଏ
ପଣ୍ଡିଚେରୀ ।
ଏଇ ପଣ୍ଡିଚେରୀ ।...

ଅଚେତନ ଧରାବାସୀ
ଅଳସ ଛାଡ଼ି
ମୁକ୍ତି ଏ ଯୋଗ ପଥେ
ଆସେ ଯେ ମାଡ଼ି ।

ମହା ମାନବର ମହା
ସାଗର ପର
ଏ ମହା ମିଳନପୀଠେ
ତୋ ନାମ ଧର
ସଦା
ତୋ ନାମ ସ୍ମର ।
ଚିରବନ୍ଦିତ ତୀର୍ଥ ଏ
ପଣ୍ଡିଚେରୀ ।
ଏଇ ପଣ୍ଡିଚେରୀ ।...

ମହା ଜ୍ୟୋତିର ସମାଧି—
ଏଇ ସାଗର ସ୍ଥିର
ନାଚେ କୂଳେ କୂଳେ କଳା ତେଜ
ମାୟାମନ୍ଦିର ।
ଯେତେ ଜିଜ୍ଞାସା ଉତ୍ତର
ହୋଇ ସତେ ଲବ କର
ଊର୍ମିଳ ବାୟୁ ସ୍ରୋତେ
ବୁଲେ ପହଁର ।
ସେହୁ ଏ ଶାନ୍ତ ଧାମ
ସେହୁ ଏ ମୁକ୍ତିଧାମ
ହୃଦୁଁ ଯା' ମଧୁର ନାମ
ନୋହେ ଉସୋର ।
ସେହୁ ଏ ପୁଣ୍ୟ ପୀଠ
ପଣ୍ଡିଚେରୀ ।
ଏଇ ପଣ୍ଡିଚେରୀ ।...

ଚିର ବସନ୍ତ ଶୋଇ ଜ୍ୟୋତି-
ସପନ ଦେଖେ
ସ୍ମୃତି ତପୋବନ ଫୁଲେ ତୋର
କବିତା ଲେଖେ ।
ମୃଦୁ ବନ୍ଦିତ କୂଜନେ ଶୁଭେ
'ରୂପାନ୍ତର'
"ଶ୍ରୀ ମୀଗ୍ରମ୍ବିକାୟୁ ନମଃ"
ଗାଏ ଭ୍ରମର ।
ପଥେ ଆମ୍ର ମୁକୁଳ ମଧୁ
ପଡ଼ଇ ଝରି
ସତେ ପୃଥିବୀର ନନ୍ଦନ
ପଣ୍ଡିଚେରୀ ।
ଏଇ ପଣ୍ଡିଚେରୀ ।...

ଯାହା ନାହିଁ 'ମହାଭାରତେ' ତା
'ନାହିଁ ଭାରତେ'
ଖିଲ ମରତେ ଯା' ନାହିଁ ତାହା
ମିଳେ ଏ ପଥେ ।
ଧନ୍ୟ ଆତ୍ମର ଦରପଣ
ହୋଇଛୁ ଛୁଡ଼ା
ଯହିଁ ଝଲସେ ଗଭୀର କ୍ଷତ
ଗୋପନ ପୀଡ଼ା ।
ବିଶ୍ୱର ଗଉରବ
ଭାରତର ସଉରଭ
ତୀର୍ଥର ତୀର୍ଥ ସେ—
ତୁଳନା ତା'ର
ଏଇ ଧରଣୀ ମଣ୍ଡଳମଣି
ପଣ୍ଡିଚେରୀ
ଏଇ ପଣ୍ଡିଚେରୀ ।...

ମହା ସୂର୍ଯ୍ୟକରୋଜ୍ଜ୍ୱଳ
　　　　　ନୂତନ ପଥ
ଜରମିଲେ ଯାଇ ଗୁରୁ
　　　　　କଠୋର ବ୍ରତ ।

ଅମୃତ ଜୀବନର
　　　　　ଅନେକ ଧର
ଖୋଇଲେ ତୋ କୋଳେ ଘୋର
　　　　　ଦୁଷଣ ବର ।
ଆଜ କୋଟି କୋଟି ହୃଦୟର
　　　　　ଶରଣାନନ୍ଦ
ପୂଣ୍ୟ ପ୍ରଭାତୀ 'ଓଁ
　　　　　ଶ୍ରୀଅରବିନ୍ଦ ।'
　ଥାଉଁ ଭୂମି ବାରବାଟି
　ସାର୍ଥକ ତୋର ମାଟି
ଏହି ମହା ନବଜ୍ୟୋତି—ମହା
　　　　　ସମାଧି .ଧର
　　　ଧନ୍ୟ ତୁ ଧନ୍ୟ ରେ
　　　　　ପଣ୍ଡିଚେରୀ ।
　　　　　ପଣ୍ଡିଚେରୀ······
　　　　　　ପଣ୍ଡିଚେରୀ······



# ମହାସମାଧି

ବିଶ୍ୱବନ୍ଦ୍ୟ ଶ୍ରୀଅରବିନ୍ଦ
ମହା ସମାଧିରେ ତୁହିଁ
ଧନ୍ୟ ହୋଇଛୁ ପୂଣ୍ୟ ହୋଇଛୁ
ଏଇ ଜନମେ ତ ମୁହିଁ ।

ଗଜଦଳ ଏ ପଲଙ୍କ ପରେ
ବିଛେଇ ଦେଇଛୁ କିଏ
ସଜ ସୁରଭିତ ସ୍ନୁରୁ ଚର୍ଚ୍ଚିତ
ସୁମନ ସୁପାଣ୍ଡିଟିଏ ।

ଯୁଗ ଯୁଗ ବସି ଯହିଁ ରହିଥିଲେ
ନୟନେ ତୃପତି ନାହିଁ
ଏ ଶିର ମାଧବ ଫୁଲ ମଉଳିବ
ଆଉ ତ ନ ଥିବ କାହିଁ ।

କୋଟି ହୃଦୟର ବ୍ୟାକୁଳ ଆକୁତି
ସେ ଫୁଲେ ରହିଛି ଜଡି
ମନପ୍ରାଣ ଦେହ ଢାଳି ଦେଲେ ତହିଁ
ଅଟପ ହୋଇଯାଏ ପଡ଼ି ।

ଆସ୍ପୃହା ସବେ କୁଣ୍ଡଳାକାରେ
ଉଠେ ଧୂପଶିଖା ଧରି
ପଥ ଖୋଲିଦିଏ ପ୍ରଭୁ କରୁଣାରେ
ଆସିବାରେ ଅବତରି ।

ମୂର୍ତ୍ତିମନ୍ତ ଗାରବତା ଏଥି
ମହା ଯୋଗୀ ସମ ବସି
ସତ୍ୟ ସ୍ୱଇଜ ସ୍ୱପ୍ନ ଦେଖଇ
ଗମ୍ଭୀର ଧ୍ୟାନେ ହସି ।

ହେ ସମାଧି ! ତୁମେ ନିୟତ ଘୋଷୁଛ
ମଉନେ କଣ୍ଠ ଏ କଥା
ଅନ୍ତରେ ଖାଲି ସତ୍ତ୍ୱ ରଖ ଏ
ନବୀନ ଗାରବତା ।

ମେଲି ସେବାତରୁ ଶ୍ୟାମଳ ବିତାନ
ଶାନ୍ତ ସେବକ ପରି
ପଲ୍ଲବ-ଘନ ଶୀତ ଛାୟା ଦାନେ
ଶ୍ରାନ୍ତ ନାଶଇ ହର ।

ମନ-କାଗଜେ ମୋ ଚିର ମୁଦ୍ରିତ
ତୁମର ନୀରବ-ବାଣୀ
ନିମିଷେକ ଲାଗି ବିସ୍ମାର ନ ଦେଉ
"ଆମେ ତୁମ ପାଖେ ଋଣୀ ।"

ଅତି ମାନସର ଜ୍ୟୋତିର ଆକର
ନିରତ ଧ୍ୟେୟ ମମ
ପ୍ରଣତି ଶ୍ରଦ୍ଧା ହେ ମହାସମାଧି
ପଦେ ତବ ନମୋନମଃ ।

ବନ୍ଦ ହୋଇଛି ଯେ ମହାଶକ୍ତି
ତାହାର ମୁକ୍ତି ଲାଗି
ମର ତନୁଟିଏ ଅମୃତ ହୋଇ
ଏଇଠି ଉଠିଛି ଜାଗି ।



## ବାଲ୍‌କନି ଦର୍ଶନ

ସତେ	କେତେ ବାଲ୍‌କନି ନ ଯାଏ ନୟନପଥେ ଭାସି
କାନ୍ଥି ନ ଥିବା ଏ ବାଲ୍‌କନି ବାରେ ଦେଖ ଆସି ।
କ୍ରନ୍ଦନ ଯେବେ କରୁଥାଅ
ଭୟେ ଯେବେ ତୁମେ ଥରୁଥାଅ
ଦୁଃଖ ବିପଦେ ମରୁଥାଅ
ଆଖି ପିଛୁଳାକେ	ଉଭେଇ ଯିବନ୍ତି
ସକଳ ବେଦନା ରାଶି ରାଶି
ବନ୍ଦିତ ଏଇ ବାଲ୍‌କନି ଯେବେ ଦେଖ ଆସି ।

ନବ	ସୂର୍ଯ୍ୟର ହସ ଫୁଟେ ନବଯୁଗ ଆତ୍ମ ଆଲେ
ମୁଖଟି କେବଳ ଅପରୂପ ସୁଧା ଜ୍ୟୋତି ଢାଳେ ।
ଦେଖିଛ ବନ୍ଧୁ ଦେଖିଛ କି ?
ସେ ଆଖିରେ ଆଖି ରଖିଛ କି ?
ସେ ହସର ମଧୁ ଚାଖିଛ କି ?
ଲେଖଣୀର ଧାରେ	ଗୀତ କବିତାରେ
ଅନୁଭୂତି ନୋହେ ପରକାଶି ।
ଆଲୋକମୁଖୀ ଏ ବାଲ୍‌କନି ଥରେ ଦେଖ ଆସି ।

ଉତ୍ତ	ବଶ୍ୱ ଆବାଳ-ବୃଦ୍ଧ-ବନିତା ରାଜପଥେ
ମହା ନଶବଦ ଶିରଗୁଣ୍ଡି ବ୍ୱ ବନା ରଥେ ।
କେହି ତ ନ ଡାକେ "ମହାବାହୁ—
ତୁମ ପରି ପ୍ରଭୁ ଥାଉଁ ଥାଉଁ ।"
ଦରଶନ କଢ଼େ ଚହୁଁ ଚହୁଁ—
ପଲକେ ଛୁଟଇ	ସବୁ ସୂତା ପରି
ସଂସାର ମୋହ-ନାଗଫାଶି
ଏହି ମହାପୀଠ ବାଲ୍‌କନି ଥରେ ଦେଖ ଆସି ।

ସେ ଯେ ପଥହୀନ ପଥ ଖୋଲିଦଏ ଦୂର ଜଗତର
ସେ ମୂଷର ମଧ୍ୟ ଆପଣାର କରେ ସାତ ପର ।
ସେହି ବସଣ୍ଟିକ ନୟନରେ
ନାଚେ ଜାଗରଣ ଶୟନରେ
ସେହି ନୟନ ଏ ନୟନରେ
ହୋଇ ପ୍ରତିଭାତ ଦିଏ ଅବଗତ
ତମସା ଲୁହେଳ ହୃଦୁ ନାଶି
ସ୍ୱର୍ଗ ଦୁଆର ବାଲ୍‌କନ ଥରେ ଦେଖ ଆସି ।

ଖାଲି ବାଲ୍‌କନ ଛବି ଅନୁଭବ କଲେ ଅନ୍ତରେ
ମୁକ୍ତ ହେବ ସେ ଶକ୍ତିର ମହା ମନ୍ତ୍ରରେ ।
ହୋଇ ଆତ୍ମହା-ଧୂପକଣି
ଉର୍ଦ୍ଧ୍ୱେ କରିବ ସଦା ଗତି
ଏକାଠି ସରଗ ବସୁମତି
ମିଳନର ସୁରେ ଦୂରେ ବହୁ ଦୂରେ
ନବଜ୍ୟୋତି ଧାରେ ଯିବ ଭାସି
ପୂଣ୍ୟ ପ୍ରାସାଦ ବାଲ୍‌କନ ଥରେ ଦେଖ ଆସି ।

ନାହିଁ କେତେ ମାବଲ ବାଲ୍‌କନ ସାରା ବିଶ୍ୱରେ
କେହି ତ ନ ଡାକେ ଦଳିତ ପତିତ ନିଃସ୍ୱରେ ।
ବାଲ୍‌କନ ପାଇଁ ବାଲ୍‌କନ—
ମୂଲ୍ୟ ବୁଝେ ତା' ମହା ଧନ ।
ଶୁଣେ ବେହରଣ ଆବାହନ
ସୁରଭୂବନବାସୀ ମଳୟବିଳାସୀ
ସପନଫଳର ମଧୁବର୍ଷୀ
ଥରେ 'ରୂପାନ୍ତର'ର ଏ ମହାତୀର୍ଥ ଦେଖ ଆସି ।



## ନବଜ୍ୟୋତ କାର୍ଯ୍ୟାଳୟ

ନବଜ୍ୟୋତ କାର୍ଯ୍ୟାଳୟ !
ନବସତ୍ୟ ବାରତାଭଣ୍ଡାର !
ତୁମେ ଏକା ବିନାଶିଲ
ଉତ୍କଳର ଅଜ୍ଞାନ-ଅନ୍ଧାର ।

ପ୍ରକାଶି ସୁବୋଧ୍ୟ ଭାବେ
'ରୂପାନ୍ତର ଯୋଗ'ର ଦର୍ଶନ
ଦୁରୂହ ସମସ୍ୟା-ଦୁର୍ଗ-
ସିଂହଦ୍ୱାର କଲ ଉଦ୍‌ଘାଟନ ।

ସତ୍ୟର ଅଗ୍ରଣୀ ଦୂତ
ଗାଇ ପୂର୍ଣ୍ଣ ମୁକ୍ତିର ବିଜୟ
ଶୁଦ୍ଧ କର ମନପ୍ରାଣ
ସ୍ୱାସ୍ଥ୍ୟହୀନ ଆବର୍ଜନାମୟ ।

ଜଟିଳ ଅଧ୍ୟାତ୍ମ ତଥ୍ୟ
ବିତରି ହେ 'ଲୋକ ସାହିତ୍ୟ'ରେ
ଆଣିଦେଲ ଜାଗରଣ
ପଲ୍ଲୀ ଗ୍ରାମ ସହର ନଗରେ ।

ଉନ୍ନତ ଚେତନଶୀଳ
ଜ୍ଞାନ-କୋଷ ପାଠରନ୍ଧ୍ର ଘ୍ରାପି
ଧ୍ୟାନମଗ୍ନ ଋଷି ସମ
ସାଧନାରେ ନିବିଷ୍ଟ ଅଦ୍ୟାପି ।

ମାତୃ ପଦ୍ମ-ପଦାଶ୍ରିତ
ନିଷ୍ଠାପର ଅନ୍ତେବାସୀଗଣ
ବିଶ୍ୱ ସେବା ଲାଗି ଏଥି
କରିଛନ୍ତି ଆତ୍ମନିବେଦନ ।

ସ୍ୱଦେଶ ସମାଜ ଜାତି
ପରିବାର ମମତା ତିଆଗି
ମହା ସାରସ୍ୱତ ତପେ
ଦୃଢ଼ବ୍ରତେ ରହିଛନ୍ତି ଲାଗି ।

ପଡ଼େ ଏହି କର୍ମପୀଠେ
ଶତ ଶତ ଦର୍ଶକ ଚରଣ
କ୍ଷୁରଧାର ଏ ପଥ ଯେ
କରିଛନ୍ତି ସାନନ୍ଦେ ବରଣ ।

ଆକର୍ଷି ସରଳ ଭାବେ
ଭଗବତ ବିଶ୍ୱାସୀ ହୃଦୟ
ତରୁଣ ତରୁଣୀ ପ୍ରାଣେ
ଦେଲା ଢାଳି ଅମୃତ ଅଭୟ ।

ନବୀନ ଯୁବକ ସଂଘେ
'ବୁଲେଟିନ୍' 'ଶୁଭ ସମାଜ'ରେ
ଜଣାଇ ଜୀବନ ଲକ୍ଷ୍ୟ
ଚଳାଇଲ୍ଲ ପ୍ରଗତି ସ୍ରୋତରେ ।

ଦର୍ଶନ ଦିବସେ କିଏ
ବହେ ଧୂପ କୁସୁମ ସଜାଡ଼ି
କା'ର ଆସେ ସାଧାରଣୀ—
କା'ପାଇଁ ବା ଅଗ୍ନିମୂଲ୍ୟ ଶାଢ଼ୀ ।

ଫଳର ନୈବେଦ୍ୟ ଅବା
ରଞ୍ଜମୟ ଶିଶୁ ପ୍ରିୟ ଝପି
'ନବଜ୍ୟୋତି' ନବବେଶ
ନୟନେ ମୋ ଉଙ୍କି ମାରେ ଛପି ;

ବାହୁଡ଼ା ଦର୍ଶକ ହାତେ
ଅବା ତାକେ ବସିଥାଏ ଚାହିଁ
ଦିନ ପରେ ଦିନ ଗଣି—
'ନବଜ୍ୟୋତି' ଆସିଛି କି ନାହିଁ ।

ପଢ଼ି ପଢ଼ି ନବ ବାର୍ତ୍ତା
'ଆଲୋଚନା' 'ପ୍ରଚେଷ୍ଟ' 'ପ୍ରବନ୍ଧ'
ଆଧାରେ ନ ଧରେ ସ୍ଥାନ
ଉଚ୍ଛ୍ୱସିତ ବିପୁଳ ଆନନ୍ଦ ।

'ମଧୁବର୍ଷ'-ନବଜାତ
ମଧୁବର୍ଷୀ ଏ 'ନବପ୍ରକାଶ'
'ଆକ୍ସନ' ଅମୃତେ ମିଶି
ମହାନନ୍ଦ ଢାଳେ ବାରମାସ ।

ସତ୍ୟଭାଷୀ ଶାନ୍ତିକାମୀ
ପ୍ରିୟ ବନ୍ଧୁ ଓଡ଼ିଶା ଆମ୍ଭର
ହେ ଜ୍ୟୋତିର ଗ୍ରନ୍ଥାଗାର !
ଘେନ ମୋର ପ୍ରୀତି-ନମସ୍କାର ।



# ଅରୋଭିଲଆନ୍

ସ୍ନେହର ବନ୍ଧୁ !          ଅରୋଭିଲଆନ୍ ତୁମେ
ଆମର ପାଇଁ କି          ଆସିଲ 'ଓଡ଼ିଶା ଭୂମେ ?
ଅଛୁ ଯେତେ ତୁମ ତରୁଣ ଭଉଣୀ ଭାଇ
'ଦରଶନେ' ତୁମ          ପରଶନ ଲାଗି
କି ଆବେଶେ ଥାଉ ଚାହିଁ !

ଶୁଣ ମୋ ଓଡ଼ିଆ          ପ୍ରିୟ ଅରୋଭିଲଆନ୍
ମାତୃ-ଆଦେଶେ          ରଖିଲ ଆମର ମାନ ।
ଭାବୀ ଯୁଗ ଭାବୀ ପଥନିର୍ମାତା ଆହେ
ବନ୍ଦନା ତୁମ          ଶତମୁଖେ ଆଜି
ବିଶ୍ୱଜନନୀ ଗାଏ ।

ଦେବଭାଇଜର          ସନ୍ଧାନ ବହ୍ନି ଆଣି
ମରତେ ଢାଳିଲ          ଅମୃତ ତାର ବାଣୀ ।
ନବ ଯୁଗ ନବ ବାଙ୍ମୟ ଦୂତ ତୁମେ
ଏ ଦେବଲଗନେ          ଦେବ-ଆଦରଶ
ବୁଣିଲ ଏ ଦେବ-ଭୂମେ ।

ଶ୍ରୀଅରବିନ୍ଦ          ମହାନ ଦର୍ଶନର
ହେ ମହାମୂର୍ତ୍ତି          ଯୋଗ୍ୟ ତାପସବର !
ଊଷା-ନଗରୀର ତୁମେଟି ଚେତନା ଭୂଷା
ମରତେ ପ୍ଲାବନ          ଖେଳାଏ ନବୀନ
ତବ ଆସ୍ପୃହା ତୃଷା ।

ତୁମେ ଯେ ଆମର       ଆମେ ଯେ ତୁମର ଭାଇ
ଭଜନ ହେତୁ କି       ତୁମ ପର ହେବା ପାଇଁ !
ଜନମି ଆଜ ଏ ଭୁବନେଶ୍ୱର ଭୂମେ
ପ୍ରତିଟି ହୃଦୟେ       ପ୍ରେମର କବିତା
ଲେଖିଯାଉଅଛ ତୁମେ ।



## ନନ୍ଦନମ୍

ଆସିଲୁ ନନ୍ଦନ ତୁ...
ଅସୀମ ଦୂରପଥୁ
ପରମ ଏ ଲଗନେ
କନକ ସ୍ରୋତୁରେ କି......
ନୂତନ ପ୍ରଭାତରେ
କେ ଡାକ ଦେଲା ତୋରେ
ପ୍ରତିଟି ଫୁଲେ ଫୁଲେ
ହୃଦୟୁ ଦେଲୁ ଢଳ ।

ଉର୍ବଶୀ-ମଧୁବନ !
ଠୋପି ଠୋପି ଚନ୍ଦନ
ଟିପା ଯେ ଦିଏ ଆଙ୍କି
ମୁଖେ ତୋ ମାଟି-ମାଆ......
ତୋ ଭାଲେ କେ ସୁନ୍ଦରୀ
ସିନ୍ଦୂର ଦେଲା ମାରି
କୁମାରୀ ସ୍ୱପ୍ନଭରା
ଉଠିଲୁ ହୋଇ ଆହା !

ବକୁଳ ମୁକୁଳରେ
କୋକିଳ ସ୍ତବ ଝରେ
ରସାଳ ରସାଳ ତୋ
ଜପଇ 'ଶ୍ରୀମା' 'ଶ୍ରୀମା'......
ତୋ ସ୍ପୃହୁ ସୂର୍ଯ୍ୟମୁଖୀ
କିରଣ-ସ୍ନେହ-ସୁଖୀ
ଢାଳଇ ଜ୍ୟୋତିଶିଖା
ଆସ୍ପୃହା-ମଧୁରିମା ।

ବୁଲୁଛି ଖୁସିମନେ
ବନେ ମୁଁ ଉପବନେ
ଦେଖୁଛି ମନପ୍ରାଣ
ଦେଖୁଛି ଦେହ ତା'ର......
ହେ ପ୍ରେମ-ବୃନ୍ଦାବନ !
ଆମ୍ଭର ତୋ ଚନ୍ଦନ
ପାଷାଣ ହୃଦେ ଘୋର
ହୁଏ ମୁଁ ଏକାକାର ।



## ପାଠଚକ୍ର

ପାଠଚକ୍ର ରୁ          ଆମ୍ଭର ପାଠଶାଳା
ଫୁଟେ ତହିଁ-ନବ          ଜନମ ବର୍ଣ୍ଣମାଳା ।
ପୁଷ୍ପ ବିକାଶେ          ପରିବେଶ ଯହିଁ ହସେ
ଆଜ
ପଲ୍ଲୀ ନଗରେ          ଶ୍ରୀଅରବିନ୍ଦ
ନଆ ଚଟଶାଳୀ ବସେ ।

ଅବଚେତନାର ଗହ୍ୱର ଗର୍ଭ ଭେଦି
ଗଢ଼ି ଉଠେ ଏଇ ଜ୍ଞାନ-ଉଜ୍ଜ୍ୱଳ ବେଦୀ
ଅଖିଳ ଭାରତ ନିଖିଳ ଉତ୍କଳରେ
ଯୋଗ ମନ୍ଦିର ଯୋଗ ପ୍ରଦୀପ ଯେ
ଜଳିଉଠେ ଘରେ ଘରେ ।

ଶୁଣି ନବ ଯୁଗ ପୂର୍ଣ୍ଣଯୋଗର ପୋଥି
ମନ ପ୍ରାଣ ଦେହ ପରିଜନ୍ମ ମାନେ ଏଥି
ସରଳ ଗଭୀର ହୃଦୟ ବୁଝେ ସେ ଭାଷା
ବୃଦ୍ଧ ନୟନେ ଉଜ୍ଜ୍ୱଳ ଉଠେ
ତରୁଣ ଆଲୋକ ଆଶା ।

ଶାନ୍ତିର ଧାରା ଅନ୍ତରେ ଅବତରେ
ଯା ଉପମା କାଳି କଲମରେ ନାହିଁ ଧରେ ।
ଏଇ ଆଶ୍ରମ ଏହି ସତ୍ୟର ଗୃହେ
ମଧୁ ମିଳନର ମହାଛନ୍ଦ ଯେ
ଉଭୁରେ ସବୁରି ମୁହେଁ ।

'ବୁଲେଟିନ୍' ଆମ ପଥର ପରମ ସାଥୀ
'ମଦର୍ ଇଣ୍ଡିଆ' ଚେତନା-ସ୍ପନ୍ଦ-ବ୍ରତୀ ।
'ଦେବ ମୁହୂର୍ତ୍ତ' 'ନବ ପ୍ରକାଶ'ର ବାଣୀ
'ଅରୋଭିଲ୍' ସାଥେ 'ବର୍ତ୍ତିକା' ନଏ
ଦିବ୍ୟ ଜୀବନେ ଟାଣି ।

ଶତବାର୍ଷିକୀ ଆସିଛି ରେ ଆଜ ଭାଇ
ଜୀବନର କଢ଼ି ଫୁଲ ଫୁଟାଇବା ପାଇଁ ।
ନୂତନ ଜଗତେ ଆସିବେ ନୂତନ ଜାତି
ସେହି ନବପୀଠୁ ତୋ ନବ ଜାତକ
ଆଣିବୁ ଯାଆ ରେ ସାଥୀ ।



# ସେବାତରୁ

କେତେ ସେବାତରୁ    ନ ହୋଇଛ ଠିଆ
ବନ ଉପବନ ପଥେ
କଥା କହେ ନାହିଁ    ହୃଦୟ ମିଶାଇ
କେହି ତ ତୋପରି ମତେ !

ଠିକ ଠିକ ଫୁଲ    ଝୋପି ଝୋପି ସୁନା
ମେଘ ଝୋପା ପରି ଗଳେ
ସେବାର କବିତା    ଝରପଡ଼େ ଅବା
ଏ ମହାସମାଧି ତଳେ !

ଘର ଫୁଲଘର    ହାଲୁକା ସୁବାସ
ଜାଣୁ ତ କେଡ଼େ ମୋ ପ୍ରିୟ
ଘଣ୍ଟେ ଥିରଥିର    ସମାଧି ଶ୍ରୀପଦେ
ଅଞ୍ଜଳି ମତେ ଦିଅ ।

ଶିଖାଇ ଦେ ତରୁ ମତେ
ଚର ଉଲ୍ଲାସ    ସେବାର ପ୍ରତୀକ
ହୁଏ ମୁଁ ମରମଗତେ ।

ପଲ୍ଲବ-ଶ୍ୟାମ    ଚନ୍ଦ୍ରକ ମେଲା
ପ୍ରଦାନୁ ଶୀତଳ ଛାଇ
ଚର ଶିଶୁ ଭଳି    ହସ ହସ ମୁଖେ
ସବୁରି ଆନନ୍ଦେ ଚାହିଁ ।

ଶାଖା କରରାଜି    ପ୍ରାସାଦେ ପ୍ରସାରି
ମାତୃ ଚରଣ ଛୁଉଁ
ଅନ୍ତରେ ଠିକେ    ଚେତାଇ ଦେଏ ରେ
ତୋପରି ହୋଇବ ମୁଉଁ ।

ଯେତେ ତରୁଲତା ଭେଟ ହୁଏ ମୋର
ନୟନ ସ୍ମୃତିର ପଥେ
ହୃଦେ ହୃଦ ଦେଇ କଥା କହେ ନାହିଁ
କେହି ତ ତୋପରି ମତେ !

କହ ରାଧାଚୂଡ଼ା କହ
ଘୋର ଅଚେତନ ଅଳସ ଜୀବନ
ନୋହେ କ ଦୁର୍ବିସହ !

ସମାଧି ସାକ୍ଷୀ ! ବଲ୍କଳ ଧୃତ
କଣ୍ଠିରୁ ପାଲଟି ଖଷୁ
ଜୀର୍ଣ୍ଣ ଚିନ୍ତା ଫୁଟାଇ ଏଇ
ଯଜ୍ଞର ବେଦୀଂ ଗ୍ରାସୁ ।

ଦେହର କର୍ମ ପ୍ରେମର ସେବାରେ
ହେଉ ସବୁ ପରିଣତ
ଜାଣୁ ଏହି ଦେହ ମନ ପ୍ରାଣ ମହା-
ସେବାର ଗୋପନ ବ୍ରତ ।

ଗନ୍ତୀର ଶ୍ରବଣେ ଢାଳ ତୋର ବାଣୀ
ଟାଣି ନେଉ ସେବା ପଥେ
କଥା କହେ ନାହିଁ ହୃଦୟ ମିଶାଇ
କେହି ତ ତୋପରି ସତେ !

ଗାଉ ସତ୍ୟର ଜୟ
ସାର୍ଥକ ତୋର ସେବାତରୁ ନାମ
ଶ୍ରୀରାଧାଚେତନାମୟ ।

ଝିର ଝିର ମୃଦୁ ମର୍ମରେ କରୁ ତୁ
ଶ୍ରୀଗୁରୁ ସ୍ତୋତ୍ର ଗାନ
କୋଟି କୋଟି ଆଖେ ଦେଖୁ କୋଟି ଫୁଲେ
ଅଳିକୁଳ ମଧୁ-ସ୍ନାନ ।

ଶାଖାରେ ଶାଖାରେ ଫୁଟି ଉଠେ ନବ
ରୂପାନ୍ତରିତ ଲୀଳା
ତୋପରି ଶ୍ରେଷ୍ଠ ହେ ଶାଖୀ ଭକତ
ନାହିଁ କି କେବେ ନ ଥିଲା ।

ନାଚୁଛୁ ନିତ୍ୟ ସ୍ୱପ୍ନାନନ୍ଦେ
ଧୂପର ମୃଦୁଳ ବାସେ
ଏ ଧରା ସ୍ୱର୍ଗେ ଜନ୍ମ ନେଇ ତୁ
ଜଗତ-ଜନନୀ ପାଶେ ।

କହ ସେବାତରୁ ମତେ
ନିଷ୍ଠା ଥାଇ ତୋ ନିଜେ ସେବା ଦିନେ
ହୋଇ ଉଠିବି କି ସତେ !



## ବାବାଜୀ ମହାରାଜ

ହେ ବାବାଜୀ ମହାରାଜ !
ପୂଜନୀୟ ମମ
ସାଧକ ଜଗତେ ଏକା ତୁମେ ତୁମ ସମ ।
ହେ ଶ୍ରୀ ରାମକୃଷ୍ଣ ଦାସ ! ରାମ-କୃଷ୍ଣ-ଦାସ
ତବ ହୃଦ ରାମ-କୃଷ୍ଣ ବସନ୍ତ-ନିବାସ ।
ରୂପାନ୍ତର ଯୋଗର ଯେ ଦୁରୂହ ଦର୍ଶନ
ରୂପ ନେଇଅଛି ତବ ଦେହ ପ୍ରାଣ ମନ ।
ପଣ୍ଡିଚେରୀ ଗଗନର ଉଜ୍ଜ୍ୱଳ ଜ୍ୟୋତିଷ୍କ
ମୁଖର ମୁକୁରେ ଫୁଟେ ତବ ଅମାୟିକ ।
ମହା ଭଗବତ ମହା ଶକ୍ତିର ପୂଜାରୀ
ନିର୍ବିଚାର ଆତ୍ମ ହାର ନିତ୍ୟ ଅଭିସାରୀ ।

ସମଦର୍ଶୀ ମିଷ୍ଟଭାଷୀ ଦ୍ୱନ୍ଦ୍ୱ ବିମୁକ୍ତ ସତ୍ତ୍ୱ
ଅଧ୍ୟାତ୍ମ ସ୍ଫୁର୍ତ୍ତିରେ ଲେଟେ ତୁମରେ ସର୍ବଥା ।

ଅମୃତହସ୍ତା ତୁମର ଅଦ୍ଭୁତ ପରଶ
ଅପସାରେ ଭବରୋଗ ସଞ୍ଚାରେ ହରଷ ।

ମୂର୍ତ୍ତିମନ୍ତ ସମର୍ପଣ-ନିଷ୍ଠା ଅବତାର
ତବ ପଦେ ସ୍ୱତଃ ମଥା ନଏ ବାରମ୍ବାର ।

ଲଭି ମହା ସରସ୍ୱତୀ ବଳିଷ୍ଠ ଲେଖନୀ
ଜ୍ଞାନରାଜ ! ସେହି କୃପା ଧନେ ମହାଧନୀ ।

ଭାଷାର ସହଜ ଶୈଳୀ ତୃପ୍ତି ସୁଧା ସର
ଚିନ୍ତା ବିନା କଲମୁଁ କି ପଡ଼େ ତୁମ ଝର ?

ତୁମ ନେତ୍ରେ ନୟନ ଯା' ଥରେ ପଡ଼ିଥାଏ
ଶାନ୍ତ-ମହା ଶାନ୍ତି ତା'ର ପଛେ ପଛେ ଧାଏଁ ।

ଦିବ୍ୟ ଜନନୀର ପ୍ରିୟ ଆଦର୍ଶ ସନ୍ତାନ
ନିରବଧି ଯୋଗଯୁକ୍ତ ।
କର୍ମ-ବାକ୍ୟ-ଧ୍ୟାନ ।

'ଲୋକ ସାହିତ୍ୟ'ର ଲାଗି ଆଜର ଜଗତେ
ପରିଚିତ ତୁମେ ଶତ ହୃଦୟ ଅଚଳେ ।

ଯେଉଁ ବୀଜ ରୋପିଥିଲ ସାରା ଓଡ଼ିଶାରେ
ସେ ତରୁ ବଢ଼ିଛି ଆଜ କଡ଼ି ପ୍ରଶାଖାରେ ।

"ଦିବ୍ୟଯୁଗ ସ୍ଥାପନାରେ ନାରୀ"ର ସମ୍ମାନ
ଲେଖନୀ ଯାଦୁରେ ତୁମ ଲଭେ ଶୀର୍ଷସ୍ଥାନ ।

ସୃଷ୍ଟି କରି ଚେତନାର ନବ ଜାଗରଣ
ପାଠକଙ୍କେ ଦେଲ ତାରେ ସୁଯୋଗ୍ୟ ଆସନ ।

ମାତୃଜାତି ପାଶେ ତବ ଋଣୀ ସବିଶେଷ
ଦେଲ ଯେଣୁ ତାରେ ମହାଜ୍ୟୋତିର ସନ୍ଦେଶ ।

ଇଣ୍ଟିଗ୍ରାଲ ଯୋଗର ହେ ପ୍ରାକ୍ଟିକାଲ ଗାଇଡ୍
ଚାଲିଅଛ ଅବିରାମ ଧରି ଊର୍ଦ୍ଧ୍ୱ ସାଇଡ୍ ।

ସାଂସାରିକ ଭୋଗାଭୋଗ ବାସ ତୁମ ପାଶେ
ରତ ଯେଣୁ ଭବିଷ୍ୟତ ଭୂମି ଗୁପ୍ତବାସେ ।

ସର୍ବତୋଭାବେ ଯେଁ ତୁମେ ମହାପ୍ରଭୁଙ୍କର
ସର୍ବୋତ୍ତମ ମହାସତ୍ୟ ସର୍ବସ୍ୱ ତୁମର ।

ଶ୍ରବଣେ ଅମୃତ ଢାଳେ ତବ ପୁଣ୍ୟ ନାମ
ପୁନଶ୍ଚ ଘେନ ହେ ମୋର ଭକ୍ତିର ପ୍ରଣାମ ।



## ସମୁଦ୍ର ଓ ସମାଧି

ଏକ ପାଶେ ଟାଣେ ମହା ସିନ୍ଧୁର ଉନ୍ମନା ନୀଳ ଜଳ
ଡାକେ ଆରପାଖେ ଧିଆନ ମଗ୍ନ ଶାନ୍ତ ସମାଧି ତଳ ।
ଏକ ସାଥେ ଶୁଭେ ଦୁଇମୁଖୁ ଡାକ
କାରେ ଏଡ଼ି ଦେଇ ଯିବ କାହା ପାଖ
ପ୍ରାଣର ଦ୍ୱନ୍ଦ୍ୱ ପ୍ରେମର ଜୁଆରେ ହୋଇଉଠେ ଉଚ୍ଛଳ
ଏକାଧାରେ ଡାକେ ଶାନ୍ତ ସମାଧି ସିନ୍ଧୁର ନୀଳ ଜଳ ।

ପ୍ରଶସ୍ତ ସାନ୍ଧ୍ୟ ସିନ୍ଦୂରିତ ଏ ସିନ୍ଧୁର ଶୋଭାରାଶି
ଜାଗ୍ରତ କରେ ଘୋର ଗରଜନେ ପ୍ରାଣର ଜଡ଼ତା ନାଶି ।
ସେ ପଟେ ସମାଧି ଜ୍ୟୋତି ଭଣ୍ଡାର
ଧୂପର ଗନ୍ଧେ ଡାକେ ବାର ବାର
ବେନାଏ ସତେ କି କୋଟି ଜନମର ଆତ୍ମା ତୃଷାର ଜଳ
ଟାଣେ ରାଜପଥେ ଏପଟେ ସମାଧି ସେପଟେ ସିନ୍ଧୁ ଜଳ ।

ନୀଳ ପାରାବାର ଊର୍ମିଳ ମହାସତ୍ୟର ବେଦଗାନେ
ଦିବ୍ୟାନନ୍ଦ ଆସ୍ୱାଦ ଢାଳେ ପାର୍ଥିବ ମନପ୍ରାଣେ ।
ସଂସାର ଦହେ ଭାବନାତିକ୍ତ
ସାନ୍ଧ୍ୟ ସମୀର ଶୀକର-ସିକ୍ତ
ସକଳ ବେଦନା କ୍ଷଣେ ହରନଏ ଊର୍ମିର କଳକଳ
ଡାକେ ତଳପଥୁଁ ଶାନ୍ତ ସମାଧି ଅନନ୍ତ ନୀଳ ଜଳ ।

ଏ ପାଖେ ଟାଣଇ ମହା ଚୁମ୍ବକ ମହା ସମାଧିର ଫୁଲ
ଲହରୀ ନୃତ୍ୟେ ନୟନ ହଜିଲେ ପଥଚଲା ହୁଏ ଭୁଲ ।
ଶ୍ରବଣେ ମୁଖର ଊର୍ମିର ଗାନ
ହୃଦେ ସମାଧିର ମହା ଶୂନଶାନ
ଜ୍ୟୋତିର ସାଗରେ ମିଶିଯାଏ ସ୍ୱଚ୍ଛେ ଜ୍ୟୋତିର ଅଲଖନନ୍ଦ
ଏ ପଟେ ଟାଣଇ ମହା ଚୁମ୍ବକ ମହା ସେବାତରୁ ତଳ ।

ନିତ୍ୟ ନୂତନା ସନ୍ଧ୍ୟା ଡାକଇ ଡାକେ ଜ୍ୟୋତିମୁଖୀ ଭୋର
ମହା ସମାଧିର ମହାନ ଗରଭେ ନମଜେ ଆତ୍ମା ମୋର ।
ସୃଷ୍ଟି ସପନ ମରମେ ଚେତାଇ
ଆଲୋକର ପଥ ଦିଏ ସେ ବତାଇ
ବାରି ହୁଏ ନାହିଁ କେଉଁଠି ସ୍ୱର୍ଗ କେଉଁଠି ଧରଣୀ ତଳ
ସମସ୍ୱରେ ଡାକେ ନୀରବ ସମାଧି ସରବ ସିନ୍ଧୁ ଜଳ ।

ନିତି ଦେଖି ଦେଖି ତଥାପି ଦୁହିଁଙ୍କ ନ ଦେଖିଲା ପରି ମଣେ
ଗୋଟିଏ ଦିବସ ଅଦରଶନେ ତ କୋଟି ଯୁଗ ପରି ଗଣେ ।
ଏ ମହା ସମାଧି ଏ ମହା ସାଗର
ଆତ୍ମାର ଜ୍ୟୋତି ଆତ୍ମାର ସ୍ୱର
ହଜିଯାଏ ତହିଁ ବୁଦ୍‌ବୁଦ୍ ମୁହିଁ ନ ପାଇ ସେ କୂଳ ଥଳ
ଡାକେ ଏକାଧାରେ ଶାନ୍ତ ସମାଧି କାନ୍ତ ସାଗର ଜଳ ।



# ଓଡ଼ିଆ ନଳଯନ୍ତ୍ରମ୍

କଏ କହେ ତତେ 'ଓଡ଼ିଆ-ନଳଯନ୍ତ୍ର'
'ବଙ୍ଗ-ନଳଯନ୍ତ୍ର' ଆରେ
ସାରା ପୃଥିବୀର ଚେତନା ଠୁଳ ଯେ
ତୋର ଗବେଷଣାଗାରେ ।

'ଓଡ଼ିଆ' ନାମେ କ ଓଡ଼ିଶା ପାଇଁ ତୁ
ଫିଟାଇଲୁ ଯୋଗପଥ
କାଳର ପ୍ରଗତ ଗରଭୁଁ ଫଟେ ତୋ
ଉଜ୍ଜଳ ଭବିଷ୍ୟତ ।

କେଉଁ ବିନ୍ଧାଣୀ କ ଶୁଭ ଲଗନେ
ନିରମିଥିଲା ଏ ଗୃହ
ବାର ମାସ ଭରି ଚମ୍ପା ସୁବାସେ
ବାସେ ତୋ' ଦୁଆର ମୁହଁ ।

ସଞ୍ଜ ସକାଳେ କବା ଖରାବେଳେ
ଗୋଟି ଗୋଟି ଫୁଲ ଝରି
ତାରକିତ କରେ ଅଙ୍ଗନ ତୋର
ସୁଷମା ଶିଳ୍ପୀ ପରି ।

ନୀରବେ ଜଣାଏ ଜିଜ୍ଞାସୁ କାନେ
ଦର୍ଶକ ଚଲାପଥେ
ତୁମ ମଥା ପରେ ଫୁଲ ରୂପେ ଝରେ
ମାତ ଆଶିଷ ସତେ ।

ନଳସ୍ଥ ସୋପାନେ ମଳୟେ ଝରଇ
ନମ୍ର ଫୁଲର ବାସ
ମୃଦୁ ମହକ ତା ମରମେ ଚେତାଏ
ମାଆର ମଧୁର ହାସ ।

ବାକ୍ୟତ ଦୁଇଟି ଗ୍ରନ୍ଥ ଶିଖି ନାହିଁ
କେବେ ଜାଣି ନାହିଁ ମଥା
ସ୍ତବକ ବୃନ୍ତେ ଝିଙ୍ଗୁଳ ପତ୍ରେ ତା
ସ୍ପନ୍ଦନର ଆକୁଳତା ।

କହେ ସେ ସକଳେ ଚେତନା କଳକା
ଖୋଲିଦିଅ ଖୋଲିଦିଅ
ପାର୍ଥିବ ସ୍ନେହ ପାତ୍ର ଆଡ଼େଇ
ପ୍ରେମର ପୀୟୂଷ ପିଅ ।

ଭାଷର 'ସପେଠା' କପଟ ତିଆଗି
ହୁଅ ଦର୍ପଣ-ମନା
ସ୍ୱଚ୍ଛ ନୋହିଲେ ଅନ୍ତର ଭୂମି
ବୃଥା ସବୁ ଅରଚନା ।

ହେ ଭାଇ ଭଉଣୀ ବୃଥା କୋଳାହଳେ
ନ କର ଏ ପୀଠେ ଗୋଳ
ମାରବେ ଶୁଣ ହେ ମାଆ ମାଆ ଡାକେ
ବଜୁଳ ଜଳର ରୋଳ ।

ହୃଦ-ମୂଳରେ ତୋ ପ୍ରତିଫଳ ଉଠେ
ମାନବ ଜାତିର ମୁହଁ
ଅଚେତନ ହୃଦ ସପନେ ବି ଏଥି
ନ ଢାଳ ଟୋପିଏ ଲୁହ ।

ଏ ପୂତ ଆଗାର ସକଳ ରୋଗର
ବ୍ୟଥା-ନିବାରଣୀ-ଜଡ଼ି
ଫୁଟି ଉଠେ ଏଥି କାମନା-କୁସୁମ
କୀଟାଣୁ-ଦଷ୍ଟ-କଡ଼ି

ବିଶ୍ୱ-ନିଳୟେ ବିଶ୍ୱ-ମାତାର
ରୂପ-ବାଣୀ ଗୃହ ଆଡ଼େ
ଶୁଣି ପାରୁଛ କି ଦେଖି ପାରୁଛ ତା
ପ୍ରତିଟି କାନ୍ଥବାଡ଼େ !



## ନବ ପ୍ରକାଶ

ପାହି ପାହି ଆସେ
ସୃଷ୍ଟିର ଅମାରାତି
ଉଠ ଦେଶବାସୀ
ଜାଗ ଏବେ ମୋର ଜାତି ।
ପ୍ରକୃତି ମୁଖେ ନବୀନ ଉଷାର ଗାନ
ଶୁଣ ହେ ମାନବ ଦେଶ ମହାଦେଶ
ଅନ୍ତରେ ପାତି କାନ ।

ଘୋର ଅଜ୍ଞାନ
ଘନ ଅନ୍ଧାର ଭେଦି
ଉଜ୍ଜ୍ୱଳ ଉଠେ
ଉଷାର ପୁଣ୍ୟ ବେଦୀ
ହୁଏ ତହିଁ ନବ ସତ୍ୟର ଅଭିଷେକ
ସତ୍ୟ ପୂଜକ ସତ୍ୟ ସାଧକ
ନୟନ-ନୟନେ ଦେଖ ।

ନବ ଆହ୍ୱାନେ
ବିପ୍ଳବୀ ଯେତେ ଆସ
ଆସ ଦୁର୍ଜୟ
ଅଜ୍ଞାନତାର ଦାସ ।
ସତ୍ୟସନ୍ଧ ଶାନ୍ତ ସେବକ ଆସ
ପ୍ରକୃତିର ଏ ବିପୁଳ ଯଜ୍ଞେ
ଖର ସମ ଦଅ ଶ୍ୱାସ ।

ଅଗ୍ରଣୀ ଯେତେ
ବିଜୟ ଦିହୁଡ଼ି ଧର
ମୃତ୍ୟୁରେ ତୁମେ
ଅମୃତ ଆଜି କର ।
ଜ୍ଞାନ ପ୍ରେମ ତପେ ମରତେ ସରଗ ଖସୁ
ଚିର ଦୁଃଖିନୀ ମାଟିର ଧରଣୀ
ଚିର ଉଲ୍ଲାସେ ହସୁ ।

ମହାନ ମନ୍ତ୍ର
ସୁମର ନିୟତ ମନେ
ଦିବ୍ୟ ଯନ୍ତ୍ର
ହୁଅ ହେ ତରୁଣ ଜନେ ।
ସମପଦେ ଚଳ ଲକ୍ଷ୍ୟେ ନିବେଶି ଲୟ
ଭଉଣୀ ଓ ଭାଇ ସମତାନେ ଗାଇ
ଜୟ ସ୍ରଷ୍ଟାର ଜୟ ।

ଦେବ ମୁହୂର୍ତ୍ତେ
ଦିବ୍ୟ ଜୀବନ ଲାଗି
ଉନ୍ମତ ଯେତେ
ଆତ୍ମା ଉଠିଛ ଜାଗି ।
ନିଜେ ଜୟ ଲଭ ମୁକ୍ତିର ଅଭିଯାନେ
ଶୁଣାଅ ଏ ନବ- ପ୍ରକାଶର ବାଣୀ
କୋଟି ଜନତାର କାନେ ।

ନବ ଭାରତର
ସନ୍ତାନ ଯେତେ ଅଛ
କର୍ଣ୍ଣେ ଶୁଣ
ନ ଭାବ ହେ ଆଗପଛ ।
ନୂତନ ଜୀବନେ ନୂତନ ଚେତନା ନେଇ
ଜାଗ୍ରତ ଯେତେ ଶୁଣ ତଉଦଟେ
ସେ ଡାକ ଶୁଭୁଛି ହେଇ ।



## ପୁଷ୍ପ-ସମ୍ପଦ

ମା—
ଆଶ୍ରମର ଏ ଫୁଲ ସମ୍ପଦ
ଫୁଲ ହସେ ସଦା ଭରି
ହୃଦୟେ ହୃଦୟେ ଚେତାଅ ସତେ କି
ହେବାପାଇଁ ଫୁଲ ପରି ।

ନାଚେ ଉଦ୍ୟାନ ଫୁଲ ମଉଛବେ
ମଳୟ ଗୀତିକା ଗାଇ
ସେହି ଫୁଲ ମେଳେ ମତେ ଫୁଟାଇଲେ
ବଞ୍ଚିବ ତୁମ ପାଇଁ ।

ସୁବାସ ଅରଘେ ଶ୍ରୀପଦେ ଆକୂତି
ଅରପଣ କରି ସବୁ
ଫୁଲ ଦେଇ-ନେଇ ଫୁଲ ଦଣ୍ଡେ ହୋଇ
ତୁମରେ ଲଭିବ ପ୍ରଭୁ ।

ଶିଶିର ପଖଳା ଗୋଲପି ଗୋଲାପ
ଅରପିଲେ ତୁମ ପାଦେ
ସରସି ଉଠେ ଏ ନୀରସ ଜୀବନ
ତବ ମହା ପରସାଦେ ।

ଶ୍ୱେତ ସରସିଜ ସଗ୍ରବେ ତୋଳି ମୁଁ
ଥାପିଦେଲେ ତୁମ କରେ
ପୂର୍ଣ୍ଣ ଚେତନା ଲଭିବାର ଆଶେ
ପୁଲକେ ପରାଣ ଥରେ ।

କୋମଳ ଶିରୀଷ କୋମଳ କଲେ ମା
ସୁକୋମଳ ତାର ବାସେ
ସହସା ତୁମରି ନୀରବ ପ୍ରେରଣା
ଗଭୀର ଗଭୀରୁ ଆସେ ।

ଆକାଶର ମଲ୍ଲୀ ଡାକେ ଯେବେ ଢାଲି
ଏଇ ମନ ପ୍ରାଣ ଦେହେ
କ୍ରୋଧ ବଇଶାଖୀ ରୂପାନ୍ତରିତ
ହୁଏ ମଳୟର ସ୍ନେହେ ।

ସୂରଯମୁଖୀରେ କରିଦିଅ ମତେ
ଦିବ୍ୟ ଆଲୋକମୁଖୀ
ତା' ପରଶେ ମୁହିଁ ଅନିମେଷେ ରହିଁ
ହୋଇବ ପରମ ସୁଖୀ ।

ଶକ୍ତି ଦିଅ ଗୋ ଶକ୍ତିଦାୟିନୀ
ରକ୍ତ ଜବାର ହାରେ
ଚନ୍ଦ୍ରଗଜର ପୁଣ୍ୟ ସୁଷମା
ଭରିଉଠୁ ଚେତନାରେ ।

ଅତି ମାନସିକ ସିଦ୍ଧି ହେଉ ମୋ
ସ୍ୱର୍ଣ୍ଣ ଚମ୍ପା ଦାନେ
ନବ କରବୀର ଚିନ୍ତା ମଧୁର
ଜାଗୁ ଆନ୍ତର ଜ୍ଞାନେ ।

ଚୈତ୍ୟର ଭୂମି ଶୁଦ୍ଧ କର ଗୋ
ସଜ ଯୂଇ ଜାଇ ଫୁଲେ
ମଧୁ ମାଳତୀର ବିଶ୍ୱାସ ନେଇ
ନିଜକୁ ଯେସନେ ଭୁଲେ ।

ଅଶୋକେ ହେଉ ମୋ ଶୋକର ମୋଚନ
ବକୁଳେ ଧଇର୍ଯ ଦିଅ
ଶେଫାଳି ପ୍ରଦାନେ ଆସ୍ପୃହା ବଢ଼
ହେ ମୋର ପରମାପ୍ରିୟ ।

ମୃଦୁଳ ବାସିତ ଟଗର ପରାଗେ
ସୃଷ୍ଟିର ରହୁ ମନ
ତୁମର ଚରଣେ ତୁଳସୀର ଦାନେ
ବଢ଼ୁ ଭକତିର ଧନ ।

ସୁରଭିତ ପ୍ରେମେ ଶ୍ରୀପଦେ ଆକୃତି
ଅରପଣ କର ସବୁ
ଫୁଲ ଦେଇ-ନେଇ ଫୁଲ ଶେଷେ ହୋଇ
ତୁମରେ ଲଭେ ମୁଁ ପ୍ରଭୁ ।



## ଡାଇନିଂ ହଲ୍

ଡାଇନିଂ ରେ ଡାଇନିଂ
ସକାଳ ସାଢେ଼ ଅଠା ପର୍ଣ୍ଣକୁଟୀରେ
ଘଣ୍ଟି ବାଜଇ ଟିଂ ଟିଂ ।
ନାଲି ନାଲି ମିଠା ପିଠା-ପାଉଁରୁଟି
ଦୁଗ୍ଧ କଦଳୀ ଗଲେ ତହିଁ ଜୁଟି
ପ୍ରଭାତ ରେକର୍ଡ଼ ହସ ପଡ଼େ ଫାଟି
ପ୍ରାଣର ଆରାମଦାୟିନୀ
ଡାଇନିଂରେ ଡାଇନିଂ ।

ଡାଇନିଂରେ ଡାଇନିଂ
ସମସ୍ତ ନୟନ ଭାଙ୍ଗିଲେ ଏଥି
ପଡ଼େ ଉପବାସ ଫାଇନ ।
ବୃଦ୍ଧ ଆନନ୍ଦେ ଲେପି ଯଉବନ
ଚେତନା ସ୍ୱାସ୍ଥ୍ୟ ଗଢ଼େ ଏ ଭୋଜନ
ରୂପାନ୍ତରିତ ଦେହ ପ୍ରାଣ ମନ
ହେବାକୁ ରେ ଯେବେ ଚାହେଁନ
ଡାଇନିଂ ରେ ଡାଇନିଂ ।

ଶଙ୍ଖଲେ ଚାଲେ ମଣିଷର ଧାଡ଼ି
ସ୍ନେହର ପର କେହି ଆଗେ ଯାଏ ମାଡ଼ି
ଭୋଜନ ଲାଳସା ଯୋଗେ ଫୁଟି ଗୁଡ଼ି
କା' ଥାଳରେ କେହି ଚାହେଁନ
ଡାଇନିଂରେ ଡାଇନିଂ ।

ଡାଇନିଂରେ ଡାଇନିଂ

ଠଅଂ ଠାଆଂ ବାସନକୁସନ
ଟିଫିନରେ ନାମ ଯାଇନ
ଡାଲିର ବନ୍ୟା ଆହା କି ସୁଆଦ
ଭିଟାଏ ଲଳସୀ ରସନା ବିବାଦ
ଅଗଲା ଅନ୍ନ ମାଆ ପରସାଦ
ଅଖୁସିରେ କେହି ଖାଏନି
ଡାଇନିଂ ରେ ଡାଇନିଂ ।

ଦେଖି ମିଶା ଶାକ ସବଜିର ସୁପ୍
ସବୁ ସୁଆଦର ପାଚି ହୁଏ ଚୁପ୍
ମଧ୍ୟାହ୍ନ ଧୂପ ବ୍ୟଞ୍ଜନ ରୂପ
ଆହା କି ନୟନ ମୋହିନୀ
ଡାଇନିଂ ରେ ଡାଇନିଂ ।

ଆହାର କ୍ଷୁଧା ନିବାରଣ ପାଇଁ—
ଲୋଭ ଦାନ୍ତ ଏଥି ଲଳ ଛୋକେ ଯାଇ ।
ପୂର୍ଣ୍ଣ ସ୍ୱାସ୍ଥ୍ୟ ଉନ୍ନତି ପାଇଁ
ଯୋଗାଏ ସେ ଯୋଗ-ଭିଟାମିନ୍
ଡାଇନିଂ ରେ ଡାଇନିଂ ।

ପୃଥିବୀର ଏଇ ପାକଶାଳା ଦେଖି
ନିର୍ମଳତା ହିଁ ହୁଏ ବେଗେ ଶିଖି
ଶୃଙ୍ଖଳା ତାର ଅନ୍ତରେ ଲେଖି
କିଏ ଅବା ଏଥୁ ଯାଏନି
ଡାଇନିଂ ରେ ଡାଇନିଂ ।

ଅନ୍ନପୂର୍ଣ୍ଣା ମହାଭଣ୍ଡାର
ଯାର୍ ଧର୍ ଲଗି ଖୋଲ୍ ତା ଦୁଆର
ଗୋଟିଏ ଶସ୍ୟ ହେଲେ ନାରଖାର
ଦେହ ତାର ମୋଟେ ସହେନି
ଡାଇନିଂ ରେ ଡାଇନିଂ ।

ଦରଶନ ଘର ଉତ୍ସବ ଦିବସେ
ମାଆ କ ସେବନ ଥାଳରେ ପରଷେ ?
ଗ୍ରେଟ-ପିଲାଠଉଁ ବଡ଼-ବୁଢ଼ା ହସେ
ସେ ତୃପତି ନୋହେ ବଇନ
ଡାଇନିଂ ରେ ଡାଇନିଂ ।

ଆଖି ବୁଜେ ଦେଖି 'ଆନନ୍ଦବଜାର'
ଆନନ୍ଦମୟୀ ମହା କାରବାର
ସ୍ୱାସ୍ଥ୍ୟ ରୁଚିର ଏ ଭୋଜନାଗାର
ଭେଟିଛ କି କାହିଁ କୁହନ ?
ଡାଇନିଂ ରେ ଡାଇନିଂ ।

'କର୍ଣ୍ଣର ହାଉସ୍' 'ଡାଇନଙ୍ଗେ' କହେ
ତୁମର ଉପରେ ସବୁ ସୁଅ ବହେ
'ମନୋରଞ୍ଜନ' ମନ-ଫୁଲଣିଆଁ
ଗୀତ ପଦେ କେବେ ଗାଏନ
ଡାଇନିଂ ରେ ଡାଇନିଂ ।

ଡାଇନିଂ ରେ ଡାଇନିଂ
ମହାତୀର୍ଥ ଏ ମହାଲକ୍ଷ୍ମୀର
ମହାପ୍ରସାଦ କେ ଖାଇନ ।
କରେ 'ଗଣପତି' 'ପୁରୋହିତେ' କପି
ସେ 'ମଗଜଲଡୁ' ଏ 'କାଜୁ ବରଫି'
ସବୁ ଭୋଗ କାନ କାଟିଦିଏ 'ଟଫି'
"ସୁପ୍ରିମ ମଦର୍ ଡ଼ାଇନ୍ ।".
ଡାଇନିଂ ରେ ଡାଇନିଂ ।



# ନୂତନ ବର୍ଷ ନୂତନ ପ୍ରଭାତ

ଜନବଂଶ ଏ ଏକସ୍ତମ୍ଭର ଦ୍ୱାରେ
ନୂତନ ପ୍ରଭାତ ପକାଏ ପଥମ ପାଦ
ଏ ନବ ବରଷେ ହେ ନତନ ଅବତାର !
ଗୃହେଁ ଖାଲି ତୁମ ସତ୍ୟର ପରସାଦ ।

ଉଷାର ଆଲୋକେ ଶପଥ କରୁଛି ଆଜ
ପାଳିବ ମୁଁ ତୁମ ରୂପାନ୍ତର'ର ବ୍ରତ
"ଶ୍ରୀଅରବିନ୍ଦ ଶରଣ" ମନ୍ତ୍ର ଜପି
ପ୍ରତି ନିଃଶ୍ୱାସେ ବରିନେବି ସେହି ପଥ ।

ନବୀନ ବରଷେ ମିନତି କରେ ମୁଁ ଆଜ
ଅନ୍ତରୁ ପୋଛ ଅଜ୍ଞାନ ମୋର ସବୁ
ତରୁଣ ତପନ ଆଲୋକିତ କରେ ଧରା
ଆଲୋକ ହେ ମତେ ଦିଅ ଆଲୋକର ପ୍ରଭୁ !

ଏଇ ଯେ ବିହଗ ପ୍ରଥମ କାକଳୀ ଗାନେ
କି ନବ ସ୍ତୋତ୍ର ଶୁଣେ ମୁଁ ଧିଆନ କାନେ
ତୁମର ଚରମ ସେନେହେ ବାନ୍ଧ ମତେ
ପ୍ରଭାତ ପବନ ଅମୃତ ଢାଳେ ପ୍ରାଣେ ।

ମନ୍ଦିରୁ ଶୁଣି ମଙ୍ଗଳ ମଧୁ ଗାନ
ପ୍ରେମର ଯଜ୍ଞେ ଦିଏ ମୁଁ ପୂର୍ଣ୍ଣାହୂତି
ହେ ନବ ବରଷ ! ଗରଭେ ତୋ ଅଛି ଶୋଇ
ସ୍ୱର୍ଣ୍ଣ ଭୂମିର ସୁନ୍ଦର ଅନୁଭୂତି ।

ପ୍ରତିଦାନହୀନ ଫୁଲଟିଏ ମତେ କର
ପ୍ରତି ପାଖୁଡ଼ାରେ ଖୋଲିଦେବି ଅନ୍ତର
ନବ ବରଷର ନୂତନ ପ୍ରଭାତ ଡାକେ
ନବ ଯୁଗ ଲାଗି ହେବି ମୁଁ ଅଗ୍ରସର ।

ହେ ପରମ ପିତା ! ଭଲପାଅ ଯେବେ ଅତ
କର ମତେ ତୁମ ଆପ୍ତ ହ୍ୱା-ଧୂପବତ୍ତି
ମୋ ପାଇଁକ ନୁହେଁ-ନଖିଳ ବଶ୍ୱଲାଗି
ଦୂର ପଥ ତୁମ ହୋଇଉଠୁ ଏବେ କତ ।

ହେ ପ୍ରଭାତ ! ଧରା ତାମସ-ନଦ୍ରା ଭାଙ୍ଗି
ଖୋଲଦଅ ବେଗେ ଖୋଲଦଅ ତାର ଆଖି
ସ୍ୱର୍ଗ ଫେରଛି ଅନ୍ତମାନସରେ ତାର
ପ୍ରାସାଦୁଁ କୁଟୀରେ କହଯାଅ ସବୁ ଡାକ ।



## ଆଶୀର୍ବାଦ ପୁଷ୍ପ

ଟିକ ଲଫାପାରେ ଟିକ ଫୁଲଟି
ଘରେ ଯେବେ ଆମ ପକାଏ ପାଦ
କ ଖୁସି ନ ହୁଏଁ ଲଭ ମୁଁ ତୁମ
ଅମୋଘ ଅଭୟ ଆଶୀର୍ବାଦ ।

ବାଡ଼ ବଗିଚାରେ ଫୁଟି ନ ଝଡ଼େ
କେତେ ଫୁଲ କେ ତା ହସାବ ରଖେ
ତୁମ ହାତଛୁଆଁ ପାଖୁଡ଼ାଟିଏ
ପ୍ରେମର ଅଗ୍ନି ଜଳାଏ ବୁକେ

ରକ୍ଷା କବଚ ରକ୍ଷା କରେ
ବଘ୍ନ ବପଦେ କେତେ ସେ ମତେ
ଜନମ ଜନମ ବନ୍ଧୁତାରେ
ସେହ୍ଧ ଫୁଲ ନଏ ତୁମର ପଥେ ।

ଶୁଭ ଆଶିଷର ବାରତାବହ
ନୀରବ ହୃଦୟେ କହେ ସେ କଥା
ଆଶା ଆଶ୍ୱାସେ ନ ଦିଏ ପୋଛୁ
କେତେ ଅଶ୍ରୁଳ ନୟନପତା ।

ଅତଳ ସାଗରେ ଦେଲେ ମୁଁ ଡାକ
ଧାଇଁ ଆସି ଖରେ ଜବାବ ଦିଏ
ଦିବ୍ୟ ପ୍ରେମର ସାନ୍ତ୍ୱନା କି
ଶ୍ରେଷ୍ଠ ଶବଦର ବାରତାଟିଏ ।

ରକ୍ଷାକାରଣୀ କବଚ ସେ ତ
ଛାଇ ପ୍ରାୟେ ସଦା ମୋ ପାଶେ ରହେ
ହସ୍ତ-ଲିଖିତ ଗ୍ରେଟିଂ ତୁମ
ମମତାର ମଧୁ କଥାହିଁ କହେ ।

କ୍ଷୁଦ୍ର ପାଖୁଡ଼ା ଅନ୍ତର ମା
ବିରାଟ ଅର୍ଥ ହୃଦୟେ ବୁଝି
ଚେତନାରେ ତୁମ ହଜି ମୁଁ ଯାଏ
କୃତଜ୍ଞତାରେ ନୟନ ବୁଜି ।

ଫୁଲ ଯେବେ ଏତେ ଶାନ୍ତି ଦିଏ
ନିଜେ ନୁହଁ କେଡ଼େ ଶକ୍ତିମୟୀ
ସେହି ଫୁଲ ପରି ଫୁଟାଅ ମତେ
ହୁଏଁ ସେ ଆଶିଷେ ସର୍ବଜୟୀ ।



## ମାତୃ ବିଦ୍ୟାଳୟ

ମରତ ଡାକଇ ସରଗରେ
ଆସିବଂିକ ମୋର ମାଟି ଘରେ ?
ଧରାକୁ ଆବାହନ ବନ୍ଧୁ କରୁଣାର
ମିଳନ ଛନ୍ଦ ଯହିଁ ଝରେ
ଜନମିଛି ତହିଁ ମହା ପାଠଶାଳା
ମହା ଭଗବତ୍ତ ମହାବରେ ।

ନବ ଚେତନାର ନବଧାରା
ଭାଙ୍ଗେ ପ୍ରାଚୀନ ଗୁହ-କାରା
ନୂତନ ମାଟିରେ ନବ ମାଳାକର
ରୋପେ ଭଲ ଭଲ ଶିଶୁ ଗଛ
ତମିର ବିନାଶୀ ତରୁଣ ସ୍ତବକ
ପିକ ପ୍ରଜାପତି ଶୁକ ପାରା ।

ନୂତନ ରଶ୍ମି ଝଲକରେ
ପୂର୍ଣ୍ଣ ପ୍ରଗତି ଆଲୋକରେ
ସତ୍ୟ ପିପାସୀ ସମବେତ ଏଥି
ପ୍ରଗତି କୁସୁମ ପୁଲକରେ
ଶ୍ରୀଅରବିନ୍ଦ ଶିକ୍ଷା ସଦନେ
ଏଇ ଦକ୍ଷିଣ ମୂଲକରେ ।

'ମଧୁ ବରଷ'ର ମଧୁକାଳେ
ମଧୁ ଝରେ ତରୁ ଲତାମାନେ
ଚମ୍ପା ବକୁଳ କେତକୀ ମୁକୁଳ
ମୃଦୁ ମଳୟର ତାଳେ ତାଳେ
ହସଇ କମଳ ଅଶୋକ ଗୋଲାପ
ଅନ୍ତମାନସର ରବ ଜାଳେ ।

ଚେତନାର ନବ                    ସଜରଭେ
ଜାଗେ ଧରା ଗୁରୁ                 ଗଜରବେ
ଦିବ୍ୟଜୀବନ                     ଅମୃତ ପାଇଁ
ପୂର୍ଣ୍ଣତାପ୍ରେମୀ ଠାବେ ଠାବେ
ଅନୁସର ତାର                    ମହାନ ଲକ୍ଷ୍ୟ
ବୁଡ଼ନ୍ତୁ ସେହି ମହାଭାବେ ।



## ନବ ଜାତକ-ନବ ଜୟନ୍ତୀ

କି ଭେଟିବି ଜନ୍ମଦିନେ ପଦେ ଆଜ "ହେ ନବପ୍ରକାଶ"
ଅବାରିତ ହୃଦ ଦ୍ୱାରେ ତୁମ ପାଇଁ ଅପେକ୍ଷିଛୁ—ଆସ ।
ବିନମ୍ର ପ୍ରଣତି ତାଳ ମରବେ ମୁଁ କରଇ ବନ୍ଦନା
ତବ ହୃଦେ ମମ ହୃଦ ମିଶିବା ହିଁ ଶ୍ରେଷ୍ଠ ନିରାଜନା ।
ଏ ପ୍ରେମ ତୃଷାର୍ତ୍ତ ପ୍ରାଣେ ଦିଅ ତାଳ ଅମୃତର ହାସ
"ହେ ନବପ୍ରକାଶ ।"

କାଲି ପରି ମନେପଡ଼େ—ନବ ସତ୍ୟ ନବ ବାଣୀ ଧରି
ନବଜ୍ୟୋତି କାର୍ଯ୍ୟାଳୟୁଁ କରି ଯାତ୍ରା ନବଦୂତ ପରି
ପ୍ରିୟ ଏ ଓଡ଼ିଶା ଭୂମି ପଲ୍ଲୀଗ୍ରାମ ସହର ନଗରେ
ଅଚେତନ ଘୋର ନିଦ୍ରା ଭାଙ୍ଗିଦେଲ ଆସି କେତେ ଥରେ ।
ମୋ'ର ଭଳି ଶତ ଆତ୍ମା ଜନ୍ମଦିନେ ସ୍ୱାଗତନ୍ତି ଆସ
"ହେ ନବପ୍ରକାଶ ।"

ଟେବୁଲର କ୍ୟାଲେଣ୍ଡରେ ଅକ୍ଟୋବର ପନ୍ଦରର ଲେଖା
ମିଳାଇ ମୂର୍ତ୍ତିଟି ତୁମ ଅକସ୍ମାତ ଯାଏ ମତେ ଦେଖା ।
ଯେ ସତ୍ୟ ପ୍ରକାଶି ମହାପ୍ରାଣପ୍ଲାବୀ ଅଗ୍ନିମୟୀ ବାଣୀ
ରୂପାନ୍ତର ପଥେ ଆଜ ଅଲକ୍ଷିତେ ନିଏ ଊର୍ଦ୍ଧ୍ୱେ ଟାଣି ।
ସବୁ ହସ୍ତୁଁ ଖସିପଡ଼େ ପୁରାତନ କାବ୍ୟ ଉପନ୍ୟାସ
"ହେ ନବପ୍ରକାଶ ।"

ଦିବ୍ୟପ୍ରେମ ବାର୍ତ୍ତାବହ—ପାନ୍ଥ ଆଜ ହୋଇ ଓଡ଼ିଶାର
ତବ ଭକ୍ତ ହୃଦ ଗର୍ଭ୍ୟ ଶତ ଶତ ନିଅ ନମସ୍କାର ।
ସତ୍ୟର ପ୍ରବୋଧା ସାଜ ବିଶ୍ୱ ଆଗେ ହେଲେ କାଲି ଠିଆ
ତୁମରି ଜୟନ୍ତୀ ଗାନେ ଖୋଲିଯିବ କୋଟି କୋଟି ହିଆ ।
ଅପେକ୍ଷିଛୁ ଯିନା ଧରା ଚିରାନନ୍ଦ ଯେ ସୂର୍ଯ୍ୟ ପ୍ରକାଶେ
ଲଭେ ମୁଁ ତା' ରଶ୍ମି ଏକ ଆଜ ତୁମ ଜନ୍ମଦିନ ହାସେ ।



## ଅରୋଭିଲ

ନବ ଜୀବନର ନବୀନା ନଗରୀ
ବିଶ୍ୱର ଗଉରବ
ଏଇ ଦେବପୀଠ ଏଇ ଅରୋଭିଲ ମାଟି
ଆକାଶ ବତାସ ଗାଏ ସଦା ଏଥି
ତୋହରି ପୁଣ୍ୟ ସ୍ତବ
ଦେଖ ଏ ଦିବ୍ୟ ସୁଷମାର ପରିପାଟୀ ।

ହେ ବିଧିଜନ୍ମା ଆତ୍ମାର ମହାଶିଶୁ
ସତ୍ତ୍ୱରେ ତୋର ଏ ମୋର ସତ୍ତ୍ୱ ମିଶୁ
ମର୍ତ୍ତ୍ୟ ଜୀବନ ହେଉ ଅମୃତମୟ
ବିଲଗ ହୋଇ ସେ ନଶ୍ୱେତନାର ବିଷଁ ।

ବକ୍ଷେ ବହେ ତୋ ଶାନ୍ତ ପ୍ରଗତ
ସମତା ତ୍ରିବେଣୀ ଧାର
ସମୀରଣେ ଶୁଭେ ବିଶ୍ୱ ଐକ୍ୟ ଗାନ
ଆନ୍ତର ମହାଯୋଗ୍ୟତା ଯେବା
ଲଭିବାରେ ଆଗୁସାର
ବାଛିନିଅ ଆସି ବାଛିନିଅ ଏଇ ସ୍ଥାନ ।

ସ୍ୱାଧୀନ ଜୀବନ ପରିପୂର୍ଣ୍ଣତା ଲାଗି
ଚରମ ଦିବ୍ୟ ଆଦର୍ଶ ଅନୁରାଗୀ
ଅଛ ଯେତେ ନବଜ୍ୟୋତି ଆତ୍ମ ତ୍ୟାଗୀ
ଏ ଶୁଭ ପ୍ରଭାତେ ଉଠ ବେଗେ ଉଠ ଜାଗି ।

ଯୁଗ ଯୁଗ ଧରି ଆଲୋକ ସପନ
ଦେଖୁଥିଲା ଏଇ ଭୂଇଁ
ଚେତନା ସତେ ତା ଆଲୋକେ ହିଁ ଥିଲା ବୁଡ଼ି
ଘାଷେ ପାରିବାର ବିଶାଳ ଯାହାର
ଚରଣ-ସିକତା ଛୁଇଁ
"ଜାଗ୍ରତ ଏ ପଥେ ନ ଯାଅ ଲକ୍ଷ୍ୟ ଛୁଡ଼ି ।"

ଦୃପ୍ତ ଅନ୍ତରେ ବହ୍ନି ବନ୍ୟା ଛୁଟେ
ପାର୍ଥିବ ସ୍ନେହ ବନ୍ଧନ ସବୁ ତୁଟେ ।
ଭଗ୍ନ ଅଶାନ୍ତ ପ୍ରଳୟ ପାଗଳ ସାଜ
ସୈକତେ ତୋର ମସ୍ତକ ଖାଲି କୁଟେ ।

ତାଳ ନାରିକେଳ ପଲ୍ଲବ କର
ସଞ୍ଚାଳ ସମୀରଣେ
ରହିଁ ହେ ବନ୍ଧୁ ! ଡାକେ ଏ ଯେ ହାତ ଠାରି
"ଆସ ବିଶ୍ୱର ତରୁଣ ତରୁଣୀ
ନବ ଯୁଗ ଜାଗରଣେ
ଯେଉଁ ଅନ୍ତର ଶାଶ୍ୱତ ଅଭିସାରୀ ।"

"ଓଁ ଶାନ୍ତି ଶାନ୍ତି" ପୀୟୂଷ-ଘନ
ଗାଅ ସାମ୍ୟର ସଙ୍ଗୀତ ବିନୋଦନ ।
ସେହି ଜୀବନର ଫଲ୍‌ଗୁନଦୀର ସ୍ରୋତେ
ମୁକ୍ତ ହୃଦୟେ କର ହେ ନିମଜ୍ଜନ ।

ସତ୍ୟ ମନ୍ତ୍ର ଜପଇ ନିତ୍ୟ ତ
ତୋ ମାଟିର ଧୂଳି ବାଲି
ପ୍ରକୃତ ମହାଶାନ୍ତି ଶୁଆସ ଢାଳେ
ନିରମି ଭିତ୍ତି ଉନବିଂଶତ
ଅଠଷଠି ଗଳି ଗଳି
ପାଷାଣ-ପଦ୍ମ-କୋରକ ଅନ୍ତରାଳେ ।

ବିଶ୍ୱବନ୍ଦିତ ସତ୍ୟର ରାଜଧାନୀ
ସର୍ବେ ଚଳିବେ ତୋହର ବିଧାନ ମାନି
ମହାମାନବର ମହାନ ସାମ୍ୟବାଦ
ଆଲୋକେ ସବୁରି ଅନ୍ତର ହେବୁ ସ୍ନାନ ।

ଅଭିଯାନେ ମହା ଦୁଃସାହସୀ ମୁଁ
ହେବି ତୋ ଅଙ୍କବାସୀ
ଅମୃତ ଶିଶୁ କାଳ କାଳ ମୁହିଁ ତୋର
ଅନ୍ତରେ ତତେ କେତେ ଭଲପାଏ—
କାଟି ଅବିଦ୍ୟା ଫାଶି
ଟାଣେ ତୋ ବିଶାଳ ହୃଦୟର ପ୍ରେମ ଡୋର ।

ଅସୀମ ସାହସ ଅଟଳ ଧୈର୍ଯ୍ୟ ନେଇ
ଆସିଛି ତୋ ଘରେ ଗୋଟିଏ ଲମ୍ଫ ଦେଇ
ଦେଖିଛି ତୋ ପ୍ରେମ ଶାନ୍ତି ରୁଚିର ଛବି
ହୃଦୟେ ତୋହର ଏ ମୋର ହୃଦୟ ଦେଇ ।

ସ୍ୱାସ୍ଥ୍ୟ ଶିକ୍ଷା ସଂସ୍କୃତି କଳା
ରଚିବେ ନୂତନ ଗୃହ
ପୁଷ୍ପିତ ଏଇ ବିଶାଳ ଉରସେ କାଲି
ଉଚ୍ଛୁଳି ଉଠିବ ସୁନ୍ଦର ନବ
ଅପରୂପ କୃଷି ମୁହିଁ
ଶ୍ୟାମ ଯୌବନେ ହସାଇ ଧୂସର ବାଲି ।

ସେହି ଅମୃତ ମିଳନ ଲଗ୍ନ ଆସି
କାନେ କାନେ ଶ୍ରେଷ୍ଠ ବାଣୀ ଯାଏ ପରକାଶି
ଦୂରେ ବହୁଦୂରେ ଅନ୍ତର ମର୍ମ ଆଜ
ବନ୍ଧନହୀନ ଡେଣା ମେଲି ଯାଏ ଭାସି ।

ଯୁଗାନ୍ତ ଉଷା ସ୍ୱର୍ଣ୍ଣ ଆଲୋକେ
ପ୍ରସ୍ଫୁଟ ସତ୍ୟ ବାଣୀ
ହେ ଉଷାନଗରୀ ! ନବ ଉଷା ଆଣ୍ଟ ମନେ
ମହାନନ୍ଦର ଆନନ୍ଦ ଭୂ ରେ !
ତୀର୍ଥ ନଗରୀ ତଟେ !
ଆଲୋକର ସୂତେ ଖୋଜିବେ ଆଲୋକ-ଧନେ ।

ଉଜ୍ଜ୍ୱଳ ତୋର ବର୍ତ୍ତିକା କର ମଟେ
ଯିବ ମୁହିଁ ଯିବ ନୂତନ ଜଗତ ପଥେ
ମନ୍ଥରଗାମୀ ଜୀର୍ଣ୍ଣ ଶକଟ ତେଜି
ନବ ଆଲୋକର ନୂତନ ଚେତନା ରଥେ ।



## ଆଶ୍ରମୁଁ ବିଦାୟ

ବନ୍ଧା ପଡ଼ିଲା ଆତ୍ମା ମୋର ଏ
ମହା ସମାଧିର ପାଶେ
ତେଜି ଆଶ୍ରମ- ଜନ୍ମଭୂମି ମୁଁ
ଯାଏ ଆଜ ପରବାସେ ।

ଜନମ ଜନମ ଚିର ପରିଚିତ
ସତେ କି ଏ ଗୋଡ଼ ମାଟି
ହୃଦୟେ ହୃଦୟେ ଗୁଲେ କଥାଭାଷା
ଶୁଭେ ନାହିଁ ସିନା ଫାଟି ।

ଦୂରେ ଅଛତେ କ   ଛୁଡ଼ ପାଇଥିଲ
ଏହି ଗୃହ ଏହି ପଥ
ସୂର୍ଯ୍ୟର ଘନ   ଆଲୋକ ସମାନ
ଲାଗେ ସବୁ ମତେ ସତ ।

କ୍ରୀଡ଼ା ପ୍ରାନ୍ତର   ନୟନ ଭରି ମୁଁ
ଦେଖିଥାଏଁ ଟିକେ ଥତେ
ସାନ୍ଧ୍ୟ ଧିଆନ   ବନ୍ଦ୍ୟ ବେଦିକା
ମନେ ରଖିବୁ ନା ମତେ ?

ପୋଷିଥିଲି ଆଶା   ଯାପିବାକରେ ଯୋଗ-
ଜୀବନ ତୋର ଏ ତୀରେ
ହେ ମହାସାଗର !   ସେ ଆଶା ହଜିଲା
ସେହି ଆଶା-ଜଳଧିରେ ।

ନବ ଯୌବନା   ‘ନନ୍ଦନ’ ! ତୋର
ପୁଷ୍ପିତ ପରସାଦେ
ମୁଗ୍ଧ ମୁଁ କେତେ-   ଛାଡ଼ି ଯିବାକୁ ତ
ନ ଚଳେ ଆଗକୁ ପାଦେ ।

ଏ ଜନମେ ଯିନା   ହେଲେ ରେ ଚନ୍ଦ୍ରା
ଆଶ୍ରମ ଯୋଗେ ଆମେ
ହେ ଉଷା ନଗରୀ !   ତୋର ସ୍ମୃତି ସ୍ୱର
ଲାଗିବ ମାଆର କାମେ ।

ପ୍ରାଣପ୍ରିୟ ପୀଠୁଁ   ବିଦାୟ ନେଇ ମୁଁ
ଯାଉଛି ସୁଦୂରେ ଫେରି
କୃପା କଣା ଖାଲି   ଟାଣି ବା ଆଣିବ
ବାହୁଡ଼ା ହୋଇଲେ ଡେରି ।

ଏକଇ ମାଆର ସନ୍ତାନ ସବୁ
ମିଶିଅଛେ ଏକ ଠାଇଁ
ମହା ମିଳନର ମହା ପରବାରୁ
ବରଦ କେ ଯିବେ ଯାଇ ।

ମନ ପ୍ରାଣ ମାୟା ବାନ୍ଧିଛି ଯେଉଁ
ପାର୍ଥିବ ସ୍ନେହପାଶେ
ମାଆ ଭଗବତୀ ଛିନ୍ନ କର ତା
ଦିବ୍ୟ ପ୍ରେମର ହାସେ ।

ସେହି ହସଟିକ ପାଥେୟ ହେଉ ମୋ
ଜଟିଳ ଜୀବନ ପଥେ
ସାଥେ ସାଥେ ଯିଲ ହେ ପ୍ରିୟ ଜନନୀ
ନେଉଅଛ ଯହିଁ ମତେ ।

ଯାଉଛି ଏବେ ରେ 'ଓଡ଼ିଆ-ନିଳୟ'
'ଓଡ଼ଶା-ନିଳୟେ' ମୁହିଁ
ଶେଷଥର ପାଇଁ ଚମ୍ପକ ଝୁଣ୍ଡ
ଏଇ ତୋ ତୋରଣ ଛୁଇଁ ।



# ଧରଣୀ

## ଶ୍ରୀଅରବିନ୍ଦ ଭବନ

ନାରୀକବି ଶ୍ରୀମତୀ ବିଦ୍ୟୁତ୍‌ପ୍ରଭା ଦେବୀ ଓଡ଼ିଆ ସାହିତ୍ୟରେ ବହୁ ପୂର୍ବରୁ ପ୍ରତିଷ୍ଠା ଲାଭ କରିଛନ୍ତି । ତାଙ୍କର କବିତା ପୁସ୍ତକମାନଙ୍କ ମଧ୍ୟରୁ କେତେକ ଭାରତ ସରକାର ତଥା ଓଡ଼ିଶା ସରକାର ଓ ସାହିତ୍ୟ ଏକାଡ଼େମୀଙ୍କ ଦ୍ୱାରା ପୁରସ୍କୃତ ହୋଇଛି । ଭାବର ଲାଳିତ୍ୟ ଓ ଭାଷାର ସରଳତା ହେଉଛି ତାଙ୍କ ରଚନାର ବୈଶିଷ୍ଟ୍ୟ । ଜନ୍ମ ଠାରୁ ମୃତ୍ୟୁ ପର୍ଯ୍ୟନ୍ତ ମନୁଷ୍ୟକୁ ଯେଉଁସବୁ ସମସ୍ୟା ମଧ୍ୟ ଦେଇ ଗତି କରିବାକୁ ହୁଏ ସେସବୁର ପ୍ରାଣସ୍ପର୍ଶୀ ଅନୁଭୂତି ତାଙ୍କ କବିତାବଳୀରେ ଜୀବନ୍ତ ହୋଇ ଉଠିଛି । ଏଥି ପୂର୍ବରୁ ଓଡ଼ିଶାର ପାଠକ ସମାଜ କବିଙ୍କର ଅନ୍ୟାନ୍ୟ ପୁସ୍ତକ ବିଶେଷତଃ 'ସଞ୍ଚୟନ' ପାଠକରି ଏ କଥା ଜାଣି ପାରିଥିବେ । ଆଧ୍ୟାତ୍ମିକ ଅନୁଭୂତି ସମ୍ବଳିତ ତାଙ୍କର କବିତାଗୁଡ଼ିକ ଅତି ଉଚ୍ଚ-କୋଟିର । ତାଙ୍କ ରଚିତ 'ପୁଷ୍ପାଞ୍ଜଳି' ଓ 'ଜ୍ୟୋତିଶିଖା' ସଂପ୍ରତି ପ୍ରକାଶିତ ହୋଇଛି । ଏ ଦିଗରେ **'ସୂର୍ଯ୍ୟମୁଖୀ'** ହେଉଛି ତାଙ୍କର ତୃତୀୟ ଅବଦାନ । କବିଙ୍କର ଅନ୍ୟାନ୍ୟ ରଚନା ପରି ଏହା ମଧ୍ୟ ପାଠକମାନଙ୍କୁ ବିଶେଷ ଅନୁପ୍ରାଣିତ କରିବ ବୋଲି ଆଶା କରୁଛି ।

ଭୁବନେଶ୍ୱର
୧୫ ଅଗଷ୍ଟ, ୧୯୭୩

**ସୁରେଶ ଚନ୍ଦ୍ର ହୋତା**
ମେନେଜର

# ଉତ୍ସର୍ଗ

ଶ୍ରୀଅରବିନ୍ଦ

ଶ୍ରୀଚରଣ କମଳେ

## ଜନ୍ମଶତକ

ତୁମେ ଅଖିଳ ବନ୍ଦନୀୟ
ଗୁରୁ ଶ୍ରୀଅରବିନ୍ଦ ଜୟ
ପ୍ରଭୁ ଅତିମାନସର ଜ୍ୟୋତି ଈଶ୍ୱର
ପ୍ରେମର ପ୍ରଣତି ନିଅ ।

ଦିବ୍ୟ ଜୀବନ ଲାଗି
ଅବଚେତନାର ରୁଦ୍ଧ ଦୁଆର
ସଜୋରେ ଦେଇଛ ଭାଙ୍ଗି ।

ଅଶେଷ ଯାତନା ସହି
ତୁମେ ନିଃଶେଷ କରି ନରକର ଲୀଳା
ସରଗ କଲ ଏ ମହୀ ।

ପ୍ରତି ଅନ୍ତର ତନ୍ତ୍ରୁ କୃତଜ୍ଞତାର
ଅଶେଷ ପ୍ରଣାମ ନିଅ ।
ତୁମେ ନିଖିଳ ବନ୍ଦନୀୟ···

ବାହକ ଭୂମିର ଯୋଗ
ସେ ମହା ଅନଳେ ଅହରହ ଜଳେ
ମାନବ ସ୍ୱାର୍ଥ ଭୋଗ ।

ଆଜ ନାହିଁ—ରାତି ନାହିଁ
ଚେତନାର ନବ ସୂର୍ଯ୍ୟ ଉଦୟେ
ରହିଛୁ ସକଳେ ଚାହିଁ ।

ବିଶ୍ୱ ପରମ ପ୍ରିୟ
ସେହି
ମହା ଆଲୋକର ଆଲୋକିତ ପଥେ
ଆମକୁ ଆଗେଇ ନିଅ ।



# କୃପା ଓ ନିର୍ଭର

ମା—
ତୁମେ ଚଳାଇଲ ମତେ
ଚିର ବସନ୍ତ ଚରଣ ଚିହ୍ନ
ଚର୍ଚ୍ଚିତ ସ୍ମୃତ ପଥେ ।

ତୁମ କୃପା ଯେବେ ନ ଥାନ୍ତା ସ୍ୱାମି
ବ୍ୟାକୁଳ ହୁଅନ୍ତି ମୁଁ କି ତୁମ ପାଇଁ ?
ତପତ ମରୁରୁ ତୋଳିନେଲ ଶୀତ
ମନ୍ଦାକିନୀର ସ୍ରୋତେ
ମା—
ଆଗ୍ନେୟ ଗିରି ପଥେ
ନାଶି ଘୋର ଭୀତି ବାହିନେଲ ଜ୍ୟୋତି-
ସଜଳ ଜଳଦ ରଥେ ।

ଘନ ଗରଜନେ ଅକୂଳ ସାଗରେ
ଯାଉଥିଲି ବୁଡ଼ି ଦଦରା ନାବରେ
କାଣ୍ଡାରୀ ତୁମେ କି ସାହସ ଭରେ
ଲଗାଇଲ କୂଳେ ମତେ
ମା—
ତୁମେହିଁ ଆଣିଲ ସତେ !

ଚିର ବସନ୍ତ ଚରଣ ଚିହ୍ନ
ଚର୍ଚ୍ଚିତ ସ୍ମୃତ ପଥେ ।
ମା—
ତୁମେ ନ ଥିଲେଟି ପାଶେ
ହବା ହିପଦରେ ନିରଜନ ଘରେ
ନିଜ ସ୍ଥାଇ ମତେ ଗ୍ରାସେ ।

ହେ ଜଗଦ୍ଧାତ୍ରୀ ଦୁର୍ଗତି ହର
ଯୁଦ୍ଧ କ୍ଷେତ୍ରେ [illegible] ମତେ କର
ତୁମ ହାତେ ଦୁଇ ବାହୁ ମୋର ଧର
ନିର୍ଭୟ କର ହାସେ ।

ମା—
ତୁମେ ନ ଥିଲେଟି ପାଶେ
ଦାରୁଣ ଘୂର୍ଣ୍ଣି ତାଣ୍ଡବ ରଚେ
ନଠୂର ଅଟ୍ଟହାସେ ।

ମା—
ତୁମେ ଥିଲେ ପାଶେ ପାଶେ
ଭରି ଉଠେ ବନ ନିଦାଘ ଜୀବନ
ଶୁଭ୍ର ମାଳତୀ ହାସେ ।

ପଲ୍ଲବ ହୃଦ- ଉଦ୍ୟାନ କଳ
କାମିନୀ ବକୁଳ କେତକୀ ନଆଳ
ବିଳସେ ମଞ୍ଜୁ ବଞ୍ଜୁଳେ ଢଳ
ମଳୟର ମୃଦୁ ଶ୍ୱାସେ ।

ମା—
ତୁମେ ଥିଲେ ଚଉପାଶେ
ଭରିଉଠେ ଦାବ- ଦଗ୍ଧ କାନନ
ନନ୍ଦନ ମଧୁ ହାସେ ।



## ତୁମେ ମୋର ମାଆ

ଡାକିଲେ ଓ' କର ତୁମେ ମୋର ମା
ନ ମାଗିଲେ ଦିଅ ସବୁ ଲୋଡ଼ା ମୋ ଯାହା ।
କାନ୍ଦିଲେ ଲୁହ ପୋଛ ପଛୁ ଆସି ମୋ
ଡରିଲେଟି ଡର ଭୟ ଦିଅ ନାଶି ଗୋ ।
ସଜନେ ବିଜନେ ସିନା ତୁମେ ମୋ ସାହା
ତୁମ ବିନା ନାହିଁ ମୋର ଆନ ଯେ ରାହା ।
ଡାକିଲେ ଓ' କର ତୁମେ ମୋର ମା
ନ ମାଗିଲେ ଦିଅ ସବୁ ଲୋଡ଼ା ମୋ ଯାହା ।
ରୋଗ ଶୋକେ ବିହ୍ଵଳ ମୁହିଁ ଦିଅ ସାଉଁଳି
ଆଶା ଦିଅ ନିରାଶାରେ ଗଲେ ଝାଉଁଳି ।
ଶୋକେ ମହା ସାନ୍ତ୍ୱନା ବାଣୀ ଢାଳ ଗୋ
ଅନ୍ଧାର ଘରେ ମୋର ଦୀପ ଜାଳ ଗୋ ।
ଶାନ୍ତି ବା ଯୁଦ୍ଧେ ତୁମେ ମୋ ସାହା
ଆହା ! ସତେ କି ମଧୁର ସେ ଟିକି ନାଆଁ !
ଡାକିଲେ ଓ' କର ତୁମେ ମୋର ମା
ନ ମାଗିଲେ ଦିଅ ସବୁ ଲୋଡ଼ା ମୋ ଯାହା ।
ଯହିଁ ଚାହେଁ ତହିଁ ଦେଖେ ତୁମେ ମୋର ମା
ତୁମ ବିନା ନାହିଁ ମୋର ନାହିଁ କେ ସାହା ।
ସପନେ ଜାଗରଣେ ତୁମେ ଧିଆନ
ତୁମ ବିନା କିଛି ମୁହିଁ ନ ଜାଣେ ଆନ ।
ଯୁଗେ ଯୁଗେ ମୁହିଁ ଝିଅ-ତୁମେ ମୋ ମାଆ
ଛୁଇଁ ପର କଡ଼େ କଡ଼େ ସଦା ଗୋ ଥାଆ ।
ଡାକିଲେ ଓ' କର ତୁମେ ମୋର ମା
ନ ମାଗିଲେ ଦିଅ ସବୁ ଲୋଡ଼ା ମୋ ଯାହା ।



## ଯୋଗ-ଯଜ୍ଞ

ଜୀବନ ଯେ ଏକ ନିରବଚ୍ଛିନ୍ନ
ମାତୃ ପୂଜା
ଜାଣି ନଥିଲ ମୁଁ ଶୁଣି ନଥିଲ ମୁଁ
ହେ ପରା-ଜନନୀ !
ହେ ଦଶଭୁଜା !

ପୂଜୁଥିଲି ଯବେ ଓଷା ପରବରେ
ତୁମରି ମୂରତି କାଠ ପାଷାଣରେ
ଅରପି ପ୍ରଦୀପ ଚନ୍ଦନ ଧୂପ
କରି ଉପବାସ
ମାନସ ବୁଝା
ଜାଣି ନଥିଲି ମୁଁ ଜୀବନ ଯେ ଏକ
ନିରବଚ୍ଛିନ୍ନ
ମାତୃପୂଜା ।

ହୃଦାସନେ ତୁମେ କରଅଛୁ ବିଜେ
ଯୋଗ-ପଥେ ଆଣି ବୁଝାଇଲ ନିଜେ
ଦେହ-ମନ୍ଦିରେ ହୃଦୟର ପୀଠେ
ଅନ୍ତରାଳ ହୁଏ
ମୁଁ ଆଖିବୁଜା

ଅନ୍ଧାର ଖାଲି- ଅନ୍ଧାର ଦେଖେଁ
କରିବ ଗୋ ତହିଁ
କାହାର ପୂଜା !

ଜାଗ୍ରତ କର କର ସଚେତନ
ବିନାଶ କର ମୋ ସକଳ ବିଘ୍ନ
ଯୋଗର ଗ୍ରନ୍ଥ ଯେତେ ଘୋଷି ହେଲେ
ନୋହିଲି ତ କିଛି
ତୁମକୁ ବୁଝି ।
ଅନ୍ତରତମା ଅନ୍ତରେ ଲୁଚି
ତୁମେ ହିଁ କରୁଛ
ତୁମର ପୂଜା
ହେ ଆଦ୍ୟ-ଜନନୀ ଶକତି ଦାୟିନୀ
ଜ୍ୟୋତି ସ୍ୱରୂପିଣୀ
ଅପୂର୍ବ ଭୂଜା !



## ସ୍ୱରାଜ୍ୟ

ସମ୍ରାଟର ସମ୍ରାଟରେ
ଦେଖିଛ କେବେ ନୟନ ଫେରି ?
ଖାଣ୍ଟି କଡ଼ା ଆଦେଶ ତାର
ମାନିଛ ସବୁ ମାନିଛ କେହି ?
ସମ୍ରାଟର······

ମନ୍ତ୍ରୀ-ମନ ମୌନ ବ୍ରତ
ଅନ୍ଧକାରେ ହଜାଇ ସତ
'ଆଜ୍ଞା' ଶୁଭେ "ଅଜ୍ଞାନର
ରାଜ୍ୟ ଆଉ ରହିବ ନାହିଁ" ।
ସମ୍ରାଟର······

ପ୍ରାଣର ଦୂତ ସେ ଦେଶେ ଥାଏ
ଯହିଁ ତା ଇଚ୍ଛା ତହିଁ ସେ ଯାଏ
ଦାସର ଦାସ ଶରୀର ହାଏ
ବଳପେ ରୋଗ କବଳେ ଶୋଇ ।

ସମ୍ରାଟର ସମ୍ରାଟରେ
ଦେଖିଛ କେବେ ନୟନ ଫେଇ ?
ଆନନ୍ଦର ଅମର ରାଜା
ତା ଦେଶେ ବାଜେ ମରଣ ବାଜା ?
ସାମ୍ରାଜ୍ଞୀ ତା ସର୍ବଜୟୀ
ଆଲୋକ ଦେଖ ଆଲୋକମୟୀ ।
ସମ୍ରାଟର·········

ମୋ ଅନ୍ତର ପ୍ରଦେଶ ଆଜ
ଅସହଯୋଗେ ପଡ଼ଇ ଭଜ ।
ସାମ୍ୟବାଦ ପ୍ରଚୁର ବାଣୀ
ବକ୍ତୃତାର ବିଳାସ ପାଇଁ
ସମ୍ରାଟର······

ରାଜାଧିରାଜ ନ ଦେଇ ପୀଡ଼ା
ସୁନାର ପୃଥ୍ୱୀ କରଇ ଛୁଡ଼ା ।
ତନ୍ତ୍ର ନବ ଆଚରି-ତାର
ନିଜରେ ଆଗେ ଗଢ଼ିବ ମୁହିଁ ।
ସମ୍ରାଟର······

ଅନ୍ତର୍ବାହ୍ୟ ଯୁକ୍ତ ରାଜ୍ୟ
ଅନ୍ଧ ମନ୍ତ୍ରୀ ଅଙ୍କ କାର୍ଯ୍ୟ
ସର୍ବୋତ୍ତମ ରାଷ୍ଟ୍ର ଚଳେ
ନିମ୍ନତମ ଧାନରେ ନେଇ !
ସମ୍ରାଟର·········

ଏ ଅରାଜକ ସମସ୍ୟାର
ସମାଧାନ ହିଁ ମୁଁ ନିଜେ ତାର ।
'ସ୍ୱରାଜ୍ୟ' ହିଁ 'ଅନ୍ତ-ରାଜ୍ୟ'
ଶାସନ ତାର ପ୍ରେମରେ ନେଇ ।
ସମ୍ରାଟର ସମ୍ରାଟରେ
ଦେଖିଛ କେବେ ଦେଖିଛ କେବେ ?

●

# ଦେବ ମୁହୂର୍ତ୍ତ

ପାଦେ ମୁଁ ଚାଲିଲେ ତୋହର ଆଡ଼କୁ
ଆସୁ ଶତେ ପାଦ ଧାଇଁ ମା,
ନିତି ନିତି ଶୁଣେ ଯୋଗ ଦରଶନେ
ତଥାପି ତ ଯାଏ ନାହିଁ ମା ।

ଦିଏ ଉପଦେଶ ଚାଲ ସତ ବାଟେ
ନିଜେ ଚାଲି ସଦା ଅମଡ଼ା ଅବାଟେ
ଧୂଳି ଦିଏ ସିନା ସକଳ ଆଖିରେ
ସବୁ ଦେଖୁଥାଉ ଚାହିଁ ମା
ପାଦେ ମୁଁ ଚାଲିଲେ ତୋହର ଆଡ଼କୁ
ଆସୁ ଶତେ ପାଦ ଧାଇଁ ମା ।

ପୁତ୍ର ଅପରାଧେ ପିତା ଦିଏ ଦଣ୍ଡ
ରାଜ-ଦ୍ରୋହେ ପ୍ରଜା ଯେବେ ହାତକଡ଼ି
ଯେତେ ଦୋଷ କଲେ କିଛି ତ ଧରୁନା
ସ୍ନେହଶୀଳା କ୍ଷମାମୟୀ ମା
ପାଦେ ମୁଁ ଚାଲିଲେ ତୋହର ଆଡ଼କୁ
ଆସୁ ଶତେ ପାଦ ଧାଇଁ ମା ।

ତତେ ନ ଖୋଜିଲେ ମତେ ତୁହି ଚାହୁଁ
ଡାକିବି ବୋଲି ମୁଁ କାନ ଡେରିଥାଉ
ମୁଁ ପାଶୋରିଲେ ବି ତୁ ପାଶୋରୁ ନାହିଁ
ଚେତାଉ ଯାତନା ଦେଇ ମା
ପାଦେ ମୁଁ ଚାଲିଲେ ତୋହର ଆଡ଼କୁ
ଆସୁ ଶତେ ପାଦ ଧାଇଁ ମା ।

ଏ ଯୁଗେ ଜନନୀ ରୂପେ ଅବତର
ନିଜେ ସବୁ ଦୁଃଖ ନେଇଅଛୁ ବର
ନେଏ ମାଆ ଏବେ ହାତ ଧର ଧର
ନ ପାରେ ମୁଁ ଏକା ଯାଇ ମା
ପାଦେ ମୁଁ ଚାଲିଲେ ତୋହର ଆଡ଼କୁ
ଆସୁ ଶହେ ପାଦ ଧାଇଁ ମା ।



## ରୂପାନ୍ତର

ମା—
ତୁମର ମଧୁ ମଳୟେ କର
ଚନ୍ଦନ ଗୋ ମତେ
ବନର ମୁଁ ଯେ ଲମ୍ବ ତରୁ
ଝୁରେ ମୁଁ ବନପଥେ ।

କୋମଳ ତୁମ ପରଶ ଲାଗି
ଶିଶିର ଲୁହେ ରହୁଛି ଜାଗି
କୃପାର ଶିଳେ ବ୍ୟଥାର ଜଳେ
ଘୋର କ ଅବରତେ
ମା—
ତୁମର ମଧୁ ମଳୟେ କର
ଚନ୍ଦନ ଗୋ ମତେ ।

ତକ୍ତ ତନୁ ତକ୍ତ ମନ
ରକ୍ତ ପ୍ରାଣେ କ ପ୍ରୟୋଜନ
ଆସ ହେ ମମ ପ୍ରେମର ଧନ
ସୁବାସ କର ମତେ
ବନର ମୁଁ ଯେ ଲମ୍ବ ତରୁ
ଡାକଇ ବନପଥେ ।

ପ୍ରଭୁ—

ତୁମର ମଧୁ ମଳୟେ କର
ଚନ୍ଦନ ହେ ମତେ !



## ମହାତୀର୍ଥ ଓଡ଼ିଶା

ମାତୃଭବନ ଡାକେ ଆସ ଶ୍ରୀମା ଆସ ଗୋ
ଅନ୍ତର ତମଃ ମହା ମନ୍ତ୍ରେ ନାଶ ଗୋ ।
ଅଚେତନ କାରାଗାରୁ ହଅ ଚିର ମୁକତ
ତବ ଶିଶୁ ଖାର ଭୁଜେ ଭର ମହା ଶକତ ।
ଛଟକ 'କଟକ' କହେ ଅହରହ ବାହୁନ
ଅତ ମାନସର ପଥେ ନୟନ ମୋ ପାଉନ ।
କାଠଯୋଡ଼ି ନଦୀଖରେ ଡାକେ ବନ କପୋଖ
ଦୟା ବହ୍ନ ଦୟାମୟୀ ଆସ ଏବେ ଅଦବତ !
ନବ ଯୁଗ ନବ ପ୍ରାଣେ କର ତୁମେ ବାସ ହେ
ଡାକେ 'ଭୁବନେଶ୍ୱର' ଆସ ପ୍ରଭୁ ଆସ ହେ ।
ଶକତର ପୂଜା ବନା ମୃତ ପ୍ରାୟ ମୁଲକ
ଠାବେ ଠାବେ ହଅ ଜାଳ ଅରୋଭଲ୍ ଆଲୋକ ।
ଶସ୍ୟ ବମଣ୍ଡିତା ହୋଇ ଉଠୁ ଧରଣୀ
ଗାଉ କୃଷି ଗୀତ ତବ ବାହୁ ସୁନା ତରଣୀ ।
ଧନଧାନ୍ୟରେ ଭର ଉଠୁ ସବୁ ଅମାର
ଲକ୍ଷ୍ମୀର ଲକ୍ଷ୍ମୀ ଗୋ ! ସନ୍ତାନେ ନ ମାର ।
ଡାକେ 'ଗୋପୀନାଥପୁର' ମହାଋଷି ଆସ ହେ
ତବ ମହା କୃପା ବଳେ ତମିର ବନାଶ ହେ ।
କାନେ କାନେ ବ୍ୟାପି ତୁମ ଅଦଭୁତ କରଣୀ
ସତ୍ୟର ପ୍ରକାଶନେ ଜାଗେ ଆଜ ଧରଣୀ ।
ନବ ଯୁଗ ନବ ଯୋଗୀ ଶ୍ରୀଅରବନ୍ଦ
ଏ ମର ମାନବେ ହଅ ଅମର ଆନନ୍ଦ ।

ଢାଳେ 'ଜଗତ୍‌ସିଂହପୁର' ପଦେ ତବ ପ୍ରଣାମ
ଦିବ୍ୟ ଜୀବନ ପ୍ରେମୀ ସ୍ମରି ତୁମ ସୁନାମ ।
'ଜୟପୁର' ନବ ପଥ ଅନ୍ତରେ ବତାଇ
ଦିଏ ମହା ଭାଗବତ ଚେତନାରେ ଚେତାଇ ।
ତୀର୍ଥର ତୀର୍ଥେ ଏ ଉତ୍କଳ ଭାଇଜେ
ଧନ୍ୟ ହୋଇଛୁ ପ୍ରଭୁ ତୁମକୁ ହିଁ ପାଇ ଯେ ।
ଓଁ ଶ୍ରୀ ଆନନ୍ଦିତା ପ୍ରେମମୟୀ ଆସ ଗୋ
ଜଡ଼େ ଦିଅ ଚେତନାର ନବ ଜୀବନ୍ୟାସ ଗୋ ।

●

## ତପସ୍ୟା-ଚତୁଷ୍ଟୟ

ହେ
ଯୋଗେଶ୍ୱର !
ଯୁଗାବତାର !
ବୃଦ୍ଧ ବାଳୁତ
ତରୁଣ ପ୍ରିୟ !
କୋଳରେ ବସାଇ
ହସାଇ ହସାଇ
ଦିବ୍ୟ ଜୀବନ
ପୀୟୂଷେ ରସାଇ
ଏହି ଦେହେ ତୁମ
'ସୁଷମା'ର ତପ
ଶିଖାଇ ଦିଅ
ଶିଖାଇ ଦିଅ !.........
ଶକ୍ତି ଆଧାର !
ଶକ୍ତି ସାଗର !
ଶକ୍ତିମୟୀ
ହେ
ଶକ୍ତିମୟ !

ସେ ମହା 'ଶକତି'
ଅଟଳ ଭକତି
ଅମୃତ ଟିକେ
ଚଖାଇ ଦିଅ
ଚଖାଇ ଦିଅ !.........

ହେ ଜନକ ! —ଅତି
ମାନସ ଶକତି
ଆଲୋକ ଦିଅ
ହେ
ଆଲୋକ ଦିଅ ।
ସରଳ ହୃଦୟ
ଶିଶୁ ସନ୍ତାନ
ତୁମ ବିନା କିଛି
ନ ଜାଣଇ ଆନ
ନୂତନ ସିଲଟେ
ତପ ଲିପି 'ଜ୍ଞାନ'
ଲେଖାଇ ଦିଅ
ଲେଖାଇ ନିଅ !.........
ଆଲୋକ ଦାତୀ ! ହେ
ଆଲୋକେଶ୍ୱର !
ଚତୁର୍ବିଧ ତପ-
ପୂର୍ଣ୍ଣ ଆକର !
ବିଶ୍ୱ ପ୍ରିୟ ହେ
ବ୍ୟଷ୍ଟି ପ୍ରିୟ—
ଭକତି ଦେଇ-
ମହାନ୍ ଇଚ୍ଛା-
ଶକତି ଦେଇ-
ସୁଷମା 'ଶକତି'
'ଜ୍ଞାନ' 'ପୀରତି'
ଯଜ୍ଞ-ପାବକେ
ପକାଇ ଦିଅ
ପକାଇ ଦିଅ ।



# ଦ୍ୱୈତ-ଲୀଳା

କେଉଁ ଚୌରର ପଶି 'ବିଶ୍ୱାସ' ଧନ
ହୃଦ ଘରୁ ନେଲା ଲୁଟି
ଖୋଜି ଖୋଜି ତାରେ ବିବଶ ହୁଏ ମୁଁ
ମାୟା-ମରୁ ପଥେ ଛୁଟି ।

ଊର୍ଦ୍ଧ୍ୱେ ଅନାଇ 'ଆସ୍ତ ହା' କହେ
କହୁ ବି ଶୁଣିବ ନାହିଁ
ବାତ-ବିଧୂନିତ ଶିଖା ପରି ଆଜି
ବିପଥେ ମୁଁ ଯିବ ଧାଇଁ ।

ସ୍ତମ୍ଭିତ ଆଜି 'ସମର୍ପଣ' ଯେ
ବୁଝେନାହିଁ ନିଶି ଦିବା
'ଭକ୍ତି' କି ସତେ ମୁକ୍ତି ଲଭିଛି
ହରାଇ ଆଲୋକ ବିଭା ।

'ପ୍ରତ୍ୟାଖ୍ୟାନ' ହେଲେ ଅଚେତନ
ଶୁଭେ ଚୈତନ୍ୟର ଡାକ
ବାତ୍ୟା ଧମକେ ନିସ୍ତ ପକ୍ଷୀ—
ଏ-ପାଖ-ନା-ଆରପାଖ ।

'ଆନ୍ତରିକତା' ଭୁଲେ ନିଜକଥା
ନିଷ୍ଠାରେ ପାଶୁଁ ତଡ଼ି
ଘୋର ତମିସ୍ରତ କାରାରେ ପକାଇ
'ଶ୍ରଦ୍ଧା'ର ହାତକଡ଼ି ।

ସର୍ବୋପରି ଯେ ସର୍ବୋତ୍ତମ
'କୃପା' ତା'ର ହୋଇ ଛୁଡ଼ା
ଆର୍ତ୍ତ ଜୀବନେ ଅଭୟ ପ୍ରଦାନେ
ଭାଙ୍ଗି ଦାନବ କ୍ରୀଡ଼ା ।



## ଅନ୍ତର ମୋର ବିକଶିତ କର

ଅନ୍ତର ମୋର ବିକଶିତ କର
ଅୟି ତ୍ରିଭୁବନ ମୋହିନୀ
ନିର୍ମଳ କର ଉଜ୍ଜ୍ୱଳ କର
ଜନକ-ଜନନୀ-ଜନନୀ ।

ନୀରବ କର ମୋ ମନର ଚିନ୍ତା
ସୁମଧୁର କର ବାଣୀ ମୋ
ଭୀରୁ ବୁକେ ଭର ବୀର ମହାତେଜ
ମଧୁମୟୀ ରାଜରାଣୀ ଗୋ ।

ସୁନ୍ଦର କର ଭାବନା ମୋହର
ସୁନ୍ଦର କର ଧର୍ମ
ଶୂନ୍ୟ ଜୀବନ ପୂର୍ଣ୍ଣ କର ମା'
ସୁନ୍ଦର କର କର୍ମ ।

ହେ କରୁଣାମୟି ! ଜ୍ୟୋତିର ଜ୍ୟୋତି ମା
ଭରିଦିଅ ସ୍ଥୂଳ ନୟନେ
ତମିସ୍ର ପଥ ହେଉ ପରିଣତ
ସୂର୍ଯ୍ୟ ଦୀପ୍ତ ଅୟନେ ।

ଜଡ଼ ମୁଁ ଯେସନେ ଚେତନ ପାଲଟେ
ତୁମର ଚରଣ ଛୁଇଁ ଗୋ
ତୁମ କୃପାବଶେ ଯେସନେଟି ଶେଷେ
ତୁମେ ହୋଇଯାଏ ମୁହିଁ ଗୋ ।

## ସାର୍ଥକ ଯୋଗ୍ୟତା

ଯୋଗ୍ୟ ହେବ ମୁଁ ଯୋଗ୍ୟ ହେବି
ତୁମରେ କେବଳ ହୃଦୟ ସେବ ।
କରୁଣା ସାଗରୁ କଣାଏ ଦିଅ—
ଅନ୍ଧକାର ମୁଁ—ଆଲୋକ ହେବ
ଆଲୋକ ହେବ ।

ଦୃଢ଼ ବିଶ୍ୱାସ ସିଲଟେ ସଦା
ନିଷ୍ଠା ଖଡ଼ରେ ପଢ଼ିବ ପାଠ—
ନ ନେଇ ପାଉଣା ନ ଦେଇ ଗ୍ରନ୍ଥି
ଗଢ଼ିବ ମୋ ନବ ଜୀବନ-ନଅଁ
ଜନନୀ ପ୍ରିୟ ।

କାହିଁ କେତେ ଦୂର ସିନ୍ଧୁ ତଟରେ
ଶ୍ରୀଅରବିନ୍ଦ କରିଛ ଘର
ଅନାବନା ଘାସ ନ ମଣି ମତେ
ସେ ମହା ଯଜ୍ଞେ ସମିଧ କର
ଯୋଗେଶ୍ୱର !

ଉଣେଇଶ ନବ ବାଆସ୍ତରି
ସାର୍ଥକ ହେବ ଆମରେ ଧରି ।
ଶତ ବାର୍ଷିକୀ ଯୋଗ୍ୟତାରେ
ଯୋଗ୍ୟ ହେଲେ ମୁଁ ତୁମରି କରେ
ଉତ୍ସବରେ ।

ଯୋଗ୍ୟ ହେବ ମୁଁ ଯୋଗ୍ୟ ହେବ
ତୁମରେ ନସ୍ତ ହୃଦସ୍ଥେ ସେବ
କରୁଣା ସାଗରୁ କଣାଏ ଦଅ—
ଅନ୍ଧକାର ମୁଁ—ଆଲୋକ ହେବ ।
ଆଲୋକ ହେବ ।



## ଅଗ୍ନିଶିଖା

କନକୋଜ୍ଜ୍ୱଳ
ଆଲୋକବରଣୀ
ଆଲୋକ ଦଅ ଗୋ
ଆଲୋକ ଦଅ ।

ଆଲୋକ ଗାଇଲେ ଆଲୋକିତ ପଥେ
ରୂପାନ୍ତରିତ କରିନଅ ମୋତେ
ଏତେ ଦିନେ ଯେବେ ପାଷାଣ ହୃଦୟ
ସରସ କରିଛ
ହେ ପରମା ପ୍ରିୟ
ଆଲୋକବରଣୀ ଆଲୋକର ରାଣୀ
ଆଲୋକ ଗାଇଲେ
ନଅ ଗୋ ନଅ !

ଆଲୋକବରଣୀ ହେ ଜ୍ୟୋତିର ରାଣୀ
ଶକତି ଦଅ ଗୋ
ଶକତି ଦଅ
ତାମସହରଣୀ ଦେବୀ ଚିନ୍ମୟୀ
ମାନବ ଦୁଃଖେ ହେଲ ମୃଣ୍ମୟୀ
ସକଳେ ଆଲୋକ ସେ ଆଲୋକ ଦେଶେ
ସେ ଆଲୋକ ପଥେ
ନଅ ଗୋ ନଅ

କନକ ଉଜ୍ଜ୍ୱଳ ଆଲୋକବରଣୀ
ଆଲୋକେଶ୍ୱରୀ
ଆଲୋକ ଦିଅ
ଆଲୋକ ଦିଅ
ଆଲୋକ ଦିଅ ।



## ସ୍ମରଣ ଓ ଅର୍ପଣ

ଅନ୍ତର ମୋର ଜାଗ୍ରତ କର
ଅନ୍ତରଯାମୀ ହେ
ସତ୍ୟପଥର ଶିଶୁ ସୈନ୍ୟ ମୁଁ
ସତ୍ୟର କାମୀ ହେ ।

ସେବାରେ ତୁମର ବାଧା ନ ଘଟାଏ
ବିଶ୍ୱ ଜନନୀ ଗୋ
ଘୋର ସଙ୍କଟୁ ଉଦ୍ଧାର କରେ
ବ୍ୟଥିତା ଧରଣୀ ଗୋ ।

ଚିନ୍ତାରେ ମତେ କର ସଚେତନ
ସକଳ କର୍ମେ ମୋ
ତୁମର ନାମଟି ଜପଇ ଯେପରି
ନିଭୃତ ମର୍ମେ ଗୋ ।

ତୁମର ଶପଥ ପୂର୍ଣ୍ଣ ହେଉ ମୋ
ପ୍ରତିଟି ନିଃଶ୍ୱାସେ
ତୁମର ଇଚ୍ଛା ସାର୍ଥକ ହେଉ
ଗଭୀର ବିଶ୍ୱାସେ ।

ବନ୍ଧୁ ଗୋ ସ୍ମରଣ ସଦା ଅରପଣ
ଆସ୍ପୃହା ପ୍ରବଳ
ଅନ୍ତର ଧନ ତମିର ବନାଣି
କର ସୁନର୍ମଳ ।
ତୁମ ସିଦ୍ଧିରେ ପ୍ରତ୍ତି ସତ୍ତ୍ୱ
ପ୍ରସ୍ତୁତ ହେଉ ମୋ
ମା—
ତୁମ ଇଚ୍ଛାରେ ମୋହର ଇଚ୍ଛା
ସଦା ଯୋଗଦେଉ ଗୋ ।

## ନବଜ୍ୟୋତି

ଘୋର ବାତ୍ୟାକତା ବଳପିବା ବୃଥା
ବୃଥା ଏଇ ହାହାକାର
ଏ ଦେବ ମୁହୂର୍ତ୍ତେ ଝରେ ନବଜ୍ୟୋତି
ଅପାର କରୁଣାଧର ।

ପୀଡ଼ିତା ଧରଣୀ ଲୁହ ପୋଛିବାକୁ
ଜଗତ ଜନନୀ ଆଜ
ଉଭା ହୋଇଛନ୍ତି ମାନବ ପୁରତେ
ମାନବୀର ତନୁ ସାଜ ।

ଦୁଃଖ ଆଉ କରନାହିଁ
ଆଖି ଆଡୁଆଳେ ଅପେକ୍ଷି ଅଛନ୍ତି
ସେ ଆଜ ତୋହର ପାଇଁ ।

ଅତି ମାନସର ଆଲୋକ ଝରଇ
ଆକାଶେ ବତାସେ ଜଳେ
ଗଗନ ପରଶୀ ବର୍ଣ୍ଣ ସଉଧେ
ମାଟିର କୁଟୀର ତଳେ ।

ନୀରବ ନିଶ୍ୱାସେ ସେବଇ ଧରଣୀ
ସେ ଅତି ମାନସ ଜ୍ୟୋତି
ନିସୃତରେ ନାଦ୍ଧ ବୃଥା ହେଉ ଧନ୍ଦ
ଝରସ କଂଦନ ପୋତି ?

ଶୁଣ୍ ତୁ ହୃଦୟେ ଗୃହେଁ—
ନବ ଜ୍ୟୋତି ଆଜ କ ନବ ବାରତା
ଆଣିଛୁ ତୋ ଲାଗି ଭାଇ ।

୦

## ମଧୁର ବର୍ଷ

ମହାକାଳର ବସନ୍ତ ଏ ଊନବିଂଶ ଏକସ୍ତ୍ରଶ
ଆନନ୍ଦର ମନ୍ଦାକିନୀ ଦିବ୍ୟ ଧାମୁଁ ଆସିଛି ଝରି ।
ସେ ମଧୁରସ ଚାଖିବାପାଇଁ ଆପ୍ତ ଦ୍ୱାରେ ଯେ ଥିଲ ଗୃହେଁ
ଆଧାର ଏବେ ମୁକ୍ତ କରି ତୃପ୍ତି ଲଭ ହୃଦୟ ଭରି
ସତ୍ୟଯୁଗ ବସନ୍ତ ଏ 'ମଧୁବର୍ଷ' ଏକସ୍ତ୍ରଶ ।
ଏଇ ମଧୁର ବର୍ଷ ଆଜ ସ୍ୱର୍ଗସୁଧା ଢାଳଇ ତା'ର
ଜ୍ୟୋତିର ମହା ଜଗତେ ବୁଡ଼ି କରହେ ତାରେ ଆବିଷ୍କାର
ସେ ବେଣୁଁ ସୁନା ପାଖୁଡ଼ାଗଣି ପଡ଼ୁଛି ଝରି ମରତେ ଆସି
ସାଉଁଟି ସବୁ ସଞ୍ଚ ରଖ ଅର୍ଘ୍ୟଥାଳ ହୃଦୟେ ଭରି
ଆସିଛି ମଧୁ ବସନ୍ତ ଏ ଊନବିଂଶ ଏକସ୍ତ୍ରଶ ।
ଜ୍ଞାନର ମହା ବିଶାଳମନ ବିଶ୍ୱବ୍ୟାପୀ ପ୍ରସାରି ଦିଅ
ସଫଳ କରି ଶକ୍ତି ତା'ର କର୍ମେ ସବୁ ବାନ୍ଧି ନିଅ ।
ସର୍ବେ ହୁଅ ପ୍ରସ୍ତୁତ ସେ ଆନନ୍ଦର ଦେବୀର ହସେ
ସ୍ୱର୍ଗେ ସେ ଯେ ହୋଇଛି ଉଭା ଅମୃତର କଳସ ଧରି
ନବ ଯୁଗର ବସନ୍ତ ଏ ଊନବିଂଶ ଏକସ୍ତ୍ରଶ ।

●

## ସାଧନ ପୂଜନ

ସାଧନ ଭଜନ          କିଛି ତ ଜାଣେନା
ଜାଣିଅଛି ଖାଲି ତୁହି ମୋ ମାଆ
ତୋହର ଚରଣେ          ଲୁହ ପୋଛି ପୋଛି
ଜନମେ ଜନମେ ହୋଇଛି ସାହା ।

ଗିଆନ ଧିଆନ          ମୋ ସାତ ସପନ
ନପ୍ରୁତ ସ୍ମରଣ ନ ପାରେ କରି
ବାନ୍ଧିଅଛି ଆଶା          ତଥାପି ଭେଟିବି
ଏହି ଦେହେ ନବ ଜନମ ବରି ।

ମାନବ ଜଗତେ          ଦେଖା ଦେବେ ଆସି
ଅତି ମାନବର ନୂତନ ଜାତି
ମାଟିର ଧରଣୀ          ସରଗ ହୋଇବ
ବିରାଜିବ ଚିର ଆନନ୍ଦ ଶାନ୍ତି ।

କୋଟି ପୁଅ ଝିଅ          ଭେଟିବେ ଯେ ଦିନ
ଶ୍ରୀଚରଣେ ତୋର ନୁଆଇଁ ମଥା
ଭୁଲିବୁ କି ମାଆ          ଗୋଟିଏ ଝିଅର
ଗଭୀର ହୃଦୟ ଗୋପନ ବ୍ୟଥା ।

ମାଆ ଜାଣେ ସାହା—          ଭଜନ ପୂଜନ
ଜ୍ଞାନ ଧ୍ୟାନ ପଛେ ନ ଥାଉ ଜଣା
କୋଟିକି ଭିତରେ          ଏ ଗୋଟିକି ତୋର
ସେ ତାଲିକାରେ କି ନହେବ ଗଣା !

ଜନମ ଦାୟିନୀ ଜନମୀ କୃପାରୁ
ବଞ୍ଚିତ କେବେ ମୁଁ ହୋଇବ ନାହିଁ
କୃପା ମୋ ସମ୍ବଳ— ଆଶା ଶେଷ ବଳ
ଆଶାରେ ରହିଛି ସେ ପଥେ ଚାହିଁ ।

●

## ଆସ୍ପୃହା

ମୁଖର ମୋ ବାଣୀ ମା' ଗୋ ! ହେଉ ତୁମ ଜପ ପର
ହସ୍ତର ସକଳ କର୍ମ ସାଧେ ଯେଉଁ ପୂଜା ପର ।
ଭ୍ରମଣର ଚାଲି ହେଉ ଆଶ୍ରମର ପ୍ରଦକ୍ଷିଣ
ଯଜ୍ଞର ଆହୁତି ପ୍ରାପ୍ୟେ ହେଉ ମୋର ସୁଭୋଜନ ।
ଅଷ୍ଟାଙ୍ଗ ପ୍ରଣାମ ସମ ଶୟନ ଯେ ହେଉ ପ୍ରଭୁ
ଯେତେ ପ୍ରିୟ ଦରବ ମୋ ହେଉ ସେ ତୁମର ସବୁ ।
ଯେତେ ବିଧି ଧ୍ୟାନପର କରେ ସଦା ଆଚରଣ
ସବୁ ସେବା ପଦେ ତୁମ ହେଉ ଶେଷେ ସମର୍ପଣ ।
ଶୟନେ ପ୍ରଣାମ କରେଁ ମାଗୋ ! ତୁମ ଶ୍ରୀଚରଣେ
ସୁପ୍ତିରେ ସଚେତ ରହେଁ ରହେ ପୁଣି ଜାଗରଣେ ।
ଶ୍ରବଣେ ତୁମର ବାଣୀ ସୁଧା ଢାଳୁ ଅନୁକ୍ଷଣ
ନୟନେ ତୁମର ରୂପ ଶୋଭା କରେ ଦରଶନ ।
ହେ ପରମା ପ୍ରିୟତମା ବସ ମୋର ହୃଦାସନେ
ନୀରବ ନଷ୍ଟଲେ ସଦା ବୁଡ଼ିଥାଏଁ ତୁମ ଧ୍ୟାନେ ।
କରମେ ଜଡ଼ିତ ରହି ନଶ୍ବରମ ପର ଚନ୍ତେ
ସେହି ପଦ ପ୍ରାନ୍ତେ ମନ ପଡ଼ିଥାଉ ଅବିରତେ ।

●

# ଭରସା

ସକଳ ଭରସା     ଛାଡ଼ି ଶେଷେ ପ୍ରଭୁ
ଧରିଛି ତୁମରି ପଥ
ତୁମେ ଜାଣ ଏକା     ପୂରିବ କି ନାହିଁ
ଜୀବନର ମନୋରଥ ।

ପ୍ରତି ପଦକ୍ଷେପେ     ଅନୁଭବେ ମାତଃ
ଚଳାଉଛ ତୁମେ     ଧରି ମୋର ହାତ ।
ତୁମରି ଚରଣେ     ପଶିଛି ଶରଣ
ଛାଡ଼ି ନାନା ମୁନି ମତ
ସକଳ ଭରସା     ଛାଡ଼ି ଶେଷେ ପ୍ରଭୁ
ଧରିଛି ତୁମରି ପଥ ।

ରୋଗ ଶୋକେ ଶୋଇ     ରହିଥାଏ ଗୃହିଁ
ତୁମରି ପ୍ରସାଦ ଫୁଲେ
କି ଲୋଡ଼ା ଭେଷଜ     ଅଥବା ଭିଷକ
ଥାଉଁ ଜଣେ ତୁମ ତୁଲେ ।

କରିବାକୁ ମତେ     ତୁମେ ଚିରପ୍ରିୟ
ଗୃହାଣୀ ହସରେ     ଆଶୀର୍ବାଦ ଦିଅ
"କରିବୁ ଜୟ ତୁ     ଛାଡ଼ ଦେ ଭୟ ତୁ"
କହେ କ[illegible] ଅବିରତ
ସକଳ ଭରସା     ଛାଡ଼ି ଏବେ ପ୍ରଭୁ
ଧରିଛି ତୁମରି ପଥ ।

ତୁମ ଶୁଭାଶିଷ ରକ୍ଷା କବଚ ମୋ'
ସକଳ ବିପଦ ଦୁଃଖେ
ଶୋକ ତାପ ନଭେ ତୁମରି ମଧୁର
ନାମ ସୁମରିଲେ ମୁଖେ ।

ଲକ୍ଷ ଦିଏ ହୃଦ ବିଶ୍ୱାସ ସାଗରେ
ଜୀବନ ମରଣ ତୁମ ଦାୟିତ୍ୱରେ
ଛାଡ଼ିଦେଇ ମାତଃ ରହିଛୁ ନିଦକ
କୋଳେ ତବ ଶିଶୁ ବତ
ସକଳ ଭରସା ଛାଡ଼ି ଏବେ ପ୍ରଭୁ
ଧରିଛୁ ତୁମର ପଥ ।



## ଅରୋଗ୍ରାମ

ଅରୋଗ୍ରାମ
ଅରୋଗ୍ରାମ
ତୋ' ପାଦେ କରେ ପ୍ରଣାମ ।
ତୋର ପାଇଁ ଆଜ ଧନ୍ୟ ହେଲା ଏ
'ପାଣିପଇଲ' ର ନାମ ।
ଅରୋଗ୍ରାମ
ଅରୋଗ୍ରାମ !

ଯୁଗ ଯୁଗ ଥିଲୁ ଶୋଇ
ସରସ ସରସୀ 'କେତକୀ ଝର' ଏ
ଅନ୍ତର ଦିଏ ଧୋଇ ।

ଉଠିଲୁ ସହସା ଜାଗି
ଶ୍ରୀଅରବିନ୍ଦ ଜନ୍ମଶତକେ
'ଛୁଇ ଶିଖର ଲଗି' ।

ଶାନ୍ତ ସବୁଜ ପ୍ରାନ୍ତର ଏ ଯେ
ଲଗେ ବା ପୁଣ୍ୟ ଧାମ
ଅଭୋଗ୍ରାମ
ଅଭୋଗ୍ରାମ ।

ତୋ ନବ ଜାତକ ଗାନ
ଶୁଣିବାକୁ ଗିରି ଘନ ବନମାଳା
ଡେରିଛନ୍ତିରେ କାନ ।
ତରୁଣ ସୈନ୍ୟ ଦଳ
ସମବେତ ଆଜି ଲିଭାଇବା ଲାଗି
ମିଥ୍ୟାର ଦାବାନଳ ।
ମିଳିତ କଣ୍ଠେ ମନ୍ତ୍ର ଉଠେରେ
ବନ୍ଦେ ମାତରମ୍ ।

ଓଡ଼ିଆ ରାଇଜ ଗାଆଁର ଗାଆଁକୁ
ତୋ' ପଦେ କରେ ପ୍ରଣାମ ।
ଅଭୋଗ୍ରାମ···
ଅଭୋଗ୍ରାମ······
ଅଭୋଗ୍ରାମ·········



## ଜ୍ୟୋତିର୍ଗାନ

ଡାକେ ଅନ୍ତମାନସ—

ଅଛ ଯେତେ, ହେ ଆଜ

ଆଗାମୀ କାଳର ଆଲୋକ ଯୁଗର,
ଜ୍ଞାନ, ପ୍ରେମ, ଅମୃତର ସତ୍ୟବ୍ରତ ସୈନିକ
ଜଗତ, ଜୀବନର ସତ୍ୟ କର ପ୍ରକାଶ
ଡାକେ ଅନ୍ତ ମାନସ ।............

ଦେବଲଗ୍ନ ଘଣ୍ଟାନାଦ ଶୁଭେ ଠଅଂ ଠଅଂ
ବୀର କଣ୍ଠେ ସର୍ବେ ଗାଅ ବନ୍ଦେ ମାତରମ୍ ।
ନବ ଉଷା ଦିଏ ନବ ଜ୍ୟୋତି ଆଶ୍ୱାସ ।
ଗୃହିଁ ନବ ଛନ୍ଦେ ଉଗ୍ର କାଳ ଝମ ବିକାଶ ।
ହସେ ମାଟି, ନାଚେ ପାଣି ଆକାଶ ଯେ ବତାସ
ଡାକେ ଅନ୍ତମାନସ ।.........

ଜାଗେ ଅଗ୍ରେଭଲ ଆତ୍ମାର ଭୂମି—ଡାକଇ ପଣ୍ଡିତେଷ୍ଟ
ଆସରେ ପାନ୍ଥ, ତରୁଣ, କାନ୍ତ, ବଜାଇ ବିଜୟ ଭେରୀ
ଦୁର୍ଗତି ପଥେ ଆଗେଇ ଚାଲ୍ ଜୈତ୍ର ଗୀତ ଗାଇ
ସ୍ୱର୍ଗଲୋକ ସନ୍ଧାନେ ହେ ଉର୍ଦ୍ଧ୍ୱ ଲୋକେ ଚାହିଁ ।
ଖୋଲରେ ଖୋଲ ସର୍ବନାଶୀ ମୃତ୍ୟୁ-ନାଗପାଶ ।
ଡାକେ ଅନ୍ତ ମାନସ ।............



## ପ୍ରକାଶକଙ୍କ ଅଭିମତ

ଓଡ଼ିଶାର ସ୍ୱନାମଧନ୍ୟା ନାୟିକବି ଶ୍ରୀମତୀ ବିଦ୍ୟୁତ୍‌ପ୍ରଭା ଦେବୀଙ୍କ ପ୍ରଣୀତ "ମାଟି ପାଣି ପବନ" କବିତା ପୁସ୍ତକଟି ଏକ ସ୍ୱଚ୍ଛ, ଶୁଦ୍ଧ ସାବଲୀଳ କବିପ୍ରତିଭାର ଅପୂର୍ବ ନିଦର୍ଶନ । ଏପରି ଏକ ପୁସ୍ତକ ପ୍ରକାଶ କରି ଆମ୍ଭେମାନେ ନିଜକୁ କୃତକୃତ୍ୟ ମନେ କରୁଛୁ ଏବଂ ଆଶା ଏହି ପୁସ୍ତକଟି ଓଡିଶାର ପାଠକ ମହଲରେ ବିଶେଷ କରି କିଶୋରମାନଙ୍କଦ୍ୱାରା ବିଶେଷଭାବେ ଆଦୃତ ହେବ । ଏହାର ପ୍ରକାଶନରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ କିଛି ଆର୍ଥିକ ସହାୟତା କରିଥିବାରୁ ଏକାଡେମୀର କର୍ତ୍ତୃପକ୍ଷଙ୍କ ନିକଟରେ ଆମ୍ଭେମାନେ କୃତଜ୍ଞତା ଜ୍ଞାପନ କରୁଛୁ । ଏହାଛଡ଼ା ପୁସ୍ତକରେ ସନ୍ନିବେଶିତ ବିଭିନ୍ନ ଚିତ୍ରଗୁଡ଼ିକ ଉଦୀୟମାନ ଶିଳ୍ପୀ ଶ୍ରୀ ଦୁର୍ଗାଚରଣ ପଣ୍ଡାଙ୍କ କୃତ । ଏଥି ନିମିତ୍ତ ଶିଳ୍ପୀଙ୍କୁ ଆମ୍ଭେମାନେ ଗଭୀର ଶ୍ରଦ୍ଧା ଜଣାଉଛୁ ଓ ଓଡ଼ିଶାରେ ଏହି ପୁସ୍ତକର ବହୁଳ ପ୍ରସାର କାମନା କରୁଛୁ ।

— ପ୍ରକାଶକ

ଏଇ ମାଟି ଆମ
ପରମ ବନ୍ଧୁ
ଏଇ ପାଣି ଆମ
ଜୀବନ ରେ

ବଞ୍ଚୁଛୁ ଆମେ
ଆକାଶେ ଆଲୋକେ
ବଞ୍ଚୁଛୁ ଆମେ
ପବନରେ ।

ଏଇ ଅବଚେତନାର
　　　　ମାଟି ମୂଳଦୁଆ ରେ'
ପାଲଟାଏ ଚେହେରା ତା
　　　　କେତେ ନୂଆ ନୂଆ ରେ ।
ମହାପଥେ ଚେତନାର
　　　　ହେବା ଯେତେ ଆଗୁସାର
ଆଲୋକର କଢି ଆମେ
　　　　ଆଲୋକର ଛୁଆ ରେ ।
ଫୁଟିବା ଏ ମାଟି ତଳୁ,
　　　　ହୋଇ ଜ୍ୟୋତିମୁହାଁ ରେ ॥

# ସର୍ବଂସହା ମାଟି

ସରବ ସହଣୀ ମାଟି
ସବୁର ଉପରେ ସେନେହ ତୋହର
ସମାନେ ଦେଇଛୁ ବାଣ୍ଟି ।

ତୋର ମିଠାପାଣି ତୋ' ଧୀର ପବନ
ଦେହେ ମୋ ଦେଇଛୁ ବଳ
ଶକତ ଦେଇଛୁ ତୃପତ ଦେଇଛୁ
ତୋ ଗଛ ଲତାର ଫଳ ।

ସବୁଜ ଘାସର କଅଁଳ ବଛଣା
ଢଏ କ ଆରାମ ମତେ
ମାଆ ପର ମୋର ଅଳ ଅରଦଳ
କେତେ ନ ସହୁଛୁ ସତେ ।

ଦେହ ଦୁଃଖ ପାଇଁ ସାଇତଛୁ କେତେ
ଚେରମୂଳ ଗଛ ଲତା
ମନ ସୁଖ ଲାଗି ନଈ ସମୁଦ୍ରରେ
ଭରଅଛୁ ହସ କଥା ।

ବୁକୁ ମୋ ଫୁଲଏ ଆଖି ମୋ ଭୁଲଏ
ତୋ' ବଣ ପକ୍ଷୀର ଡାକ
ସରଗ ଡାକିଲେ ମନ ବଳେ ନାହିଁ
ଛୁଡ଼ବାକୁ ତୋର କାଖ ।

ଜନମ କାଳୁ ଯେ ଦେହେ ତୋ ଆଘାତ
କେତେ ନ ଦେଇଛୁ ମୁହିଁ
ନିଜ ଛୁଆ ବୋଲି ସବୁ ଦୋଷ ସିନା
ଷମିଅଛୁ ଏକା ତୁହି ।

ଯେତେ ରାଗ ରୋଷ କରେ ତୋହ ପାଖେ
ମାଆ ବୋଲି ଯାଉ ଭୁଲି
କେତେ ତପ କରି ଏଇ ଜନମରେ
ଆସିଛୁ ତୋ' ଦେଶେ ବୁଲି ।

ଅମାପ ଧରମୁଁ ଦେଏ ଟିକେ ମତେ
ନଦା ହେଉ ମୋର ଚ୍ଛତି
ନିଜେ ଦୁଃଖ ସହି ଏ ଜଗତ ପାଇଁ
ଲୁଗିପଡ଼େ ଦିନ ରାତି ।

ଦିହ ସିନା ତୋର ପାହାଡ଼ ପଥର
କଅଁଳ ପତର ପ୍ରାଣ
ଦୁଃଖ ଦଡ଼ମଡ଼ ସହିବାକୁ ମତେ
କରି ଦେ ତୋ ପରି ଟାଣ ।

ତୋର ମୁକତିରେ ମୋର ମୁକତି ମା
ତୋର ହସେ ମୋର ହସ
ତୋହରି ଅନ୍ତର ଆଦେଶେ ଚଳେ ମୁଁ
ଘୋଷି ତୋର ମହାଯଶ ।

ଚିର ଦୁଃଖର ତୋ ପାହାନ୍ତି ଅନ୍ଧାର
ରାତି ଆସୁଅଛୁ ପାହି
ସେ ନୂଆ ସପନେ ଫୁଲେ ମୁଁ ଆନନ୍ଦେ
ଜୟଗାନ ତୋର ଗାଇ ।

ତୁହି ଦେବଭୂମି ତୁହି ବୀରଭୂମି
ତୁହି ମୋ ଭାରତ ମାଆ
ତୋର ପାଦଧୂଳି ମୁଣ୍ଡେ ହୋଇ ବୋଳି
ରଖିବ ତୋହରି ନାଆଁ ।

ଚେତନ-ତରଙ୍ଗ-ମାଟି
କେଉଁଠି ହଜଛୁ ଖୋଜି ଦେଏ ମୋର
ଚେତନାର ଶୁଦ୍ଧକାଠି



## ମାଟି-କଥା

ମତେ ଯେତେ ଖାଲ କର
ପୂରିଯିବ ମୁଁ ରେ ପୂରିଯିବ ।
ମତେ ଯେତେ ହାଣ କାଟ
ହସୁଥିବ ମୁଁ ତ ହସୁଥିବ ।

ମତେ ଯେତେ ଖୋଳ ତାଡ଼
ଦୁଃଖ ନାହିଁ ଟିକେ ଦୁଃଖ ନାହିଁ।
ମତେ ଯେତେ ମାର ପିଟ
ଆକାଶରେ ଖାଲି ଥାଏ ଚୁହିଁ ।

ଶୁଣ ଦୁନଆର ଯେତେ
ହେ ଦୁଇଦାନଆ ଚୁଣିଆ ହେ
କାର ନନ୍ଦା ଅପମାନେ
ନ ଦେଖାଅ ବଡ଼ପଣିଆ ହେ ।

ଦେଖ ତମ ନଜ ହାତେ
ନାହିଁ ତମ ନଜ ଦାନାକନା
ଛଅ ଋତୁ ବାରମାସ
ନରେଖି ନରେଖି ମତେ ଅନା ।

ଘନ ବରଷାରେ ମୋର
ଚକଣ ଶାଗୁଆ ଶାଢ଼ୀ ଦେଖ
ପୁଣି ଘୋର ଗୀଷ୍ମରେ
ଲଙ୍ଗଳା ଫୁଙ୍ଗୁଳା ରୂପ ଭେକ ।

ଯେଉଁ ସ୍ୱେଦ୍‌ ବସନ୍ତରେ
ଗୋରୁ ଚକ ଚକ ମୋର ବଦନ
ଆଜ ଶୀତେ ଥାଏ କ ହେ
ଚେଡ଼େ ଲେଭମାସ୍ଟ ଚେଡ଼େ ପ୍ରିସ୍ମ ।

ମୋର ଋତୁଚକ ପର
ତୁମ ଗ୍ରହ ଚକ ଘୂରୁଥାଏ
ଦୁଃଖ ପରଦା ଉହାଡ଼େ
ସୁଖ ଉଷା ଦେଖ ନଜ ଛୁଏଁ ।

ସଦା ରଖି ସମଭାବ
ଏକ ମଣ ମାନ ଅପମାନ
ଗାଇ ଆଲୋକେ ଅନ୍ଧାରେ
ବଧାତାର ଶୁଭ ଜୟଗାନ ।

ବେଣି ଖୁସି ହୁଅ ନାହିଁ
ମନ ଫୁଲାଣିଆ ସ୍ୱର ମେଲ
ଛପି ପଚ୍ଛଡ଼ୁ ଆସୁଛି
ଦୁଃଖ ଖର ସୁଅ ନେବ ଠେଲ ।

ତୁମେ ସନ୍ତାପେ ନୟନୁ
ପୋଛନାହିଁ ଲୁହ ପୋଛନାହିଁ
ଯେଉଁ ହରଷ ଆସୁଛି
ତୁମ ଓଠେ ହସ ଦେବାପାଇଁ ।

ମହା ସମୁଦ୍ରର ତଳେ
ସପନ ଦେଖେ ମୁଁ ଶୋଇ ଶୋଇ
କେତେ ଯୁଗ ମହାଯୁଗ
ଗଲେଣି ମୋ' ମୁଣ୍ଡେ ପାଦ ଥୋଇ ।

ଅଛି ମୋ' ଭିତରେ ଲୁଚି
ଆକାଶ ପୃଥିବୀ ଇତିହାସ
ସେହି ଗୋପନ ଦୁଆର
ଖୋଲିବ କିଏ ସେ ଆସ ଆସ ।



## ମାଟି-ଶେଯ

ପିଲ୍ଲେ ଶୋଇଲି ମାଟି ତଳେ
ମାଟିର ବିଛଣା ମାଟି ଘରେ ।

କି ଚୁମ୍ବକ ଥିଲା ତା'ର ଦେହେ
ଟାଣିନେଲା ମତେ ଅତି ସ୍ନେହେ ।

ଦୁଇ ପ୍ରାଣେ ଆମ ହେଲା ଯାହା
ମନେ ତ ନ ପଡ଼େ ଆଜ ତାହା ।

କାଳର ପରଦା ଧୀରେ ଟଳି
ଆସେ କଇଶୋର ଥରି ଥରି ।

ମାଆ କହେ "ପଢ଼ ବାପ, ଧନ"
ପଢ଼ଆରେ କେଉଁଣେ ବୁଲେ ମନ ।

ଧମକରେ ସିନା ପଢ଼େ ପାଠ
ଗୋଡ଼ ଖୋଜୁଥାଏ ଚଲା ବାଟ ।

ଚଟଶାଳୀ ଘରୁ ଛୁଟି ମାରେ ।
ପାଠ ହଜଯାଏ ଲୁହ ଧାରେ ।

ଡାକେ ବଣ ପକ୍ଷୀ ଡାକେ ମାଟି
ଲେଖା ପଢ଼ା ଏକ ମହା ଘାଟି ।

ଯହୁଁ ବଡ଼ ହେଲ ଆଉ ଥରେ
ତା ପାଖେ ନଜରୁ ନଜେ ଦୂରେ ।

ଘର କଣ ଲାଗେ ଶୁଖା ରୁଖା
ବାହାର ଜଗତ କ ହାଲୁକା !

କାନ୍ଥ ନାହିଁ କାହିଁ ବାଡ଼ ନାହିଁ
ମୁକୁଳା ପବନ ସାଇଁ ସାଇଁ ।

ଉପର ଦଶଇ କେଡ଼େ ଭଲ
ଆକାଶ ଗୃହଦୁଆ ଝଲମଲ ।

ନୂଆ ଛନ ଛନ ମଳ ଘାସ
କଅଁଳ ଶେଯ ତା କ ଉଶ୍ବାସ ।

ନରମ ଗାଲଗୁ ମାଟିର ସେ
କେଡ଼େ ଆରମେ ମୁଁ ତହିଁ ବସେ ।

ମାଟିଶେଯ କେଡ଼େ ପରିଷ୍କାର
ମେଘହାତ ବାଜ ବାର ବାର ।

ଖସ୍ର ଶୁଖାଏ ତା ଖର ତେଜେ
ନାହିଁ ମଳ ଧୂଳ ମାଟି ଶେଯେ ।

ପବନ ଦଏ ତା ଝାଡ଼ ଝୁଡ଼
ପାଲସି ହୁଏ ସେ ଘାସେ ବୁଢ଼ ।

ସୁଖେ ଶୁଏ ଧମା ଗନ୍ଧ ପରେ ।
ମାଟି ଶେଯ ପ୍ରତ ଘରେ ଘରେ

ଯେତେ ଶୁଅ ତୁଳା ଶେଯ କର
ଭୂଇଁଶେଯେ କେହ ଲୁହେଁ ସର ।

ତା ବନ୍ଧୁଳ ତେଜ ଜାଣ କହେ
ଦେହୁଁ ସେ ଉତ୍ତାପ ଟାଣି ନଏ ।

ସବୁଜ କମ୍ବଳ ତାର ଝାଡ଼
ଶୋଇଲେ ଅଳସ ଯାଏ ଗୁଡ଼ ।
ଖେଳ ଖେଳ ତହିଁ ହେଲେ ଟାଣ
ଯୋଦ୍ଧା ପରି ହେବ ମୋର ପ୍ରାଣ ।
ଏଇ ନୂଆ ଯୁଗ ବଡ଼ ଘୋର
ସରଗ କରିବ ମାଟି ମୋର ।



## ମାଟିଦୀପ

କହେ ଗ୍ରୋଟ ମାଟିଦୀପ
ରଖ ମତେ ରୁଖାପରେ
ଢାଳ ତେଲ—ତେଜ ବଳି
ଜଳିବ ମୁଁ ଘରେ ଘରେ ।

ଗ୍ରୋଟ ହେଲେ ହେଲି କବା
ଡରେ ମତେ ଅନ୍ଧକାର
ଗ୍ରୋଟ ହେଲେ ହେଲି କସ
ଝରେ ମୋଠୁଁ ଜ୍ୟୋତିଧାର ।

ଆଲୁଅ ମୋ' ଆତ୍ମା ପରି
କି ସୁନ୍ଦର ତେଜସ୍ୱୀନ
ସ୍ଥିର ଶିଖା ଦେଖି ମୋର
କର ତୁମେ ସ୍ଥିର ଧ୍ୟାନ ।

ଅଙ୍କାବଙ୍କା ବାଟେ ଗଲେ
ନ ମିଳଇ ଶେଷେ କିଛୁ
ଚନ୍ଦ୍ରାଦକ-ବଭୂଚନ୍ଦ୍ରା
ନ କର ହେ ମିଛୁ ମିଛୁ ।

ଦୁବଘାସେ ଫୁଲ ଖସେ
 ସେ ଶବଦ ତାଙ୍କୁ ଜଣା
'ଭଗବାନ' 'ଭଗବାନ'
 ରଡ଼ି ଘୁଡ଼ି ବୃଥା ବଣା ।

ସଳିତାର ଆୟୁ ମୋର
 ଯାଏ ବୋଲି ବେଗେ ପୋଡ଼ି
ପରମାତ୍ମା ଆଲୋକେ ମୁଁ
 ଶିଖା ଆତ୍ମା ଦଏ ଯୋଡ଼ି ।

ଦେହ ସିନା କଳା ମୋର
 ମନ କେଡ଼େ ଚକ ଚକ
ବେଶଭୂଷା ସୁଗୁଣର
 ଚିହ୍ନ ନୁହେଁ ମନେ ରଖ ।

ନିଷ୍ଠାସହ ଧରିଥାଏଁ
 ଜାବୁଡ଼ି ମୋ ଧରିପରେ
ଏକଲୟେ ଗୃହ୍ୱଁ ଗୃହ୍ୱଁ
 ସକାଳର ସୁ ରୁପରେ ।

ଛୁହା ଛୁହା ଶ୍ୱେତ ବାଆ
 ଛୁଇଁ ମତେ ଯାଏ ଗୃଳି
ଜହଖୋର ଯୋଗୀ ପରି
 ବସିଥାଏ ଧ୍ୟାନେ ଖାଲି ।

ଭୁଲେନାହିଁ ସେବା କେବେ
 ଭୁଲେ ନାହିଁ ବନ୍ଧୁ ନାମ
ଅନ୍ଧାରେ ମୁଁ ବୁଡ଼ି ସଦା
 ଆଲୋକର କରେ କାମ ।



## ଜନମ ମାଟି

ଯିଏ ବା ଯେଉଁଠି ଥାଅରେ
ସରବେ ମାନବ ନିଜର ମାଟିକୁ
ନିଜେ କେଡ଼େ ଭଲ ପାଅରେ ।
ମାଆ ଠାରୁଁ ପ୍ରିୟ ସେ ଜନମ ମାଟି
ସୁନାର ଫସଲ ଫଳେ ଯହିଁ ଫାଟି
ସୁ ରୁଚିକ ଯାର ମନେ ଘୋର ବାଟି
ଯାଦୁକ ପରଶେ ପାଅରେ
ସରବେ ମାନବ ନିଜର ମାଟିକୁ
ନିଜେ କେଡ଼େ ଭଲ ପାଅରେ ।

ଗଢ଼ିଲା ଯେ ପିଣ୍ଡ ଗଢ଼ିଲା ଯେ ମନ
ଦେହେ ଦେଲା ବଳ ହୃଦେ ସଦଜ୍ଞାନ
ତା'ର ପଦ ତଳେ ଲଗାଇ ଧିଆନ
ତାହାରି ବନ୍ଦନା ଗାଅରେ
ଯିଏ ବା ଯେଉଁଠି ଥାଅରେ
ସରବେ ମାନବ ନିଜର ମାଟିକୁ
ନିଜେ କେଡ଼େ ଭଲ ପାଅରେ ।

ଯା ସଞ୍ଜ ସକାଳ ଯା'ର ବନ ବନ୍ତ
କୁଆଁର ପୂନଅଁ ଫଗୁଣ ପାହାନ୍ତ
ଯା'ର ହସ କାନ୍ଦ ସ୍ନେହ ସୁଖ ଶାନ୍ତ
କୋଟି କବତାରେ ଗାଅରେ
ଯିଏ ବା ଯେଉଁଠି ଥାଅରେ
ସରବେ ମାନବ ନିଜର ମାଟିକୁ
ନିଜେ କେଡ଼େ ଭଲ ପାଅରେ ।

ମାଆ ପିନା ଆମ ଗରଭ ଧାରଣୀ
ଜନମ ମାଟି ମା ସଙ୍କଟ ତାରଣୀ
ସେ ଘୋର ଅଜ୍ଞାନ [illegible] ମୁକତି କାରଣୀ
ତାହାର ଆଦେଶେ ଯାଅ ରେ
ଯିଏ ବା ଯେଉଁଠି ଥାଅ ରେ
ସରବେ ମାନବ ନଜର ମାଟିକୁ
ନଜେ କେଡ଼େ ଭଲ ପାଅ ରେ ।

ଯେଉଁ ମହାଯୁଗ ଆସେ ଅବତର
କଠୋର ଶପଥେ ନଅ ତାରେ ବର
ସେହ୍ନ ଶୁଭ ବେଳ ଏବେ ଅନୁକୂଳ
ସେ ନଆ ଆଲୋକେ ଗୃହଁରେ
ଯିଏ ବା ଯେଉଁଠି ଥାଅ ରେ
ସରବେ ମାନବ ନଜର ମାଟିକୁ
ନଜେ କେଡ଼େ ଭଲ ପାଅରେ ।

ଆଜ ଯିଏ ସବୁ ଅଛ ସାନ ସାନ
ନୂଆ ପୃଥିବୀରେ ଦେବ ନୂଆ ଦାନ
ନବ ଯୁଗ କାନେ ମହମା ଘୋଷି ତା
ବଜୟର ଭେରୀ ବାଅ ରେ
ଯିଏ ବା ଯେଉଁଠି ଥାଅ ରେ
ସରବେ ମାନବ ନଜର ମାଟିକୁ
ନଜେ କେଡ଼େ ଭଲ ପାଅ ରେ !



# ମାଟିର ମଣିଷ

ମାଟିର ମଣିଷ
ବଞ୍ଚାଇଛି ଯିଏ
ଏଇ ମାଟି ପର ଟାଣ
ସାରା ପୃଥିବୀର ପ୍ରାଣ ।

ଦିନ ରାତି ଯା'ର
ପାଦ ତଳେ ତା'ର
ମାଟି ସାଥେ କାରବାର
କରେଁ ମୁଁ ନମସ୍କାର ।

ମାଟିର ମଣିଷ
ଉପରେ ନୁଖୁରା
ମାଟି ପରି ତାର ଦେହ
ଭିତରେ ରସାଳ ସ୍ନେହ ।

ଖର ଗୀରିଷମେ
ବାଟି ବାଟି ଚଲେ
ନଦୀ ମାଟି କରି ଚୂନା
ଫଳାଏ ଫସଲ ସୁନା ।

ମାଟିର ମଣିଷ
ମାଟିର ଅମାରୁ
ଢାଳି ତାର ଦେହ ମନ
କାଢ଼େ ଭଲ ଭଲ ଅନ୍ନ ।

ମାଟି ତା ସପନ
ମାଟି ସାଥେ ତା'ର
ମାଟି ଭାଇ ବନ୍ଧୁ ସାଥୀ
କଟିଯାଏ ଦିନ ରାତି ।

ମାଟିର ମଣିଷ
ଲାଗିଥାଏ ତହିଁ
ମାଟି ତାର ଜପମାଳି
ଲୁହ ଲହୁ ସବୁ ଢାଳି ।

ଯେତେ ହସକାନ୍ଦ
ଯେତେ ଚନ୍ତ୍ରାଦକ
ଯେତେ ସୁଖଦୁଃଖ ଭାଇ
ସବୁ ତା'ର ମାଟି ପାଇଁ ।

ମାଟିର ମଣିଷ
ମାଟି ସାଥେ ଲଢ଼ି
ନ ଡରେ ବରଷା ଝଡ଼
ଗୁନ୍ଥି ତାର ଘରି ଦଡ଼ ।

ପାଦେ ତା ଜୁହାରେ
ଆରମ୍ଭ କରଇ
ପାହାନ୍ତ ପଉଷ ରାତି
ବଇଶାଖ ଝାଞ୍ଜି ତାତି ।

ମାଟି ସଙ୍ଗେ ତାର
ମାଟି ତା' ଜୀବନ
ହସ ଖେଳ କଥାଭାଷା
ମାଟି ତା ଭରସା ଆଶା ।

ଏଇ ମାଟି ପାଣି ପବନ ଯାହାର ପ୍ରିୟ
ଝାଣ ରଖିପାରେ ଶେଷଯାଏ ସେହି ହିଁ ।
ମାଟିର ମଣିଷ ମାଟିର ସଜୀବ ଢଅଁ
ବଡ଼ ହେବା ପାଇଁ ତାହାର ନମୁନା ନଅ ।
ସଭିଏ ହୋଇଲେ ସହଣିକ ତାହା ପରି
ହସିବ ଏ ମାଟି ସରଗର ଶିରୀ ଧରି ।
ମାଟି ମଣିଷର ମାଟି ହିଁ ବୁଝଇ ବ୍ୟଥା
ମୁହେଁ ତାଙ୍କ ଲୁଚ କଥା କହେ ସରଳତା ।
ହୃଦୟ ଆମର ଖୋଲିଦେଲେ ତାହାପରି
ବନ୍ଧୁର କରୁଣା ଉପରୁ ଆସିବ ଝରି ।



## ମଣିଷ ଓ ମାଟି

ମାଟିରେ ପଡ଼ିଲି ମାଟିରେ ଗଡ଼ିଲି
ଖାଇଲି ମାଟି
ମାଟିରେ ହସିଲି ମାଟିରେ କାନ୍ଦିଲି
ମେଲାଇ ପାଟି ।

ମାଟିରେ ପହିଲେ ପାଦ ପକାଇ ମୁଁ
ଗୃଲିଲି ବାଟ
ମାଟିର ସିଲଟ ମାଟିର ଖଡ଼ିରେ
ପଢ଼ିଲି ପାଠ ।

ମାଟି ବୋଲ ହୋଇ ଖେଳିଲି ତିଆରି
ମାଟିର ଘର
ମାଟି ଖେଳନାରେ ସାଙ୍ଗ ସାଥୀ ପ୍ରାଣେ
କଲି ଆଦର ।

ମାଟି ମୋର ବନ୍ଧୁ ମାଟି ମୋର ବାପ
ମାଟି ମୋ ମାଆ
ସୁଖେ ଅବା ଦୁଃଖେ ରୋଗେଭୋଗେଯୋଗେ
ସେହି ତ ସାହା ।

ଯେଉଁ ମାଟି ଗଛ ଧରଇ ଅମର
ଆତ୍ମାର ଫୁଲ
ସେ ଦେହେ ଜନମ ନେବାପାଇଁ ଦେବେ
ସଦା ବ୍ୟାକୁଳ ।

ମାଟିର ପୋଷାକ ଦେବାରେ ପାଲଟି
ଇଚ୍ଛା କେ କରେ
ଜୀବ ଆତ୍ମା ପର ଦୁହେଁ ମିଶି ଛନ୍ଦା
ଗୋଟିଏ ଡୋରେ ।

କିଏ ଲଗାଇଛି ଜୀବନ-କୋଲପେ
ମାଟିର ଗୁହ
ଜନମ-ମରଣ ଫିଟିବା-ପଡ଼ିବା
ତାଳୁବ—ଭାବ ।

ମାଟି ସତ୍ୟ ପରେ ମହା ସତ୍ୟ ଏକ
ରହିଛି ଲୁଚି
ଯେ ଆଲୋକ ପାଶେ ମାଟିର ସ୍ୱଭାବ
ଯାଏଟି ଘୁଞ୍ଚି ।

ଦିଏ ସେ ଚେତନା ଏ ମର ଜୀବନେ
ଅମର କରି
ପାଇବା ତା ଆମେ ଗଲେ ସଚେତନେ
ସେ ବାଟ ଧରି ।



## ମାଟି ରସ

ରସ ତ ରସ　　　ମାଟିର ରସ
ହସ ତ ହସ　　　ଶିଶୁର ହସ ।

ଯେତେ ରସ ଅଛି　　　ସଂସାରେ ଭାଇ
ମାଟି ରସ ପରି　　　କିଛି ତ ନାହିଁ ।

ରସ ନୁହେଁ ଖାଲି　　　ସେ ରସାୟନ
ପାଳେ ଏଇ ପୃଥ୍ୱୀ　　　ଜୀବ ଜୀବନ ।

ହାଣ୍ଡି ଶୁଣ୍ଢ ପରି　　　ବରଷା ପାଣି
ମାଟି ପାରେ ଏକ　　　ନିଃଶ୍ୱାସେ ଟାଣି ।

ପାଳିଟି ତଳେ ସେ　　　ଅମୂଲ୍ୟ ରସ
ଦାରୁ ତରୁ ଦୁବ　　　କରେ ସରସ ।

ସେହି ଶକତିର　　　ସାଗରସାର
ମଞ୍ଜିରୁ ଗଜାଟି　　　କରେ ବାହାର ।

ଗଜାରେ କି କ୍ଷୀର　　　ଯୋଗାଏ ମାଟି
ଫୁଲେ ଫଳେ ଗଛ　　　ପଡ଼ଇ ଫାଟି ।

ଭୂଇଁ ରସଟିକ　　　ଗଛର ପ୍ରାଣ
ଶୋଷି ଶାଖା-ହାଡ଼　　　ହୁଏ ଯେ ଟାଣ ।

ମାଟିତଳେ ସିନା　　　ନ ପଡ଼େ ଜଣା
ଚେର ମୁହେଁ ପିଏ　　　ଜୀବନ ପଣା ।

ନ ପଡ଼େ ସିନା ଏ　　　ଆଖିରେ ଧରା
ପାଣି ସାଥେ ମାଟି　　　ଢୋକଇ ଖରା ।

ଏଇ ଖରା ପାଣି　　　ପବନ ପିଇ
ମାଟି ଭଳି ଆମେ　　　ରହିଛୁଁ ଜୀଇ ।

ଅଛି ମିଠା ଯହିଁ　　　ଏ ମାଟି ରସ
ଝରେ ତହିଁ ସୁନା　　　ଫସଲ ହସ ।

ମାଟି ରସ ସାର ପୃଥିବୀ ପାଳେ
ମହାତ୍ମା ଜୀବନ ସେବାରେ ଢାଳେ ।
ମାଟି ରସ ପରି ହୃଦୟ ରସେ
ମରୁ ଛାତି ପରେ ନନ୍ଦନ ହସେ ।
ରସେ ଯେ ମିଳନ୍ତି ରସିକ ପ୍ରଭୁ
ରସଟି ଲଭଇ ନିୟମ ସବୁ ।
ସେହି ରସେ ଯେବେ କୁବେର ହେବା
ସବୁରି ଚରଣେ ଆନନ୍ଦ ଦେବା ।



## ମାଟି ବଇଦ

ମାଟି ବଇଦ ନିକଟେ ଥାଉ
ମଣିଷ ଗୁହ୍ଣିଟି ମଣିଷ ହାତେ
ପିଉ ପିଉ ସଦା ଟନିକ୍ ଶିଶି
ପ୍ରାଣ ପାଇଁ ପାଣି ଗ୍ଲାସରେ ଢାଳେ ।

ସୂତା ମିଶିଯାଏ ସୂତାରେ ସିନା
ଗୋଡ଼ କି ଲୁହାରେ ପାରଇ ଯୋଡ଼
ମାଟି ସୁନା କରେ ମାଟିର ପିଣ୍ଡ
ଔଷଧିର ବିଷ ବାଏ ଯେ ପୋଡ଼ ।

ଯେ ମାଟି ପବନେ ହୋଇଛେଁ ଗଢ଼ା
ସେହି ରଖେ ଆମ ଜୀବନ ଘାଇ
ବୁଝି ବ ନ ବୁଝ, ମହିମା ତା'ର
ବଇଦର ପଛେ ଆକୁଳେ ଧାଇଁ ।

ପ୍ରିୟ ବନ୍ଧୁ ପରି ଯେ ଆମ ସାହା
ସେ କି ବୁଝେ ନାହିଁ ଦେହର ବ୍ୟଥା
ମାରବେ ଆମରେ କହେ ସେ ଯାହା
ଭାବବାରେ ଦଣ୍ଡେ ନ ଦେଉଁ ମଥା ।

ମିଠା ରସାସ୍ୱନ ରଖିଛୁ ସିଏ
ନଈମଳା ନଈ ଝରଣା ଜଳେ
ସୁଆଦଆ ପଥି ଚଟକା ନାନା
ଯାଇଛନ୍ତି ବନଫୁଲ ଓ ଫଳେ ।

ଏସନ ଯାତନା କି ଅଛି କୁହ
ହଟେ ନାହିଁ ଯାହା ମାଟିରେ ଖାଲି
ବୁଡ଼ା ଦେହେ ଫୁଟେ ସୁଆନ ତେଜ
ମାଟିପରେ ଖାଲି ପାରିଲେ ଗୁଳି ।

ଜଳର ଆଧାର ପୃଥିବୀ ବୁକେ
କୁଶଳୀ ଈଶ୍ୱର ଗୁପତ ଦାନ
ମାଟିରେ ମିଶିଛି ଏସନ କ୍ଷାର
ସାବୁନ ସୋଡ଼ାର କାଟେ ସେ କାନ ।

ମାଟି ଦେହ ହୁଏ ମାଟିରେ ସଫା
ବାସନକୁସନ ଦୁଆରଘର
ମାଟିର ବଇଦ ସେ ଆମ—ତାରେ
ମନେ ମନେ ସ୍ନେହେ ପ୍ରଣାମ କର ।

ମାଟିର ମହିମା କି ଅଦଭୁତ
ମଞ୍ଜିଟିରେ କରେ ପେ ମହାଦ୍ରୁମ
ଅତୁଳ ତାହାର ଶକତି ପାଶେ
କବା ଶ୍ରେଷ୍ଠ ବଡ଼ ରେଗ ବା ଭୂମ ।

ବନମାଟି ପଟୁମାଟିର ପ୍ରାଣେ
ଘଇ ଘଇ ପରି ଅତୁଟ ସ୍ନେହ
ଖରା ଓ ପାଣିରେ ଗାଧୋଇ ସଦା
କି ସଫା ସୁତୁରା ଦୁହିଁଙ୍କ ଦେହ ।

ସରଗ ବଇଦ ମାଟିରେ ଛପି
ଅଜଣାରେ ଆମ କରେ ତା' କାମ
ପ୍ରକୃତି ଦେଇଛୁ ଜନମ ଯାରେ
ପ୍ରକୃତ ସାଥୀ ସେ ଜୀବନେ ଆମ ।

ସତ୍ୟର ସେନା ଏ ନିଃସ୍ଵାର୍ଥ ମାଟି
ଥାଉଁ ଥାଉଁ ଏତେ ନିକଟେ ଘର
ହରିଣ କସ୍ତୁରୀ ଖୋଜିଲା ଭଳି
ଏଣେ ତେଣେ ବୃଥା ବୁଲୁଛେ ଧାଇଁ ।

ଘନ ଏ ଅନ୍ଧାର ସମାଧି ନେବ
ହୋଇବ ଯେ ଦିନ ମାଟିର ପୂଜା
ଓହ୍ଲେଇ ଆସିବ ଅମର ନର
ଜୀବନର ଗତି ଗଲେଣି ବୁଝି ।

ଏଇ ଦେହ ପୂଜା ହେଲବେ ପ୍ରଭୁ
ଦେହ ସୁମରିବ ତାଙ୍କର ନାମ
ଶ୍ରଦ୍ଧାର ଅରଘ ଢାଳିବ ସିଏ
ବନ୍ଧୁ ପଦେ ବାଡ଼ି ସକଳ କାମ ।



## ମାଟି ନାଚ

ମାଟି-ଝିଅ ନୂଆ ବସନ୍ତେ
ଯେବେ ସକାଳୁ ଉଠେ
ମନ୍ତର ଫୁଙ୍କିଲା ପବନେ
ବଣେ ମହକ ଛୁଟେ ।

କୋଇଲର ତାନେ ମଳୟ
ଯୋଡ଼ି ମୁରଲୀ ବାଏ
ପ୍ରାଣେ ପ୍ରାଣେ ମାଟି କଣୋଣି
ହସ ଖୁସି ଖେଳାଏ ।

ବରଷାରେ ମାଟି ନାଚଇ
ସାଜ ନବ ଯୁବତୀ
ପାଣିରେ ଚମକେ ଜୁଆର
ମେଘେ ବଜୁଳିବତୀ ।

ଝୁମୁ ଝୁମୁ ପାଦ ନୂପୁର
ଶୁଭେ ଆହା କ ମିଠା
ଧୂଳି ଡାକ ଦଏ କଅଁଳୁ
"ସଖୀ କବାଟ ପିଠା ।"

ନାଚେ ପୁଣି ମାଟି ଶରତେ
ସାଜି ସୁନ୍ଦରୀ ବୋହୂ,
କାଚକେନ୍ଦୁ ପରି ପାଣିରେ
ଝରେ ପଦୁଅଁ ମହୁ ।

କଇଁ ପଙ୍କେ ଟେଙ୍ଗେଣିଜଳ
ସଞ୍ଜେ ସଙ୍ଗାତ ବସେ
କୁଆଁରୀ ସୁନ୍ଦର କୁନ୍ତଳେ
ଦୂବ ମୁକୁତା ଖସେ ।

ଝଲମଲ ରୂପା ଚଦର
କଏ ଦଏ ଲୋ ଟାଣି
ଥୁରୁ ଥୁରୁ ଜାଡ଼େ ନାଚେ ସେ
ଆମ ଏ ମାଟି-ରାଣୀ ।

ସ୍ନେହ ଶୀତ ମାରେ ପବନେ
ସ୍ନେହ ବାଆଁ କାଳିଆ
ସୁନା କଳସୀଟି କାଖେଇ
ଉଷା ଆକାଶେ ଠିଆ ।

ବାଜ ମରମର ଲଗାଏ
'ଖୁସି' ସାଥିରେ 'ଧନ'
ରାଜଲକ୍ଷ୍ମୀ ପରି ନାଚେ କି
ସତେ ମାଟିର ମନ ।

ଘରେ ଘରେ ଓଷା ଉଛବ
ପୁଣି ଉଛବ ମନେ
ହାଟ ବସେଇଲେ ପକ୍ଷୀଏ
ମାଳ ଆକାଶେ ବନେ ।

ପେଟଟି ଖଙ୍କାଳ ଗୃହେଁ ସେ
ପାଣି କାଙ୍ଗାଳ ଖିର
ବଉଦ ପଛରେ ବଉଦ
ଶିଶୁ ପରି ଅଧୀର ।

ରଣଚଣ୍ଡୀ ବେଶେ ନାଚଇ
ମାଟି ଘୋର ଗ୍ରୀଷ୍ମେ
ଉହ ଉହ ଝାଞ୍ଜି କମ୍ପଇ
ଖର ନିଃଶ୍ୱାସ ଛମେ ।

ଛାତେ ଭୂଇଁ ଛାତେ ପାହାଡ଼
ଛାତେ ବଣ ଜଙ୍ଗଲ
କହେ ମାଟି-ବୁଢ଼ୀ "ନିଠୁର
ପ୍ରଭୁ ! ଏ କସ କଲ !"

ଆକାଶର ଘୁଞ୍ଚ ଚରଳ
ଯାଏ ମାଟିର ଶୋଷେ
ମୁକଳ-ବର୍ଷାଧାରେ ସେ
ବନ୍ଧୁ କୃପା ବରଷେ ।

ଭଳ ଭଳ ମାଟି ନାଚେ ମୁଁ
 ଦେଖେ ପ୍ରେମର ଲୀଳା
ସେ ନାଚେ ହୃଦୟ ନାଚେ ମୋ
 ଠେଲି ସକଳ ଶିଳା ।

ଯେଉଁ ନଟବର ନଟବୃନ୍ଦ
 ଏଇ ମାଟିରେ ଏତେ
କି ସୁନ୍ଦର ତାଙ୍କ ନାଚଟି
 ହୋଇ ନ ଥିବ ସତେ !



## ପାଣି

ଚେତନା ପାହାଚେ ଉପରେ ଉଠି
ଏଇ ମେଘ ପରି ଆସିବା ଛୁଟି ।
ରୂପାନ୍ତର କରି ସ୍ୱରୂପ ଆମେ
ସାହା ହେବା ଟିକେ ବଧିର କାମେ ।

ପାଣିରେ ପାଣି
ପାଣି କହେ ମତେ କିଏ ନ ଜାଣି ?

ପବନେ ବୁଲେ ସେ ପବନେ ବୁଲେ
ନୀଳ ଆକାଶର ବଉଦେ ଝୁଲେ ।
ମାଡି ବି ପାରେ ସେ ଛାଡି ବି ପାରେ
ନାଆଁ ବି ଧରେ ସେ ଡୁଆଁ ବି ମାରେ ।
ବଢ଼ି ବି ପାରେ ସେ ଉଡ଼ି ବି ପାରେ ।
କାହାକୁ ମାରେ ତ କାହାକୁ ତାରେ ।
ବେଳେକେ ଅଥୟ ବେଳେକେ ଧୀର
ପ୍ରଳୟ ଆଣେ ସେ ଟେକିଲେ ଶିର ।

'ଜୀବନ' ନାଆଁ ତା    ଅଜଣା କାରେ
ବଞ୍ଚେ ଏ ପୃଥିବୀ    ପିଇ ଯେ ତାରେ ।

ବେଳେ ସବୁ ପ୍ରାଣୀ    ପାଣି ନ ପାଏ ।
ଅଗ୍ନନକେ ପରି    ଜୀବନ ଯାଏ ।

ରକତ ଯେସନେ    ଦେହରେ ଲୋଡ଼ା
ପାଣି ସେଇପରି    ପରାଣେ ଯୋଡ଼ା ।

ପାଣିରୁ ଏ ମାଟି    ଜଗତ ଜାତ
ଦେହ ଯେ ମେଳଛି    ଦରିଆ ସାତ ।

ତିନଭାଗେ ପାଣି    ଚଉଠେ ମାଟି
ମୂକ୍ତ ଦେଇଛନ୍ତି    ବିଧାତା ବାଣ୍ଟି ।

ଜଳର ରଜୁତି    କେତେରେ ବୁଝ
ଜଳ-ଦେବତାରେ    ପହିଲେ ପୂଜ ।

ଅଛି ତାର ପୀଠ    ଭଲ କ ଭଲ
ସୁଗୁଣ ଯେତେ ତା    ନ ହୁଏ କଳ ।

ତପତ ଝରଣା    'କେଦାର କୁଣ୍ଡ'
ଯାର ପାଣେ ରୋଗୀ    ନିପୁତ ଲୁଣ୍ଡ ।

ଗଙ୍ଗା ଗୋଦାବରୀ    ତ୍ରିବେଣୀ ଧାର
ତୀର୍ଥ ଜଳ ଏକା    ଜଳର ସାର ।

ପାଣିରେ ବୁଡ଼ିଲେ    ରୋଗାଏ ଦେହ
କିଛୁ ନ ମିଳିଲେ    ପାଣିକ ପିଅ ।

ଶୋଷରେ ମରତ    ଅମୃତ ସିଏ
ଦେହେ ମନେ କେତେ    ଆରାମ ଦିଏ ।

ସବୁଠିଁ ଘର ତା    ସହଜେ ମିଳେ
ସରଗ ମରତ    ପାତାଳ ତଳେ ।

ଖାରିଆ ଲୁଣିଆ    ମିଠା କେ ଅଛ
କପାଳେ ମାରି କେ    ଲଭେ ସୁଗତ ।

ପାହାଡ଼ର ଝର | ଜଳ କ ମିଠା
ଲୁହା କଳ ପାଣି | ପାଣିର ସିଠା
ପ୍ରକୃତିର ଝର | ବିଜ୍ଞାନ ଝର
ରୋଗନାଶୀ ଜଣେ | ରୋଗର ଘର ।
କାହ୍ନି ବା ଝରଣା | ଜଳ-ପ୍ରପାତ
ଅସୁମାରି ନଈ | ଦରିଆ ସାତ
କୋଟି କୋଟି କୂଅ | ପୋଖରୀ ତୁଆ
ଦରପଣ ପରି | ହୋଇଛି ଥୁଆ ।
ଭୂଇଁ ଛାଡ଼ ଶୂନ୍ୟେ | ଉଠି ସେ ନୀର
ଦେଖାଏ ଆମରେ | ତା' ରୂପାନ୍ତର ।
ଆଲୁକେ ଡାକଲେ | ଆଶାସ୍ପୀ ବୃଷ୍ଟି
କ୍ଷଣକେ ସେ ମହୀ | ହୁଏ ଉଶ୍ବାସୀ ।
ଚୋପା ଚୋପା ପାଣି | ଏକାଠି ମିଳି
ସପତ ସାଗର | ହୁଅନ୍ତି ତୋଳି ।
ବ୍ରହ୍ମ ହୃଦୟର | ତପସ୍ୟା ବଳେ
ସରଗ ଓହ୍ଲାଏ | ମରତ ତଳେ ।

●

## ସମୁଦ୍ର

ଓଲଟ ପାଲଟ ପ୍ରକୃତି
ନୀତି କ ଆଚମିତ
ଲଗିଛି ପବନ ପାଣିର
ସଦା ହାର ଓ ଜିତ ।

ଜଳରାଜା ଏକା ରଖିଛି
ସାରା ଜଗତ ମାନ
ସ୍ଥଳକୁ ଦେଇଛି ଦୟାରେ
ଛାଡ଼ ଚେନାଏ ଥାନ ।

ମାଟିର ବୋଇତେ ଘସିଲା
ପର ଘସୁଛେ ଆମେ
ଧନରତ ମହା ସମୁଦ୍ର
ରତ ତା ନଜ କାମେ ।

ଆଖି ପାଉନାହିଁ ଖୁନ୍ଦିଁଲେ
ଦିଗ କେଉଁଠି ଯାଇ
କେଡ଼େ ବଡ଼ ଏଇ ଦରିଆ
ମାଡ଼ ଯାଇଛି କାହିଁ ।

ହସି ହସି ଗୀତ ଗାଉଛି
କଣ୍ଠ ଗମ୍ଭୀର କରି
କୂଳେ କୂଳେ ଦୋଳା ଖେଳଇ
ତା'ର ମାଳ ଲହରୀ ।

ଏପଟ ସେପଟ ଧାଉଁଛି
କପଁା ସେ ବାରବାର
ତା' ମନ ବୁଝିବା ପାଇଁକି
ଅଛି ଶକତ କାର ।

ଥକ୍କା ମାରିବାକୁ ନମିଷେ
ତାକୁ ସମୟ ନାହିଁ
ଅଥୟ ତା ମନ କରମେ
ସଦା ଦେଖ ହେ ଭାଇ ।

ଖରା ବରଷାରେ ଧନ୍ଦେ ତା
ନାହିଁ ଲଭ କ ହାନ
ଜଗତର ହିତେ ଲଗିଛି
ବନ୍ଧୁ ଆଦେଶ ମାନ ।

ଅନ୍ତ ନାହିଁ ସୀମା ନାହିଁ ଯେ
ତା'ରେ କେ ପାରେ କଳ
ଅମାବାସ୍ୟା ହେଲେ ଦଣ୍ଡେ ସେ
ପୃଥ୍ୱୀ ପଡ଼ିବ ଟଳ ।

କେତେ ବଡ଼ ବଡ଼ ବୋଇତ
ତାଂର ଗରଭେ ଭାସେ
ବାଣିଜ୍ୟ ଲକ୍ଷ୍ମୀରେ ବନ୍ଧେଇ
ଆଣେ ଲଙ୍ଗର ପାଶେ ।

ସେ ପାଣି ପବନେ ପଶେଇ
ଦେବେ ନୂଆ ଜୀବନ
ବନ୍ଧୁ ଧିଆନରେ ସୁଯୋଗ
ଦିଏ ତା ଗରଜନ ।

ତରଙ୍ଗଣୀ ଏଇ ଜଗତ
ମହା ସାଗର ପାଶେ
ସେହି ପାଣି ମେଘ-ପୋଷାକ
ପିନ୍ଧି ଉଡ଼େ ଆକାଶେ ।

ମଣି ମାଣିକର ଗାରଜ
ତା'ର ଗମ୍ଭୀର ତଳ
ଘୁଣେ ସେ ରତନ ବଣ୍ଡାମୀ
କାଢ଼ି ବୁଦ୍ଧିର ବଳ ।

କୂଳେ ହୋଇ କୋଡ଼ କସ୍ତୁର
କାନ୍ଦେ ଅଥୟ ତେଜ
କ ଶାନ୍ତ ଗମ୍ଭୀର ଚରିତ ତା
ପଣି ଦେଖ କ କେହୁ ?

ଧକ୍କା ଦଏ ଚନ୍ଦ୍ରା ଲହଡ଼
ବାରବୁଲ ଏ ମନେ
ଚଢ଼ୁଁ ବନ୍ଧୁଟିଏ ନ ବାଜୁ
ଆମ ହୃଦେ ଯେସନେ ।



## ନଈ

ନଈରେ ନଈ
କେଉଁଆଡ଼େ କହ
ଯାଉଚୁ ବହି
ଯାଉଚୁ ବହିଁ ।

କେଡ଼େ ମିଠା ଆହା
କ ନରମନ
ରୂପ ତାର ପର
ତୋ ସୁଅ ଜଳ
ଲହଡ଼ି ଭିତରେ
କ ଗୀତ ଗାଇ
ଯାଉଚୁ ଧାଇଁ
କେଉଁ ସ୍ୱାଇଜକୁ
କହ ତ ନଈ ?

ଟକ ଟକ ତୋଫା
ଜହ୍ନ ଆଲୁଅ
ତୋର ଦରପଣେ
ନରେଖି ମୁହଁ
ସରଗେ ଥାଇଁ ସେ
ଅଧୀର ହୁଏ
ଆସିବା ପାଇଁ
କାହିଁକ ତୋ ପାଖୁ
କହ ରେ ନଈ ।

କ ଖୁସି ହୁଅନ୍ତ     ଦେଖିଲେ ତତେ
ମଣିଷ ଠୁ ଗଛ     ବୁରୁଛ ଯେତେ
ବଞ୍ଚାଇଛୁ ଫଳ     ଫସଲ କ୍ଷେତେ
ଆହାର ଦେଇ
ଅମୃତ ପରାୟେ     ତୋ ପାଣି ପେଇ
ନଈ ରେ ନଈ ।

କେତେ ବଣ କେତେ     ପାହାଡ଼ କାଟି
ସୁନା କରୁଅଛୁ     କୂଳର ମାଟି ।
କ ଯାଦୁ ରହୁଛି     ସୁଏ ତୋ' କହ
ବୁଡ଼ିଲେ ତହିଁ
ମନର ରୋଗ ମୋ     ଦେହର ରୋଗ
ଉଭାଏ କାହିଁ
ନଈ ରେ ନଈ ।

ନୂଆ ମେଘ ଯେବେ     ଆକାଶୁଁ ଝରେ
ତୋ ସପନ ଖେଙ୍ଗେ     ପାହାଡ଼ ଘରେ
କୁଳୁ କୁଳୁ କୁନ     ଛୁଆଟି ପରି
ଆସୁ ତ ଧାଇଁ
ଏଇ ମାଟି ସେବା     କରିବା ପାଇଁ
ନଈ ରେ ନଈ ।

ଅଳସୁଆ ଧରି     ତୋହର ଜଳ
ଅଚଳନ୍ତ ହୋଇ     ହରାଏ ବଳ ।
ସବୁର ଭୁଣ୍ଡୁ ସେ     ଶୁଣଇ ଛି ଛି—
ଗୁଣକୁ ବାଛି
ନଜେ ଗୃଳଥିଲେ     ସଳଖ ବାଟେ
ପଦେକେ କାହାରେ     ବାଛଇ ନାହିଁ
ନଈ ରେ ନଈ ।

ତୋର ଘର କହେ        ମୋ ସେଥେ ଶୁଅ
ସରସ ହସିବ        ନୀରସ ମୁହଁ ।
ମୋ ମାଟି-ତିଳକ        କପାଳେ
        କର ଚନ୍ଦନ ।

ତୋ ଜୀବନ ଗଢ଼ା        ସକଳେ ଖୁସି
        କରିବା ପାଇଁ
        ନକ୍ଷ ରେ ନକ୍ଷ ।

ଯେତେଦିନ ଥିବ        ତୋ ପାଶେ ମୁହିଁ
ପବନ ହେବ ମୁଁ        ତୋ ଦେହ ଛୁଇଁ ।
ନଇଁତ ସକାଳେ        ନୀରବ ଛନ୍ଦେ
        ଆସିବ ଧାଇଁ
        ସିନାନ ପାଇଁ ।

ହସହଟି ମନଟି        ରହିଲେ ଖୁସି
ସରବ ହେଗିବ        ଏଇଠି ଥାଇଁ ମୁଁ
        ଏଇଠି ରହି
        ନକ୍ଷ ରେ ନକ୍ଷ ।

●

## ପୁଷ୍କରଣୀ

ଶୋଇଅଛୁ ଜଳଜେମାଟିଏ
ସପନରୁ ହଲାଇଲା କଏ ।
କାନ ପାଖେ ଧୀରେ ଗଲା ଡାକି
ଗୃହେଁ ଖୋଲି ଶଢେ କଇଁ ଆଖି ।

ଗୀତ ଗାଏ ସୁଲୁସୁଲୁ ବାଆ
ମାଳକଙ୍କ ସୂର୍ଯ୍ୟେ ଡାକେ "ଆ-ଆ" ।
ସୁନା ଖରା ଜଳେ ଉଙ୍କି ମାରେ
ଚନ୍ଦ୍ରବୋହ୍ନ ଶୋଭେ ମୁକ୍ତାହାରେ ।

ଚକମକ ଦରପଣ-ମୁହଁ
ଆଖିଢ଼ୋଳା ଦିଏ ଝଲସାଇ ।
ପାଣି ପରେ ରୂପ-ଶିଖ ଛୁଇଁ
ଏ ଜଗତେ ଶୁଣାଏ ତା ବାଣୀ ।

"ସଜାଇଛୁ କିଏ ସେ ସୁନ୍ଦର
ମୋ ଚଉପାଶେ ପଦ୍ମଫୁଲ ଘର ।
ତଳ କେଉଁ ନାରଖାର ଅଛି
ଦେଖିଛ କି ଯାଇ ପଙ୍କ କଛି ।

ଯେଉଁ ଭେଣ୍ଟ୍ରେ ଶୋଭା-ସ୍ନେହ
ପଙ୍କୁ ଜାତ ସେହି ପୁଣ୍ୟ ଦେହ ।
ଅଳି ଯେବେ ମୋ କବିତା ଗାଏ
ପଙ୍କ କାର ମନେ ପଡ଼ୁଥାଏ ।

ଆପଣାର ଥିଲେ ମହାପଣ
କିଏ ଖୋଜେ ରୂପ ଜାତି ଗୁଣ ।
ନରକର ଅନ୍ଧାରିଆ ବାଟ
ଉଭା ମେଲି ସରଗ-କବାଟ ।

ବିଧାତାର କି ରହସ୍ୟ ଭଲି
ପଦ୍ମ ଶିଖ ପଙ୍କେ ଫୁଲ କଲି ।
ମୁକ୍ତା ଦେଲି ଗୁର ଶାମୁକାରେ
ହେୟ କରୁ ନାହିଁ ତା ବିଗ୍ଭରେ ।

କି ବିଚିତ୍ର ବୁଦ୍ଧିମଣି ତାର
ଚିନ୍ତା ଖିଅ ନ ମିଳେଟି ଯାର ।
ଥାଉଁ ହୃଦ କର୍ଦ୍ଦମଣୀ ନଈ
ପଙ୍କ ଜଳେ ଫୋଟେ ପଦ୍ମ କଇଁ !



# ଝରଣା

ଝର ଝର ଥର ଥର
କାହିଁ ଯାଉ ବୋହୁଛି
ବନ ପଥ କାନେ କାନେ
କେତେ କଥା କହୁଛି ।

ଝୁମୁ ଝୁମୁ ନୂପୁର ତୋ
ଯେବେ ବାଜି ଉଠଇ
ନବ ମଳ ମଳ ଆଖେ
ନନ୍ଦଧାର ଛୁଟଇ ।

ଢଳ ଢଳ ଶିଶୁ ତୋର
କାହିଁ ନୋହେ ଭୁଲ ଲେ
ତତେ ଦେଖି ବେଙ୍ଗରାଣୀ
ଦିଏ ହୁଳହୁଳ ଲୋ ।

ଗଛ ଲତା ହସେ ଭୁଲି
ପାଦ ଦଉ ଦଉଛି
ଝର ଝର ଥର ଥର
କାହିଁ ଯାଉ ବୋହୁଛି ।

ଛନ ଛନ ମନ ତୋର
କନ କନ ଗୁହାଣୀ
ଝର ଝର ତାନେ କହୁ
କି ମଧୁର କାହାଣୀ ।

ନାହିଁ ମନେ ଦୁଃଖ ତାପ
ସଦା ହସ ହସଟି
ଢାଳଛୁ ତୋ କଣ୍ଠେ ବନ୍ଧୁ
କ ମଧୁର ରସଟି ।

ସେହ୍ନ ମଧୁ ଚାଖିବାକୁ
ଥାଏ ମାଟି ଅନେଇ
ଅଲଅଳୀ ଝିଅ ପ୍ରାୟେ
ମେଘ ଆସେ ଘନେଇ ।

ତୋର ଗୀତ ଶୁଣିବାରେ
କାନ ଡେରେ ପଥର ।
କାହା ବୋହୂ—ଜାଣୁ ତୁହି
କ ମୋହନ ମନ୍ତର ।

ହସ ଖୁସି ଯାଏ ମରି
କରି ଘର କରଣା
ମହାନନ୍ଦ ମହାଛନ୍ଦ
ସପନ ମୋ ଝରଣା ।

ତୋର ଗୁଣ ଶିଖି ଏବେ
ସୁଖେ ଦିନ ନେବ ରେ
ନିଜ ହସ ନିଜ ଖୁସି
ଆନ ମନେ ଦେବ ରେ ।

ଏଡ଼େ କଣ୍ଟା ଖାଲ ଢ଼ିପ
ଦୁଃଖ ଶୋକ ଗ୍ରନ୍ଥରେ
ତୋ ପରିକା ଧାଇଁବ ମୁଁ
ନିଜେ ନିଜ ବାଟରେ ।

କହ ଆଉ ପଦେ କଥା
ନୋହୁ ଟରଟର ଲୋ
ଆଣିଲୁ ଏ ଖୁସି କାହୁଁ
ପାଇ କାହା ବର ଲୋ ।

ତୁ ଯାଉଛୁ କାଳ କାଳ
ଦଶଆର ଡଆସେ
ଯେ ସୁଯୋଗ ଏ ଜୀବନେ
ମୋ ପାଇଁ ତ ନୂଆ ସେ ।

ଧାଇଁଚି ମୁଁ ଅନ୍ତରେ କା
ନିଶବଦ ଡାକରେ
ଖେଳେ ତୋର ବ୍ୟାକୁଳତା
ମୋର ସ୍ବୃଶପାଖରେ ।

ନିରମଳ ଦେହ ତୋର
ମନ ନିରମଳ ତ
ମିଶିଯିବୁ ସିନ୍ଧୁ କୋଳେ
ହସି କଳ କଳ ତ ।

ବନ୍ଧୁ ସାଙ୍ଗେ ଭେଟ ଲାଗି
ବହୁ ବାଧା ମୋ ବାଟେ
ଘନ ଘନ ମାରେ ହାତ
ସେ ମନ୍ଧର କବାଟେ ।



# ବରଷା ଟୋପା

ଟପର ଟପର ବରଷାର ଟୋପା କି ମଧୁର ଗୀତ ଗାଏ
କଅଁଳ ଉଠଇ ଏଇ ମାଟି ନୂଆ ଜୀବନ ଲଭିଲା ପ୍ରାଏ ।

ଲଭି ଶିରିବଣ ନବ ଯଉବନ ନଈରେ ଜୁଆର ଉଠେ
ତା ସ୍ନେହ-ଆଉଁସା ପାଇ ବନେ ବନେ ଫୁଲର ମହକ ଛୁଟେ ।

ଏଇ ମେଘ ଟୋପା ଜଗତ ଜୀବନ ଏ ଟୋପା ସବୁରି ପ୍ରାଣ
ଗୀରିଷମ-ବୁଢ଼ା କାନ୍ଧରୁ ଓହ୍ଲାଏ ଫୁଟାଇ ବଜର ବାଣ ।

ନଈ ହ୍ରଦ ନାଳ ଝରଣା ପ୍ରପାତ ଏଇ ବରଷାର ଛୁଆ
ଏଇମାନେ ସିନା ଖେତ କରନ୍ତି ଦରିଆର ମୂଳଦୁଆ ।

"ଟପର ଟପର ଟୋପା ବରଷିଲା କେଶରେ ମାଇଲା ଗଜା
ସାରୁ ଗଛମୂଳେ ବେଙ୍ଗଟିଏ ବସି ଆପେ ବୋଲଉଛି ରଜା ।"

ପିଲାଏ ଗାଆନ୍ତି 'ଟପଲ୍' 'ଟପଲ୍' ଗାଆଁ ଦାଣ୍ଡେ ଏକସୁରେ
ସେ ଭୁଲ୍ ପଦଟି ଉଙ୍କି ମାରେ କେଭେ ବୟସର ବହୁ ଦୂରେ ।

ବରଷାର ଟୋପା ନୁହେଁ ଟୋପେ ପାଣି ମାଟିର ପରାଣ ସିଏ
ଦୟାମୟ ଦୟା ଜଳରୂପେ ଝରି ଭୋକ ଶୋଷ ହରିନିଏ ।

ଆହା କି ଶୀତଳ ରୂପ ନିରମଳ ଦେଖି ଖୁସିହୁଏ ମନ
ଏ ଦୁଖୁରି ଭୂଇଁ କି ଅବା ହୁଅନ୍ତା ନ ଥିଲେ ବରଷା ଧନ ।

କହେ ମେଘଟୋପା ଝରି ଟୋପା ଟୋପା ଶୁଣ ହେ ଭଉଣୀ ଭାଇ
ଦେବାପାଇଁ ମୁହିଁ ଆସିଅଛି ସିନା ନେବା ଇଚ୍ଛା କରୁ ନାହିଁ ।

ଏକୁଟିଆ ହୋଇ ରହିଲେ ଜୀବନେ ସରସ ଦିଶେ କି ମୁଖ
ଟୋପା ମିଶିଯାଏ ସାଗର ଜଳେ ମୁଁ ତହିଁରେ ମୋ ମହାସୁଖ ।

କାମର ଶରଧା କରି ଆନ୍ତରିକ ପ୍ରଭୁ ପାଖେ ଯୋଗ କରେ
ହେଲେ ନିଷ୍ଠାପର ବାହୁ ଦୁଇ ତା'ର ସମ୍ମାନେ ଜାବୁଡ଼ି ଧରେ ।

କଥାହିଁ ମାଜିଲେ ମଥା ହଜିଯାଏ ଅକଥାର ଢେଉମାଳେ
ଅସଲ ପରୀକ୍ଷା କାମେ ପରକାଶ ହୋଇଥାଏ କାଳେକାଳେ ।

କରମରେ ହେଳା କଲେ ବୁଡ଼େ ଭେଳା କର୍ମ ଏକା ଘାଇ ସାର
ଦୁର୍ଲ୍ଲଭ ଜନମ ଅଳସ ବଳାସେ ହୋଇଯାଏ ନାରଖାର ।

ମଣିଷ ହେ ତୁମେ ମୋ ଚକ୍ଷୁଁ ମହତ ଦୁନିଆକୁ ନାହିଁ ଠକ
ତୁମର କରଣୀ ତୁମର କପାଳେ ଟିକିନିଖି ଲେଖି ରଖ ।

ଖଣ୍ଡିଏ ଖଣ୍ଡିଏ ପଥର ମିଶି ତ ହୁଏ ପରବତ ବଡ଼
ଜଣେ ଜଣେ ବୀର ହୋଇ ଏକାକାର ସମରେ ଜିଣନ୍ତି ଗଡ଼ ।

ନାମ ଏକାକ୍ଷର ଜପି ଥର ଥର ଅସାଧୁ ପାଲଟେ ଋଷି
ସାଧନାର ବଳେ ଶାନ୍ତ ରୂପ ଧରେ ଶ୍ରେଷ୍ଠ ଶ୍ରେଷ୍ଠ ହସ ଖୁସି ।



## କଥାର

ଡାକେ ଜୁଆର
ଖୋଲଦେଏ ସ୍ୱପ୍ନ ଜନ୍ମ ଦୁଆର ।

ପାଣି ହୃଦୟରେ ସେ ଆକୁଳତା
ଢେଉରେ ଢେଉରେ କହଇ କଥା ।

ପ୍ରିୟଜନ ପାଖେ ପ୍ରାଣର ଦୁଃଖ
ଖୋଲଦେଲେ ହୁଏ ହାଲୁକା ବୁକ ।

ନିତ-ଦେଖା ସାଙ୍ଗ ଆଖି-ପସରା
ଖୋଜୁଥାନ୍ତି ମୋହ ସୁଖ ଆଶରା ।

ଦୂର ବନ୍ଧୁ ଭେଟ ଅମୃତ ପର
ମନୁ ତ ଦରଜ ନଅନ୍ତ ହର ।

ଦରିଆ ତା' ଖୁସି କହିବା ପାଇଁ
ପୂନିଅ ଜହ୍ନରେ ଥାଏଟି ଚାହିଁ ।

କ ଉତ୍ତର ଦଏ ସରଗ ଚାନ୍ଦ
ଥମିଯାଏ ମନ୍ଦା ସାଗର ନାଦ ।

ଭିତର ଉଚ୍ଛ୍ୱାସ ଉଚ୍ଛା ତା' ନାମ
ତା' ଯୋଗେ ଲହଡ଼ି ଲଭେ ଆରାମ ।

ଜୁଆର ବାଟେ ତ ଜୁଆର ଯାଏ
କାହାରିଠାରେ ତା ବାଧା ନ ଥାଏ ।

ହସ କାନ୍ଦ ଭଳି ଜୁଆର ଭଟ୍ଟା
ଭିତର ଗରଭେ ଦିବସ ଛଟା ।

ଆଲୋକ ଅନ୍ଧାର ସୃଷ୍ଟିର ଖେଳ
ମଣି ଏକା ପରି ପଡ଼ିଲେ ବେଳ ।

ଫେନିଳ ଜୁଆରେ ନାଚେ ସାଗର
ଉଚ୍ଛୁଳା ଆନନ୍ଦ ସେ ପୂନିଅଁର ।

ଚନ୍ଦ୍ର ହାଜଗଲେ ଜୁଆର ମେଳେ
ସୁନା ଚଳ ଛବି ଢେଉରେ ଖେଳେ ।

ଜୁଆର କହଇ ଆସିଛେ ଧାଇ
ଆନନ୍ଦର ରସ ଭୁଞ୍ଜିବା ପାଇଁ ।

ଜୀବନେ ଆନନ୍ଦ ଦେଲେ ରସାଣ
ରସମୟ ହେବ ସୃଷ୍ଟିର ପ୍ରାଣ ।

ଏ ଜୀବନେ କରି ଆନନ୍ଦ ମୟ
ଗାଇବା ପରମା- ନନ୍ଦଙ୍କ ଜୟ ।



## ଲହଡ଼ି

ବରଷାର ସାଥେ ମାତିଲେ ବଡ଼ି
ଲହଡ଼ି ଉପରେ କୁଦେ ଲହଡ଼ି ।

ଫେଣର ମୁକୁଟ ମଥାରେ ନାଇ
ଧାଏଁ କଳ କଳ ସଙ୍ଗୀତ ଗାଇ ।

ଛୁଆ ପରି ତା'ର    ଅଥୟ ମନ
ଜୁଆର ଦେଖିଲେ    ହୁଏ ଉଚ୍ଛନ୍ନ ।

ପବନ ମଇଳ    ବରଷା ସାଥୀ
ଦେଖି କୁଣ୍ଢେମୋଟ    ହୁଏ ତା ଛାତି ।

ପାଣିରେ ଡଅଁର    କେସନେ ଘୂରି
ନାଚୁଥାଏ ଖେଳ    ଚକା ଭଉଁରି ।

ସୁଅ ଦେଖିଲେ ତା    ହାଲୁକ ଶୁଖେ
କଥା ଭାଷା କିଛି    ନ ଫୁଟେ ମୁଖେ ।

ଚୋଡ଼ ପରେ ଚୋଡ଼    ଅଇଲେ ମାଡ଼
ଲହଡ଼ିର ପ୍ରାଣ    ଯାଏ ତ ଛାଡ଼ ।

ଲହଡ଼ି କହେ ମୁଁ    ପାଣିର ହସ
ସବୁରି ମନରେ    ଦିଏ ହରଷ ।

ମହା ପାରାବାର    ଭେଟିଲେ ଯାଇ
ମନର ଆନନ୍ଦ    କେ ଦେଖେ ଭାଇ ।

ଆଉକି ପଡ଼ିଲେ    ଦରିଆ କୋଳେ
ନଈ ମାଆ ଆଉ    ନ ନାଚେ ଡୋଳେ ।

ଗରଜି ଗରଜି    ହୁଏ ମୁଁ ଥକା
କୂଳେ କୂଳେ ସଦା    ଖାଇଲେ ଧକା ।

ଫମ୍ପା ପାଟି ଭୁଣ୍ଡି    ଶୁଭେ ଟି ଯା'ର
ଭିତରେ କିଛି ଟି    ନ ଥାଏ ତା'ର ।

ମାଣିକରେ ଭରା    ସାଗର ତଳ ।
କେଡ଼େ ଶାନ୍ତ ସତେ    ନୁହେଁ ସେ ଜଳ ।

ଅଜ୍ଞାନ କେତେ ମୋ    ଦେଖିଛ ଠିକ
ପାଖେ ରହି ଯେଣୁ    ନ ପାରେ ଶିଖ ।

ଅବୁଝା ହୋଇ ଯେ    ଗରଜୁ ଥାଏ
ତାର ତମ ତମ    ତାକୁ ହିଁ ଖାଏ ।

ଶାନ୍ତ ଖୋଜବୁଲେ ଶୂନ୍ୟ ହୃଦୟ ।
କରବାରେ ବନ୍ଧୁ ଆନନ୍ଦ ଜୟ ।
ଆନନ୍ଦ ମିଳେ ଯେ ମହା ଆନନ୍ଦେ
ସକଳେ ଖେଳଲେ ଗୋଟିଏ ଛନ୍ଦେ ।
ମିଳଇ ଆନନ୍ଦ- ରାଜାଙ୍କ ଦେଖା
ଧୀରେ ଧୀରେ ଗଲେ ସେ ବାଟେ ଏକା ।



## ପାଣି ଫୁଟୁକା

ପାଣି ଫୁଟୁକାରେ ପାଣି ଫୁଟୁକା
ପାଣିରେ ତୋର ଘର
ଟିକଏ ମରୁ ଟିକଏ ଜୀଉ
ଜୀବନ ତତେ ଜର ।

ଜନମ ସାଥେ ମରଣ ଲୀଳା
ବୁଝେଇ ଦେଉ ଭଲ
ପଲକେ ଆଖି ଦେଉ ରେ ମୁଦି
ଅନାଇ ବଲ ବଲ ।

ବକଟେ ପ୍ରାଣ ହେଲେ କ ହେଲା
ମୁକତି ସଦା ଲୋଡ଼ୁ
ଜନମ ସାଙ୍ଗେ ମରଣ ଭୁଲି
ସହଜେ ଯେଣୁ ଯୋଡ଼ ।

ପାଣି ଫୁଟୁକାରେ ପାଣି ଫୁଟୁକା
ପାଣିରେ ତୋର ଘର
ଖରା ତାତରେ ସେ ପାଣିରେ ତୁ
କରୁ ଯେ ସାତ ପର ।

ବଜର ଯେବେ ଆକାଶେ ଡାକେ
ଥରଇ ଚୋର ବଦ୍ଧ
ବରଷା ଟୋପା ପଡ଼େ ତୋ ଫମ୍ପା
ଠୋଲରୁ ଛୁଡ଼େ ଜଅ ।

ପାଣି ଫୁଟୁକା ନୋହୁ ରେ ତୁହ୍ମ
ଆମର ପ୍ରାଣ ସତ୍ତ୍ୱ
ଆଖି ପିଛୁଁାକେ ମିଳେଇ ଯାଏ
ନ ମିଳେ ଟିକେ ପତ୍ତ୍ୱ ।

ପାଣି ଫୁଟୁକା ଆମକୁ କହୁ
"ପ୍ରାଣ ଫୁଟୁକା ତୁମେ
ମୋଓ ଜନମ ପାଣିରେ ଯିନା
ତୁମ ଜନମ ଭୂମେ ।"

ମହା କାଳର ମହା ସାଗରେ
ପ୍ରାଣ ଫୁଟୁକା ଆମେ
କେତେ ଲଢ଼େଇ ବୃଥା ବଢ଼େଇ
ନ କରୁ ଭଲ କାମେ ?

ଯେ ଯହିଁ ଅଛ ଚିର ଫୁଟନ୍ତ
ହେବାକୁ ଏବେ ଆସ
ମନର ମନେ ଅମର ପୁଅ
ଅନ୍ତରେ କର ବାସ ।



# କାକର

କାକର ଭାଇ ରେ          କାକର ଭାଇ
କେଉଁ ଗାଇଁରେ ତୋ ଘର
ବହଳ ଘାସର          କଅଁଳ ଶେଯେ
ହସୁଥାଉ ଦର ଦର ।

ଗୁଲୁ ଗୁଲୁ କୁନି          ଚେହେରାଟି ତୋ
ଦିଶେ କେଡ଼େ ଜକ ଜକ
ଶୀତ ମାଆ ପାଶେ          ଅଜାଡ଼ି ଦେଉ
ସେନେହ ସରାଗତକ ।

ଟିକି ଜୀବନର          ଆଇଷ ଟିକି
ଖବର ନଏ ତୋର ଝାଣି
କେତେବେଳେ ଆସି          କାହିଁ ତୁ ଯାଉ
କେହି ତ ନ ପାରେ ଜାଣି ।

ଗୁହାଁଥାଏ କୁନି          ଭଉଣୀ ପରି
ଫୁଲ ତୋ ଆସିବା ପାଳି
"ଅଇଲଣି ହେଇ          କାକର ଭାଇ"
କହି କହି ମାରେ ତାଳି

ଥର ଥର କଅଁ          କାକର ଭାଇ
ଆସି ଦିନ ପଛେ ପଛେ
ରାତିଟିଏ ପାଇଁ          ଘର ତୁ କରୁ
ସରୁ ସରୁ ଘାସ ଗଛେ ।

କାହିଁକି ଜନମ          ମରଣ ପୁଣି
କିଛି ବୁଝାଯାଏ ନାହିଁ
ଟିକି ଜୀବନର          ଟିକିଏ ସେବା
ଆସୁ ତୁ କରିବା ପାଇଁ ।

ତୋ ଚୋପା ଭିତରେ ଗୋପନ ଝରେ
ବଞ୍ଚିବାର ବ୍ୟାକୁଳତା
ଘାସ କାନେ କାନେ ମଞ୍ଜନେ କହୁ
ଆଲୋକ ରାଇଜ କଥା

ସେ ପ୍ରେମ କାହାଣୀ କେବେ ବା ଉଚ୍ଛ
ଚେତନା ହାବୁଡ଼ ପଡ଼େ
ସେହି ମିଠାରସ ସାନ୍ତ୍ୱନା ଢାଳେ
ଦୁଃଖର ଜୀବନ ଝଡ଼େ ।

ସମୟ ଶୃଙ୍ଖଳା ପାଶୋର ଗଲେ
ପ୍ରକୃତି ବତାଏ ବାଟ
ଥରାଇ ପତର ଝରାଇ ଫୁଲ
କର ଛଅ ଋତୁ ନାଟ ।

ପ୍ରଗତି ପଥେ ସେ ଆଗେଇ ନଏ
ଅନ୍ଧକାରେ କରି ପଛ
କହେ ଟିକଚୋପା ଦେଖୁଛ ମତେ
ଦେଖୁଛ ତ ଦୁବ ଗଛ ।

ଏତେଟିକେ ମୋର ଚେହେରା ଦେଖି
ଭାବୁଅଛ କସ ପରା
ଝରାଠ ସୂରୁଯ ଗରଭେ ମୋର
ସ୍ନେହେ ଖାଲି ଢାଏ ଧରା ।

ତୁମ ପ୍ରେମ ବଳେ ହୃଦୟେ ତୁମ
ଉଭା ହେବେ ପ୍ରେମମୟ
ସାର ଏ ଜୀବନ ନ କରି ମାଟି
ପ୍ରେମେ କର ସବୁ ଜୟ ।”



# ପବନ

ଆସ ଆସ କୁନମୁନ
ଅଛ ଯେତେ ଭବନେ
ମନ ଖୋଲି ବୁଲିବା ଏ
ମନ ସ୍ୱୈର ପବନେ ।

ଦେହେ ଦେହେ ପରକାଶ
ହେବେ ଭଗବାନ ସେ
ମନ ଗୁଡ଼ି ଦନେ ଆମେ
ଯିବା ଅନ୍ତ ମାନସେ ।

ଘର ବୋଲି ତୁମେ ଯାହାକୁ କୁହ ସେ
ଚଉକାନ୍ଥି -ଘେରା ଗାତ
ଛାଆରି ଭିତରେ ମତେ ପାଇଯିବ
ହଲେଇ ଦେଲେଟି ହାତ ।

ଘେଙ୍କରଜଞ୍ଜାଳ ଶୋଷର ତାଡ଼ନା
ଅନୁଭବ ଥିବ କାହିଁ
କ୍ଷଣେ ମୋ ଅଭାବ ଘଟିବ ବୋଲି ତ
ବିଶ୍ୱାସ ନ ଯିବ ଭାଇ ।

ପାଣିର ବଦଳେ କ୍ଷୀରେ ବଞ୍ଚିଯିବ
ଭାତ ନ ଖାଇଲେ ରୁଟି
ଆଉଟି ପାଉଟି ହୋଇଯିବ ସବୁ
କ୍ଷଣେ ନେଲେ ମୁହିଁ ଛୁଟି ।

ଦେହର ଯତନ ନେବାଲାଗି ମୁହିଁ
ସବୁ ତହୁଁ ଦର୍‌କାସ୍ତ
ଦୂର୍ ଦୂର୍ କରି ଦୁଆରୁ ତଡ଼ିଲେ
ଝାଳେ ନାଳେ ହେବ ଘାରି ।

ଆକାଶରେ ମୁହିଁ ଆକାଶେ ପୂରୁଛି
ମୋର ଥିତି ଶୂରପାଖେ
ମୋ ବାଟ ଯେ ମାରେ ସେହି ବୋକା ସଦା
ଔଷଧ ମୂଳକା ଶୁଖେ ।

ମୂର୍ଖ ବୁଦ୍ଧି ମୋର ମନ ଦେଲେ କାମେ
ହେବ, ଧର୍ମ, ମାନ ଜ୍ଞାନ
ବଡ଼ ଚତୁର ସେ ଶୁଲେ ସାଙ୍ଗେ ସାଙ୍ଗେ
ଧର ମୋର ପିନ୍ଧାକାନ ।

ନିଜ କାମେ ମୁହିଁ ଲାଗିଥାଏ ସଦା
ଭଳେ ନାହିଁ ମତେ ଡର
କାହା ଡାକ ହାକେ କାନ ମୁଁ ନ ପାତେ
ମୋ ବୋଝ ସବୁଠୁଁ ବଡ଼ ।

ମହାକାଶ ତହୁଁ ଏ ଠିକ ପୃଥିବୀ
ଗରଭେ ମୋ ଅଛି ବୁଡ଼
ସବୁ ଭୁଲିହୁଏ ମୋ ନାଆଁ ତ କିଏ
ମନୁ ନ ପାରଇ ହୁଡ଼ ।

ଜଗତ ଜୀବନେ ପ୍ରକୃତିର ମୁହିଁ
ଅଦେଖା ସେନେହାଶିଷ
ନିଃଶ୍ୱାସେ ନିଃଶ୍ୱାସେ ଭିତରେ ପ୍ରବେଶି
ପ୍ରଶ୍ୱାସେ କାଢ଼ଇ ବିଷ ।

ଗଛ ପଶୁ ପକ୍ଷୀ ମଣିଷ ସାଇଜ
ସବୁରି ଗୁହାରି ବୁଝେ
ସବୁରି ହୃଦୟେ ସମ ପରିମାଣେ
ସେନେହ ବାଣ୍ଟଇ ମୁଁ ଯେ ।

କର ପକ୍ଷପାତ ମନେ କା ଆଘାତ
ନ ଦିଅ ନ ଦିଅ ଭାଇ
କୃପାମୟ ତାଙ୍କ କୃପାରୁ କି ଊଣା
କରନ୍ତି କାହାର ପାଇଁ ।

ଅସଲ ଖୋରାକ ଦେହ ମନ ପ୍ରାଣେ
ମୁହିଁଟି ଭୂମିର ଜାଣ
ମୁଁ ଖୋଲା ପବନ ସବୁରି ଜୀବନ
ମୋ ନାଆଁ ଜଗତପ୍ରାଣ ।

ବେଶି ଲୋଡ଼ା ବୋଲି ବିଭୁ କୃପା ପ୍ରାପ୍ତ
ଚଉଦିଗେ ମୁହିଁ ପୂରି
ମେଳିଛୁ ଆନନ୍ଦ ରସର ପସରା
ନିରବେ ନ ହୁଅ ଝୁରି ।

ବାହାର ସମାନ ଭିତରେ ଘର ମୋ
ନିଗୂଢ଼ ଅନ୍ତର ସ୍ଥଳେ
ବଢ଼ାଇ ସ୍ଥିରତା ଶାନ୍ତ ପବିତ୍ରତା
ସାଧନାର କଉଶଳେ ।



## ପାହାନ୍ତି ପବନ

ଅଗ ଡାଳଟି ହଲେଇ ଦେଇ
ପବନ କହେ ଥାଇ
ଅଳସ ଛାଡ଼ ଅଳସ ଛାଡ଼
ଫରଚ୍ଚ ହେଲା ଭାଇ ।

ନଦୁଆ ବଣେ ଉଠେଇ ଦେଇ
ମାରଇ ସିଏ ଛୁଉ
ପଛଲେ ଖାଲି ଜବାବ ଦିଏ
କୋଇଲିଟିର 'କୁଉ' ।

ଲେଉଟି ଆସେ କ ଘାବ ପୁଣି
ପାଆନ୍ତ ଶ୍ରେବ୍ର ବାଆ
ଅଳସ ଘଙ୍ଗେ ଗଛର ସାଙ୍ଗେ
ଲଢାଟି ଛୁଆଁ ଛୁଆଁ ।

ପବନ କହେ ପାହ୍ରିଲ୍ ଘନ୍ତ
ନଦରୁ ଉଠି ପଡ଼
ସଅଳେ ଶୋଇ ସଅଳେ ଉଠ
ହୋଇବ ଯେବେ ବଡ଼ ।

କଅଁଳ ହାତ କଅଁଳ ଗୋଡ଼
ହେବରେ ତୁମ ଟାଣ
ଝଡ଼ର ସାଙ୍ଗେ ଲଢେ଼ଇ ତୁମେ
କରିବ କାଲି ଜାଣ ।

ଗୃଳନା ତୁମେ ନ କଲେ ଦେହ
ବଢ଼ିବ କାହୁଁ ବଳ
ଯଉବନ ଯେ ଦୂରେଇ ଯିବ
ବୟସ ହେଉ ଷୋଳ ।

ବ୍ୟାୟାମ କରେ ପବନେ ଗଛ
ବଗିଚ୍ଚ ବିଲ୍ ବଣେ
ମଣିଷ କାହୁଁ ହୋଇବ ଟାଣ
ପଶିଲେ ସଦା କଣେ ।

ଭୋଜନ ପାନ ଶୟନ ଭଳ
ବ୍ୟାୟାମ ଅଛ ଲୋଡ଼ା
ଦେହର ଶ୍ରମେ ଦେହର ସୁଖ
ରହିଛ ହୋଇ ଯୋଡ଼ା ।

ପୂର୍ବେଇ ବାଆ ଆଁ'ରେ ଆ-ଆ
ହରଷେ ହଲ ହଲ
ଚୈତ୍ର ମହକ ନବାକୁ ଛଟେ
ଡାକୁଛ ଗୋତ୍ର ମଛୀ ।

ଉଷା ଖବର- କାଗଜ ଚୁମ୍ବି
ପ୍ରସ୍ତରୁ ଦନ ବାଣୀ
ଫୁଲର ନାଆଁ ତୋ ଲାଗି ସିନା
ସହଜେ ହୁଏ ଜାଣି ।

ମର୍ମର ତୋ ମଧୁର ଗୀତ
ସୁଧୀର ତୋର ଚଳ
ଓଦା ଲୁଗାଟି ପାଲଟି ଦେଇ
ଆକାଶ ହେଲେ ନାଲ ।

ପାହାନ୍ତ ବାଆ କା ପାଶୁଁ କେବେ
ଶରଧା କରେ ପାଉ
ସକାଳ ନଦେ ସପନ ଢାଳ
ତୋ ବାଟେ ଚୁମ୍ବି ଯାଉ ।

ସେନେହ ପ୍ରୀତି ଦେବା ନେବାରେ
କ ଯାଏ ଆସେ ତୋର
କଷ୍ଟୁ ନ ଚୁହିଁ ଆସୁ ଚୁ ଧାଇଁ
ଡାକଲେ ବଢ଼ି ଭୋର ।

କ ମହାନନ୍ଦ ଆମରେ ଦେଉ
ନ ପାରୁ ନଜେ ଜାଣି
ଛଟକା ଫୁଲ ମହୁଲ ବାସ
ସୁଅ ତୋ ଆଣେ ଟାଣି ।

ସ୍ୱାଧୀନ ଭଲ ବନ୍ଧରୁ ଥାଉ
ଖୁସିରେ ଗୀତ ଗାଇ
ବ୍ୟାକୁଳ ମୁହଁ ବ୍ୟାକୁଳ ଅନ୍ତ
ତୋ ପରି ହେବା ପାଇଁ ।



## ବରଷା-ପବନ

ଝମର ଝାଇଁ ଲୋ ଝମର ଝାଇଁ
ବରଷା ପବନ ସାଆଁଇ ସାଇଁ ।

ପିଟୁଛି ବତାସ ଘୁଟୁଛି ମେଘ
ବଜ୍ରର ଡେଣାରେ ବିଜୁଳି ବେଗ ।

ଫିଟିଛି ବଣର ଅଲଗ୍ନ କେଶ
ଧଇଛ ଧରଣୀ ବାଶୁକୀ ବେଶ ।

ଝମର ଝାଇଁ ଲୋ ଝମର ଝାଇଁ
ସୁଅ ଦଉଡ଼ୁଛି ଅତଡ଼ା ଖାଇ ।

ସାରା ଏ ଆକାଶେ ଘଡ଼ୁଛି ହ୍ମର
ବଜର ବଜାଏ ସଜୋରେ ତୂରୀ ।

ପାହାଡ଼ ଗୁମ୍ଫରେ ଛନକା ପଶେ
ଢଳେ କରି କରି ଝରଣା ହସେ ।

ଝମର ଝାଇଁ ଲୋ ଝମର ଝାଇଁ
କଆର ବାସନା କରୁଛି ବାଇ ।

ଚଳାଏ ପବନ ମେଘର ଥାଟ
ହାତେ ଧରି ସୁନା ବିଜୁଳି ଛାଟ ।

ଟେକୁଛି କଦମ୍ବ ଛୁଟ ଗୁନ୍ଦୁଆ
ମାଳତୀର ମୁହେଁ ଚନ୍ଦନ ଚୂଆ ।

ଝୁମର ଝାଇଁ ଲୋ ଝୁମର ଝାଇଁ
ଖରା ତାତ ଆଉ ମନେ ତ ନାଇଁ ।

ପବନେ କଅଁଳ ଭୁଇଁଚମ୍ପା ଭେଉ
ବାସନା ଛୁଟଇ ବସୁଧା ଦେହୁ ।

ନାଉରିଆ ଗୀତେ ଚମକେ ନଈ
ଲହଡ଼ିର ମୁହେଁ ଛଟକ ଛଇ ।

ଝୁମର ଝାଇଁ ଲୋ ଝୁମର ଝାଇଁ
ମେଘ ଘୁମୁ ରୁଛି ମୟୂରୀ ପାଇଁ ।

ବରଷା ପବନେ କଞ୍ଚନ ଥରେ
ଟଗର ମୁହଁରୁ ଲହୁଣୀ ଝରେ ।

ଶୀତୁଆ ପବନ ବରଷା ଛୁଟା
ଆଜି ଗପମୁଣି ବୁଢ଼ୀମା ଫିଟା ।

ଝୁମର ଝାଇଁ ଲୋ ଝୁମର ଝାଇଁ
ମେଘ ପେନ୍ଥ ମେଘ ଯାଉଛି ଧାଇଁ ।

ଗୁରେଇଁ ମେଘରେ ଏକାଠି କରି
ଜଗିଛି ପବନ ପ୍ରହରୀ ପରି ।

ଝିପି ଝିପି ମେଘେ କାଦୁଆ ମାଟି
ବେଙ୍ଗୁଲି ମେଲନ୍ତି ଫାଳିଆ ପାଟି ।

ଖେଳେ କଆଁବଣେ ସୁବାସ ଭେଉ
ସେ ବାସ ଛୁଟଇ ସମୀର ଦେହୁ ।

ସେ ଗନ୍ଧ ପରଶେ ଅଥୟ କରେ
ମନ ଲାଗେ ନାହିଁ ଆଉ ତ ଘରେ ।

ବରଷାରେ ମାଟି ଭରସା କରି
ରହେଁ ନରଜଳା ଉପାସ କରି ।

ଶୋଷୀମନ ଯଥା ପାଣିର ପାଖେ
ଆସ୍ଥା ହା ଯେସନେ କରୁଣା ଆଶେ ।

ଓଳାତଳେ ଗୁଳେ କାଗଜ ନାଆ
ଶିଶୁ ଗୀତେ ଶୁଭେ "ଭସି ତୁ ଯାଆ"
ସେ ମୁଖେ ଦେବତା କହେତ କଥା
ଥାଏ ବହୁଦୂରେ ସଂସାର ବ୍ୟଥା ।
ଦଗ୍ଧୋଟି କଣ୍ଠେ ସେ ଅମୃତ ସ୍ୱର
କରଇ ସରଗ ମାଟିର ଘର ।
ଗାଉଥାନ୍ତି ମିଳି ମେଘରେ ଗୁହାଁ
"ଝମର ଝାଇଁ ଲୋ ଝମର ଝାଇଁ ।"



## ଶୀତଳ ପବନ

ଶୀତଳ ପବନ ହୋଇ କନ କନ
ଖେଳେ ବଣ ତୋଟା ଗୁଇରେ
ଆଉଟି ପାଉଟି ହୁଏ ତାର ମନ
ଝାଳବୁହା-ଖରା ପାଇଁରେ

କାକର ପାଣିରେ କପୂର ଚନ୍ଦନ
ଦେହେ କଏ ଢଏ ବୋଳିରେ
ଗୁଲୁଗୁଲୁ ପାଗେ ତା ପରଶ ଲାଗେ
ଝୁଲାଇଲା ପରି ଦୋଳିରେ ।

ଶୀତଳ ପବନ କହେ ମୋର ଘର
ହେମାଳ ବରଫ ଦେଶରେ
ଗୁପଚଲ୍ଲେର ମୁଁ ପାଦ ଚପି ଚପି
ଆସେ ମଗୁଶିର ଶେଷରେ ।

ଡାଳ ଢଏ ମତେ କାଣଚଣ୍ଡୀ ବଣ
ହଲାଇ ଧୋବଲା ଚଅଁର
ମତେ ଶୁଙ୍ଘି ଦୂରେ ଦାଆଷୂରେଷୂରେ
କଆଘ ହୁଅନ୍ତ ଛଅର ।

ମୁଁ ବହୁ ଆସିଲେ ଶାନ୍ତ ସମୁଦରେ
ଗୁଲଇ ସାଧବ ବୋଇତ
ମୁଁ ଟିପ ଛୁଇଁଲେ ସବୁର ମୁଖେ ଯେ
ଖୁସିବାସି ନୁହେଁ କହୁ ତ ।

ପଣତ ତଳେ ମୋ ମୁହଁ ଗୁଞ୍ଜି ଥାଏ
ମାଘର ଅଗିର ପୁନଅଁ
ପତର ଝଡଲ ଡାଳେଡାଳେ କହେ
"ଆସୁଛି ବସନ୍ତ-ଭୁନ ହ ।"

ଶୀତ ପବନ ମୁଁ ମାରିଲେ କୁହାଟ
ଶୁଣଇ ଖୁମାଣୀ ବରଡା
ହୁଙ୍କେ ନାହିଁ ଠାଣ ମାଟିର ଗୁମ ନ
ନ ଖାଇ ମୋ ହାତୁଁ ପରଷା ।

ଖୋଲା ନଈକୂଳେ ଗଛଲଟା ମାନେ
ସଦା ଖେଳାବୁଲା କରେ ମୁଁ
ଗଳ କନ୍ଧ କାହିଁ ପଡ଼ିଲେ ହାବୁଡ଼େ
ବଡ଼ ଚଡ଼ଚଡ଼ା ଧରେ ମୁଁ ।

ଶୀତଳ ପବନ ଧମାର ତୋଷଣ
ଆଲୁଅନ ପାଶେ ଥରଇ
ଚଷବ କୁଟୀରେ ମାଟି ଉହ୍ନେଇରେ
ରଡ଼ନଆଁ ଦେଖି ଡ଼ରଇ ।

ବର୍ଷାର ଶେଷର ଉଷୁମ ଗୃଷିଲେ
ଧନକୁ ତ ରଖିତ କରେ ସେ
ପାହାନ୍ତିଆ ଉଠି ହୁଏ ଘୃଣିପିଣି
ହେଁସ ପାଲେ ଯେବେ ପଡ଼େ ସେ ।

ସଙ୍ଗ ଦୋଷେ ଆମ ସ୍ୱଭାବ ପାଲଟେ
ସହ ସୁନା ଅବା ପିତ୍ତଳ
ସଙ୍ଗ ଦୋଷେ ଏଇ ପବନ ଲାଗଇ
କେବେ ତାତି କେବେ ଶୀତଳ

ସାଧୁ ସଙ୍ଗେ ମିଶି ସାଧୁ ହେଲେ ମିଳେ
ହଜାରେ ହଜାରେ ଜୁହାର
ଅବଗୁଣ ନେଇ ଭୂଲ ହେଲେ କେହି
ନ ଖୋଲନ୍ତି ଟିକେ ଦୁଆର ।



## ମଳୟ ପବନ

ଫଗୁଣ ମଳୟ ଝେର
ସିର୍ ସିର୍ ବାଆ
ଲଜକୁଳୀ ବୋହୂଟି ଲୋ
ଥର୍ ଥର୍ ଆ ।

ଚହଳ ଚନ୍ଦନ ବଣେ
ଥିଲୁ ତୁ ଶୋଇ
ବଉଳେ ଅଳସ ଭାଙ୍ଗ
ଆସିଲୁ ବୋହି ।

ମନ ଆମ୍ର ସୁବାସିତ
  କରିବା ଲାଗି
ଛଏ ଦେଇଛୁ ଚନ୍ଦନା ତୋ
 ସପନ ଭାଙ୍ଗି ।

ଦାଣ୍ଡର ପଣତ ଲୋଟେ
 ପଳାଶ ବନେ
ବେଣୀର ମହକ ଖେଳେ
 ବାୟୁ ଚନ୍ଦନେ ।

ତୋ ସେନେହ ମନ୍ତ୍ର ସ୍ୱରେ
 ମଲ୍ଲି ଗନ୍ଧଲେ
ଘୁଣ୍ଟୁ ଘୁଣ୍ଟୁ ବେଣ୍ଟୁ ଶୁଭେ
 ଅଳି ଚଞ୍ଚଳେ ।

ତଇତର ବୁଲିକା ତୁ
 ଫୁଲର ମିତ
ତୋ ମଧୁର କଣ୍ଠ ସ୍ୱରେ
 ଅସରା ଗୀତ ।

କାହା ସୁନା ଭଉଣୀ ତୁ
 କା ଗେହ୍ଲା ଝିଅ
ଲକ୍ଷ୍ମୀ ଛପା ମୁହଁଟି ତୋ
 ସବୁର ପ୍ରିୟ ।

ସରଗର ରୂପ-ଲକ୍ଷ୍ମୀ
 ତୋ ଶୀଷ ଲାଗି
କନ ସଖୀ ହୁଏ ତୋର
 ସ୍ନେହ ସୁଆଗୀ ।

ତୋ ଅମ୍ଳାନ ସ୍ମୃତି ଝୁର
ବରଷ ପାହେ
ବନେ ତୋ ବନ୍ଦନା ଗୀତ
କୋଇଲି ଗାଏ ।

ଯାନ୍ତରୁ ଭଉଣୀଙ୍କୁ
ଯାଉ ଲୋ ଜଣ
ଅଳପ ଧନକୁ ତୋର
ବହୁତ ପ୍ରୀତି ।

ସୁଖଦାୟୀ ପରଶ ତୋ
ମରତେ ଆଣି
ଥରେ ଛୁଇଁବା କ୍ଷଣେ
ଝରୁ ଲେ ପାଣି ।

ରୂପ ଗୁଣ ଉଭୟର
ତୁ ଅବତାର
ପବନ ଭିତରେ ପିନୀ
ତୋ ନାମ ସାର ।

ଅଶୋକ ନଆଳ ଚୂତ
ନୀଳ ପଦୁଅଁ
ଛକ ଛକ ବୃହାନ୍ତ ତୋ
ଉଜଳ ମୁହିଁ ।

ମରତେ ଖୋସାର-ଖୋସା
ପସରା ବାନ୍ଧି
ନନ୍ଦନ ସପନ ସତେ
ଯାଉ ଅନାଡ଼ି ।

ଶିଳ୍ପୀର ତୂଳୀର ତୁ
ଛବି ମୋହନ
ହୋଇଛୁ କବି ହୃଦୟର
ଅମୂଲ୍ୟ ଧନ ।



## ଝଡ଼-ବତାସୀ

ଝଡ଼ ରାକ୍ଷସ  ଜନ୍ମିଲେ କୋପେ
ଖର ନିଶ୍ୱାସ ବହେ
ଆକାଶ ଗ୍ରାସ  ପୃଥିବୀ ଗ୍ରାସ
ଦୁଲୁକ ଉଠେ ଭୟେ ।

ବଜର କଣ୍ଠେ  ଧମକ ଦେଇ
କହଇ ଧୀଠ ଝଡ଼
"ସବୁର ଉପରେ  ମାଲିକ ମୁହିଁ
ମୋ ଠୁଁ କେ ନାହିଁ ବଡ଼

ଆକାଶ ମୋର  ଗୋଟିଏ ବଥା
ପାରିବ ନାହିଁ ସହି
ମୋ ରାଗ ଶାନ୍ତ  କରିବା ଲାଗି
କାହାର ହେବ ମସ୍ତ ।

ଯୁଦ୍ଧରେ ମତେ  ଜିଣିବାକୁ ଜଣେ
ନାହିଁ କେ ତିନି ପୁରେ
ପାଇଲେ କେହି  ପାଖକୁ ଆସ
ନୋହିଲେ ରୁହ ଦୂରେ ।'

ଶପଥ ପିନା , ରହିଲ ଖାଲି
ଝଡ଼ର କଭ ତଳେ
ସୁନେଲ ଖଗ ଚହଲ ଗନ୍ଧ
ଆକାଶେ ଜଳେ ସ୍ଥଳେ

ବଜୁଲ ନଦେ ପଡ଼ଲ ଶୋଇ
ମନରୁ ପୋଛୁ ଦକା
ଅଣ-ନିଃଶ୍ୱାସୀ ପାହାଡ଼ ବଣ
ମାଇଲେ ଶୋଇ ଥକ୍‌କା ।

ଜଗତ ପିତା ନିଦରୁ ଉଠି
ଗୃହିଁଲେ ଆଖି ମଳି
ଥମିଲ ବାଆ କମିଲ ମେଘ
ନିଆଁରେ ପାଣି ଭଳି

ନିଃଶ୍ୱାସ ରୂପେ ନାସାରେ ସଦା
ବହଇ ଯାଂଙ୍କ ଝଡ଼
ଅରୂପ ସେହି ପୁରୁଷ ଏକା
ସବୁର ପରେ ବଡ଼ ।

ସେବକ ମାଟି ପବନ ପାଣି
ଆକାଶ ଖଗ ତାଙ୍କ
ତିଆର ଛନ୍ଦ କରିବା ପାଇଁ
ସୃଷ୍ଟିର ବୋଲହାକ ।

ଝଡ଼ ମୁଁ ମହା ଝଡ଼
ମୋ ଦାଉ ଯିଏ ଖୁସିରେ ସହେ
ସେ ଜଣେ ସବୁ ଗଡ଼ ।

●

# ପବନ-ଆହାର

ଖାଆରେ ପୁରି        ଖାଆରେ ଷିଙ୍ଗ
ଖାଆରେ ପିଠା ପଣା
ପିଇଲେ ପାଣି        ଦୁଧ ବା ଦହି
ପଡ଼ଇ କେବେ ଜଣା ।

ଅସଲ ଆମ        ଆହାର ଯିଏ
ନ ପାରୁ ଟିକେ ବୁଝି
ନାକରେ ସଦା        ଖାଉଁ ତା' ଆମେ
ଓଠରେ ପାଟି ବୁଜ ।

ଖାଉଣି ସବୁ        ରହିଛି ଯେତେ
ସେ ଏକା ସାର ସାର
ବଢ଼େ ସେ ବଳ        ଭରିବା ପାଇଁ
ଶକତି ଘର ତା'ର ।

ଦାଲଦା ଚର        ଭେଜାଲ ଯେବେ
ମିଶଇ ଗୁଆ ଘିଏ
ସ୍ୱାଦ ତା'ର        ଗାଧୋଇ ଯାଉ
ଉପୁଜେ ରୋଗ ବଢ଼େ ।

"ଶରୀର ବ୍ୟାଧି        ମନ୍ଦିର" ନୁହେଁ
"ଆତ୍ମା" ଦେଉଳ ଏ
ସଫା ସୁତୁରା        ରଖିବା ଲାଗି
ସକଳ ପୋଥି କହେ ।

କେତେ ଧେନ        ବଞ୍ଚିବା ପାଇଁ
ଗୃହେଁଟି ଯେବେ ମନ
ସକାଳ ସଞ୍ଜେ        ପବନ ସେବ
ସରବ ନାହିଁ ଧନ ।

ଦୂଷିତ ବାତେ ଜୁହାର କଲେ
ହଜାରେ କୋଶୁଁ ଥାଇ
ସକଳ ରୋଗେ ଔଷଧ ପରି
କରିବ ଜଗୁ ଖାଇ ।

ଯେ ନିରମଳ ପବନ ସେବେ
ବିଭୁ ପ୍ରସାଦ ପାଏ
ସେ ପରସାଦେ ଶରୀର ତା'ର
ଅମର ହୋଇଯାଏ ।



## ଝାଞ୍ଜି ପବନ

ଝାଞ୍ଜି ପବନ ଝାଞ୍ଜ ବଜାଏ
ଖଣ୍ଡିଆ ଭୂତ ନାଚେ
ଗୀରିଷମର ସୂରୁଜ ମୁହଁ
ଅଗିନ ପଛ ଘାଚେ ।

ମଉନ ମାଟି ନଉନ ହୋଇ
ଆଶିଷ ମୋର ମାଗେ
ଲଢ଼େଇ କରେ ବୀର ପରି ମୁଁ
ନିରାଟ ଖରା ସାଙ୍ଗେ ।

ଝାଞ୍ଜି ପବନ ବହିଲେ ବନ
ବାହୁନେ ସାଆଁ ସାଆଁ
ନଈ ଗୁଡ଼ିକୁ ରକତ ଶୁଖେ
ଶୋଷଣ କରେ ଆଆଁ ।

ବାଳକୁ ହୁଏ          ଘୋଟୋଉ ଜର
ଧୂଳର ପ୍ରାଣ ଛୁଡ଼େ
ଖାଆଁ ଖାଁ କଏ          ଗୋଡ଼ାଏ ଖାଲ
ବଲର ସ୍ବରଆଡ଼େ ।

ବହଇ ଝାଞ୍ଜି          ପାଗଳ ପାଜି
ମୋ ବାଟେ ମୁହିଁ ଧାଏଁ
କାମରେ ବୁଡ଼          ନ ଗଲେ କାମ
ନ ହୁଏ ନିଜ ଗ୍ରାଏଁ ।

ମାଡିଲେ ମୁହିଁ          ହୁଅନ୍ତି ମେଘ
ଆକାଶେ ସବୁ ଠୁଳ
ପାହାଡ଼ ବୁକେ          ମାରିଲେ ବାଧା
ଉଛୁଳେ ନଈକୂଳ ।

ଝାଞ୍ଜି ବା ପାଜି          କୁହ ଯା' ମତେ
ଶାନ୍ତିର ଦୂତ ମୁହିଁ
ବରଷା ମନ୍ତ୍ର          ଆକାଶୁଁ ଝରେ
ଦେଲେ ମୁଁ ମାଟି ଛୁଇଁ ।

ମୁଁ ହାତକାଖ          ବଇଶି ପିନା
ଉପର ଖାଲ ଚାଳ
ସବୁର ପାଇଁ          ଶୀତଳ ଘର
ଭିତରେ ମୋର ଛାଡ ।



# ସୁଲୁସୁଲିଆ ବାଆ

ସୁଲୁସୁଲିଆ ବାଆ
କୁଲୁକୁଲିଆ ଗୀତଟି ଗାଇ
ପାଖକୁ ମୋର ଆ ଆ ।
କାଳିଆ ଦେଇ ପତର ମେଳକୁ
ଗନ୍ଧଲ ବଣେ ବାଗୁଡ଼ ଖେଳକୁ
ପଉଣ ଡୋର ଏସନ ଲୁଟ
କ ନୋହିଥିବ ଆହା ।

ସୁଲୁସୁଲିଆ ବାଆ
ବେଣୁଟି ତୋର ବଜେଇ ଦେଉ
ଡାକିଲେ କାଉ କଆ ।
ପୁରୁବ ପଟେ ଫାଟକ ମେଲୁ
ଅବିର ମୁଣି କେ ବୁଣି ଦେଲୁ
ଉସେଇ ନେଲୁ ଖଣ୍ଡ କି ଖଣ୍ଡି
ମେଘର ସୁନା ନାଆ ।

ସୁଲୁସୁଲିଆ ବାଆ
ବାଇଆ ପର ମନକୁ ମନ
ତୋ ଗୀତ ଭୁଲି ଗାଆ ।
କଅଁଳ ନଦେ ଏଇଠି ଶୋଇ
ଗ୍ଲାତର ଦୁଃଖ ଦେବ ମୁଁ ଧୋଇ
ଆସିବୁ ଟିକେ ମୋ ପାଖୁ ନଛ
ପହିଁ ତୁ ବୁଲୁଥାଆ ।

ସୁଲୁସୁଲିଆ ବାଆ
ତାଳ ବାଉଁଶ ଝଟଣା ଖଣ୍ଡି
ହଲେଇ ଦେଇ ଯାଆ ।
ମଣିଷ ତନୁଁ ଘାସଟି ଯାଏ
ଆଦର କରି ଆପଣା ପ୍ରାଏ
ଆଉଁସି ଦେଇ ଦେହ ଓ ମୁଣ୍ଡ
ସତେ କି ନିଜ ମାଆ ।

ସୁଲୁସୁଲିଆ ବାଆ
କହ ତ ମତେ କିଏ ତୋ ବାପ
କିଏ ସେ ତୋର ମାଆ ।
ଶକ୍ତିମୟ କେ ତାଙ୍କ ପରି
ତୋ ପରି ପୁଅ ଜନମ କରି
ସେ ଦୁହେଁ ସତେ ଶେଷ ବଖତେ
ହେବେ କି ମତେ ସାହା
ଏତିକି ଟିକେ ତାଙ୍କର ପାଖେ
ଜଣେଇ ଦେବୁ ଯାଆ ।



## ବାରମିଶା ପବନ

ବହୁଛି ପବନ ସାଇଁ ସାଇଁ
ମୁଉଁ ଆଉଁ ଆଉଁ ଦୁଆରକୁ କଳ
ବଟଣି ହଲାଅ କାହିଁପାଇଁ ।
ମୁଁ ବୁଲୁଚ ଜଗି ନଈ ଗୃହପାଖେ
କପୋତ କପୋତୀ ଘରେ ଯାଉ ଡାକେ
ଘନ ବନମାଳ ଆମ୍ବ ଶାଳ ତାଳ
ବହଳ ଅନ୍ଧାର ଗଛ ଛୁଇ
ପବନ ବହୁଛି ସାଇଁ ସାଇଁ ।

ବହୁଚ ପବନ ସିର ସିର
ନିଦ ଯେବେ ତୁମ ଲାଗୁଛି ଅଳସ
ଖୋଲି ପଡ଼ିଆରେ ବସ ଥିବ ।
ଉପରେ ଆକାଶ ତଳେ ନାଳ ଘାସ
ଚନ୍ଦନ ରଖିଛୁ ବୋଳିଦେବ ଆସ
ମନ-ଭେକ ତୁମ ପାଇବ ଖୋରାକ
ଆଉଁସି ଦେଲେ ମୁଁ ଥିର ଥିର
ପବନ ବହୁଚ ସିର ସିର ।

ବହୁଚ ପବନ ସୁଉ ସୁଉ
ନିତ କାଶ ଜରେ ବଛଣା ଧରୁଛି
ଆଉଁ ଆଉଁ ସଦା ପାଶେ ମୁଉଁ ।
ଖୋଲ ଘରମୁହାଁ ଝରକା କବାଟ
ମିଶିବାକୁ ମତେ ଦିଅ ଟିକେ ବାଟ
ସୁଖ ଦେଇ ତୁମ ଦୁଃଖ ହରି ନେବ
ଆଉ ନ କାଶିବ ଖୁଉଁ ଖୁଉଁ
ପବନ ବହୁଚ ସୁଉ ସୁଉ ।

ବହୁଚ ପବନ ଥିର ଥିର
ଗୁମ୍ଫା ଘରେ ଧୂଆଁ ଜାଳ ଶୋଉଥିଲେ
ହସୁଥିବ ମୁହଁ କର କର ।
ନ ପଶୁର ପଛେ ତୁମେ ମତେ ଭାଇ
ବନେ ବନେ ମୁହଁ ଆସୁଥିବ ଧାଇଁ
ତୁମ କଲବଲ ଟିକିଏ ଦେଖିଲେ
ଲୁହ ସିନା ମୋର ହେବ ଶର
ପବନ ବହୁଚ ଥିରଥିର ।

ବହୁଚ ପବନ ସୁଲୁ ସୁଲୁ
ଖାଉଚ ପିଉଚ ପେଟ ପାଟି ଭରେ
ବଣ୍ଟୁନାହଁ କିଆଁ ଗୁଲୁ ଗୁଲୁ ।
ବଅସ ଯୁଆନ ମନ ବୁଢ଼ା କିଆଁ
ବନ୍ଧେ ବାରବେଙ୍ଗ ମାଡ଼ୁଅଛୁ ଚଆଁ
ଛୁଡ଼ିଛ ମୋ ପରି ବାହାର ସାଥୀକୁ
ଭିତର ଫଳକେ ଝୁଲୁ ଝୁଲୁ
ପବନ ବହୁଚ ସୁଲୁ ସୁଲୁ ।

ବହୁଚ ପବନ ସନ ସନ
ଏତେ ଖୁସିବାସି ଗନ୍ଧକେ କାହିଁକି
ପିଟା ଲାଗୁଅଛୁ ତୁମ ମନ ।
ମୋ ପାଖେ କେବଳ ଭରସାଟି ରଙ୍ଗ
ହଟିଯିବ ରୋଗ ଛୁଟିଯିବ ଦଙ୍ଗ
ଘରଗର ସୁଖ ଭୋଗଇ ମଣିଷ
ଦେହଟିକୁ କଲେ ମୂଳଧନ ।
ପବନ ବହୁଚ ସନ ସନ ।

ଏଇ 'ପାଣି' ଏଇ 'ମାଟି' 'ପବନ'
ଏଇମାନେ ସବୁ ଆମ ଜୀବନ ।
ମାଟି ଦେହ କହଇ
ଆତ୍ମା ମୁଁ ବହଇ
ଯେ 'ଆକାଶ' ଅଛୁ ତୁମ ଭିତରେ
ସେ 'ଆଲୋକେ' ଖୋଜ ତାକୁ ଚିତ୍ତରେ



# କଥାର କଥା

କଇସ କଥା — ବେଙ୍ଗୁଲି କଥା
କଥା ମାଡ଼ିଯାଏ ମେଟ୍ଲିଇ ଲତା ।

ମିଷ୍ଟ କଥା ଏକା କଥାର ସାର
ଆଉ ସବୁ କଥା ପାଣିର ଗାର ।

ଚଟୁ କଥା ଶୁଣି ନ ହୁଅ ଖପା
ମନ-ନରଦମା କରେ ସେ ସଫା ।

ଶୁଖିଲା କଥାରେ ନ ସିଝେ ଶାଗ
ଦାଢ଼ୁଆ କଥାଟି ବଢ଼ାଏ ରାଗ ।

ଚେଡ଼ା କଥା ସବୁ କାନର ମୁଣି
ରୁଷ ନାହିଁ ପର — କଥାକୁ ଶୁଣି ।

ଘର କଥାଯାକ ନଳାରେ ଯାଉ
ହାଡ଼ଜଳା କଥା ନ କହ ଆଉ ।

ସାଉଁଳା କଥାରେ ତରଳେ କାଠ
ଟୁପୁ ଟୁପୁ କଥା ମାରଇ ଗୁଣ୍ଠ ।

ଅଲଣା କଥାରେ ନ ମିଳେ କିଛି
ନିନ୍ଦା କଥା ଦୂରୁ କରିବ ଛି-ଛି ।

ବଡ଼ ଘର ବଡ଼ ଗୁମର କଥା
ପାଟି ନ ଫଟାଇ କାନକୁ ପଠା ।

ଅସଲ କଥାଟି କଥାର ମଞ୍ଜି
ବାଜେ କଥା ଶୁଣି ନ ହୁଅ ଗଞ୍ଜି ।

ବୃଥା କଥା କହୁ ଝଗଡ଼ା ନା ଘଟ
ଗମ୍ଭୀର କଥାକୁ ନ ପାଏ କାଟ ।

ମିଠା କଥାକୁ ତ ସଂସାର ବାଇ
ଚକଣା କଥାଟି ତା ବଡ଼ଭାଇ ।

ଆଡ଼ଶୂଳା କଥା ଛୁଞ୍ଚିର ମୂନ
କଡ଼ା କଥା କଟା— ଘାଆକୁ ଚୂନ ।

ପିଣ୍ଡାବସା ଫୋଡ଼ି ଠାପୁଆ ଯିଏ
ଗୁଉଳଆ କଥା ଗ୍ରେହ୍ବୀଏ ସିଏ ।

ପଉରୁଷୀ କଥା ହାଣ୍ଟକା ଦାନ୍ତ
ଜୀବ ଯାଉ ପଛେ ରଖଇ ସ୍ୱତ ।

ସାତ କଥା ଶୁଣି ସଞ୍ଚ ବ ଭୁଲେ
ଗପ କଥା ସାଙ୍ଗ ଦୁନଆ ବୁଲେ ।

ଅଳପ ପାଣିର ବହୁତ ରବ
ଟିକଏ କଥାରୁ ବଡ଼ ପରବ ।

ମନକଥା ସିନା ଜାଣଇ ମନ
ମଜା କଥା ଏକା କଥାର ଧନ ।

ଖଣ୍ଡିଆଳ କଥା ଗଣ୍ଡି ବଢ଼ାଏ
ଶାନ୍ଦେଆ କଥା କଳିଜା ଖାଏ ।

ଟାଣ ଟାଣ କଥା ବଜର-ନିଆଁ
ଲୋକହସା କଥା ମାଡ଼ଇ ଛିଆଁ ।

କାଲ୍ ଠାର କଥା କାଲ୍-ମା ଜାଣେ
ତାଜୁବ କଥାଟି ଚମକ ଆଣେ ।

ପିଲ୍ଲାଦନ କଥା ପିଲାକୁ ପାଏ
ଗଲ୍ପ-କଥା ସବୁ ଖଟକୁ ଯାଏ ।

ମନଗଢ଼ା କଥା ଆଣ୍ଠମା ଗପେ
ଗୂଢ଼ କଥା ଋଷି ମଉନେ ଜପେ ।

ବହୁଘଷା କଥା   କ'ସାଗ୍ଣି-ପାଗ୍ଣି
ଠିକଣା ଲୋକର   କଥାଟି ଖାଗ୍ଣ ।

ଗୁମରବାଜର   ଗୁପତ କଥା
ଇସାରା ପାଇଲେ   ବଥାଏ ମଥା ।

ଅତ ବଡ଼ି ବଡ଼ି   କଥା ଯେ କହେ
ବସୁଧା ତାହାକୁ   ମୋଟେ ନ ସହେ ।

ଟ୍ରେଠ ମୁହେଁ କହେ   ଯେ ବଡ଼ କଥା
ହୃଦରେ ମନରେ   ଶ୍ରୋଗେ ସେ ବଥା ।

ମନରଖା ମନ—   ବହଲ କଥା
ଏ ଦୁହେଁ କେବଳ   ବାଆକୁ ବତା ।

କଳନା କାଢ଼ଇ   କଥାରୁ ଖିଅ
ବୃଦ୍ଧିମାନ ମାଶ—   ନଥଇ ଢିଅ ।

ଘୋଟି ଘୋଟି ଖାଲ   ଆଣ୍ଡୁଆ ମରେ
ବୋକା ଖୁମ୍ପିଆଳ   ବୁଝେ ଶେଷରେ ।

ଟାଲୁ କଥା ଏକା   ପାଜିଙ୍କ କାଜ
ସତ କହିବାକୁ   ପୂରା କେ ରାଜ ?

ଅମୂଲ୍ୟ ବଚନ   ବେଦର ସାର
ସବୁ କାଳେ ଠେକ   ଥାଏଟି ଚାର ।



## କଅଁଳ ସଅଁଳ

ସୁଲୁ ସୁଲୁ ଗତ   ଶିଉଳିଆ ବାଆ   କ କନକନ
ଉଷୁମ ଉଷୁମ   କଅଁଳ ଶେଯକୁ   ଡାକଇ ମନ ।
କଅଁଳ ବଚନ   ମହୁପଣା ଦିଏ   ମନରେ ଢାଳ
କଅଁଳ ଗୁହଟି   ଜଳଇ ସତେ କ   ରୂପାର ଜାଳ ।

କେଡ଼େ ଗୁଲୁଗୁଲୁ କଅଁଳା ପିଲାର ମଧୁର ହସ
କଅଁଳ ହୃଦୟ— ପାଖେ କଏ ଭଲ ନ ହୁଏ ବଶ ?

କୁନ କୁନ ଅଗ କଅଁଳ ପତର ପବନେ ହସେ
କଅଁଳ ଫୁଲରେ କେଡ଼େ ସରାଗରେ ଭଅଁର ବସେ ।

ଚକଣଚକଣ କଅଁଳା ବାଛୁରୀ— କଅଁଳ ଦହ
ଗୁଣ୍ଡା ନଟିଯାଏ କଅଁଳ ଭାତରେ ବାଜଲେ ଘିଅ ।

ବଡ଼ ସୁଆଦଆ ରସୁଣ-ବଘର କଅଁଳ ଶାଗ
କଅଁଳ ଖରାକୁ ଶୀତେ ପୁହିଁବାକୁ ସଭିଏଁ ଆଗ ।

ଦାଢ଼ୁଆ କଥାରେ କାଟି ହୋଇଯାଏ କଅଁଳ ଗୁଡ
କଅଁଳ ମଳୟ ନୂଆ ବସନ୍ତର ପନ୍ଧରେ ସାଥୀ ।

କେଡ଼େ ଶୋଭା ପାଏ କଳା ମଚମଚ କଅଁଳ ବାଳ
କଅଁଳ ଘାସରେ ଶୋଭଇ କାକର ମୁକୁତାମାଳ ।

କଅଁଳ ମାଉଁସ ପାଇଲେ ଖାଏ ମୁଁ ଚୁଉଟୁକନା
କଅଁଳେଇ କହେ କଅଁଳ କାହାଣୀ ଆଈମା ସିନା ।

କଅଁଳରେ ଖାଇ ସଅଳେ ବଢ଼ଇ ଚେଲବହଣ୍ଡା
କଅଁଳ କଥାଟି ମଉଜମୁହାଁର ବେଉସା ପଣ ।

କଅଁଳ ଚେହେରା ବେଳ ହେଲେ ତାର ବଦଳିଯାଏ
ମନେ ସବୁ କାଳେ କଥାଟି କନ୍ଥ ତା ଝଟକୁଥାଏ ।



## ସଜବାଜ

ରଜ ସଜବାଜ ଉଛବ କେଡ଼େ ମଉଜ ସତେ
ସଜଫୁଲ ପରି ସୁନ୍ଦର କଏ ଅଛି ମରତେ ?

ସଜ ବସାଦନ୍ଧ ସରଚି ଲାଗେ ବଡ଼ ଚକଣ
ନବ ସଜଲୁଗା ପିନ୍ଧାକୁ କାର ନ ବଳେ ମନ ?

ପିଇବାକୁ ସଜ ପାଣିର    ପଣା ଲାଗଇ ଭଲ
ନ ଶୁଣିଲେ ସଜ ଖବର    ମନ କ କଲବଲ !
ଦୁନିଆ ଭିତରେ ଅଛନ୍ତି    ଥୋକେ ହ୍ୱଂସିକା ଲୋକ
ସଜ ମାଛଟିଏ ଦେଖିଲେ    ବାଦେ ପକାନ୍ତି ପୋକ ।
ଆମ୍ବକଷି-ନସି-ପଖଳା    ସଜ ପଖାଳ ଭାତ
ଖାଇବାକୁ ମଜା ଜୁଟିଲେ    ସାଙ୍ଗେ ସହୀ ସଙ୍ଗାତ ।
ସଜ ଗୋବରରେ ଗ୍ରାଉଜ    ନିତ ପକାଏ ଛଚା
ମୂଷ୍ମୂଷ୍ ସଜ ମୁଢ଼ିକୁ    ନାଲ-ନଡ଼ିଆ କୋରା ।
ସଜ ଚୋରୁଣିଟି ଦନ୍ତରେ    ବଡ଼ ଲାଗଇ ବାଗ
ସଜ ପରିବାର ସୁଆଦ    ଚନ୍ଦ୍ଁ ମିଶିଲେ ରାଗ ।
ଖାଇବାକୁ ମିଠା ଗଛର    ସଜ ପାଚିଲା ଫଳ
ସଜ ସିନାନରେ ମୁହଁଟି    ଦିଶେ ବଡ଼ ଉଜ୍ଜ୍ୱଳ ।
ସଜଠି ସବୁରି ନଜର    ସବୁ ସଜରେ ଭଲ
ବାସି ହେଲେ ଅଣଆଦର    ହୋଇ ହରାଏ ମୂଲ ।



## ଗରମାଗରମ

ଭାତ ପଛକେ    ବଗଡ଼ା ହେଉ    ଗରମ ଭଲ ଲାଗେ
ମରମ ଯଦି    ଗରମ ଥାଏ    ତୁରନ୍ତକୁ ଲୋକ ରାଗେ ।
ଶୀତେ ଗାଧୁଆ    ଲାଗଇ ଭଲ    ଗରମ ଥିଲେ ପାଣି
ଗରମ ଲହୁ    ଠକଣା ବାଟେ    ନ ନିଏ କେବେ ଟାଣି ।
ସୁନା ଉଆସ    କରଇ ଚୂନା    ଗରମ ଲୁହଧାର
ଚଟଲା ଶ୍ୱାସ    ପଡ଼ିଲେ ସବୁ    ହୁଅଇ ଛାରଖାର ।
ଗରମ ବାଲି    ପୋଡ଼ଇ ପାଦେ    ମୁନିଆଁ ଛୁଞ୍ଚ ପରି
ଗରମ କଥା    ବିଷ ପରିକା    ହୃଦରେ ଯାଏ ଚରି ।

ଗରମ ଗୁହା ନ ହେଲେ ହୁଏ ଅମଳୀ ଖିନଖିନ
ଗରନ ଖିରି ଭୋଗିଲେ ମଥା ମାରଇ ଚନଚନ ।

ଖିରିରେ ଫାଟି ଛତଲା ମାଟି ଓଶୋଷରେ ଆଁ କରେ
ଗରମ ବାଆ ବାଜଲେ ଲାଗେ ଭୋଗିଲା ପରି ଜରେ ।

ପକେଟ ଯଦି ଗରମ ଥାଏ ସରଗ ଦିଶେ ପାଖ
ତାଜା ଖବର ଗରମ ଥିଲେ ବେତାର ଦିଏ ଡାକ ।

ଗରମ କଥା ଶୀତଳ ହେଲେ ନ ଥାଏ କିଛି ସାର
ଗରମାଗରମ୍ ଚିନାବାଦାମ୍ ଉଦାହରଣ ତାର ।

ତୁଳାଟି ପରି ନରମ ହୋଇ ଯିବ ମୁଁ ପଛେ ଜଳି
ମରମ କାର ପୋଡ଼ିବ ନାହିଁ ଗରମ ନଆଁ ଭଳି ।



## ନୂଆନବତନ

ନୂଆ ବହିଟିରେ କେଡ଼େ ସଉକରେ ମଲାଟ କରେଁ
ନୂଆ ଲୁଗା ପାଇଁ ପୂଜା ଦିନେ କଳ ସବୁର ଘରେ ।
ନୂଆ ମାଟି ପାଇ ଫସଲ କଅଁଳି ଉଠଇ ଫୁଲି
ମନ ସକସକ ନୂଆ ଜାଗା ଯିବା— ପାଇଁକି ବୁଲି ।

ଅଢ଼େଇଦିନିଆଁ ହେଉ ପଛେ କାଚ କି ଚକଚକ
ନୂଆ ବୋହୂଟିଏ ଦେଖିବାକୁ ମନ ହୁଅଇ ରଙ୍କ ।
ନୂଆ ଗୁଉଳର ଷୀରିଟି ପାଟିକୁ ଲାଗେ କି ମିଠା
ନୂଆ ନୂଆ ଚିଜ ଯେତେ ଦେଖି ଗୁଣି ନ ଲାଗେ ଚିଠା ।

ନୂଆ ଘର, ନୂଆ ବାସନକୁସନ ସବୁ ଚିକଣ
ନୂଆ ପତରରେ ଦିଶେ କି ସୁନ୍ଦର ବଉଳ ବଣ ।
ନୂଆ କୂଅ, ନୂଆ ଗଡ଼ଆର ପାଣି ବଡ଼ ହେମାଳ
ଆହା କେଡ଼େ ସୁଖ ନ ଦିଏଟି ନୂଆ ବସନ୍ତ କାଳ ।

ନୂଆ ଫୁଲଟିଏ ସକାଳ କାକରେ ହସେ କି ଚୋର
ନୂଆ କଥା ଶୁଣି ମନ ଭାବେ ଅବା ଖୋଜଚ କୋଉ ।
ନୂଆ ସବୁ ହସେ ନୂଆ ପର ହୋଇ ନ ରହେ କାହିଁ
ପୁରୁଣାକୁ ଜାଣି କଉଡ଼ି ତୁଲେ କେ ପଚ୍ଛରେ ନାହିଁ ।
ନୂଆ କଥା ଶିଖି କରିବ ମୁଁ ନୂଆ ଗୁଣ ଅର୍ଜନ
ନୂଆ ନୂଆ ଜ୍ଞାନେ ଲେଖିଏ ଏ ସାରା ଜଗତ ମନ ।
ନୂଆ ଘରୁଆର ବଡ଼ତ ଶୁଭଇ ଦାଣ୍ଡେ ଓ ହାଟେ
ନୂଆ ବେତମାଣ୍ଡ ନ ଲଭଇ ମନୁଁ ପହିଲ ପାଠେ ।
ନୂଆ ଯେତେ ଯାହା ଥିଲ ମୁହିଁ ଶିଖି ମାଆର ପାଖେ
କଡ଼େ କଡ଼େ କାମ ସେଇ ଦେଉଚ ଏ ଜୀବନ ଯାକେ ।



## ଧୀରସ୍ଥିର

ଧୀର ପବନ ହସକୁ ଲଗେ ମାଆ-ଆଉଁଷା ପରି
ଧୀର ସୁଅରେ ବୋଇତ ଚଳେ ବଣିଜ-ବୋଝ ଧରି ।
କାନକୁ ମଧୁ ପିଆଇଦଏ ଗୀତର ଧୀର ସ୍ୱର
ଠିକ ସୁଅର ଧୀର ଚାଲଟି ହସେ କେଡ଼େ ସୁନ୍ଦର ।
ଧୀର କଥାରେ କ୍ଷଣକେ ହୁଏ ସାରା ଦୁନିଆ ବଶ
ଧୀର ପାଣିରେ କଇଁ ଫୁଲର ଝଟକେ ଚୋପା ହସ ।
ଧୀର ସ୍ୱଭାବ ସବୁରି ମନ ସହଜେ ନିଏ ଟାଣି
ଧୀର ବୁଦ୍ଧିରେ ନ କଲେ କାମ ବିପଦ ନିଷ୍ଟେ ଜାଣି ।
ଧୀର ପବନେ ସକାଳ ଡେଉ ନାଚଇ ଡଳ ଡଳ
ଧୀର ସୁଅଟି ପରିକା ମୁହିଁ ମୋ ବାଟେ ଯିବ ଚଳ ।



## କନ୍ଦାକଟା

କୁଆଁ କୁଆଁ କାନ୍ଦେ ଛୁଆ
କଇଁକଇଁ କାନ୍ଦେ ପିଲ୍ଲ
ଭେଏଁ ଭେଏଁ କାନ୍ଦେ ପୁଅ
ଟେହ୍ଲି ଝିଅ କାନ୍ଦେ ମୁହଁ
ଲାଜେ ଭୟେ ନୂଆ ବୋହୂ
ବଳକ ବା କାନ୍ଦଣାରେ
ଭେମାରଡ଼ ଗୁଡ଼ କାନ୍ଦେ
ଅଳଟିଆ ପିଲା ଟୋକେ
ଗ୍ରାଜକେମା ବୁଢି କାନ୍ଦେ
ସ୍ତ୍ରୀଙ୍କୁ ତ କାନ୍ଦିବାକୁ
କାନ୍ଦଇ ବୋବାଳ ଗୁଡ଼
ବାହୁନ ବାହୁନ କାନ୍ଦେ
ଫୁଲଣା କାନ୍ଦ କେ କାନ୍ଦେ
ଦେଖଣା କାନ୍ଦ କେ କାନ୍ଦେ
ଆଖି ମଳ ମଳ କାନ୍ଦେ
କଳଟି ଭଆଇ ନକେ
ଜଞ୍ଜାଳରେ ପିଞ୍ଜି ହୋଇ
କାନ୍ଦେ କେ ବା ଗଛମୂଳେ
ମୁଣ୍ଡ କୋଡ଼ କାନ୍ଦେ କେହ
ମହାତ୍ମା ସବୁର ପାଇଁ

ଅନୁତ୍ତରେ ସେକଲେ
ମାଆକୁ ନ ଦେଖିଲେ ।
ଅବଧାନ-ମାଡ଼ରେ
ମାଡ଼ ଖଟ ଦାଢ଼ରେ ।
ସୁଉଁସୁଉଁ କ ନଇ
ମଥା ଖାଲି ବନ୍ଧଇ ।
ବଦାବେଳେ ଝିଅଟି
କାନ୍ଦଣାର ଖିଅଟି ।
ଶୋଇ ରତ୍ନ-ପଲଙ୍କେ
ନ ଲାଗଇ ପଲକେ ।
ସ୍ୱାମୀ କେହ୍ବ ହରାଇ
ଲୁହ କେ ବା ଝରାଇ ।
ଆଖି ଖାଲି ଚପୁଡ଼ି
ଓଠ ମୁହଁ କପୁଡ଼ି ।
ଗ୍ରେଟରମାଆ ଗ୍ରେଟରଣୀ
କାନ୍ଦେ କଳଖୋରଣୀ ।
କାନ୍ଦେ କେହ୍ବ ନାକରେ
ଶୋଇ ଖଟ କାକରେ ।
ଛିନ୍ତ ଲୁହ ଝାଳରେ
କାନ୍ଦେ ସବୁ କାଳରେ ।



# ଫୁଲଫୁଲଣା

ଫୁଲଟି ପଇକା    ଚହଟ ସୁନ୍ଦର    କ ଅଛୁ ଆଉ
ଶୋଭାର ବଜାରେ    କଷି ହୁଏ ନାହିଁ    ତା ଚଢ଼ା ଭାଉ ।

କେଡ଼େ କଅଁଳଆ    ଛୋଟ ଛୋଟ ବାଟ    ଘାସର ଫୁଲ
ଟିକ ମୁହଁଟିର    ଟିକିଏ ହସ ବ    ଅମୂଲ୍ୟ ମୂଲ୍ୟ ।

ମାଣ୍ଡସଞ୍ଜାବୁଡ଼    ଦରଫୁଟା ମଲ୍ଲୀ—    ମୁରୁକ ହସ
ନଇଖି ଗୁହ୍ନିଲେ    ମନେପଡ଼େ ମୋର    ପିଲ୍ଲ ବଅସ ।

ଛନଛନ ଫୁଲ    କନକନ ହୋଇ    ଅନାଏ ଯେବେ
ପ୍ରତେ ହୁଏ ସେ ମୋ    ଅତି ଆପଣାର    ଥିଲ୍ଲ ବା କେବେ ।

ଏକ ଡେମ୍ଫେଁ ଦୁଇ    ଫୁଲ ମୁଁ ଦେଖିଲେ    ଲଟାରେ କାହିଁ
ଭାବେଁ ତାକୁ ଅବା    ମାଆ-କୋଳେ କୁନ    ଯାଆଁଳା ଭାଇ ।

କୁହୁ ଡାକ ଘେନ    ମଳୟ ପବନ    ଅଇଲେ ବହି
ମାଳତୀ ଅପାକୁ    ଡାକଇ ମାଧବୀ    "ସହି ଲୋ ସହି !"

ବାସି ଫୁଲ ତଳେ    ମୁହଁ ମାଡ଼ି ଶୁଏ    ବାସନା ବିନା
ମଡ଼ା ମୁରୁଦାର    ସଡ଼ା ଫୁଲହାର    ଅଲୋଡ଼ା ସିନା ।

ଗୁଚ୍ଛା ଫୁଲ ଦଶେ    ସତେ ବା ସୁନ୍ଦର    ରେଶମ ଧଡ଼
ବିଧବା ଝିଅର    ଦୁରୁଦଶା ଭୋଗେ    କେହ୍ନ ବା ଝଡ଼ ।

କାକର-ମୋତିର    ହାର ପିନ୍ଧେ ଯନ୍ଧ    ତଟକା ଫୁଲ
ରୂପ-ରାଇଜରେ    ଲକ୍ଷେ ଗୁଣ ବଢ଼େ    ତାହାର ମୂଲ ।

ଶୁଖିଲ୍ଲ ଫୁଲଟି    ଗରବ ଭରଯା    ସବୁର ଶାଳୀ
ପୋକକଟା ଗାଲେ    ଦଅଇ ଭଅଁର    ଚୂନ ଓ କାଳି ।

ପୂଜା ଫୁଲ ଏକା    ସବୁର ମଥାର    ମୁକୁଟମଣି
ଛଡ଼ା ଫୁଲ ହାରେ    ଠାଇଁଆଣୀ ବୋହୂ    ଚଳରେ ଗଣି ।

ବାରମିଶା ଫୁଲ    ରୂଢ଼ା, ମୁଢ଼ି, ଖଇ,    ଉଖୁଡ଼ା ଅବା,
ଜାତି ଜାତି ଫୁଲ    ରାତି ଦିନ ଫୁଟି    କରନ୍ତି ସଭା ।

ମହୁଝର ଫୁଲ  ବାଡ଼ ବଗିଚାର  ପୋଷିଲା ପୁଅ
କିଏ ବୁଝେ ହାୟ  ମଉଳା ଫୁଲର  ମଉନ ଲୁହ !

ସାଉଁଟା ଫୁଲ ସେ  ଅତି ହୀନମାନୀ  ପୋଡ଼ାକପାଳୀ
ବାର ଭୁଣ୍ଡୁ ଶୁଣେ  କାହିଁକି କେଜାଣି  ବୋଲଣା ଗାଳି !

ଫୁଲଟି ପରିକା  ମରିଯାଏଁ ପଛେ  ଘଡ଼ିଏ ଫୁଟି
ମୋହିବି ଜଗତ  ବାଣ୍ଟି ଦେଇ ରୂପ—  ଗୁଣର ମୁଠି ।

ଲୋଡ଼ା ନାହିଁ ମୋର  ପାକଲା ବୁଢ଼ାର  ଲମ୍ବା ଆଇଷ
ନାକେଦମ କରେ  ଜୀବନକୁ ଯାର  କୁଟୁମ୍ବ-ବିଷ ।

ଗଡ଼ିଆ-ଚଦୁଅଁ  କଅଁଳକଢ଼ି ସେ  ଗେଲେଇ ନାମୀ
ସ୍ଵରୂପ ଦେବତା  ଘୁଞ୍ଚେ ନାହିଁ ତାର  ପଣତ କାନି ।

ଗୌରବ ବୃନ୍ତରେ  ବଢ଼ି ମୁଁ ହୋଇଲେ  ଗୁଣର ରଜା
ପାଦତଳେ ଦିନେ  ଖଟିବ ଜଗତ  ହୋଇ ମୋ ପ୍ରଜା ।



## ହସକୌତୁକ

ପାକଲା ହସ  ହସଇ ବୁଢ଼ା  ପାକୁଆ ପାଟି ମେଲି
ଅଠିଲି ହସ  ରସିକ ହସେ  ହୋଇଲାବେଳେ ବେଳି ।

କର୍କର ହସେ  ମାଆର କୋଳେ  କଅଁଳା କୁନି ପୁଅ
ଶୁଖିଲା ହସ  ହସିଲେ ବେଟୀ  ନେଫଡ଼ା ଦଶେ ମୁହଁ ।

ମାଗିଲା ଲୋକ  ପଚାଇ କାନ  ନିକଟା ହସ ହସେ
ହୋଓହୋ ହସେ  ଜଦଆ ଯନ୍ଧ  ପଶା ଖେଳରେ ବସେ ।

ହସଇ ନର୍ତ୍ତକୀ  ଫୁଲଆ ହସ  ନ ଖାଏ ଯେହୁ ପାନ
କୁଣିଆଁ ହେଟି  ଦରହସରେ  ଦେଖାଏ ସନମାନ ।

ଅଣ ବିଶ୍ଵାସୀ  ମୁରୁକି ହସେ  ଭିତରେ ଖାଲି ଖୋଳ
ଭଗାରି ହସେ  କପଟ ହସ  ମୁହଁରେ ମିଠା ବୋଲ ।

ଭୀଷଣ ମୁହେଁ ବିକଟ ହସ ହସଇ ସଇତାନ
ବଙ୍କା ହସଟି ଯାହାର ଓଠେ ଶଢେଣ୍ଟା ତାର କାନ ।

ଠୋଉଠୋ ହୋଇ ହସଇ ଯୁବା ସାଙ୍ଗ ସରସା ମେଳେ
ହେଏଁ ହେଁ ହସେ ନାଟୁଆ ପିଲା ତାମସା କଲାବେଳେ ।

ବାଡୁଅ ଝିଅ ନବକ ମନେ ହସଇ କରକର
ଚପିଲା ହସ ହସଇ ବୋହ ଉରୁଣୀ ତଳେ ଥିର ।

ପାଗଳ ହସେ ମଉନ ହସ ମନକୁ ମନ ବସି
ହସର ନଉ ଖାଇ ବା କେହ୍ନ ଗଡ଼ଇ ହସି ହସି ।

ବଉଦ-ବହେ ବିକୁଳ ପରି ମୁହଁର ହସଧାର
ସଂସାରେ ଭାଇ ! ହସଟି ଏକା ସବୁ ସାରର ସାର ।

ସରସ ମୁହେଁ ଫୁଟାଇ ପଦ୍ମ ପାରିବ ଟିକେ ହସ
ସେହ୍ନ ତ ହେବ ମୋ ଜୀବନର ପରର ପଉରୁଷ ।



## ନିଦ-ନିଶା

ପାଳୁଆ ମାଟିରେ ପାଳୁଳ ମୂଡ଼ି
ସଞ୍ଜବେଳେ ଆସେ ନଦେଈ ବୁଢ଼ୀ ।

ଗଣି ଗଣି ପଣି ସବୁରି ଘରେ
ଦେହରୁ ମନରୁ ବେଦନା ହରେ ।

ଥାପୁଡ଼େଇ ଦେଇ ଦିନର ଗିବ
ଗଛଡ଼ାଳେ ଆଗେ କରେ ସେ ଠାବ ।

କି ମନ୍ତ୍ରର ଧୂଳି ଦିଏ ସେ ଝାଡ଼ି
ହାଇ ପରେ ହାଇ ଆସଇ ମାଡ଼ି ।

ନିଦ ପରି ମିଠା କହ ତ କିଏ
ନିଦଙ୍କୁ ମଦ ପେଇ ସେ ଦିଏ ।

ଯାକଳ ନଦରୁ    ଉଠିଲେ ପୁଅ
କେତେ ହସହସ    ଦିଶେ ତା ମୁହଁ ।

ଭଗାର ଯାହାର    ଶୁଖିଲା କାଶ
ସେଇଠି ବୁଢ଼ଇ    ନଦ-ସାହସ ।

ରୋଗୀଠେଇଁ ସଦା    ନଦର ବାଦ
ନ ଶୁଣେ ଗୁହାରି    ଧଇଲେ ପାଦ ।

ଗୁଣ୍ଡିକା ନଦରେ    ଶୁଭଲେ ପାଟି
ଚଟିଉଠି ଲୋକ    ଉଠାଏ ଚଟି ।

ଅଚଳା ନଦରେ    ବାଳକ ଶୁଏ
ସରଗ ଖବର    ସପନ କୁହେ ।

ବରଷା ପାଗକୁ    ଉଷୁମ ଶେଯ
ନଘୋଡ଼ ନଦର    ବଢ଼ାଏ ତେଜ ।

ମିଛୁ ମିଛୁ ନଦେ    ଘାଲୁଏ ଯିଏ
ପ୍ରଳୟ ହେଲେ ବି    ନ ଉଠେ ସିଏ ।

ପଡ଼ିଥାଏ ଯେବେ    ଭାବନା ପାଳି
ଘଡ଼ ଘଡ଼ ନଦ    ଶୁଣଇ ଗାଳି ।

ନଦର ଭଗାରି    ଓଡ଼ଣ ମଶା
ପଲଙ୍କେ ଆଖି ବି    ନ ପଡ଼େ କଷା ।

ଛାଡ଼ିଲେ ସହଜେ    ନ ଦିଏ ଧରା
ନଦ ମଣିଷର    ଦୁଃଖ-ପାସୋରା ।

ନଦେ ଧୁଙ୍ଗୁଡ଼ିଆ    ଖାଇଲେ ମାଡ଼
ଏକାଥରେ ଖୋଇ    ଯାଏ ତା ଛାଡ଼ ।

ବାଉଳଗୁଉଳ    ହେଲେ କେ ନଦେ
ପକାଇବ ତାକୁ    ଶକତ ବନ୍ଧେ ।

ଗୁ ଳୁଗୁଳ ରାତି    ନଦର ଶଳା
ଶେଯ କହେ ଏଠିଁ    ଝିଅଟ ପଳା ।

ଝଡ଼ ପାଇଁ ନଦ ବଡ଼ ସାଲସା
ଯୋଗ ବଇରାଗ ନ କରେ ବସା ।

ଅଳସୁଆ ତାର ଅସଲ୍ ସାଥୀ
ଦିନକୁ ମଣଇ ଅଧ ରାତି ।

କଞ୍ଚା ନଦ କେନ୍ତୁ ଦେଲେକ ଗର୍ଜି
ବାଘ ପରି ଲୋକ ଉଠଇ ରାଗି ।

ସୁଲୁକା ପବନ, ନଈର ଧାର
ଗୁଇ ନଦ ମାରେ ଆଖିକୁ ଠାର ।

ଯେବେ ପ୍ରିୟବନ୍ଧୁ ପହଞ୍ଚ ଘରେ
ଭାତ ନଦବେଳେ ହଲ୍ ନା ତାରେ ।

ଗାଢ଼ ନଦ ଭାତ- ନଦର ଭାଇ
ଅତି ଭାଗ୍ୟବଳେ ଏହାଙ୍କୁ ପାଇ ।

ନଦ-ସଉତୁଣୀ କଳେଣ୍ଢି ଚନ୍ତା
ନଦ ନାଆଁ ତାକୁ ଜହ୍ନର ପିତା ।

ଧରୁଥିଲ ଯଦ ମୁଁ ଏକଜିଦ
"'ଆ' ଘନଘନ— ଆ' ରେ ନଦ"

ଗାଉଥିଲ ବୋଉ କେଡ଼େ ସରାଗେ
ଆଜ ବି ଶୁଭେ ତା ମୋ କାନ ଆଗେ ।



# ଖରାଗୀରଷମ

ଜ୍ୟେଷ୍ଠ ମାସର ଗୁଇଁଗୁଇଁ ଖରା କାଟଇ ଘର
ମୁଣ୍ଡଫଟା ଖରା ଜୀବନରୁ ଅଧେ ହଅଇ ସାର ।
ମେଘୁଆ ଖରାଟି ଝୋଦେଇ ଖରାର ବଡ଼ ଭଉଣୀ
ରୁମମ୍ଳେ ପଶି ଝାଞ୍ଜି ଖରା ପିଏ ରକତ ଝୁଣି ।

ଟାଣ ଖରା ଚଳେ ପାଦ ନାହିଁ ଚଳେ ନ ଥିଲେ ଛତା
ଜ୍ୟେଷ୍ଠ ସକାଳ— କଅଁଳ ଖରାର ନାହିଁ ତ କଥା ।
ପୂରୁବ ହରକୁ ଉଇଁଲା-ଖରାଟି କରେ ସୁନ୍ଦର
ଅମ୍ବର ଚୂନାରେ ହଣଇ ଯେପରି ଝୂଲଣ ଘର ।

ଅଧା-ଶରତର ଫୁଲସଞ୍ଜବେଳେ ସୁନେଲ ଖରା
ଚକଚକ ପିଇ— ଯିବାପାଇଁ ମନ ହୁଅଇ ପରା ।
ବେଳ ରତରତ ଡାହାଣିଆ ଖରା ଆସିଲେ ବୁଢ଼ି
"ଉଠ୍ ପୁତା" କହି କପୋଛଟି ଯାଏ ବଣକୁ ଉଡ଼ି ।

ସହି ହୁଏ ନାହିଁ ଦୁମୁଦୁମା ଖରା — ଟାଣ ଉଗ୍ରର
ଝଡ଼ଆ ପାଗର ଝରା ଦେଖି ପେଟ ଉଠଇ ପୂର ।
ଗୁଳୁଗୁଳ ଖରା ଦେହରୁ ବୁହାଏ ଝାଳର ନଈ
ମିଠା ଖରା ଟିକେ ପୁହିଁଲେ ଖୁସି ତ ନ ହୁଏ କହି ।

ଆସେ ଯେତେବେଳେ ମନ-ଫୁଲ୍ଣିଆ ପରବ ରଜ
କାଉଁଳା ଖରାକୁ ବାଗୁଡ଼ି ଖେଳଟି ହୁଅଇ ସଜ ।
ଆଉ ଖରାର ତ ଗରବ କହିଲେ ନ ସରେ ମୁହେଁ
ଶ୍ରେର ପର ଗଳ ଛୁପିଛୁପି ଖରା ଗୋଡ଼େଇ ଛୁଏଁ ।

ହ'ପହରିଆ ଉଦୁଦିଆ ଖରା— ଗୁମାନ ଟାଣ
ଦେହେ ବନ୍ଧହବ କୁହୁଡ଼ିଆ ଖରା ମୁନିଆ ବାଣ ।
ଖଇଫୁଟା ଖରା— ଚଳେ ଗୃଲବାକୁ ନ ଉଠେ ଗୋଡ଼
ସହେ ଚଷା, ଗୋରୁ, ଗଛ, ପରବତ ତା ମୁହଁ ତୋଡ଼ ।

ବେଳକାଳ ଜାଣି ତେଜ ଦେଖେଇବା ଖବର ଖୋଇ
ଖବ ନ ଥିଲେଟି ଉପାସେ ପୃଥିବୀ ଥାଆନ୍ତା ଶୋଇ ।
ଖବ ପର ଟାଣ ହୋଇ ସଭଙ୍କର ସାଧିଲେ ହିତ
ଦୁନିଆ ମୋ ସଙ୍ଗେ ସ୍ନେହ-ଅଭଡ଼ାରେ ବସିବ ମିତ ।



## ପାଣିପଣା

"ଜଳ ତ ଜଳ ଇନ୍ଦ୍ରଜଳ
ବଳ ତ ବଳ ଆପଣା ବଳ ।"

ଶୁଣ ଶୁଣ ଆରେ ମୋ ବାଇଧନ !
ଅକଳନ୍ତା ପାଣି ମଣିଷ ମନ ।

ଆଝୁଉଁ ଯିଏ ବା ସିଆଣ ଏଡ଼େ
ପାଣି ପଡ଼ିଲେ ସେ ନ ହବ କେଡ଼େ ।

ମନ୍ଥ ପାଣିକୁ ଡାଆଣୀ ଡରେ
ଦୁଃଖୀ ଆଖିପାଣି ଆଖିରେ ମରେ ।

ଗୋଳିଆ ପାଣିର କପାଳେ ଗାଳି
ସୋଡ଼ାପାଣି ଢଏ ପେଟ ହକାଳି ।

ପଣ୍ଟ ପାଣି ସବୁ— ପାଣିଙ୍କ ଦାସ
ଅଥଳ ପାଣିରେ ହଜେ ସାହସ ।

ଯମରଜା ଯାକୁ ନମିତା କରେ
ଟୋପିଏ ପାଣିରେ ବୁଡ଼ି ସେ ମରେ ।

ଭୁଣେ ରଖେ ଯେହୁ ହାଣ୍ଡିଏ ପାଣି
ଶୁଣ୍ଡା ଶାଶୁ କହେ ବଡ଼ ଘରଣୀ ।
ଗଉଁକୁ ଦଉଡ଼ ନ ପାଏ ପାର ।
ମଗଜରେ ପାଣି ନ ଗଲେ ଛାର ।

ନଈ ପିଠା ପାଣି
ଗେରସ୍ତ ତାହାର
କୋଠା ପଛ ପଟେ
ଗୁଣ ପଛେ ଦୋଷ
ବେସର ପାଣିରେ
ମାତାଲି ହେଲେ ବ
ମନ୍ତ୍ର ଖୋଜୁଥାଏ
ବଇଦ ବଚାଏ
ନାକ-ସୁଡ଼ୁକାକୁ
ଅଭୁଠର ପାଣି
ଶୁଖିଲ କାଠୁଁ ଯେ
ଜାଣିଥିବ ତାକୁ
ଧୀର ପାଣି ଏକା
ସୁଅ ପାଣି ଯାଏ
ଯାହାକୁ ଧରଇ
ନାକୁ ତା ନ ଛାଡ଼େ
ବାହାପାଣି ଯାର
ଗୃହକଳା ପର
ନଶାପାଣି ସଦା
ଆଗା ପିଚ୍ଛା କଚ୍ଛା
ବହେ ଯାର ତଳେ
ଅଣ୍ଡାଳେ ନାଇଁ ସେ
ଶେଷେ କାଞ୍ଜି ପାଣି
ଗାଆଁ ଶେଷ ମୁଣ୍ଡ
କଞ୍ଚା ପାଣି ଯେବେ
ଝଅଟ ପିଇବ

ଅଇଁଟେ ପିଏ
ଗଞ୍ଜେଇ ପିଏ ।
ନାଳୁଆ ପାଣି
ଲଟକେ ଜାଣି ।
ଇଲସି ଭୁଣ
ଗାଏ ତା ଗୁଣ ।
କାକର ପାଣି
ଥିବ ତୋରାଣି ।
ପାଣିଟି ଧରେ,
ଡାକଇ ଜରେ ।
ବୁହାଏ ପାଣି
ଅଟ ପିଆଣି !
ପଥର କାଟେ
ତା ବାଟେ ବାଟେ ।
ଜନମ ପାଣି
ଧାର ସିଂଘାଣି ।
ବହରେ ପଡ଼େ
ଗୃହେ ସେ ବଢ଼େ ।
ଅମଳ ଯାର
ନ ଥାଏ ତାର ।
ସବୁଠା ପାଣି
ବଇଦ-ମୁଣି ।
ପଶିଲା ଖରେ
ବାହ୍ମଣୀ ଘରେ ।
ଲାଗଇ ବହ
ଉଷୁମ ଘଅ ।

ପିଆଦା ଅଇଲେ ସମନ ଆଣି
ଗୁଣ୍ଡପରେ କାଢେ ଗୃଲଇ ପାଣି ।

କୁଆ-ଆଖି ପର ଚୂଆର ପାଣି
ପେଟ୍ଟୁଲ କଳସୀ ନଏ ତା ଟାଣି ।

ଅଚଳନ୍ତ ପାଣି ଗ୍ରେଗର ଗୋଡ଼
ଗଣ୍ଡପାଣିଠେଇଁ ନ ରହେ ଛୋଡ଼ ।

ପଥର ପାଣିରେ ନ ଥାଏ ମଳ
ଦସ୍ୟୁଙ୍କୁ ଲୋକର ମନଟି ଭଲ ।

ଲାଜପାଣି ଯାର ନ ଥାଏ ମୁହେଁ
ଦେବତା ହେଲେ ବ ତା ପାଦେ ନୁଏଁ ।

ପାଣି ସଙ୍ଗେ ଯିଏ କରେ ଲଢ଼େଇ
ଜୀବନ ଦିଏ ସେ ପାଣି ଛଡ଼େଇ ।

ପିଲ୍ଲ-ଧୂଳଖେଳ ପାଣିର ଗାର
ପାଣିର ଫୁ ଟୁକା ପ୍ରାଣ ମାତର ।

ପାଣି ଫାଟିଯାଏ ପାଣିଆ ଜାଉ
ସହୁ ନୁହେଁ ପାଣି ହୋଇଲେ ତାଉ ।

ପାଣି ଯେବେ ହୁଏ ହିମ କାକର
ଦାସେ ପାଲଟନ୍ତି ଗୃଡ଼ା ମାଙ୍କଡ଼ ।

ନସି ପାଣି ଯାର ନ ବୁହେ ଠିକେ
କଥାରେ ଖାଲି ସେ ବାଇଜ ବକେ ।

ସହୁଚ ଯେ ବୋହୁ ଅକଲ-ନାଚ
ଠାଆପାଣି କର ବାଢ଼େ ସେ ଭାତ ।

ପାଞ୍ଚନ ପାଣିଟି ଗ୍ରେଗକୁ ମାରେ
ହେ ଶ ରଙ୍ଗପାଣି ମହତ ଯାରେ ।

ପାଣି ଉପରେ ଯେ ପକାଏ ସର
ସେହୁ ରଖେ ସାରା ରାଜ୍ୟ ଖବର ।

ନାସରୁ ଚମ୍ପଟେ ନେଲେଣି ଟାଣି
ମଗଜୁଁ କାଢ଼ି ସେ ଆଣଇ ପାଣି ।

ସାତ ଭୁଠ ପାଣି ଗୃଖଇ ଯିଏ
ଅଡ଼ ପିଆଣାଙ୍କ ଗୁରୁଟି ସିଏ ।

ଇମିତିଆ ପେଟୁ ଅଛନ୍ତ ଭାଇ
ପାଣି କରନ୍ତି ସେ ପଥର ଖାଇ ।

କୁଳୁକୁଳୁ ନଈ— ପାଣିର ଗୀତ
ବରଷଣା ପାଣି ମାଟିର ମିତ ।

ଗୁଆ ପାଣି ରଖେ ମିଜାସ ତାଜା
ପଇଡ଼ ପାଣିଟି ପାଣିଙ୍କ ରାଜା ।

ମିଳେ ଦାନା ପାଣି ଥିଲେ କିଅତ
ଅଖି ଶୋଷେ ପାଣି ରଖେ ମହତ ।

ଛବ ପାଣି ଘର— ଖାଟଙ୍କ ଯମ
ଝର ପାଣି ନାଚେ ଝଅମଝମ ।

ଘର ବୁଢ଼ ପାଣି ହେଲେ ଆଣ୍ଠିଏ
ଗୁଣ୍ଡରେ ଛନକା ପାହାର ଦିଏ ।

ଆଉ ତ ନାହିଁ ରେ ଦୋଅଡ଼ା ପାଣି
ଦେଏ ଧନମଣି ! ଟାଆଣିଟୁଣି ।

ବେଙ୍ଗ ମୂତିଦେଲେ ନଳାରେ ପାଣି
ଗାଆଁ ପାଣି କରେ କ ଠାଣିମାଣି ।

ସଫା ପାଣି ପର ସରଳ ମନ
ଅଯଲ ଖୋରାକ ପାଣି ପବନ ।

"ଯାହାକୁ କହନ୍ତି କୁଆ-ହାଣୀ
ସେଇ ରଖେ ଶେଷେ ନାଆଁ ପାଣି ।"

# ଭାତଚୋରଣି

ଭାତ ରେ ଭାତ
ଭାତ ମଣିଷର ବିଶ୍ୱାସ ମାତ

ଦିନେ ନ ପଡିଲେ ପେଟରେ ଭାତ
ଶୁଅଇ ମଣିଷ ଚଇତ୍‌କାତ୍ ।

ଯେତେ ଚନ୍ଦା ଦିଅ ଅଛୁ ରେ ଭାଇ !
ଭାତ ଚନ୍ଦାଠଉଁ ବଳି କେ ନାହିଁ ।

ଭାତର ଭାବନା ଯାହାକୁ ଘାରେ
ଜୀବନ ବିକେ ସ ପର ଦୁଆରେ ।

ଲଜଟିକ ପାଣି— ଛଡେ଼ଇ ଲୋକ
ବାର୍‌-ଘର ବୁଲି ମାଗଇ ଭିକ ।

ଗେଙ୍ଗୁଟି ଚୂଲୀରେ କଇଁଆ ଖୋଳେ
ଖେଳ ଭାତ ଛୁଆ ଗାଳନ୍ତି ଭୋଳେ ।

ପରଘର ଭାତ ଫାଲୁଆ ଗୁଣ୍ଡା
ଗେଫୁଥିଲେ ଦିନ୍ଧ ହୁଅଇ ଭୁଣ୍ଡା ।

ପଖାଳ ଭାତରେ ଶୁକୁଆ ପୋଡ଼ା
ଭୁଣ ଶାଗ ଆଉ ନ ହୁଏ ଲୋଡ଼ା ।

ପେଜୁଆ ଭାତରେ ଖାଇଲେ ଘିଅ
ନଦୀ ଲୁହା ପରି ପାଲଟେ ଦିହ ।

ଖାଡ଼ମରା ଭାତେ ପଡ଼ିଲେ ସର
ଡାଲି କଥା ଆଉ ମନେ ନ ଧର ।

ବସାଦହି ଦେଲେ ଅରୁଆ ଭାତେ
ପେଟ ଓହଳଇ ଆଗକୁ ହାତେ ।

ଉଷୁମ ଭାତରେ ଭାକୁର ଝୋଳ
ବାପ ପୁଅ ମଧ୍ୟେ ଲାଗଇ ଗୋଳ ।

ଝୁଡ଼ୁଆ ପାଗରେ ଚବଚ ଭାତ
ଅଣନଶୁଆସେ ଗୁଲଇ ହାତ ।

ବଗଡ଼ା ଭାତକୁ କଳମ ଶାଗ
ଲକ୍ଷ୍ମୀ ପରଷନ୍ତି ବନ୍ଧୁଙ୍କୁ ଆଗ ।

ସରୁ ଅଣ୍ଡା ଭାତ ବଦହଜମ
ଖାଇ ଖାଇ ଲୋକ ଭେଟଇ ଯମ ।

ବଡ଼ ଚଡ଼ଚଡ଼ା ଗୋଡ଼ଆ ଭାତ
ମଠେଇ ମଠେଇ ଗୁଲଇ ହାତ ।

କାନକା ଭାତରେ ନଡ଼ଆ କୋରା
କଳା ଚମଡ଼ା ବି ପାଲଟେ ଗୋରା ।

ଗୁଣ୍ଡଳଆ ଭାତ କ ଟାଣ ଟାଣ
ରନ୍ଧି ଅଧେ କହେ ବଇଦ ଆଣ ।

ଯତନେ ଛୁଆଙ୍କୁ ଗୋସିଁମା ପାଳେ
ବଡ଼ାଭାତ ଖୋଇ ବଡ଼ ସକାଳେ ।

ଖାଉଥିଲେ ମିଳ ପାଆଞ୍ଚ ପାତ
ବେଲ୍ଲ ପରେ ବେଲ୍ଲ ଉଠଇ ଭାତ ।

ଟାଣୁଆ ଖେଚଡ଼ି ପାଟିକି ମିଠା
ଝଡ଼ ରାତେ ଡାକେ କବାଟ ପିଟା ।

ନରମା ଭାତଟି ବୁଢ଼ାଙ୍କୁ ଭଲ
ଦରଫୁଟା ଭାତ ସଭିଙ୍କି ସଲ ।

ଛଅ ଭୁଣ ନଅ— ଭଜା ଦେଖିଲେ
ଖେଜ ଭାତପାଇଁ କୁନ୍ଦନ୍ତି ପିଲେ ।

ଉଆ ଭାତ ଦହେ ବଢ଼ାଏ ବଳ
ସୁଖଦୁଃଖ-ସାଥୀ ଶାଗ ପଖାଳ ।

ଯାକୁ ମାରିବାକୁ ଦଇବ ଜଗେ
ଭାତ ଖାଇ ସିଏ ବଞ୍ଚଇ ହଗେ ।

ଅଲକ୍ଷଣା ବାଇ ଯାହା କୁ ଛୁଏଁ
ଘିଅ ଘଡ଼ ତାକୁ କୁଣ୍ଡେଇ ହୁଏ ।

ଜାଉଆ ଘଡ଼ରୁ ପଡ଼ିଲେ ପେଟେ
ଦଣ୍ଡକେ ମଣିଷ ପଢ଼ୁଆ ଭେଟେ ।

"ପଢ଼ିଲେ ଶୁଣିଲେ ଦୁଧ-ଘଡ଼
ନ ପଢ଼ିଲେ ବାବୁ ! ଠେଙ୍ଗା-ନାଡ଼ ।"



## ଓଦାସନ୍ତୁଆ

ଓଦାଳିଆ ମାଟି କଦଳୀ ବୃକ୍ଷକୁ ସାଲସା ପିଆଇ ଦିଏ
ଭୋକବେଳେ ଜିଭ ଓଦା ନୋହୁଥିଲେ କାହାକୁ ପସନ୍ଦ କଏ ?

ମୁଣ୍ଡ ଓଦା ହୁଏ ଗଙ୍ଗାରଲେ ବୁଦ୍ଧି ଜିଭ ଓଦା କରେ ଗୀତ
ଓଦା ଦେଖି ଥକା ଅଜଣା ଅଚିହ୍ନା ବସନ୍ତ ପଙ୍ଗାତ ମିତ ।

ଓଦା ଗାମୁଛାଟି ମଥାରେ ପକାଇ ଖରାରେ ଚାଲିବା ଭଲ
ଓଷାଦିନେ ତୁଣ୍ଡ ଓଦା ନୋହୁଥିଲେ ପ୍ରାଣ କେଡ଼େ କଲବଲ ।

ମୁଣ୍ଡ ଓଦା ହେଲେ ଉକୁଣିମାନଙ୍କୁ ମିଳିଯାଏ ଭୋଜଭାତ
ପେଟ ଓଦା ଥିଲେ ନସରପସର ହେଉଥାଏ ଗୋଡ଼ହାତ

ଝାଞ୍ଜି ଖରାବେଳେ ଓଦା ଭୂଇଁତଳେ ଗଡ଼ିବାକୁ ହୁଏ ମନ
ଝାଳୁଆ ଦେହରେ ଓଦା ପବନଟି ବୋଲଇ କବା ଚନ୍ଦନ ।

ପବନ ମୁହଁରେ ଓଦା ଜାଳେ ବସି ଚେଙ୍କେଇ କରିବା ମଜା
ମଉଳିଆ ଖାନା ଓଦ ଓଦ ଖଟା ପାଙ୍ଗକୁ ଶୀତଳ ଭଜା ।

ଓଦା ଗୋଡ଼େ ନଡ଼ ଝାଡ଼ୁଣା ଧଇଲେ କାଣ ହୁଏ ଚିରସାଥୀ
ହାତ ଓଦା ଥିଲେ ଶହ ଶହ ଲୋକ କହାରନ୍ତି ଦିନ ରାତି ।

ଓଦା ରୁକେ ଧୂଆଁ ସାପେଇ ସାପେଇ ବଡ଼ ଉଡଲ ସେ ଉଠେ
ଆଖି ଓଦାବେଳେ ମରମକୁ ଦୁଃଖ ମନ ଇଚ୍ଛା ବଧା ଲୁଟେ ।
ଦାନ୍ତମଲଖିଆ ସମ୍ପତ୍ତି ବଢ଼ାଏ ପେଟେ ଓଦା କନା ଦେଇ
ଓଦା ଆଖିରୁ ମୁଁ ଲୁହ କମେଇଲେ ସଙ୍ଗେ ଯିବ ପୁଣ୍ୟ ନେଇ ।

●

## କଞ୍ଚାମଞ୍ଚା

କଞ୍ଚା କଉଡ଼ିଟି ଖୋସଣିରେ ଥିଲେ ସଭିଏ ଡାକନ୍ତି ବାବୁ
କଉଡ଼ି ନ ଥିଲେ ଅସଲ ବେଳକୁ ବୁଦ୍ଧି ହୋଇଯାଏ କାବୁ ।
କଞ୍ଚା ଶରୀ ନୁହେଁ ପରୁ ଶରୀ ଏ ତ ସବୁ ରୋଗଙ୍କର ବସା
ଦୁଇଦିନ ପାଇଁ କରି ମୁଁ ବଞ୍ଚେଇ ହେବ କଅଁ ସମହସା ?
ଯେଉଁ ବୟସରେ କଞ୍ଚା ବୁଦ୍ଧି ମନୁଁ ଯାଇ ନଥିଲା ମୋ ଛାଡ଼ି
ନ ମାନି ଆକଟ ବୁଲୁଥିଲି କେତେ ଘରଂଦେଇ ଲୁହାବାଡ଼ି ।
କଞ୍ଚା ମାଛ ସିନା ଆଖିକି ସୁନ୍ଦର ପଚଲେ ପଗୁରେ କଏ
କଞ୍ଚା ଡାଲି ସଜ ଘିଅ ବଘରିରେ ଚାରଫ୍ ଖୁସୁବ ଦିଏ ।
ସ୍ତ୍ରିରିଙ୍କ ଭିତରେ କଞ୍ଚା ଫୁଲେଇ ଯେ ପାଣିରେ ପକାଏ ସର
କେଡ଼େ ମଜାଲାଗେ ବାଇଗଣ ପୋଡ଼ା କଞ୍ଚା ତେଲ ଜରଜର ।
ପୂଜା ମଣୋହିରେ ପଞ୍ଚାମୃତ ପାଇଁ କଞ୍ଚା ଦୁଧ ହୁଏ ଲୋଡ଼ା
ଆଗତପଞ୍ଚା ଯେ କରଇ କଞ୍ଚା ଏ କଥାଟି ରହିଚ ଯୋଡ଼ା ।
କଞ୍ଚା ଡାଆଣୀର ଗୁଣ୍ଡ-ଚରି କଥା ଶୁଣିଲେ ମାଡ଼ଇ ଡର
ଛୁଆଆ କଥାରେ କଞ୍ଚାପାଣି ହୋଇ କମ୍ପେ ଗୁଣ୍ଡ ଥରଥର ।
ଯେଡ଼େ ସୁଆଦିଆ ହେଉ ପଛେ ଜୁଣ କଞ୍ଚାଲୁଣି ହେଲେ ଗଲା
କଞ୍ଚା ଲଙ୍କା ସଙ୍ଗେ ବନ୍ଧୁ ବାନ୍ଧେ ସଦା ଗୁରୁ, ଚଟଣି ଓ ଚଲା ।
କଞ୍ଚା ଫଳମୂଳ ଦୋକାନ ବଜାରେ ନ ମିଳଇ ମାହାଲିଆ
ଧନୀକୁ କେବଳ କଳା କରି ଜାଣେ କଞ୍ଚାମିଛ କୁହାଳିଆ ।
କଞ୍ଚା ବୟସରେ କଞ୍ଚା କଉଡ଼ି ଯେ ନ କରଇ ରୋଜଗାର
ଅଭାବ ବେଳରେ ମରଇ ସିନା ସେ ଦିନକୁ ହଜାର ବାର ।

●

## ଖରଭର

ଖର ସ୍ଥଳ ମଣିଷର ନୁହଇ ଭଲ
ପାଦେ ଫୁଟି କରେ କଣ୍ଟା କ କଲବଲ ।

ସୁଲକ୍ଷଣ ନୁହେଁ କେବେ ଖର ନିଃଶ୍ୱାସ
ବାଜିଲେ ଖର ପବନ ଉଡ଼େ ସାହସ ।

ଖରଭଜା ରନ୍ଧାଡାଲି ନ ଲାଗେ ମିଠା
ଖରସିଝା ହେଲେ ସଜ ଚକୁଳି ପିଠା ।

ବଡ଼ ମନ୍ଦ ମଣିଷର ଖର ନଜର
ଖର କଥା ମୁହେଁ ଥାଏ କଳର ଘର ।

ଖର ବାରେ ଅନୁକୂଳ ଶୁଭ ନୁହଇ
ବିପଦ ତ ଖରସୁଅ ଗମ୍ଭୀର ନଈ ।

ଖର ସ୍ୱର କାନେ ସଦା ଲାଗଇ କଟୁ
ଖରଧାର ଛୁରବାଣ ମାରଣେ ପଟୁ ।

ଖର ମଧ୍ୟେ ଖରମସ ଦିଅଟି ଭଲ
ନଡ ଛା ଖାଇଲେ ଲୋକ ସାଜଇ ମାଲ ।

ଖର ହୋଇ ଧୀର ହେଲେ ଭଲ କାମରେ
ପଡ଼ିବ ତ ଖଡ଼ ଗାର ମୋର ନାମରେ ।



## ବାସିକାସି

ଅବୋଆବାଳିଆ ବାସି ଫୁଲ
ଝଡ଼ିଲେ ଥାଏ କି ତାର ମୂଲ ?

ବାସି ଦହି ଲାଗେ ଖଟାଳିଆ
ବାସି ମାଛ ଦେଖି "ଛୁଆ-ଛୁଆ" ।

ବାସି ଶେଯେ ଶୁଆ ଭଲ ନୁହେଁ
କ ଅବା ଶୁଙ୍ଘିବା ବାସି ମୂହେଁ ।
ବାସି ପାଇଟିରେ ଗଲେ ଲାଗି
ଦେହର ଅଳସ ଯାଏ ଭାଙ୍ଗି ।
ବାସି ପଖାଳଟି ନୁହେଁ ହୀତ
ବାସି ଖବରେ କ ଭଳେ ଚିତ୍ତ ?
ବାସି ମଡ଼ା କଥା ଶୁଣି ଲୋକେ
ବାହାରନ୍ତି ନାହିଁ ଘରୁ ଥୋକେ ।
ବାସି ପିଠାଖିଆ କଳା ଗୁଡ଼େ
ଅତି ଭୋକ ହେଲେ ବେଳ ବୁଡ଼େ ।
ଧୋବ ଫିଟେ ଲୁଗା ହେଲେ ବାସି
ବାସି ପାଣି ନାନା ରୋଗ ନାଶି ।
ଖାଇଲେ ମାଣ୍ଡିଆ- ବାସି ଜାଉ
ଗୁଳିଯାଏ ରୋଗ ଗୃହଁ ଗୃହଁ ।
ଘୋରା ଚନ୍ଦନଟି ହେଲେ ବାସି
ଅଧିକ ମହକ ବୁଲେ ଭାସି ।
ଗୁଣ ମୁଁ ଅରଜ ଗଲେ ମରି
ବଞ୍ଚିଥିବ ଯୁଗ ଯୁଗ ଧରି ।

## ଶୁଖାରୁଖା

ଶୁଖିଲା ମୁହଁକୁ ମାନେ କ ଲୁଖୁରା କଳା
ଶୁଖିଲା ମାଟିରେ ଉଧାଏ କ ଧାନତଳା ?
ଶୁଖିଲା ନଈରେ ନାଆ ଗୁଟିପିଟି ହୁଏ
ଶୁଖିଲା ସେନେହେ ଲୁହ କ ଆଖିରୁ ବୁହେ ।
ଶୁଖିଲା ପରିବା- ରନ୍ଧା କ ସୁଆଦ ଲାଗେ
ଛଚତ ଗୁଣ୍ଡା କ ଖସଇ ଶୁଖିଲା ଶାଗେ ?

ଝଡ଼େ ଭାଙ୍ଗି ପଡ଼େ          ଟିକକେ ଶୁଖିଲା ଡାଳ
ଶୁଖିଲା ଲୁଗାର           ଖସରେ ପୂରଇ କାଳ ।
ଶୁଖିଲା ସଳଡା           ଗୃହୁଁ ଗୃହୁଁ ଯାଏ ସର
ଶୁଖିଲା ଜଙ୍ଗଲ           ଜଳଇ ବାରୁଦ ପର ।

ଦଣ୍ଡକେ ମିଳାଏ           ମାଆର ଶୁଖିଲା ରାଗ
କେଉଁକଥା ଅବା           ଶୁଖିଲାରେ ହୁଏ ବାଗ ?

ଶୁଖିଲା ହସଟି           ନକଟିଲା ପର ଦିଶେ
ଶୁଖିଲା ପବନ           ଖରାର ନିଃଶ୍ୱାସ କି ସେ ?

ଝାଉଁଳ ପଡ଼ଇ           ଟିକକେ ଶୁଖିଲା ମନ
ଶୁଖିଲାରେ କିଏ           ଡାକେ "ଆରେ ବାପଧନ ?"

ଶୁଖିଲା କାଶରେ           ବେଦମ ହୁଅଇ ଗୁଣ୍ଡି
ଶୁଖିଲା ଚମରୁ           ଛାଡ଼ଇ ଧୋବଲା କାଣ୍ଡି ।

ଶୁଖିଲା ଜୀବନେ           ଥାଏ କି ଖୁସିର ମୂଳ
କିଏ ସୁଖ ପାଏ           ମଉଳା ଶୁଖିଲା ଫୁଲ ?

କିଏ ବା କାହାର           ବୋହି ନେଇଯାଏ ଧନ
ବୃଥାଟାରେ କିଆଁ           କରିବ ଶୁଖିଲା ମନ ?

ଶୁଖିଲା କଥାରେ           ଚୂଡ଼ା ବି ବତୁରେ ନାହିଁ
ଶୁଖିଲାରେ ଚେଷ୍ଟା           ନ ହେବ କାହିଁରେ ବାଇ ।

●

## ଟାଣଟେମଡ଼

ଟାଣ କହେ କଅଁଳକୁ-           ମୁଁ ଘର କାମିକା
କଥା ଆଉ କରାମତି           ସବୁ ମୋର ଦାମିକା ।

ଟାଣ ଦହ ସହେ ଖରା,           ବରଷା ଓ କାକର
ଟାଣୁଆ ଲୋକର କେବେ           ଲୋଡ଼ା ନୁହେଁ ଢ଼ାକର ।

ଟିଇକେ ଟାଣ ଜୀବନ           ନ ଯାଏଟି ଫୁରୁସି
ଟାଣ ଖରା ସହ୍ୟ ଜଣୀ           ଝଲେ କରେ କୁରୁଷି ।

ଟାଣ କଥା ସହି ସହି ଘୁଣ ହୁଏ ଶକତ
ପାଣି ଫାଟିଯାଏ ନାହିଁ ବପଦରେ ରକତ ।

ଟାଣ ନଦ ଲଗୁଥିଲେ ବଢ଼େ ବହୁ ଓଜନ
ଶକତ ବଢ଼ଇ କାମେ ନଦା ଟାଣ ଭୋଜନ ।

ତୁଙ୍କେ ନାହିଁ ଟାଣ ମାଟି ଯେତେ ଖୁଆ ଖାଇଲେ
ନ ଭଙ୍ଗେ ଟାଣୁଆ ହାଡ଼ ଶତ ଦୁଃଖ ସହିଲେ ।

ପାଣି ଟାଣିବାକୁ ଟାଣ ଛଣପଟ ଦଉଡ଼
ଉପୁକୁ ଟାଣୁଆ ମନ ଦୂରୁଁ ବଏ ଘଉଡ଼ ।

ଟାଣ ଘାତ ବଳ ଗଢ଼େ ହେଉ ପଛେ ବଟେଡ଼ା
ଖାଇଲେ ନଡ଼ଆ, ବହୁ ହୁଏ ଟାଣ ଚଗଡ଼ା ।

ବପଦକୁ ଦେଖି ଆଗୁଁ ନୋହିବଟି କାତର
ଏଡ଼ବ ତାହାକୁ ଘୁଣ କଲେ ଟାଣ ପଥର ।



## ନୀଳ-ନୀଳମା

ଦୂରରୁ ସୁନ୍ଦର ନୀଳ ପରବତ ପାଖକୁ ସୁନ୍ଦର ଟିଆ
"ବାବାରେ ଆଳୁଅ ନେଳିଆ ବୋତଲ ପରବାସ୍ତେ ଆଉ କପୁଁ" ।

ନେଳିଆ ଆକାଶେ କେଡ଼େ ଚକ ଚକ ତରର ଦଥାଲ ଜଳେ
ଧଳା ଯୂଇଫୁଲ ହସ କ ଉଜଲ ନେଳିଆ ପତର ତଳେ !

ନୀଳ ମେଘ-ମଞ୍ଚେ ବଜୁଳ ଗାରଟି କହ କାର ଆଖି ଠାର
ନୀଳ ଢେଉମାଳା ନଈବୁକେ ଥବା କୁଞ୍ଚ କୁଞ୍ଚ କଥା ହାର ।

ନୀଳ ଦରିଆରେ ବୋଇତର ପାଲ ଦଶଇ ସୁନ୍ଦର ଅତ
ନୂଆ ବସନ୍ତର କୁଞ୍ଜେ ଟାଣିଦଏ କଏ ସେ ନେଳିଆ ଛତ ?

କୁନ ନୂଆବୋହୂ ଗୋରା ଦହଟିକୁ ମାନଇ ନେଳିଆ ଶାଢ଼ୀ
ନୀଳ ମେଘ ଦେଖି ନାଚଇ ମୟୂର ନୀଳ ପଖା ବନେ ଝାଡ଼ି ।

ଖଣ୍ଡି ଶଢା କାହ୍ନୁଁ ସୁନ୍ଦର ହେଲାଣି ନାହ୍ନୁଁ ଯେବେ ନୀଳବଣ୍ଡ଼
ଧୋବଲା ଶରତେ ପୂଜେ ଜଳଦେବୀ ନୀଳକଇଁ-ହାତ ଯୋଡ଼ି ।

ନେଳିଆ ପୋଖରୀ ହସେ କ ସୁନ୍ଦର ହଂସ ହଂସୁଣୀର ମେଳେ
ନେଳିଆ ପାଣିରେ ପୂନେଇଁ ଗୃହନ୍ତି ଝଟକଇ ସଞ୍ଜବେଳେ ।

ନୀଳ-କଳେବର ନୀଳମଣି କରେ ନୀଳ ଯମୁନାରେ ନାଚ
ବଳଲା ହାତକୁ ଶୋଭିବନ ସିନା ନେଳିଆ 'ଜପୁଷ୍ପ' କାଚ ।

ବିଷ ପିଇ ପିଇ ଭୋଳା ମହେଶ୍ୱର ବୋଲାଇଲେ 'ନୀଳକଣ୍ଠ'
ନୀଳ ଢାସଟିକୁ ସାହା ହୋଇ ପ୍ରଭୁ ଘୋଡ଼େଇ ରଖନ୍ତି ଘଣ୍ଟ ।

କେଡ଼େ ସାଉଁଳିଆ ନେଳିଆ ଶିଉଳି ପାଦକୁ ତ ଥାଏ ଗୁହ୍ନି
ଅକଲ ଗୁଡ଼୍ ମ୍ ହୁଅଇ ଯୁବାର ମୁଣ୍ଡ ତହିଁ ହେଲେ ଭାଇ ।

ନେଳିଆ ଆଲୁଏ ପାଠ ପଢ଼ୁଥିଲେ ଆଖିର ଆଇଷ ବଢ଼େ
କ ହତଲକ୍ଷମୀ ହସେ ନୀଳବଣ ଗିର୍ଙ୍କି ପଡ଼େ ଯଦ ଝଡ଼େ ।

ଟାଙ୍ଗରା ଭୂଇଁ ଏ ସଂସାର ହସଇ ଉପରକୁ ନେଳ ଖାଲି
ସାତତାଳ ପଙ୍କ ଭିତରେ ତାହାର ମଝିରେ ତଡଲା ବାଳି ।



## ବାଆବତାସୀ

ଟାଉଟର ପଣ
ହାଲୁକା ବାଆ
ବାଆଁ କାଲିଆ ସେ ମାରିବା ଜାଣେ

ପାହାନ୍ତ ପବନେ
ଘୁଙ୍ଗୁଡ଼ି ମାରି
ନଦର ଶଲମ ନଦୁଆ ଟାଣେ ।

ଖୋଲା ମଡ଼ଆରେ
ମେଲା ପବନ
ଶୁଖିଲା ପତରେ ଖେଳଇ ବଲ

ଝଡ଼ାଫୁଲେ କହେ
ମଳୟ ବାଆ
"ସୁନାଭଉଣୀଟା ମୋ ସାଙ୍ଗେ ଗୁଲ୍" ।

ସୁଲୁ ସୁଲୁ ବାଆ
ଶିଶୁଟି ପରି
କୁଲୁ କୁଲୁ ହସେ ବାଉଁଶବଣେ

ଝଡ଼ଆ ପବନେ
ବଢ଼ିଆ ନଦ
ଘର କର ରହେ କବାଟକଣେ ।

ଚୋର ବସନ୍ତର
ଚୈତ୍ର ପବନ
ମିଠା କୋର ମନେ ଚଖେଇଯାଏ

ଧୂଇର ପବନେ
ଥୂଇର ବସି
ଗଳ୍ପକଥା ଭବେ ବାଇସ୍ତା ପ୍ରାୟେ ।

ସଞ୍ଜୁଆ ପବନେ
ହଜଲା ଗାଈ
'ହମା' ଡାକେ ବଲ ଫଟେଇଦଏ

କବାଟ ଫାଙ୍କରେ
ଭଟୋଳ ବାଆ—
ଚମକ ଭବେଁ ବା ଡାକୁଛୁ କଏ ?

ବାଡାପି ଫୁଲରେ
ବାସନା ବାଆ
ଗାଆଁ ବାଡ଼ପଟେ ଡ଼ଅଇଁ ଘର

ହଟିଆ ପବନ
ଗୁଜୁଗୁଳରେ
ଖସିଯାଏ କାହ୍ନୁଁ ଚମ୍ପଟ ମାର ।

ସନସନ ବାଆ
କ ଛନଛନ
କ କଥା ଗପଇ ହାଉଡ଼ା ପର
କାଲୁଆ ପବନ
ଅଚନ୍ତା ନବ
ଦଣ୍ଡକେ ଆଖିରେ ଦଅଇ ଭର ।
ଖଣ୍ଡିଆ ପବନ
ନଶୂନ ପାଟେ
ସୁସୁର ବଜେଇ ବାଗୁଡ଼ି ଖେଳେ
ଦମକା ପବନ
ଝରକା ଦାଡ଼େ
ଡ଼ାକ ମାରଯାଏ ତୋଫାନବେଳେ
କାଲୁଆ ପବନ
ହାଲଆ ମାର
ଶୋଇପଡ଼େ ଚତ୍‌ପଟାଙ୍ଗ୍ ହୋଇ
ଯେତେ ଦୁଃଖ ଥାଉ
ମନରେ ପଛେ
ନଦୁଆ ପବନ ନଏ ତା ବୋହି ।
ବଭୁରୁ ପବନ
ମାଭୁରୁ ହୁଏ
ଉଦ୍ଧକ ପବନ ବରଦେ ନଆଁ
ଶୁଖିଲା ଝାଞ୍ଜି ତ
ଖରାରେ ପାଚ
ସବୁର ଦହରେ ମାରଇ ଚଆଁ ।
ପାଟୁଆ ପବନ
ନାଟୁଆ ଟୋକା
ହେରେଷା ପରକା ଖେଁ-ଖେଁ ହସେ

ଚୂପ ସଇତାନ
ଶୀତ ପବନ
କଦରେ ବଦନରୁ ରକତ ଶୋଷେ ।

ସକାଳ ପବନ
ପଖାଳ ପର
ବଦନ ଓ ମନକୁ ଲାଗଇ ମଜା

ପବନରେ ଯେବେ
ମହକ ଥାଏ
ପଖାଳ ସାଙ୍ଗକୁ ଇଲସି ଭଜା ।

ମାଗିଲା ତଉଣ
ଧଡ଼କା ପର
ବଚଣା ପବନ କାହିଁକୁ ପାଏ ?

ବାନ୍ଧଥାଏ ଚେଣ୍ଡୁ
କାନରେ ତାକୁ
ଯହିଁ ମୁଁ ଯାଏଁ ବା ଯହିଁ ମୁଁ ଥାଏଁ ।

ସଫଳ ହେବ ମୋ
ଜୀବନ, ଯଦ
ଚଇତ ପବନ ପରକା ହେବ

ସବୁର ମନକୁ
କରାଇ ଖୁସି
ମଲା ପିଣ୍ଡରେ ମୁଁ ଜୀବନ ଦେବ ।



# ଛୋଟମୋଟ

'ଟୁମିଟ ଖେଳରୁ ମହାଭାରତ'
ଶ୍ରେଷ୍ଠ କଥାଟିରୁ ଉପୁଜେ କଳ
କଣ୍ଟା ପଛେ ଯେତେ ଛୋଟିଆ ହେଉ
ପାଦତଳେ ଯାଏ ଥିଇଲା ଗଳ ।

ଶ୍ରେଷ୍ଠ ପିଲାଟିଏ 'ଧରମପଦ'
ଯୁଗ ଯୁଗ ପାଇଁ ରଖିଲା ନାଆଁ
ମହାନଗରଠୁଁ ବଡ଼ ମୁଁ ମଣେ
ଯେତେ ଶ୍ରେଷ୍ଠ ପଛେ ହେଉ ମୋ ଗାଆଁ ।

ଶ୍ରେଷ୍ଠ ବୁଦ୍ଧି ଯେବେ ଧରଇ ଲୋକ
ଗମ୍ଭୀର ବିପଦ-ଗାଡ଼ରେ ପଡ଼େ
ଶ୍ରେଷ୍ଠ ବାଲିକଣା ବାନ୍ଧିଲେ ମେଳ
ଟିମା ଟିମା କେତେ ପାହାଡ଼ ଗଢ଼େ ।

ପିନ୍ଧୁଥିଲେ ଶ୍ରେଷ୍ଠ ଲୁଗାଟିମାନ
ଶେଷଯାଏ ଆମ ବାପୁଜୀ ବୁଢ଼ା
ଶ୍ରେଷ୍ଠ ଭାବୁଁ ଯେଉଁ ସରଦି ରୋଗ
ରୁନ୍ଧଇଏ ସେହୁ ନାକର ପୁଡ଼ା ।

ଘଡ଼କେ ଦୁନିଆ ଚହଟ କରେ
ହେଉ ଶ୍ରେଷ୍ଠ ପଛେ ବଣର ଫୁଲ
ଦେଖିବାକୁ ସିନା ଘାସଟି ଶ୍ରେଷ୍ଠ
ଗୁଣ ତାର କିନ୍ତୁ ଅମୂଲମୂଲ ।

କେତେ ଯତନରେ ଶ୍ରେଷ୍ଠ ଭଅଁର
ମାଗନିଏ ଫୁଲୁଁ ଟକଟକା ମହୁ
ଶ୍ରେଷ୍ଠ ଲୋକଙ୍କର ଗାରିମା ଭରି
କଥା କଥାକରେ କାଢ଼ନ୍ତି ଲହୁ ।

ଛୋଟ ଛୋଟ ସିନା ଦେଖୁଛ ପାଦ
କୋଶ କୋଶ ବାଟ ପାରଇ ଟପି
ଛୋଟ ଭୂଟ୍‌କାରେ ବହୁତ ବେଗ
ଯାନ ଯାନକରେ ଯାଏ ତ ଚପି ।

ଛୋଟ ଛୋଟ ସିନା ଦିଶଇ ଆଖି
ଅସଲ ହୀରା ସେ ଦିହରେ ଆମ
ଏଡ଼େ ଛୋଟ ସିନା ଦିଶଇ ଉଇ
କରିପାରେ କିନ୍ତୁ ବହୁତ କାମ ।

ଛୋଟ ଛୋଟ ମେଘ ଟୋପାଟିମାନ
ବରଷି ସାରା ଏ ଦୁନିଆ ପାଲେ·
ନିଆଁ କଣାଟିଏ ଉଠିଲେ ମାତି
ନିମିଷକେ ଘରସଂସାର ଜାଳେ ।

ଆପଣାକୁ କେବେ ନ ମଣି ବଡ଼
କରିପିବ ମୁହିଁ ବହୁତ କାମ·
ଛୋଟ ଉଇଠାରୁ ହୀନ କି ମୁହିଁ
କୋଟି କୋଟି ଟଙ୍କା ମୋ ବୁଦ୍ଧି ଦାମ୍ ।



## ମେଘ-ବରଷା

ସାଆନ୍ତମା-କୋଳେ
ଶୁଣୁଥିଲି ଖେଳେ
ମନେ ତ ପଡ଼ୁଛୁ କାଲି

ଝିପୁରୁ ଝିପୁରୁ
ବରଷା-ବୋହୂର
ଝିମୁରୁ ଝିମୁରୁ ଚାଲି ।

ସାରୁ ପତରକୁ
ଟୋପି କରି ମୁଣ୍ଡେ
ଟୋପି ଟୋପି ବରଷାରେ

ତୋଳୁଥିଲି କେତେ
ନୂଆ କଅଁଫୁଲ
ଆମ ଗାଆଁ ନଈଧାରେ ।

ଅସରାଏ ମେଘ
ଚାଳ ଦେଉଥିଲେ
ନଆଁ ଗିଳା ବଇଶାଖେ

ଆମ୍ବ ଆଣିବାକୁ
ଦଉଡ଼ୁଥିଲି ମୁଁ
ପାଚିଆଟି ଧରି କାଖେ ।

ଖଣ୍ଡିଆ ପବନ
ସଇତାନ ଭଳି
ଦେଉଥିଲା ଯେବେ ରଡ଼ି

କରଡ଼ା ବରଷା
ନଈକୁ ଆମର
ଆଣୁଥିଲା ଘୋର ବଢ଼ି ।

ଝଡ଼ୁଆ ବରଷା—
ରାତରେ ବସେଇ
ମାଟି ଘରେ ଗ୍ଳୋଟ ସପ

ଭାଇ ଭଉଣୀଏ
କହୁଥିଲୁଁ ମିଳି
ଅସୁମାରି ଭୂତଗପ ।

ଘୋର ବରଷାର
ହେମାଳିଆ ସଞ୍ଜେ
ଗୋଡ଼େଇ ଚଡ଼ିଲା ମୁଢ଼ି

ଶୁଣୁଥିଲୁଁ କେତେ
ଅଜବ କାହାଣୀ
କହୁଥିଲା ବୁଢ଼ୀଆଖୁଡ଼ୀ ।

ପଥର-ବରଷା
ଦେଖି ଗୃହାଳିରେ
ଲାଗୁଥିଲା କ ଏ ମନ

ଧାରା ଶିରବଣ—
ହାଲପ ମୁହଁକୁ
ନ ଯାଆରେ ବାପଧନ !

ଲଗାଣ ବରଷା
ଡାକୁଥିଲା ଯେବେ
ସାରା ଦିନ ସାରା ରାତି

ନାଳରେ ଖଇଁଚ
ବସେଇବା ପାଇଁ,
ଖୋଜୁଥିଲ ସାଙ୍ଗସାଥୀ ।

ମଦ ଖାଇ ଯେବେ
ଅଦିନ ବରଷା
ଆସୁଥିଲା ଚଳଚଳ

ଆକାଶ ଦୁଆର
ଫିଟି ଯାଉଥିଲା
ଯାଉଁଳ କବାଟ ଭଳି ।

ସକାଳ ବରଷା
ବଡ଼ ଲୋକହସା
ଅଧେ-ଖରା ଅଧେ-ଛାଇ

ମୁଣ୍ଡ କୋଡ଼େ ସିନା
ପାଗଳୀ ପରକା
ଆଖିରେ ତ ପାଣି ନାହିଁ ।

ଆଣୁ ଆଣି ମେଘ
ଖାଲେ ଧାଏଁ ଯେବେ
ସରୁ ସରୁ ସୁଅ କାଟି

ସାରୁବୁଦାମୂଳ
ଶୁଭଯାଏ ମୋତେ
ବେଙ୍ଗୁଲି ନାମାର ପାଟି ।

କୋଟିନଧି ମେଘ ମାଟି-ମାଆଟିକି ଜଗତ-ଜୀବନ-ନାଡ଼ି
ତାହାର ପରକା ହେବ ମହାଦାମୀ ଅଣ୍ଟାର ଖୋଷଣି ଝାଡ଼ି ।



# ପାଚଲ୍‌ପୋଖତ

ପାଚଲ୍ ଗାମୁଛା		କାନ୍ଧରେ ପକାଇ
ଗୁଲେ ମୋ ସାଆନ୍ତ ବୁଢ଼ା,
ପାଚଲ୍ ବୟସେ		ରେଢ଼ିରେ ତ ଆଜ
ଗ୍ଲେବେଇ ନ ହୁଏ ଚୂଡ଼ା ।

ପିଲାଦିନେ କେତେ		ବୁଦବୃଦକଆ
ବଣକୁ ଯାଇଛୁ ଚୋଳ,
ଆଣିବାକୁ ମୋର		ଅଣ୍ଟିରେ ପୂରେଇ
ପାଚଲ୍ କଣ୍ଟେଇ କୋଳ ।

ପାଚଲ୍ ଆମ୍ବଟି—		ପଶକା ସେ ଦିନ
ଦିଶୁଥିଲ ଯେଉଁ ଦିହ,
ତହିଁରୁ ତ ଆଜ		ଫୁଟି ବାହାରୁଛି
ସରୁ କଳା ଶିରା ଖିଅ ।

ପାଚଲ୍ ବୟସେ		ମଗଜକୁ ଆସେ
ଅସଲ ମଣିଷପଣ,
କେତେ ନାଳବୁଢ଼ା		ବାସନା ଖେଳାଏ
ପାଚଲ୍ ପଣସବଣ ।

କଆଖି-ପେଟଟି		ଢିଲ ହୋଇଲେ
ପଡ଼ିଷ ପାଚଲ୍ ଧାନେ,
ଚଷା ଦେଖୁଥାଏ		ସରଗ ସପନ
ହଗିବା ମୁତିବା ଥାନେ ।

ପାନବୋଳ-ପିଆ ପାଚଲା ଦାନ୍ତରେ
ଦରବୁଢ଼ା ଦେଲେ ହସି
କଳାମେଘ ସାଙ୍ଗେ ଦଶମୀ ଚନ୍ଦ୍ରର
ହସେ ବଳ କଷାକଷି ।

ବଡ଼ ଯତନ ତ ମାନଇ ଖୋଷାଟି
ଆମ୍ବର ପାଚଲା କେଶେ,
କଣ୍ଟ୍କ ନ ପାଇଲେ ଖାଆନ୍ତି ମଣିଷ
ପାଚଲା କଦଳୀ ଶେଷେ ।

ଗଛରେ ପାଚିଲେ ନ ରହେ ଲୋକର
ଥାନ ଅବା ମାନ ଜ୍ଞାନ,
ରଜ ପରବରେ ପାଟିକୁ ମଜାଇ
ବରଜ ପାଚଲା ପାନ ।

ପାଚଲା ବଢ଼ା ଓ ବୁଢ଼ାଙ୍କୁ କରନ୍ତି
ସଭିଏଁ ତ ଚଳହାତ,
ମାଟିରେ ଏ ଦୁହେଁ ଡୋଳେଇ ପଡ଼ନ୍ତି
ଟିକଏ ବାଜିଲେ ନାତ ।



## ମୁହଁ-କାନ

ମୁହଁ ତ ମୁହଁ ମାଆର ମୁହଁ
ତା' ସଙ୍ଗେ ସରିସା କେହି ତ ନୁହଁ ।

ଦରଦୀ ହୃଦୟ ଦରପଣ ସେ
ପ୍ରାଣ କଣିକାଏ ତା' ଦରହାସେ ।

ଫଲକ ମୁହଁରେ ନ ଥାଏ ପାଣି
ଶୁଖିଲା ମୁହଁରେ କାହିଁ ବା ଠାଣି ।

ଆମ୍ବିଳା ମୁହଁରେ ଅଭାବ ରସ
ଉଭିଲ ମୁହଁଟି ବଡ଼ ସରସ ।

ବେଙ୍ଗଆ ମୁହଁର ନ ଥାଏ ବାଡ଼
ଝୁମ୍ପସି ମୁହଁର ଅଶେଷ କାଢ଼ ।
ଅଜବ ମୁହଁର ଅଲଣା ରାଗ
ବାନ୍ଦର ମୁହଁର କେଉଁଠା ବାଗ ।

ପେଣ୍ଟ ମୁହଁ ସାଆଁ- ଛାଣୀଙ୍କ ଦାସୀ
ଦୋ-ମୁହାଁ କଥାରେ ନ ଯିବ ଖସି ।

ଗୋଳଆ ମୁହଁଟି ଚଗୁଲ ଘର
ନଲଠା ମୁହଁର ବେଶୀ ଗୁଚର ।

ପୋଡ଼ାମୁହାଁ ଗୁଣ ଶୁଣିବ କସ
କଥାକେ କଥାକେ ଝାଡ଼େ ସେ ବିଷ ।

ମେଘରୁ ବଜ୍ରଦ କାନ୍ଦୁରୁ ମୁହଁ
ଫେରେଣ୍ଡା ମୁହାଁର କଥା ନ କୁହ ।

ନେଫଡ଼ା ମୁହଁର ଲୁହଟି ଧନ
ଚୁଞ୍ଚ ମୁହେଁ ମିଠା କଥା ସପନ ।

ରଗିଲା ମୁହଁଟି ଜଳନ୍ତା ନିଆଁ
ଦାଢ଼ି ମୁହଁ ଦିଶେ ଅଣ-ଶୁଦଆ ।

ଗରଳ ସପନ ସରଳ ମୁହେଁ
ଅଥାର ମୁହଁଟି ଅପେକ୍ଷେ ଲୁହେ ।

ବିରସ ମୁହଁରେ ହରଷ ନାହିଁ
କାତର ମୁହଁରେ ଗୁଚର କାହିଁ ।

ନେଫଡ଼ା ମୁହାଁକୁ ଦୂରୁ ଜୁହାର
ଗୋରୁ ଚକ ଚକ ମୁହଁଟି ସାର ।

ଦାଢ଼ୁଆ ମୁହଁଟି ବାଡ଼ଆ ଘର
ଝାଣ ମୁହଁ ଦିଏ ମହତ ସାର ।

ପଣିଲା ମୁହଁରେ ଗାଡ଼ୁଆ ଆଖି
କପଟ ଉପାୟ ଦିଏ ତା' ସାକ୍ଷୀ ।

ଶୁଖିଲା ମୁହଁରେ	ଲୁଖୁରୁ କଳା
ଛଇ ଛଟକଙ୍କ	ଶଳାର ଶଳା ।

ମୁହଁ ଖୋର ଏକା	ଅସଲ ପାଜି
କଏ ମୁହଁ ତୋଡ଼	ସହଜେ ରାଜି ।

ଖମାଣ ପୋଡେ ଯେ	ମୁହଁକୁ ମାର
ନମେଷେ ମଗଜ	ଢଏ ସେ ଧାର ।

ନପାଣିଆ ମୁହଁ	ଅତି ଥୋବସ୍ର
ନନ୍ଦା ଲଗେ ତାକୁ	ଯେସନେ କୋସ୍ର?।

ଚକ୍‌କଣ ମୁହଁରୁ	ଲହୁଣୀ ଝରେ
ମଞ୍ଜନ ମୁହଁରେ	କଙ୍କିଆ ମରେ ।

ପଦୁଅଁ ମୁହଁଟି	ସଂସାରେ ସାର
ବରଗୁଡ଼ ମୁହଁ	କ ନାରଖାର ।

ଦେଖିଲେ ଚନ୍ଦର	ଉଦଆ ମୁହଁ
କଏ ଭଲ ଖୁସି	ନ ହୁଏ କୁହ ।

ହସିଲା ମୁହଁଟି	ଫୁଟିଲା ଫୁଲ
ଦରହସ ମୁହେଁ	ନାହିଁଟି ଭୁଲ ।

ଲାଜୁଆ ମୁହଁଟି	କ ଲୋଭଣୀୟ
ଦେଖିବାକୁ ଆଖି	ବଡ଼ ଅଥୟ ।

ମୁହଁ ମୁଲଜାରେ	ପଡ଼ିଲେ ଲୋକ
ରୂପ ରହେ ଯଥା	ଲୁଣରେ ଯୋକ ।

ମୁହାଁମୁହିଁ ହେଲେ	ସବୁ ଗୁମର,
ହାଟେ ଗଡ଼ଗଡ଼	ଯାଏ ଭୁମର ।

ଗୋଲଗାଲ ମୁହଁ	ପୁନଅଁ ଜହ୍ନ
କଅଁଳ ମୁହଁଟି	କ ଶୋଭାବନ ।

ମୁହଁ ଦେଲା ଝିଅ	ବାହାରେ ଠିଆ
ମୁହଁ ଦେଖା କଥା	ବଡ଼ ଅନଥା ।

ମୁହଁ ଫଣଫଣ | କରିଲେ ଫିଁଶ
ବିନା ଅସ୍ତ୍ରେ ଦିଏ | କଲିଜା ଚିର ।

ମୁହଁ ଭଡ଼ଙ୍ଗରେ | ମାରଇ ଯିଏ
କୋଡ଼ିଙ୍କର କୋଡ଼ି | ଅଟଇ ସିଏ ।

ପେଟେ ଭୋକ ଏଣେ | ମୁହଁରେ ଲାଜ
ମିହନ୍ତ କରିବା | କେଉଁ କାରଯ ।

ଶାଣଦିଆ ମୁହଁ | ବଡ଼ ଜବର
ଘଡ଼କେ ଭାଙ୍ଗଇ | ସହସ୍ର ଘର ।

ଲାଜେ ମୁହଁ ପୋଡ଼ | ଗଲେ କାହାର
ଛଟପଟ ହୁଏ | ମନଟି ତା'ର ।

କାନ୍ଦୁଥିଲେ ମୁହଁ | ପେଡ଼ା ଫଟାଇ
ହସିବାକୁ ମନ | ହୁଏ ନିଠାଇ ।

ଲାଜେ କଳାକାଠ | ପଡ଼ିଲେ ମୁହଁ
ଆଉ ତା ସହିତ | ନ ଯୋଡ଼ ମୁହଁ ।

କି ହେବ ହୋଇଲେ | ହଜାରେ କୁହ
ତୋଓ ମୁହଁ ନାଁ ତୋ | ଗୋସେଇଁ ମୁହଁ ।

ଦେହର ଭିତରେ | ମୁହଁଟି ସାର
ଆଉ ସବୁ ଅଙ୍ଗ | ଚାକର ତାର ।

ମୁହଁ ଚୁହୁଁ ଚୁହୁଁ | ଖାଏ ଯେ ଗୁହ
ବେମାନ କୁଣ୍ଡର | ସେ ବଡ଼ ପୁଅ ।

ଏଇ ମୁହେଁ ଅଛି | ନିମ ଜହର
ମହୁ-ମିଠା-କନ୍ଦ | ଜଣା ମଧୁର ।

ମୁହଁ ସ୍ୱଭାବର | ଅସଲ ସୂଚୀ
ସୁନ୍ଦର ଯାହାକୁ | ଯେ ମୁହଁ ରୁଚ ।

●

# ବାଇଆ ରଜା

କଇରେ ଟୋକା ! କଏ ସେ ତତେ
ଖୋଇଲା ଆଜ ହସର ଲଡ୍ଡୁ
ବାଇଆ ରଜା ! ବାଇଆ ପରି
କାହିଁକି ଆରେ ଧୂଳିରେ ଗଡ଼ୁ ।

ହସ ଓ ଖୁସି ଯାଆଁଳା ଭାଇ
ଖେଳୁଛନ୍ତି କ ପେଟରେ ତୋର
ହାବୁକା ମାରି ପାଟି ଭିତରୁ
ହସ ଢେଉ ତ ଉଠୁଛି ଜୋର ।

ନକଲି ହସ ବରଫ ପରି
ଦାନ୍ତ ମୂଳରେ ମିଳେଇଯାଏ
ଅସଲି ହସ ନାହି ମୁଣ୍ଡରୁ
ଆସଇ ମାଡ଼ି ଜୁଆର ପ୍ରାୟେ ।

ହସି ହସିକା ପାରେ ଯେ କାନ୍ଦ
ସେହି ହସଟି ହସର ହସ
ଫଗୁସ ଯେବେ ନ ଲାଗେ ପେଟ
ତହିଁରେ କଛୁ ଥାଏ କ ରସ !

ମୂରୁକ ହସ ମହୁଲ ଫୁଲ
ହୋଓ ହୋ ହସ ମିଶିରି ମିଠା
ଫାଟିଲା ଓଠ ଶୁଖିଲା ହସ
ଗମଲା ଖୁଦ ଚକୁଳି ପିଠା ।

ନ ଖାଆ ଫଳ ନ ଖାଆ ମାଛ
ନ ଖାଆ ଦୁଧ ଲହୁଣୀ ସର
ନଇଚ୍ଛ ଟିକେ ପାଉଲେ ହସି
ବଢ଼ି ଯିବ ତୋ ଆଇଷ ବଳ ।

ଚିନ୍ତା ରୋଗର ଅସଲ ଜଡ଼
କଉତୁକର ନନ୍ଦନ ସାଥୀ
ଛାଡ଼ବୁ ନାହିଁ ଛାଡ଼ବୁ ନାହିଁ
ସେହ୍ନିଟି ସବୁ ସୁଖର ଥାତ ।

ଦେଇଚ୍ଛୁ ଦାନ୍ତ ଦେଇଚ୍ଛୁ ମନ
ହସେଇବାକୁ ବିଧାତା ତତେ
ଖୁସିରେ ନାଚ ବାଇଆ ରଜା
ନଜେ ତୁ ହସି ହସାରେ ମତେ ।



## ଶବ୍ଦ-କସରତ୍

ମଣିଷ ଛୁଆ କଇଁ କଇଁ
ପଶୁ ଛୁଆ ମିଇଁ
ପକ୍ଷୀ କାଠ ତୁଣ୍ଡ ଖାଲ
ଶୁଭେ ଚଇଁ ଚଇଁ ।

ଛେଳି ବୋବାଏ ଅରର୍ ମେଁ
ହମ୍ମା କହେ ଗାଈ
ହୁକ୍କେ ହୋ ବାଲୁଆ ଡାକେ
ହୁହାଇ ହୁହାଇ ।

ମେଣ୍ଢା ରଡ଼େ ଭେଏଁ ଭେଏଁ
ଓଠ କାଣେ ଖୁଉଁ
ଗଧ ହୁଏ ହାଉ ହାଉ
ଭେରେଣ୍ଡା କହେ ମୁଉଁ ।

କୁକୁର ଭୁକେ ଭୋଓ ଭୋ
ଷଣ୍ଢ ହାକୁଡ଼େ ଗିର୍‌ର
ହେଁ ହେଁ ହେଁ ହସେ ଘୋଡ଼ା
ଘୋଡ଼ୀ କର୍ କର୍ ।

ବିରାଡ଼ି ହୁଏ ମ୍ୟାଉଁ ମ୍ୟାଉଁ
ମୂଷା ଚିଇଁ ଚିଇଁ
ହନୁ ମାଙ୍କଡ଼ ଖଚେଇ ହୁଏ
ଖିଇଁ ଖିଇଁ ଖିଇଁ ।

କୁଆ ରାବେ କାଆ କାଆ
ଶୁଆ କହେ କୁର୍‌ର
ହୁଳହୁଳ ଦେଇ ବଣି
ଉଡ଼ିଯାଏ ଫୁର୍‌ର ।

କୁଜ କୁଜ କୋଇଲି ଡାକେ
ଡାହୁକ କକ୍ କକ୍
ରାଧେକୃଷ୍ଣ ଜପେ ସାରି
କୁକୁଡ଼ା ହରି ରଖ୍ ।

କପୋତ୍ଥି କହେ ପୂରିଲା ମାଣ
ଉଠ୍‌ରେ ପୁତା ଉଠ୍
ଘୁଉକାଳକା ଚେଏଁ ଚେଏଁ
ବାଦୁଡ଼ ଭୁଟ୍ ଭୁଟ୍ ।

ବତକ ଡାକେ କଡ଼ କଅଡ଼
 ମେଲ ନାଲି ଥଣ୍ଟ
କାଢ଼ୁ ଗୋପରେ ଗଛେ ଡାକେ
 ହଳଦୀ ବସନ୍ତ ।

କେଏଁ କଟର ବେଙ୍ଗ ଡାକ
 ପକେଇ ଦିଏ ହୁର
ବୁଦା ଭିତରେ ଝିଣ୍ଟିକା ଲୁଚି
 ବଜାଏ ମହୁରି ।

ଭଅଁର ଗାଏ ଗୁଣ୍ଡୁ ଗୁଣ୍ଡୁ
 ମାଛି ଗଣ ଗଣ
ଅନ୍ଧାରେ ମଶା କାନ ପାଶେ
 ହୁଏ ଭଣ ଭଣ ।

ମଟର ହୁଏ ପେଏଁ ପେଏଁ
 ରେଳ ଧମାଧମ୍
ପବନ ପରି ବାଇକ୍ ଛୁଟେ
 ନ ମାରି ବାଟେ ଦମ୍ ।

ରିକ୍ସା ଗଲେ ଟିଂ ଟିଂ
 ବଗି ଟପାଟପ୍
ବୋଟ୍ ଧାଏଁ ଭୁର୍‌ର ଭୁର୍
 ରୋଲର ଦପ୍ ଦପ୍ ।

ଆକାଶେ ଛୁଟେ ଉଡ଼ାଜାହାଜ
 ଭଅଁ ଭଅଁ ଭଅଁ
ବଳଦ ଗାଡ଼ ଶୁଭଇ ଦୂରୁଁ
 ଟି-ଟି-ହଃ ହଃ ହଃ ।

ସୁଆଗି କହେ ହାଲୁମଧାବ
ଆରେ ମେଗ୍ର ବାପ୍
ସବୁବେଳେ କେବଳ ଗୃଲେ
ସମସ୍ତ ଚୂପ୍‌ଚୂପ୍ ।



## ଯେତେ ହଲେଇବୁ ହଲ

ମତେ ଯେତେ ହଲେଇବୁ ହଲ
ମୁଁ ତ ଚଳେ ନ ପଡ଼ିଲେ ଗଲ ।

ଡାକେ ଦୋଳମୁଣ୍ଡ କଠ କଠ
ମୂଷା କାଟିନେଲା ଆଣ୍ଠୁ ଜଠ ।

ଶୁଣି ଅଜାକୁ ଆସିଲା ଜର
ଘରେ ବଗଡ଼ ସାଜୁଛି ବର ।

ବେଙ୍ଗ ବଜାଉଛି ପେଏଁକାଳ
ତେଣେ ଝିଣ୍ଟିକା ଧରୁଛି ପାଳ ।

ମେଣ୍ଢା ହାତେ ଜଉ କାଢ଼ି ମଲ
ମତେ କେତେ ହଲେଇବୁ ହଲ ।

ବଲେ ଶିଆଳ କରୁଛି ନାଟ
ବେକେ ଲଗାଏ ଶିଆଳୀ ଗୁଠ ।

ସାଗ୍ର ଜନମ କରୁଛି ବଣି
ଶୁଆ ପଥି ଦଏ ଖୁଦ କଣି ।

ନମ ଗଛରେ ଫଳୁଛି ଶିମ
ଘୋଡ଼ା ପାଣିରେ ଦେଉଛି ଡିମ ।

ଭଲ ଦଇବ କଅଣ କଲ
ଆରେ କେତେ ହଲେଇବୁ ହଲ ।

ମତେ କହନ ମିତଣୀ ସତ
ବେଙ୍ଗ ପିଣ୍ଡରେ ଉଠିଚ୍ଛି ବଥ ।
ସାପ ଯାଇଚ୍ଛି ଓଷଧ ଆଣି
ଦେଖେ ବାଦୁଡ଼ି ଆଲୁଅ-କାଣୀ ।
ଗାଣ୍ଡି ଛକୋଡ଼ି ଟଙ୍କାର ମଲ୍ଲ
କହ କ ବୁଦ୍ଧି କରବ ଭଲ୍ଲ ।
ମତେ ଯେତେ ହଲେଇବୁ ହଲ୍ଲ
ମୁଁ ତ ଚଳେ ନ ପଡ଼ଲେ ଗଲ୍ଲ ।



## ଯୋଡ଼ ନାଗରା

ଟକ ଟକ ସର ସର ବାନ୍ଧଇ ବଥ
ଘୁଉଁ ଘୁଉଁ ଘର ଘର ଗୁଲଇ ରଥ ।
ଘାତ ଫୁଟେ ଗବ ଗବ ପାଇଲେ ଜାଳ
ମାଛ ହୁଏ କବକବ ପୁରିଲେ କାଳ ।
ଚକ ଚକ ମାରେ ବିଜୁ ବରଷା ରାତେ
ଛକ ଛକ ଗୋରୁର ମନ ପଶିଲେ ଗାତେ ।
ସେଏଁ ସେଏଁ ହୁଏ ପିଠା କଡ଼େଇ କୋଳେ
ଚେଏଁ ଚେଏଁ ଡାକେ ପକ୍ଷୀ ସପନ ଭୋଳେ ।
ଖଟ ଖଟ ହୁଏ ବୁଢ଼ୀ ଢୁଙ୍କାରେ ବସି
ଛଟ ଛଟ ମିନ ମାଛ ଜାଲରେ ପଶି ।
କେଏଁ କେଏଁ ଶେଯଛୁଆ ରୋଗରେ ପଡ଼ି
ଖେଏଁ ଖେଏଁ କାଶେ ବୁଢ଼ା ଘଡ଼ିକ ଘଡ଼ି ।
କୁଉଁ କୁଉଁ ବାଜେ ଦାଣ୍ଡେ କେଜା କେନ୍ଦରା
ସୁଉଁ ସୁଉଁ କାନ୍ଦେ ଜେମା ସରଗ ତରା ।

ଗମ ଗମ ଦେହୁ ବହେ    ଲୁଣିଆ ପାଣି
ଝମ ଝମ କରେ ଚୁଡ଼ି    ଭାଉଜ ରାଣୀ ।

ଗଣ ଗଣ ହୁଏ ମାଛି    ଘାଉଲୁ ବହେ
ଭଣ ଭଣ ହୋଇ ମଶା    ରକତ ପିଏ ।

ଚର ଚର କାଟେ କନା    ଦରଜୀ ପୁଅ
ଝର ଝର ଆଖି କୋଣୁ    ନିଗିଡ଼େ ଲୁହ ।

ଗଲ ଗଲ ହେଲେ ପିଠି    ଦୁମୁକା ବସେ
କଲ କଲ ଦଣ୍ଡି କର    ଖିଅରେ ପଶେ ।

ଝଣ ଝଣ ବଥା କରେ    ପାଚିଲେ କାନ
ଠଣ ଠଣ ଟଙ୍କା ସିନା    ବଢ଼ାଏ ମାନ ।

ଫୁରୁ ଫୁରୁ ଉଡ଼େ କେଶ    ନ ପାଇ ତେଲ
କୁରୁ କୁରୁ ହୁଏ ପୁଅ    କରିଲେ ଖେଲ ।

କନ କନ କମ୍ପେ ଦାନ୍ତ    ପଡ଼ିଲେ ଶୀତ
ଛନ ଛନ ହୁଏ ମନ    ଡାକିଲେ ମିତ ।

ଲଙ୍ଗପଙ୍ଗ ଦେଖି କୁନା    କାକୁଡ଼ି କଷି
ଚଙ୍ଗ ଚଙ୍ଗ ରଙ୍ଗ ଗଡ଼ି    ଯାଉଛି ହସି ।

ଧେଇ ଧେଇ କରେ ନାଚ    ଗେହ୍ଲେଇ ମାଆ
ଥେଇ ଥେଇ ନାଚେ ମିନି    ବାହାରେ ବାହା ।

ଧମାଧମ ଗୁଳେ ରେଳ    ଟେସନେ ଅନା
ହୁକେ ହୁକେ ହୁଆ ଡାକେ    ବିଲୁଆ ନନା ।

ମୁସ୍‌ମୁସ୍ ଚଣାଚୁର    ଲେଉଟେ ରଜା
ଦିଲଖୁସ୍ ଖିଲପାନ    ଆହା କ ମଜା ।



# ସେଠୁ କ'ଣ ହେଲାନା

ଶୁଣ୍ ପୁଅ—

ସେଠୁ କ'ଣ ହେଲାନା
ଏତେ ବଡ଼ ପାଟି ଆଉ ମେଲ୍ଲାନା ।

ଖଳ କୁଳ ଝିଅଟିଏ ଘର କାଳକୁଟୁଷ୍ଟ
ମାଆ ତା'ର ନାଆଁ ଦେଇଥିଲ୍ଲ ହେଁସ ମୁଣ୍ଡୁଷ୍ଟ
ବଡ଼ ଦଗାବାଜ୍ ବାପ, ମାଆ ପକ୍କା ସ୍ବୈରଣୀ
ଭଉଣୀ ଦୁଇଟିଯାକ ଦେଶକଣା ଖୋରଣୀ ।
ହେଁସ ମୂଣ୍ଡୁଷ୍ଟକ ଯହୁଁ ହେଲା ଷୋଳ ବରଷ
ମାଆ ମୁଖୁଁ ମରଗଲ୍ଲ ପନ୍ଦରଣା ହରଷ ।

ଆକଟିଲ୍ଲ ଝିଅକୁ ସେ ଆଉ ଦାନ୍ତ ମେଲ୍ଲାନା
ଶୁଣ୍ ପୁଅ —

ସେଠୁ କ'ଣ ହେଲାନା ।

ବାରଜାତି ଚେରବୋଲ୍ଲ ଭକମଗା ଶବର
ବଣର ମାଉଁସ ଖାଇ ହଡ଼ ବଡ଼ ଜବର ।
ଇମିତିକା ପେଟୁ ବୋଧେ ନାହାନ୍ତି ସେ ସାଇଜେ
କୁକୁଡ଼ାକୁ ମୋଡ଼ ଖାଏ ଜାଅ ତାର ଥାଇଁ ଯେ ।
ହେଁସ ମୁଣ୍ଡୁଷ୍ଟକ ବାପ ବେଙ୍କେ ତାର ଛନ୍ଦଲ୍ଲ
ବରକନ୍ୟା ବଦାବେଳେ ଜେଜୀବୁଢ଼ୀ କାନ୍ଦଲ୍ଲ ।
"ମୋ' ସରଗ ସୁନା ଚନ୍ଦ ଆଲ୍ଲୋ ହେଁସମୁଣ୍ଡୁଷ୍ଟ
ଶାଶୁଘରେ ଯାଇ ଟିକେ ହେବୁ ସଫା ସୁତୁଷ୍ଟ ।
ରାନ୍ଧିବୁ ଅସନା କରି ପରଷିବୁ ବେଶି କ
ପେଟୁ ବର ନ ଛୁଇଁଲେ ଚଲେଇବୁ କଷିକ ।

ଏବେ ଦୁଃଖ ଭୋଗିବାକୁ କପାଳେ ତା ଥିଲାନା
ଶୁଣ୍ ପୁଅ—
ସେଠୁ କ'ଣ ହେଲାନା ।

ଟାଉକା-ନକ୍ଷିମୀ ହାତୁଁ ଶୁଖିବାକୁ ପରଷା
ସେଦିନ ମାନିଲା ନାହିଁ ସ୍ୱାମୀ ଝଡ଼ ବରଷା ।
ଆଣିଲା ନରମ ମାଂସ ରାନ୍ଧିଦେବ ମୁହଁରେ
ଘଡ଼ି ଘଡ଼ି ଜିଭ ତଳ ଯାଉଥାଏ ବହୁତ ।
ସୁଆଦିଆ କରି ଭୁଣ ରାନ୍ଧୁ ରାନ୍ଧୁ ବଣରେ
ଗୃହିଁକନା ବୁଢ଼ୀ କଥା ପଡ଼ିଗଲା ମନରେ ।

ହାଆଁ କରି ସୁନାଟି ମୋ' ପାଟି ଆଉ ମେଲାନା
ଶୁଣ୍ ପୁଅ —
ସେଠୁ କ'ଣ ହେଲାନା ।

ଦୁମ୍ଦାମ୍ ଗୁମ୍ଗାମ୍ ବସିଗଲା ପିଠିରେ
ଦ'ଦିନ ମୁହଁରୁ ଘରୁ ପାରିନାହିଁ ଉଠିରେ ।
ମନ ଇଚ୍ଛା ଲୁଣ ଗୁଣ୍ଡ ଦେଲା ବୋଲି ଭୁଣରେ
ଶାଶୁ ଆଗେ ବଖାଣିଲା ଜୋଇଁ ଝିଅ ଗୁଣରେ ।
ଏକ୍କା ପାନକେ ରାନ୍ଧୁଣୀ ହୋଇଗଲା ଜବତ
ମାଆ ଆସି ସାଲୁଲେଇ ଖୋଇଗଲା ଚବଚ ।
"କହ ବୋଉ କହ ବେଗେ ସେଠୁ କଣ୍ ହୋଇଲା"
"ହବ ଆଉ ଛେନାଗୁଡ଼—
କଥା ଏବେ ସଇଲା ।"



# ମେଘଟୋପା

ମେଘ ବରଷିଲା ଟପର ଟପର
କେଶୁର ମାଇଲା ଗଜା
କେଉଁ ରାଇଜରେ ରହିଲେ ରଜା ଲୋ
ଟେଲଙ୍ଗି ବାଇଦ ବଜା ।

ମେଘ ବରଷିଲା ଟପର ଟପର
ବେଙ୍ଗ ଢାଏ ହୁଳହୁଳ
ଭଅଁର ଡଉଡ଼େ ମାଳତୀ ବଣକୁ
ଖାଇବାକୁ ସରପୁଳ ।

ମେଘ ବରଷିଲା ଟପର ଟପର
ଝଡ଼-ବାଘ ଉଠେ ମାଡ଼ି
ପାହାଡ଼ ଉପରେ ଲଟା ଚରବୁଲେ
ପାଗଳା ବଉଦ-ହାତୀ ।

ମେଘ ବରଷିଲା ଟପର ଟପର
ହୁଙ୍କାରେ ଗୃହିଁଲା ଛତୁ
ସାପେଇ ସାପେଇ ଅଲଅଳୀ ଝରେ
ଗଡ଼ିଆସେ ପରବତୁଁ ।

ମେଘ ବରଷିଲା ଟପର ଟପର
ବାଲୁଆ ନନାର ବାହା
ଗୋଲଆ ନଈକ ନାଳ ଡାକ ଛୁଟେ
ପଛକୁ ଚିକଏ ଗୃହାଁ ।

ମେଘ ବରଷିଲା          ଝିମର ଝାଇଁ ଲୋ
ମଉଳୁଚ ବିଲ ବନେ
ଧାନ କଆଁରେ          ବାଗୁଡ଼ି ଖେଳଇ
ବତାସୀ ହ୍ୱାଲୁକା ମନେ ।

ମେଘ ବରଷିଲା          ଟପର ଟପର
ଫୁଇ ଉଠେ ଆଖି ମଳ
ଚନ୍ଦର ଉଦଆ          ବଣପର ସୁନା-
ବଜୁଳ ଉଠଇ ଜଳ ।

ମେଘ ବରଷିଲା          ଟପର ଟପର
ନଣ୍ଡରେ ଗୃଲଲା ନାଆ
ଗାଏ ବନମାଳୀ          ହ୍ୱାତେ ମାର ତାଳ
ତାକ୍ ଧିନାଧିନ ତାଆ ।



## ଚଟଣି କଳ

ଯେତେ ରକମ ଚଟଣି ଅଛି
ଜାଣିଚ ନା ରେ ଭାଇ
ଆଈମା ସତେ ନ କହ୍ବେ କେତେ
ମହ୍ୱିମା ତା'ର ଗାଇ ।

ସାରୁ ଚଟଣି ବଡ଼ ଚଟଣି
ଚଟଣି ବଡ଼ ଚଣା
ଖାଇଲେ ଥରେ ପଖାଳ ଭାତେ
ପେଟକୁ କରେ ବଣା ।

ଭୁଲରେ କେବେ ଭୁରୁଡୁଙ୍ଗର
ଚଟଣି ଥିଲେ ଖାଇ
ବାଟ ନ ପାଇ ଅଜୀର୍ଣ୍ଣ କହ୍ବେ
କୁଆଡ଼େ ଯିବ ଭାଇ ।

'ପୋଦନା କହେ ଚଟଣୀଙ୍କର
ମୁଁ ଅଟେ ଗୋସିବାପ
ଖାଇଲେ ମଠେ ଉଷୁଅଁ ହୁଏ
ଗୃପ୍ ଉପରେ ଗୃପ ।

ନଡ଼ିଆ କହେ ବଡ଼ିଆ ମୁହିଁ
ମୋ'ଠୁଁ କେ ନାହିଁ ବଡ଼
ମୁଉଁ କେବଳ ଭଙ୍ଗା ଦହକୁ
ମାସକେ କରେ ଦଡ଼ ।

ଧନଅାଁ କହେ ମୋଓ ସଙ୍ଗେଟି
ଦବରେ କଏ ଚାଳ
ମୋ' ଖୁସୁବରେ ପଡ଼ଶା ଘର
ପାଟିରୁ ଗଡ଼େ ଲାଳ ।

ଧନଅାଁ ପଟ ଚଟଣି ଏକା
ଚଟଣିଙ୍କର ରଜା
ଜଭ ଅଗରେ ଥୋଇଲେ ଥରେ
ବୁଝିବ ତା'ର ମଜା ।

ରୋଟୀର ପଥ୍ ଗରବ ସାଥୀ
ଭୁଣର ବଡ଼ ଭାଇ
ପଣସ ମଞ୍ଜି ଚଟଣି ଥିଲେ
ଭାବନା କେଉଁ ପାଇଁ ।

କହ୍ବଲେ ଖାଳ କହ୍ବବ କହ୍ଣୀ
ରାଗରେ ହୋଇ ଖପା
କଇଥ କହେ ମୁଁ ପରା ସବୁ
ଚଟଣୀଙ୍କର ଅପା ।

ବାଦାମ କହେ କଅଣ ହେଲା
ଗଲଣି କ ମୁଁ ମର
ଗାଆଁରୁ ମତେ ଦେଉଚ ତୁମେ
ଏକ-ଘରଆ କର ।

ଚଟଣି କୂଜ ବୁଢ଼ଲେ କୁଛ୍
ନେଇଁରେ ପରବାଯ୍ୟେ
ଧାପେ ମୁଁ ଥିଲେ ଥାଳକୁ ଲୋକ
ଗୃଟିଚୃଟିକ ଖାଏ ।

ଚଟଣୀଙ୍କର ହାକମ ମୁହିଁ
ଜାଣଇ ଫେର୍‌ଫାର୍
ମୋ' ଚଳଆ ସବୁ ଦାରୋଗା
କେହ୍ବା ବା ଦଫାଦାର ।



## ନାଟୁକୁଟିଆ ପିଲା

ନାଟୁକୁଟିଆ ପିଲା କେଜାଣି କାହିଁ ଥିଲା
ଶୁଖୁଆ ଗୁେର ବରାଡ଼ ପର
ମାଇଲା ଏକ୍ ଟଲା ।

ଟନକ୍ ଶିଶିଟିଏ ଏକଲା ଖୋଲ ପିଏ
ମିଠିଲ ପାଣି ପାଟିକୁ ଆହା
ସୁଆଦ ଖର ଦଏ ।

ଖ୍ବରୋଟି ଛୁଆ ନେଇ ଘରଣୀ ଥେଇ ଥେଇ
ରେରେ କାର୍-ମ ର୍ ଧର୍
ଗଲାରେ ହେଇ ହେଇ ।

ପାଟିରେ ଧୂମ୍ ଧାମ୍ ପିଠିରେ ଗୁମ୍ ଗାମ୍
ଶୁଣି ଶୁଣିକା ଚଢ଼ିଲ ବାପ
ଡାକଇ ଘମ୍ ଘମ୍ ।

ମାଆର ନାହିଁ ହାଲ ଗଲଣି ଶୁଖି ଗାଲ
ପାଟି ଗୋଳରେ ସାଆନ୍ତବାପ
ସାଆନ୍ତମାଆ କାଲ ।

ଖାଇଲ କଏ ମାଟି ଭାଙ୍ଗିଲ କଏ ବାଟି
ଉବରୁ କଏ କଉସିନକୁ
ଓଳାରେ ଦେଲ ଲୁଚି ।

ଚରଇ କଏ ବନ୍ଧ ବଗୁଡ଼େ କେବା ଖଇ
ଶିକାରୁ କଏ ନଗାଡ଼ ପିଏ
ବଡ଼ାରୁ ଦୁଧ ଦହି ।

ନଇତ ଖାଇ ଗାଳ ଜାମାରେ ଢାଳେ କାଳ
ଆକଟେ ଯେବେ, ଶୁଣଇ କେଖା
କଏ ତୁ ଆଲେ ଶାଳୀ ।

କଏ ସେ ନେଲ ଶିଶି ବାଦାମ କସିମିସି
ଦେଖିଲେ ଭଙ୍ଗା ବୋଃଚଲଟିଏ
ଦୋକଡ଼ କଣେ ପିସି ।

ପଡ଼ିଲ ଘେର ଧର ମାଡ଼ରେ ଦରମର
ବନା ଦୋଷେ ବା ଶାସ୍ତି କଏ
ଭୋଗିଲ ଚାଣ ଖର ।

କଏ ସେ ଭେଏଁ ଭେଏଁ କଏ ବା କେଏଁ କେଏଁ
କଟି ଛୁଆଟା ଶେଯରେ ଛେଣେ
ବୋବାଏ ମେଏଁ ମେଏଁ ।

ପିଲଙ୍କୁ ଝାଙ୍କେ କଷି ଅନୁତାପରେ ବସି
କାନ୍ଦ କାନ୍ଦକା ସେଦ୍‌ଦନ ମାଆ
ପାଳନ୍ତି ଏକାଦଶୀ ।

ଥମିଲ୍ଲ ଖିଟି ଖିଟି ଅଉଁଷେ ଆଣ୍ଡି ପିଠି
ସରଳ ପିଲେ ନ ବୁଝି କହୁ
ବୃନ୍ଦାବନ ମିଠି ମିଠି ।

ଦଶଇ ଆଜ ବାପ କରନ୍ତି ପର ପାପ
ଅଫିସ ବାଡୁଁ ଆସିଛୁ ବଲ୍
ରବର' ନାଲ ସାପ ।

କଏ ସେ ମାରେ ତାଳ କା'ମୁହେଁ ପେଏଁକାଳ
"ସାଗ୍ ଲ୍ଲେ ଶୁଆ—ନଦ ଲ୍ଲେ ଗୁଆ"
ନାଚଇ ବନମାଳୀ ।



## ଗଛ-ଲତା

—ଗଛ—

"ଲତା ଅପା ଲ୍ଲେ ଲତା ଅପା ଭୁ
କଇସ କରୁଚୁ କ
ତଳେ ଘୂସୁର କଥାଟି ପର
କାଇଁକ ମରୁଚୁ କ !"

—ଲତା—

"ଜର ମାଡ଼ଚ ଶିଖକୁ ତୋ'ର
କମିତ ଯିବ କ'
ଏତେରେ ଯଦ ସିନକ, ମୋର
ଆଙ୍ଗୁଳ ଟିକେ ଧ !"

—ଗଛ—

"ବାହୁଗୁଡ଼ା ମୋ' ଉପରେ ସବୁ
ଏକ ପାବଆ ମୁଁ
ବନ-ଅନ୍ଧୁଣୀ ହେଲୁଣି କଲେ
ଦେଖି ପାରୁନୁ ତୁ ।"

—ଲତା—

"ଧୀରେ ଧୀରେ ମୁଁ ଯାଉଚ ଚେବେ
ଦେବୁ କରେ ଟିକେ ସା'
ଯୋଡ଼ ସଙ୍ଗାତ ବସିବା ଆମେ
ହୋଃ-ହୋଃ-ହୋଃ ହା ।"

—ଗଛ—

"ଲତା ଅପା ଲୋ କହନ ମତେ
ଛୁଡ଼ଦବୁ ନାହିଁଟି
ଯାବୁଡ଼ ଧର ଦେକକୁ ମୋର
ମୁଁ ତୋ କୁନ ଭାଇଟି ।"

—ଲତା—

"ଦେଖିଲୁଣି ନା ଚଇଉ ବୋହୁ
ଡାକଲାଣି ଚୁଉ ଚୁ
ଡାହ୍ନ ତୋ ଟିକେ ହଲେଇ ଦେଲେ
ମାରବ ଏଇନେ ଝୁ ।"

—ଗଛ—

"ସିଏ ପଛକେ ହୁରୁଡ଼ ଯାଉ
ପାଖରେ ଭୁଜ ମୋ ଥା
କଅଁଳ କଣ୍ଠେ ପଦେ ଦପଦ
ମନଫୁଲ୍ଲ ଗୀତ ଗା ।"

—ଲତା—

"ଚଇତ ଗଲା ଫଗୁଣ ପଛେ
ରାଗରେ ଗ୍ରୀଷମ ଫଁ
କୋଡ଼ କରୁଛ ପିଠଇ ମୁଣ୍ଡ
ଝାଞ୍ଜି ଟା କାହିଁକ ମ !"

—ଗଛ—

"ଅସହଣୀଟା ପାରୁନ ଦେଖି
ଆମ ହସ ଖୁସି ଲୋ
ସେଇଥି ପେଇଁ ରାଗରେ ଜଳ
ଯାଉଅଛୁ ରୁଷି ଲୋ ।"

—ଲତା—

"ଦୁନଆଁ ପଛେ ଉଜୁଡ଼ି ଯାଉ
ତୁ ମୋ କଡ଼େ କଡ଼େ ଥା ।"

—ଗଛ—

"ଲତା ଅପା ଲୋ କଣ୍ଠକ ମୋ'ର
ଆଉ ଟିକେ ଘୁଞ୍ଚ ଥା ।"



## କାନ୍ଦୁରା ଛୁଆ

କେଉଡ଼କ ବଡ଼ ହାଆଁ କାଉଆ
ମେଲୁଚ୍ଛି ପାଟି ଆଃରେ
ଶୁଉଣ୍ଡୁ ହେଇ କୋକଣିଆଳୀ
ଭୁକୁଚ ନଈ ଧାରେ ।

ହରଣ ଝିଅ ଡେଇଁ ଡେଇଁକା
ଯାଉଚ ଶାଶୁ ଘର
ଶୁଣିଲେ ପାଟି ଆସିବ ଧାଇଁ
ଚୁଉପ ଟିକେ କର ।

ଚନ୍ଦନ ନାଇ ବାହା ହବାକୁ
ଯାଉଛ ଜହ୍ନ ମାମୁଁ
ତୋ' ପାଇଁ ସେଠୁ ଆଣିବ କୋଉ
ବୁଢ଼ିଆ, ଲଡୁ, ଜାମୁ ।

ବାଦୁଡ଼ି ହୋଇ ଯାଉଛ ଦେଶ୍
ଅଗନାଅଗି ବନେ
ତୋ' ଲାଗି କାଲ ଆଣିବ ଆମ୍ବ
ଖାଇବୁ ଖୁସି ମନେ ।

ରଥ ଯାତରା ଦେଖିବ ବୋଲି
ଯାଉଛୁ ଟେଏଁ ଟେଇଁ
ଜଗନ୍ନାଥଙ୍କ ମହାପ୍ରସାଦ
ଆଣିବ ତୋହ ପେଇଁ ।

କାଆଁନେ ନା' ରେ ବାଇଆ ହାଣ
ହୁଡ଼କ ହୋଇ ଗୁହାଁ
କଳା ବଉଦ ଆଉଚ ଉଠି
ବାହୁନ ଯାଆଁ ଯାଆଁ ।

ମଟର ଗାଡ଼ି ଆଣିବ ଦାଦା
ଯାଇଛୁ ଆଜ ହାଟ
ଥିଇର ହୋଇ ବସିଆ ବାପ
ଅନେଇ ତାର ବାଟ ।

କଟକୁଁ ତୋର ଆସିବ ଜୋତା
ଆସିବ ଟିକ ଛତା
ରେଲ୍‌ରେ ଚଢ଼ି ଯାଆନ୍ତ ଯାଙ୍ଗେ
ଯିବୁରେ କଲକତା ।

ଯେତେ କହିଲେ ବୁଝେଇ ମାଆ
ଶୋଇ ପଡ଼ରେ ଧନ
ପୁଅ କାନ୍ଦିକ ଶୋଇବ ଟିକେ—
ଆହୁର ଗରଜନ ।



## ଭୋକଲ୍ ଭାଲୁ

ମେଘ କାଶୁଅଛି ଖୁଉଁ ଖୁଉଁ
ବାଆ ବାହୁନୁଛି ସୁଉଁ ସୁଉଁ ।

ମାଆ ଯାଇଅଛି ବାପ ଘର
ଏଣେ ପିଲ୍ ଦୁଇ ହରବର ।

କାହ୍ନୁ ନକ୍ଷିମୀର ସାନ ଭାଇ
ବେଳ ବୁଡ଼ଲ୍ ମାଆକୁ ଗୁହାଁଇ ।

ନକ୍ଷୀ କହେ ଥରୁଚ ମୋ ଗୁଣ୍ଡ
ଆଜ କମିତ ପାହିବ ରାତ ।

ଦୁହେଁ ଚକଆରେ ମୁହଁ ଜାକ
ନଦେ ଶୋଇଲେ ପ୍ରଭୁଙ୍କୁ ଡାକ ।

ଏକ୍ ଭାଲୁ ଆସି ଦାଣ୍ଡେ ପଟେ
ଭାବେ ଏ ସୁଯୋଗ କାହିଁ ଘଟେ ।

ଯେବେ ଫେରବ ଏ ମାଲ୍ ଗୁଡ଼
ଫିଟି କହବ ତ ମୁହିଁ ଝାଡ଼ ।

ଆଜ ସହଜେ ଜଳୁଛି ପେଟ
ଏବେ ଅସଲ୍ ହେଲ୍‌ଣି ଭେଟ ।

ସରୁ ଉପାୟ ପାଞ୍ଚ ସେ ମନେ
କଳା ମେଘକୁ ଗୁହାଁଲ୍ କ୍ଷଣେ ।

ଦୂରୁ ତୋଫାନ ଆସୁଛି ଧାଇଁ
ନଶା ଗରଜୁଛି ସାଇଁ ସାଇଁ ।

ଝଡ଼େ ପଡ଼ୁଛି ବରଷା ଛିଟା
ଡାକେ ଫିଟାଲେ କବାଟ ଫିଟା ।

ଶୀତେ ଆସିଲାଣି ମତେ ଜର
ଟିକେ ଖୋଲଦିଅ ଭଲା ଘର ।

ନକ୍ଷୀ ସପନ ଦେଖିଲା ଭଳି
ଶେଯୁଁ ଉଠି ଗଲା ଆଖି ମଳି ।

ବୋଉ କମିତି ଆଇଲୁ ଆଲୋ
ଆଜ ଏ ଘୋଉ ବତାସ ମା'ଲୋ ।

ଆମେ ଭାବ ଭାବ ସେଇ କଥା
ପଡ଼ ଆସୁଥିଲା ଆଖି ପତା ।"

"ନକ୍ଷୀ ଅଇଲାଣି କ ଲୋ ବୋଉ
ଆଜ ଯାଗ ତ ହେଇଛି ଯୋଉ..."

ଶୁଭେ "କାଣ୍ଡର ଗଲାଣି ଦିହ
ମତେ ହେଁସ ଖଣ୍ଡେ ଘୋଡ଼ଦିଅ ।"

କାଣ୍ଡୁ ଭାବଇ ହେଲା କ ଜର
ଗୋଡ଼ ମୋଡ଼ବାକୁ ତର ତର ।

ଘାଲୁ କହଇ, "ନାଇଁରେ ଥାଉ
ଆଜ ଘଷା ଲୋଡ଼ା ନାହିଁ ଆଉ ।

ଜରେ ବୁଲେଇ ଦଉଚ ମୁଣ୍ଡ
ଜମା କର ନାହିଁ ପାଟି ଭୁଣ୍ଡ ।"

ନକ୍ଷୀ କହିଲା, "ନାଇଁଲୋ ନାଇଁ
କେତେ ଗୁହିଁଥିଲୁଁ ତୋଓ ପାଇଁ ।"

କହି ଝିଙ୍କି ନେଲେ କର ବାଦ
ଦୁହେଁ ଦୁଇଆଡ଼ୁ ଦୁଇ ପାଦ ।

ଆରେ ଖାଇଲା କ ଆସି କାଳ
କଣ ହାତକୁ ଲାଗୁଛି ବାଳ ।
ଆଜ ପାହବ ନାହିଁକ ରାତି
ଭୟେ ପଡ଼େ ଉଠେ ଖାଲି ଛାତି ।
ଗୋଡ଼ ଉଣ୍ଡାଳ ବାଉଲେ ସରୁ
ଖଞ୍ଜେ ଚମକି ଦେଲେ ସେ ଘରୁ ।
ଏଣେ ବାହାରୁ ଦୁଆର କଳ
"ଧାଇଁ ପଡ଼ ହୋ"—ଡାକଲେ ମିଳ ।
ଭାଲୁ ଶୋକରେ କଉଡ଼ି ଗୁଡ଼ି
ଘରୁ କରୁଛି କେବଳ ପାଟି···
"ଆଲୋ କାହିଁ ପଳେଇଲୁ ନକ୍ଷୀ
ମୋର ବାଳୁଆ ଗୋଡ଼କୁ ଦେଖି
ଆରେ କୁଆଡ଼େ ଛପିଲୁ କାହା
ମୋର ବାଳୁଆଗୋଡ଼କୁ ଅନା ।"



## ପକ୍ଷୀ ମାଷ୍ଟ୍ରେ

କହଲ ବଣି ମାଆଲେ ମତେ
ଦେଏ ସିଲଟ ଖଡ଼ି
କଜ୍ଜଳପାଣି ଘରକୁ ଆଜି
ଯିବ ମୁଁ ପାଠ ପଢ଼ି ।

ଗହୀର ବଲ ଶିମିଳ ଡାଳେ
ବସିଛି ଗୃହଶାଳ
ଜଣ ଜଣାକ ଆସୁଅଛନ୍ତି
ଯେଦାନ ଯାର ପାଳ ।

କୋଇଲି ଶୁଆ    ଟେଁଟେଇଁ କୁଆ
ଘରଚଟିଆ ବଗ
ଶିଖିଗଲେଣି    କେତେ କେତେ ଜାଣି
କାହାଣୀ ଗୀତ ଢଗ ।
ମାଷ୍ଟ୍ରେ ଆମ    କହୁଅଛନ୍ତି
ଯିବାକୁ ମତେ କାଲି
ଛାଡ଼ ଦେ ମତେ    ଉଡ଼ିଲିଣି ମୁଁ
ପାରିଲିଣି ବି ଚାଲି ।
ବଡ଼ ସଙ୍ଗାତ    କାପଡା ଭାଇ
ଯିବ ବି ସାଙ୍ଗେ ମୋର
ଦେଏ ସିଲଟ    ଦେଏଲେ ଖଡ଼ି
ହେଲଣି ବଡ଼ ଭୋର ।
କମିତି ଆଲେ    ବିଦେଶ ଯିବ
କରିବ ରୋଜଗାର
ବାପା ସକାଶେ    ଆଣିବ ମାଛ
ତୋ ପାଇଁ ଫଳାହାର ।
ଦିନକୁ ଖାଲି    ଚାରି ଛଅଟି
ଦେବୁଲେ ବୋଉ ପୋକ
ବେଶୀ ପାଉଣା    ନ ଖୋଜିବେ ସେ
ଅତି ଭଦ୍ରଲୋକ ।
ସିଲଟ କାହୁଁ    ପାଇବ ଆରେ
ତାଳପତର ନେଏ
ଥଣ୍ଟ ମୂନରେ    ଲେଖିବୁ ପାଠ
ଲଗାନା କେଉଁ କେଉଁ ।
କାହୁଁ ଅଇଲା    ମାଟିଆ ଚଲ
ବଣିକ ନେଲା ଝାମ୍ପି
ପାଠ ପଢ଼ାର    ଇତି ଦେଖି ମା
କଲିଜା ହେଲା ଚାମ୍ପି ।

●

# ସାଧାରଣ ଜ୍ଞାନ

କହଲ ପିଲେ ଗୋଲ୍ କସ
ଚେପ୍‌ଟା କାର ନାକ
ଲମ୍ବା ଲମ୍ବା ଲୁମ ଥାଏ
କାହାର ଦହପାକ ।

କାହାର ଅଛି ତିନଟା ଆଖି
ଚାରୋଟି ପୁଣି ହାତ
ନ ଥାଇ ମଞ୍ଜି କେଉଁ ଫୁଲଟି
ମାଟିରୁ କହ ଜାତ ।

ଫୁଲ ନ ଥାଇ କି ଫଳ କହ
ଫଳଇ ଗାଡ଼ ଗାଡ଼
ନ ଥାଇ ମୂଳ କହ କି ଲଟା
ବୁଦାରେ ଥାଏ ମାଡ଼ ।

କେଉଁ ଆକାଶ ଚନ୍ଦ୍ର ବଙ୍କା
ବଙ୍କା କେଉଁ ଫୁଲ
କାହା ମୁହଁଟା ପୋଡ଼ା ଅଙ୍ଗାର
ବାନ୍ଦର ବଲ୍‌ବୁଲ୍ ।

କେଉଁ ଫଳଟା ନ୍ଗୁଆ ଘର
କେଉଁ ଫଳଟା ମିଠା
କେତେ ରକମ କହଲ ଭଲ
ଗୋଲ୍ ଗୋଲ୍ ପିଠା ।

ଅତର ପର ବାସଇ କଏ
ଗନ୍ଧାଏ କାର ଦହ
ଜାଆଣୀ ଭଳ ଦଏ କେ ଚୁଟି
ଦେଖିଲେ ଟିକେ ଡିଅ ।

କାହାର ହାଡ଼ ଟାଣୁଆ ଭାର
ପଚପଚିଆ କଏ
କେଉଁ ପାଠଟା କହିଲ ବଡ଼
ମ୍ୟାଟ୍ରିକ୍ ନା ବି: ଏ ।

କହିବ କଣ ମୂର୍ଖ ଗୁଡ଼ା
ନ ପଢ଼ି କିଛି ପାଠ
ପଣ୍ଡିତଙ୍କର ପେଣ୍ଡୁଲ ତୁମେ
ସବୁ ତ ବଡ଼ ଧୃଷ୍ଟ ।



## ଗୋଲଗାଲ

ଗୋଲ୍ ଆଳୁ ଗୋଲ୍ ପୃଥ୍ୱୀ
ଗୋଲ୍ ଗାଡ଼ି ଚକ
ଗୋଲଗାଲ୍ ପୂନଅଁ ଜହ୍ନ
ଦିଶେ କି ଜକ ଜକ ।

ଗୋଲ୍ ମୁହଁ, ଗୋଲାପ ଫୁଲ
ଦିଶଇ ମନ ମଞ୍ଜୁ
ଗୋଲ୍ ଗୋଲ୍ ରସଗୋଲା
ବରଷା ବାଲି ଛତୁ ।

ଗୋଲ୍ ଗୋଲ୍ ହସ୍ତାକ୍ଷର
ଦିଶେ କି ସାଜସଜା
ଗୋଲ୍ ଗୋଲ ଚକୁଳିପିଠା
ଲାଗଇ ବଡ଼ ମଜା ।

ପାଟିକି ମିଠା ମସଲାବରା
ଗୋଲ୍ ଆଳୁ ଝୋଳ
ମାଆଙ୍କୁ ମିଠା ଗୋଲ୍ ମୁହଁଟି
ମଣ୍ଡିଲେ ଟିକେ କୋଳ ।

ଆଖିକ ମିଠା ଗୋଲ୍ ଜଭୁ
ଅଶିଣ ମାସ ଗଛ
ଜେଜଙ୍କୁ ମିଠା ହସ୍ତାକ୍ଷର
ଗାରେଇ ଥିଲେ ନାଛ ।

ନାକକୁ ମିଠା ଗୋଲ ଗୋଲାପି
ଗୋଲାପ ଫୁଲ ବାସ
ହୁଙ୍କାକୁ ମିଠା ଧୋବଲା ଛତୁ
ହେଲେ ଭେଦୁଅ ମାସ ।

ପିଲାକୁ ମିଠା ଚକଆ ଗାଡ଼ି
ନ ଦେଲେ କେଏଁ କେଏଁ
କାନକୁ ମିଠା ଆଶରାପିଠା
ହୁଅଇ ଯଦ ଚେଏଁ ।



## ଖାଆପିଅ

ହେଇ ଦେଖ ରସାବଳ
ଆଉ ହାତେ ଚମ୍‌ଚମ୍
ଖାଇ ସ୍ୱାଦୁ ଚଢ଼ା ଲୋକ
ଘରେ ହୁଏ ଛମ୍‌ଚମ୍ ।

ଇଏ୍ କଣ ଜାଣୁଛ ତ
ଗୋଲ୍ ଗୋଲ୍ ଗୁଲୁଗୁଲା
ଅଭ୍ୟାସେ ଖାଇଲେ ନିତ
ଧରେ ରୋଗ ମୁଣ୍ଡବୁଲା ।

ଗରମ ଗରମ ଏଇ
ଅଦାଦିଆ ଆଳୁଚପ୍
ଖାଇ ଏହା ଢ଼ଏଁ ଲୋକ
ବେଙ୍ଗ ପରି ଖପ୍‌ଖପ୍ ।

ଏଇ ଯେ ବୁଢଆ ଲଡ଼ୁ
ହାଳଦଆ ଗୋଲ୍‌ଗୋଲ୍
ଖାଇଥିଲେ ନଦେ ପିଲ୍ଲ
ବାଜଲଇ ହରିବୋଲ୍ ।

ବୁଦ୍ଧି ଯାଏ ଉଦରଖ
ଖାଇଲେଟି ଛେନାଗଜା
ଯେତେ ମିଠା କ୍ରମିବେଳେ
ବାହାରଇ ତାର ମଜା ।

ଗଜମୂର୍ଖ ହୁଏ ପିଲ୍ଲ
ନଡ଼ା ଖାଇ ବରବର
ଅଗ୍ନ୍ୟକ ସର୍ଦ୍ଦି ଘୋଟେ
ଖାଇଲେ ପାଚୁଅ ଝର ।

ଆମଟ୍ଟିନା ଝାଡ଼ା ଧରେ
ଗେଫୁଥିଲେ କଞ୍ଚାଚୂଡ଼ା
ମୁଢ଼ି ସଦା ଚୋବେଇଲେ
ଗଜା ଦାନ୍ତ ହୁଏ ବୁଡ଼ା ।

ଅଜାଣ୍ଣିର ମୂଳ ଖଇ
ଦେଖାଏ ମରଣ ବାଟ
ଉଖୁଡ଼ା ତା ବଡ଼ ଜନା
ରଦ୍ଦ କରେ ପାଠଶାଠ ।

ତେଏଁ ଚକୁଳକ ଘଇ
ଖିବାକୁ ଯେବେ ଯାଉଁ
ପେଟ ଆଗ ସଫା କର
ଲେମ୍ବୁରସ ସୋଡ଼ା ଖାଅ ।

ଛେନାମଣ୍ଡା, ପୋଡ଼ପିଠା
ଗରଷ୍ଟୁଙ୍କ ଗରଷ୍ଟୁ ଏ
ଥରୁଟିଏ ଗୃଖିଥିଲେ
ଯୁଗେ ପାଇଁ ମନେ ରହେ ।

ତାଳର ସୁଆଁଳ ! ସେ ତ
ହଇଜାର ବଡ଼ ବାପ
ଖାଇଲେ ନଡ଼ଆ କୋରା
ତଳପାରୁ ଉଠେ ଚାପ ।

କଦଳୀ ସିଝଣି ଜାଣ
କରବଏ ବୁଦ୍ଧି ମୋଟ
ପଖାଳ ଖାଇଲେ ଲୋକ
ଖରାଦନେ ପିନ୍ଧେ କୋଟ ।

ପଣସ ଦୋରୁଅ ଯେବେ
ହାମ୍ପିଥିବ ସଡ଼କାଏ
ପୁଷ ଜାଡ଼େ ତଳୁଠାରେ
ଗଡ଼ୁଥିବ ବେଲ ପ୍ରାୟେ ।

ବୁଝିଲ ତ ଖାଆପିଅ
ରୁଚମତେ ଦେଖି ଗୃଖି
ଖାଉଥିବ ପେଟ ମାପି
ହାତ ଚିକେ ଯାକ ଯାକ ।

ଚଲେଇଲେ ଆଖି ବୁଜା
ବୁଝିବ ମହିମା ତା'ର
ନ ଛାଡ଼ିବ ଯମ ରାଜା
କଲେ କୋଟି ନମସ୍କାର ।



## ଭୁସ ପଣ୍ଡିତ

ସନ୍ଧ୍ୟାବେଳେ ବସେଇ ପାଖେ
ନାତିରେ ଅଜା କୁହେ
କହିଲୁ ବେଟା ! ମୁଁ ତୋ ବୁଢ଼ୀ
ଆଣ୍ଠିର କସ ହୁଏ ।

ପଚାରିବ ଯେ କେଉଁଠି ଗାଆଁ
କେଉଁ ଜିଲ୍ଲାରେ ଘର
କହିବୁଁ ନାତି ନ କହି ଖାଲି
ହସଇ କର କର ।

କହଇ ଅଜା ସ୍କୁଲରେ ଆଜ
ପଢ଼ି ଛୁ ଘୋଡ଼ାଡ଼ିମ
ନଟ୍କୁଟରେ ଟ୍ରେନଂ ପାସ—
ମାଡ଼ଗୋଳକୁ ଘ୍ରାମ ।

ପୁଛଣି ଅଜା ପଛରେ ରହି
କହିଲୁ ଭାବ ଭଲ
ବଳଲ କେତେ ଶହେରୁ ଯେବେ
ପଇଁଚ୍ଛଳଣି ଗଲ ।

ସତର ସତଁା କହିଲୁ କେତେ—
ଉତ୍ତରେ ନାତି ଧୀରେ
ଛମାସେ ହେଲ ମୋଟେ ମୁଁ ପଶ
ବସୁଛି ଗୃହାଳୀରେ ।

କହଇ ଅଜା
ମାଷ୍ଟ୍ର ପାଖେ
ପଢ଼ କୁ ଲେମ୍ବୁ ଲୁଣ
ଶିଖରୁ ଗୁଡ଼େ
ଫାଜଲ୍ କଥା —
ନାହିଁ ତ କଚ୍ଛୁ ଗୁଣ !

ପୁଚ୍ଛଣି ଅଜା
ପଗୁରେ ଭାବ
କହିଲୁ ଏ ଥରଟା
କେଉଁ ମାସରେ
ପାଚଇ ଧାନ
ହୁଅଇ ବିଲ କଟା ।

ବରଷକରେ
କେଇଟି ଋତୁ
କେତୋଟି ପୁଣି ମାସ
ନ ପଢ଼ି ପାଠ
କମିତ ଭଲ
କରିବୁ ଆରେ ପାସ୍ ।

କହଇ ନାତି
ବୁଝ୍ନା ଅଜା
ମୁଁ ପରା ପିଲାଲୋକ
"ପଢ଼ୁଚୁ ଆଉ
ଛେନ୍ନା ଗୁଡ଼ —
ଯାଆରେ ବୁଡ୍ବକ୍ ।"

ଘାବରି କସ
କେଜାଣି ନାତି
ଦଉଡ଼େ ଗଲା ଘରେ
ବହି ଖଣ୍ଡିଏ
ହାତରେ ଧରି
ପଶିଲା ବୁଢ଼ା ଘରେ ।

"ହ୍ୱାଲୋ ଅଜା !
ଭୁସ୍ ପଣ୍ଡିତେ !
ହ୍ୱାଟ୍ ଇଜ୍ ଇଓର ନେମ୍"
ଠୋଓଠୋ ହସି
କହଇ ବୁଢ଼ା
"ବାବାରେ ଏ କ ପ୍ରେମ୍ ।"

"କୁହନା ବେଗେ ଚୁପ୍ ଛି ମାର
ବସିଲ କଆଁ ସାର୍
ନିଜ ମଥାକୁ ସମାଳ ଏବେ
ବୁଝି ଖବରଦାର୍ ।

ମୋ ପାଠ ସିନା ଘୋଡ଼ାକା ଡମ୍—
ତୁମର ବଦ୍ୟା କଣ
ଜୀବନ ସାରା ଏତେ ପଢ଼ିକ
ସବୁ ଯେ ଅକାରଣ !"



ଗଛ ପତର
ବାପ' ମା ଆମ
ଗଛ ପତର ପ୍ରାଣ

ତାଆର ପର
ଜାଇବା ଆମେ
ଗୁନ୍ତକ କର ଠାଣ ।

## ମଞ୍ଜି-ମଞ୍ଜା

ବକଟେ ମଞ୍ଜିରୁ ଗଛ
କେତେ ତାର ବଳରେ
ଗଜା ହେଲେ ମଞ୍ଜି ନାଆଁ
ଲୁଚେ ମାଟି ତଳରେ ।

ମଞ୍ଜିର ଜାତକେ ଥାଏ
ଗଛ ଲତା ଆଇଷ
ଖୋଜେ ନାହିଁ ମାଟିର ସେ
କଣ୍ଟୁ ବାଗ ବାଇସ ।

ବୁଣିଦେଲେ ବୋଲ ମାନି
ଉଠଇ ସେ ମନକୁ
ସେହି ସିନା ରଖେ ଆମ
ଅମାରରେ ଧନକୁ ।

ସେହି ମୂଳ, ସେହି ଚୂଳ
ସେହି ଆମ ବିହନ
ତାହା ଲଗି ଖାଉଁ ଆମେ
ଭତ ଡାଲ ତିଅଣ ।

ଦେହେ ପିନ୍ଧୁ ଲୁଗାପଟା
ମୁଣ୍ଡେ ତେଲ ଲଗାଉ
ତାହାଯୋଗୁଁ ପଢ଼ୁ ପାଠ
ଯେତେ ବନ୍ଧୁ ମଗାଉ ।

ସେହୁ ଦଏ ଫୁଲ ଫଳ
ଚାନ ଗୁ ଡ଼ ମହୁ ରେ
ଅଉଷଧ ମଉଷଧି
ରୋଗେ ଯେତେ ଖାଉଁରେ ।

ଏହୁ ମଞ୍ଜି ପ୍ରାଣ ଆମ
ଏହୁ ମଞ୍ଜି ଧନଟି
ତା ପର ପାକଳ ହେବ
ଦନେ ଆମ ମନଟି ।

ଗଜାରୁ ଉଠୁଛେ ଯେତେ
ଆମେ ସବୁ ପିଲାଏ
ବଡ଼ ହୋଇ ବଡ଼ କାମେ
ନ କରବା ଢ଼ିଲା ହେ ।

କ୍ଷେତ ବଢ଼ିଗଲେ ଶେଷେ
ମଞ୍ଜି ସିନା ସାହାଟି
ଆମେ ଲୁଚିଗଲେ ଭାଇ
ଥିବ ଆମ ନାଆଁଟି ।



## ଗଛ-ବୁରୁଛ

ବାପ ମାଆ ସିନା ଗଢ଼ିଲେ
ମୂଳ ଜୀବନ-ନଈଁ
ତାଙ୍କ ତଳକୁ ଏ ଗଛ ଓ ଲତା
ଅତ ମୋ ପ୍ରିୟ ।

ଆହା କ ଶାଗୁଆ ଚକଣ
ଏହୁ ଦୁହିଁଙ୍କ ଦହ
ଆହୁର ସୁନ୍ଦର ସକାଳେ
ପଡ଼ କାକର-ଘିଅ ।

ସବୁଠୁଁ ଉଜଲ ବଣନ୍ତ
ହେଲେ ଫଗୁଣ ମାସ
ପହିଲ ବସନ୍ତ ଆସଇ
ଯେବେ ଅକାଢ଼ ବାସ ।

ଲଗେଇବ ଜାତି ଜାତିକା
ଗଛ ଧାଡ଼କ ଧାଡ଼
ନଇତ ଯିମିତ ହସିବ
ଆମ ବଗିଚ୍ଛ ବାଡ଼ ।

ରଙ୍ଗା ଝେକ ଯେବେ ମଡ଼େଇ
ଦେବ ମାଳତୀ ଲତା
ଖେଦୁଅ ପଶିଲେ ଆଗ ସେ
ତେଙ୍ଗେ କହିବ କଥା ।

ସଞ୍ଜ ସକାଳେ ମୁଁ ତା ମୂଳେ
ନିତ ଢାଳଲେ ପାଣି
ଋତୁ ଘେନ ଫୁଲ ଦେବ ସେ
ସିନା ମୋ ମନ ଜାଣି ।

ଗଛ ଲଟା ଆମ ସମ୍ପତ୍ତି
ଆମ ଅସଲ ଧନ
ଏହି ଚେରମୂଳ ପାଚନ
ରକ୍ଷା କରେ ଜୀବନ ।

ଏହି ଗଛ ଲଟା ସକାଶୁଁ
ସିନା ବରଷେ ଜଳ
ପାଣି ବିନା ଗଛେ ଉଧାଏ
କାହିଁ ଫୁଲ ବା ଫଳ ।

ନିରମଳ ବାୟୁ ଦିଏ ସେ
ଆମ ନିଶ୍ୱାସ ପାଇଁ
ଗଛ ଯେବେ ନାହିଁ, ଜଗତ
ଜାଣ ନାହିଁରେ ଭାଇ !

ଡାଆରମାନ ପଡ଼ି ବଇଦେ
ପାଠ ପୋଥିରୁ ସିନା
ଯେତେ ଅଉଷଧ ଲୋଡ଼ନ୍ତି ସେ
ଗଛ ଲତାର ବିନା ।

ଆମର ପରିକା ରହିଛନ୍ତି
ତାଙ୍କ ଗୋଡ଼ ଓ ହାତ
ସେହି ଦୁହେଁ ସିନା ପିଆନ୍ତି
ପାଣି, ଖୁଆନ୍ତି ଭାତ ।

କେଡ଼େ ଉପକାରୀ ବନ୍ଧୁ ସେ
ସହି ବରଷା ଖରା
ରଖାନ୍ତି ଆମକୁ ଘିଅ ଓ
ମହୁ ଗରାକୁ ଗରା ।

ହାଣିଦେଲେ ଗଛଟେ ମୂଳ ତା
ମନେ ଦୁଃଖ ବି ନାହିଁ
ଦେବ ଏ ଜୀବନ ତାଆର
ପର ସବୁର ପାଇଁ ।

ଆଜ ସିନା ଦୁବ ପର ମୁଁ
ଦିନେ ହେବ ତ ଦାରୁ
ତା ପର ହୋଇବ ସହଣୀ
ଗୁଣ ଶିଖି ତା ଠାରୁ ।

ଆଜ ସିନା ମତେ ଦେଖୁଛ
ପିଲ୍ଲ ଦେଖୁଛ ସାନ
ଗଛ ଲତା ଗୁଣ ବଖିଲେ
କାଲ ବଢ଼ିବ ମାନ ।

ତାଙ୍କର ପରସ୍ପେ ଟାଣୁଆ
ମୂର୍ତ୍ତି କରିଲେ ଗୁଡ
ଉଠିବ ଆମର ସ୍ୱଭାବ
ପୁଣି ହସିବ ଜାତ ।



## ଲତା-ପଥର

ଯୋଡ଼ ଯୋଡ଼ ହେବେ
ବ'ଢ ପଥରିଆ
ଧଇଲ୍ଲ ଲତା
ମାଟି ତଳେ ତେଣେ
ମଞ୍ଜି-ମାଆଟିର
ସଇଲ୍ଲ କଥା ।

କଅଁଳ ପଥର
ପିଲ୍ଲ ଓଠ ପର
ବଣିଲ୍ଲ ନାଲ
ହପଡାକ ପରେ
ସୃତା-ସରୁ ଲତା
ଶିଖିଲ୍ଲ ଚାଲ ।

ଡକ୍କେଇଲା ଲତା
ଏଥରକ ପୁଣି
ଆମ୍ଭର ବାଗେ
ମୋଡ଼ ମୋଡ଼ ହୋଇ
ଯୋଡ଼ ଯୋଡ଼ ପଦେ
ବଢାଥି ସାଙ୍ଗେ ।

ଲୁନ ଲୁନ ଅଗ
କଅଁଳ ପତର
ପବନେ ଥରେ
ଭୁନ ଭୁନ ଗୀତ
ମୂଳେ ତାର ଶୁଭେ
ବଗିଚ୍ଚ-ଘରେ ।

ମାସେ ପୂରୁ ପୂରୁ
ପିନ୍ଧେଇ ଦେଲା କେ
ନେଳଆ ପାଟ
ରଞ୍ଜା-ଲୁଡ଼ଆଡ଼ି
ଭିତରକୁ ଆଉ
ନ ଥିଲା ବାଟ ।

ରାନ୍ଧ ଖାଇବାକୁ
ଦେଖୁଁ ଦେଖୁଁ କଭୁ
ବହିଲା ଲାଳ
କେଡ଼େ ଛନଛନ
ଲାଗିଛି ତହିଁରେ
କାକର-ଝାଳ ।

ଖରଡ଼ଲ୍ ବୋଉ
ଗରମ୍ ଗରମ
ଖାଇଲ ଘଡେ
କହେ ବୁଢ଼ୀମାଆ
ବଚଣା ଖଣ୍ଡିକ
ଢଲେଇ ଢାଡେ ।

"ଶାଗର ସୁଆଦ
ଘୃଷି ଆଉ ପୁଅ
ନ ଖୋଜେ ଗୁଣ"
ଜାଣି ନ ଥିଲ ମୁଁ
ପଡରେ ରହିଛି
ଇମିତ ଗୁଣ ।

କହୁଥିଲେ ଅଜା
ପଡରେ ଖାଲିତ
ସୁଆଦ ନାହିଁ
ଢହେ କେତେ ରୋଗ
ଛୁଏଁ ନାହିଁ ଆମ
ଛାଆର ପାଇଁ ।

ଖାଉଥିଲେ ନିତ
ପଡର ଚଟଣି
ପଡର-ବରା
ଦହକୁ ଆମର
ବାଧିବ ନାହିଁରେ
ବରଷା ଖରା ।

ଗଛ ଯେନ ପୁଣି
ରହିଛି ସୁଆଦ
ଭଳକ ଭଳ
କଏ ଖଟା କଏ
ପିଠା ପୁଣି କଷା
ନ ହୁଏ କଳ ।

ନାନା ମତେ ବାସ
ଲୁଚି ରହିଅଛି
ତାହାର ଦହେ
ପୂଜା ପାଏ ସଦା
ଲଟା ପଥରକୁ
ଚଢ଼ଇ ଘିଏ ।

ଶ୍ଳେଷ୍ଠ ବଡ଼ ରୋଗ
ଅଛ ଆଚମିତେ
ପଳାଏ ହଟି
ପିଇଦେଲେ ଆଣି
ବାଟି ଘଷି ତାକୁ
ତଆର ବଟି ।

କଅଁଳ ପଥର
କଅଁଳ ବାଳକ
ସମାନ ଦୁହେଁ
ଦୁନଆଁର ବଷ
ନ ଥାଏ ଛୁଇଁ ଏ
ଦୁହିଁଙ୍କ ମୁହେଁ ।

ଲଗେଇବ ଆମ
ବାଡ଼ ବଗସ୍ତୁରେ
ଗଛ-ପଚର
ପବନ ବହିଲେ
ହସିବ ଅଗଣା
ବାସିବ ଘର ।

ପତ୍ରା ଶେଷେ ନନ୍ତ
ଘାସ ବାଛୁ ବାଡ଼
କରିଲେ ସଫା
ଖୁସିହେବ ବୋଉ
ଖୁସି ହେବେ ବାପା
ଭାଇ ଓ ଅପା ।



## ଫୁଲ-କଢ଼

ସକାଳ-କାକରେ ଗାଧୋଇ ପାଧୋଇ
ଝଟକଇ ଫୁଲ-ଝିଅ
ବାଟ ଭାଙ୍ଗିଦେଇ ଶୀତୁଆ ପବନ
ଆଉଁସି ପକାଏ ହିଅ ।

ଚମକେ ବଗିଚ୍ଚ ସବୁ କେଉଁଠାରୁ କେ
ବଜେଇଲା ଭୁଉଁ ଭୁଉଁ
କହଇ ଭଅଁର ପାହାନ୍ତାରୁ ଚଳେ
ସପନ ଦେଖିଲି ମୁହିଁ ।

ସଜ ଫୁଲଟିର ରଜ ଆଜ ଅବା
ଓଠରେ ଖେଳୁଛି ନାଲି
ଏତେ ହସ ଖୁସି କେତେ ଛଟକରେ
କାଲିପରି ଯିବ ଭୁଲି ।

ଟିକଏ ତ ଦୁଃଖ ସେଥିଲାଗି ଆଜ
ହସକୁଳୀ ମୁହେଁ ନାହିଁ
ମଣିଷ ହୋଇ ମୁଁ ଭୁଲ୍ଛାଟାରେ ମୁହଁ
ଶୁଖେଇବ କାହିଁ ପାଇଁ ?

ତାଆର ଛୁଆକୁ ହସିବ ଖେଳିବ
ତା' ପରି ପଡ଼ିବ ଝରି
କଣ୍ଟାରୁ ଫୁଲ ପାନଟିରୁ ବଡ଼
ହେବ ମୁହିଁ କାଲି ପରି ।

ସାରା ଦୁନିଆକୁ ଦିଏ ସେ ମହକ
ସଭିଙ୍କୁ ସମାନ ଭାବେ
ପାତର ଅନ୍ତର କରିବ ମୁଁ କପାଁ
ଭାଇ ଭଉଣୀଙ୍କ ସାଙ୍ଗେ ।

ଆଲୁଏ ସେ ହସେ ଅନ୍ଧାରେ ବି ହସେ
ସମାନ ତା ଦୁଃଖ ସୁଖ
ଅଭାବ ବେଳେ ମୁଁ କୁଆଡାରେ କପାଁ
ବିରସ କରିବ ମୁଖ ।

କେଡ଼େ ନିରମଳ କଅଁଳ ମନ ତା
ହିଂସା ବାଦ ନାହିଁ ଜଣା
ହୃଦୟ ଭିତରୁ ମହୁ ପରି ଝରେ
ସେନେହର କନ୍ଦପଣା ।

ଜାତି ଜାତି ଫୁଲ ହେଲେ ମିଶାମିଶି
ଯତନ ବଢ଼ଇ ହାର
ଆମେ ମିଶିଗଲେ ସରଗ ହେବରେ
ଆମ ଘର ପରିବାର ।

ଫୁଲଟି ପରିକା ସବୁଠେଇଁ ଯାଇ
ହେବା-ଆମେ ଅତି ପ୍ରିୟ
ଛୁଆର ସମାନ ଖୋଲା ରଖିଥିଲେ
ଆମର ମନ ଓ ହୃଦ ।

ଶୁଭ କାମେ ତାକୁ ଆସଇ ଡାକରା
ମତେ ବି ଡାକିବ ଦେଶ
ତାହାରି ପରି ମୁଁ ବାହାରି ପଡ଼ିବ
ଧରି କାଳି ବୀର ବେଶ ।

ତାହାରି ପରି ମୁଁ ପିଲା ବୋଲି ଆଜ
ଝୁରେ ମୁଁ ତାହାରି ପାଇଁ
ଉଭୟେ ସମାନ ଆମ ଦୁହିଁଙ୍କର
ଟିକିଏ ପ୍ରଭେଦ ନାହିଁ ।

ଛୁଆରି ପରିକା ହସିଲେ ବାସିଲେ
ବାପା ବୋଉ ହେବେ ଖୁସି
କାହାରି ବୋଲରେ କାହାରି କଥାରେ
ଯିବ ନାହିଁ କେବେ ରୁଷି ।

ଫୁଲଟିଏ ପରି ନିରମଳ ମନେ
କଲେ ହସ ହସ ମୁହଁ
ଘରେ ନୁହେଁ ଖାଲି, ସାରା ଦୁନିଆରେ
ହେବ ଦିନେ ଗେହ୍ଲା ପୁଅ ।



# ଫଳ-କନ୍ଦଳ

ଫଳ ରେ ଫଳ

ଫଳ ନୁହେଁ-ତାର ନାଆଁଟି ବଳ ।
ପାଚି ସୁଆଦକୁ ଆହା କ ବାଗ
କଏ ଖଟା କଏ ମିଠା ବା ରାଗ ।
କଷା ପିତା ପୁଣି ଭଲକ ଭଲ
ଉପକାର ତାର ନୁହେଁଟି କଳ ।
ସବୁ ସାରତକ ଫଳର ଥଳେ
ସୁନା ପର ଦେହ ତା' ଲାଗି ଝଲେ ।

ଫଳଖିଆ ମୁହଁ କ ଜକ ଜକ
ସ୍ନୋଓ ପାଉଡ଼ର ପଛକୁ ରଖ ।
ବୁଢ଼ାକୁ ଦଏ ସେ ଯୁବାର ତେଜ
ସାମାନ୍ୟ ବୋଲକ ତାକୁ ନ ହେଜ ।
ଦେହ ଗଢ଼ିବାର ଅସଲ ଧନ
ବୈରକୁ ଦଏ ସେ ସାଧୁର ମନ ।
ସାଧୁ ତାହା ଯୋଗୁଁ ପାଲଟେ ଋଷି
ରୂପଟି ଦେଖିଲେ କେ ନୁହେଁ ଖୁସି ।

ବଡ଼ ହେଉ ଅବା ହେଉରେ ସାନ
ସବୁର ପାଇଁ ସେ ବିଧିର ଦାନ ।
ଲଡ଼ୁ ରସାବଳୀ ଗୁବଡ଼ ବୁନ୍ଦ
ଫଳ ପର ଜାଣ କେହି ତ ନୁହଁ ।
ବଡ଼ ହେବା ପାଇଁ ଥିଲେଟି ମନ
ଫଳ ଖାଅ କାଢ଼ି ଅଣ୍ଟାରୁ ଧନ ।
କବା ହେବ ବୃଥା ଗଣ୍ଡି ବଢ଼ାଇ
ଅଡ଼େଇ ଦନଆ ସାଲସା ଖାଇ ।

ନଡ଼ା ଖାଉଥିଲେ ଚଟକା ଫଳ
ବାହୁରେ ଭରିବ ଘୋଡ଼ାର ବଳ ।
ସବୁ ରୋଗୀଙ୍କର ବଇଦ ସିଏ
କବିରାଜ ତାକୁ ଶିଶିରେ ଢାଳେ ।
ବିଦେଶୀ ଟନିକ୍ ପକାଏ ଜାଲେ
ପଡ଼ିବ ନାହିଁଟି କେବେ ତା' ପାଲେ ।
ପାଠ ପଢ଼ିବାକୁ ଥିଲେ ରେ ଇଚ୍ଛା
ଧରିଥିବ ସେହି ଫଳଟି ପିଚ୍ଛା ।



## ଚେର ମୂଳ

ଗଛଟି କହଇ ମୋ ଭଳି ସୁନ୍ଦର ଦୁନିଆରେ କେହି ନାହିଁ
ଯେତେ ଫୁଲ ଫଳ ଦେଖୁଛ ସେ ସିନା କେବଳ ମୋହରି ପାଇଁ ।

ଡାଳ ଥାଇ କହେ ଅଛି ସିଆଣିଆଁ ମୋ ଡେଙ୍ଗରୁ ସିନା କଡ଼
ଉଚିତ ବିଷୟରେ ଘାବୁଛି ମୋ ମନେ ମୁହିଁ ସବୁଠାରୁ ବଡ଼ ।

ଫୁଲ କହେ ହସି ମୁ ରୁକ ମୁ ରୁକ ମୋଓ ଲାଗି ସିନା ଫଳ
ମୋଓ ପରି କିଏ ଉଜ୍ଜଳ ଡାଉଲ ହସ ହସ ନିରମଳ ।

ମୋହରି ସୁବାସ ମହୁ ଟୋପାକରେ ସାରା ଏ ଦୁନିଆ ବାଇ
ମତେ ଛାଡ଼ିଦେଲେ ଗଛର ମହତ କିଛି ନାହିଁ କିଛି ନାହିଁ ।

ଛାଆରେ ପତର "ରଖ ହେ ଖାତର ମୂଲ୍ୟ ହେଲା ବୋଲି ଗଜା
ଫୁଲ ବୋଲଉଛି ପାଟରାଣୀ ଆଜ ଫଳ ବୋଲଉଛି ରଜା ।

ଛପି ଛପି ଥାଇ ମଞ୍ଜି କହେ ବାହାଃ— ମତେ ସେ ଯାଉଛ ଭୁଲି
କାହା ଲାଗି ଆଜ ଏତେ ଗର୍ବ ତୁମ— କା' ଲାଗି ଉଠୁଛ ଫୁଲି ।

ଅଜଗର ପରି ମାଟି ତଳୁ ଏବେ ଚେର କହେ ମଥା ଟେକି
କା ଉପରେ ତୁମେ ନାଚୁଚ କୁଦୁଚ ଘାବିଚ କି ଟିକେ ଦେଖି ।

ଏକା ରକତରୁ ଗଢ଼ା ତୁମେ ସବୁ କେହି ନୁହଁ କାହା ପର !
ଖାଇବାକୁ ସିନା ଦେଉଛି ବୋଲି ମୁଁ ହସୁଅଛ କରକର !

କେଡ଼େ ଗୁପତରେ ଗଛଟିକୁ ଚେର ପେଟପୂର ରସ ଦିଏ
ମାଆର ସେନେହ ମମତା ଯତନ ଭାବି କି ପାରିବ କିଏ ।

ଚେର-ମାଆ ଶେଷେ କଅଁଳେଇ କହେ ଭାଙ୍ଗି ଦେଇ ସବୁ କଳ
ଦିନରାତି ଖେଳ ଝୁଲି ଝୁଲି ତୁମେ ଭାଇ ଭଉଣୀଙ୍କ ଦଳ ।

ଗୁନିଆ ହୁଅଇ ଦେଖୁଁ ଦେଖୁଁ ବେଗ ଏଇ ଚେରମୂଳ ଚୂନା
ରୂପ ସିନା ନୁହେଁ ଚହଟ ଚିକଣ ଗୁଣଟିକ ସହିସୁନା ।

ଚେର ପରି ପଛେ ହୁଏଁ ମୁଁ ମଳିଛି ରହି ମାଟିତଳେ ବଣେ
କରିଯିବ ଦେଶେ ବଡ଼ ବଡ଼ କାମ ବସି ଏଇ ଘର କଣେ ।

ସରୁ ସରୁ ସିନା ଦିଶେ ବେଣାଚେର ଖସୁବଟି କେଡ଼େ ମିଠା
ତାଜା କରିଦିଏ ବାସ୍ନା ଦେହକୁ ଭୂଇଁ କଖାରୁର ପିଠା ।

କନ୍ଦ ମିଠା ଏହି କନ୍ଦମୂଳ ପୁଣି ଜିଆନାଡ଼ି ଛତୁଆର
ମାସଟିଏ ମୋଟେ ଖାଇଲେ ଏହାକୁ ବୁଢ଼ା ଧରେ ତରବାରି ।

ଅଦେଖାରେ ରହି ଚେର ପରି ମୁହିଁ ହରିବି ରେ ଦୁଃଖଶୋକ
ଆପଣା ନାଆଁରେ ନାଗରା ପିଟିଲେ ହସିବେ ଜଗତ ଲୋକ ।

ଚେର ପରି ସଦା ଅନ୍ଧାରେ ରହି ମୁଁ ଜଗତେ ଆଲୁଅ ଦେବି
ସୁନା ପୁଅଟିଏ ହେବାରେ ଯେବେ ମୁଁ ସୁନା ପୁଅଟିଏ ହେବି ।



## ଫସଲ-ମୁସୁଲି

ମୋର ନାଆଁଟି ଗୁଜଳ ଷୀର
ସବୁ ଫସଲ ଭିତରେ ଶିର ।
କେବେ ମୋ ବିନା ନ ବଞ୍ଚେ ପ୍ରାଣ
ମୁହିଁ ଜୀବନ ସବୁର ଜାଣ ।
ବାବୁ ମୋ ନାଆଁ ଗହମ ରୁଟି
ନିତ ଖାଇଲେ ଉଠିବ ଫୁଟି ।

ମତେ ଡାକେ ଖରମବ୍ବ ଘିଅ
ମୁହିଁ ଉତ୍ତର ଦେଉଁ ଚିକ୍କା ।

ଭାଇ ମୋର ନାଆଁ ଜଅ ଛତ୍ତୁ
ଜାଣ ସବୁରିବ ମନ ମତ୍ତୁ ।

ଶେଷେ ମୋ ବନ୍ଧୁ ନାହିଁଟି ଗଣ୍ଡ
ମୁହିଁ ଗିଲ ଦୁଧ-ବୋଗୀ ପଥି ।

ମୋର ନାଆଁ କଞ୍ଚା ମୂଗ ଡାଲି
ମୂତେଁ ପିଠଳ ପଣ୍ଡେ ନାଲି ।

ମତେ ମେଞ୍ଚି ମେଞ୍ଚି କର ରାନ୍ଧ
ଖାଇ ମାଲ ସାଙ୍ଗେ ଯୋଡ଼ କାନ୍ଧ ।

ଆରେ ମୋର ନାଆଁ ବର ବଗ୍ର
ମତେ ଖାଇବାକୁ ଧବ୍ରପବ୍ର ।

ଚାଣି- ଅଖାରୁ ମୋ ସାଙ୍ଗ ଭାଇ
ତେଏଁ ଚକୁଳକ ଥାଏ ଗୃହିଁ ।

ଚନା ବାଦାମ ଭଜା ମୋ ନାଆଁ
ଦେଖି ଝାକୁ ଝାକୁ କରେ ଆଆଁ ।

ଥାଏ ବରଷା ପାଗକୁ ଗୃହିଁ
ମତେ ଦେଖି ମାରେ ବୁଢା ହାଇ ।

ଗ୍ରଗ ଚଣାଚର ଭାବ୍ର ମିଠା
କହେ ଗ୍ରଣ୍ଡରେ କବାଟ ଫିଠା ।

ମତେ ଭୋଳା ମହାଦେବ ଖାଏ
କହେ ମଣିଷ କ ଘୁର ଆହେ ।

ଛଣା ବ୍ରଟ ପକୁଡ଼ ମୋ ନାଆଁ
ଲକ ଗଡ଼ଇ ଆପଣା ଘୁଆଁ ।

ସିନା ପାଟିରେ କଣ୍ଟୁ ନ କୁହେ
ଯାଇ ପେଟେ କଥାଭଷା ହୁଏଁ ।

ଜାଣ ! ମୋ ନାଆଁ ମାଣ୍ଡିଆ ଜାଉ
ଭେଣ୍ଡା ପାଲଟିବ ଖାଉଁ ଖାଉଁ ।

ରଖେ କଲଜାକୁ ଘର ଥଣ୍ଡା
ମତେ ସର ନୁହେଁ ଛେନା ମଣ୍ଡା ।

ଠିକ ଖସାଲଉ ମତେ ଅନା
ଖାଇ ବେଦ ବ ବଖାଣେ ଖନା ।

ମୁହିଁ ପେଟୁଆ ଗଣଣ ପ୍ରିୟ
ମତେ ପଇସାଟିକର ନିଅ ।



## ଲୁଣ-ତରକାରୀ

ମୋଓ ନାଆଁଟି ଫୁଲକୋବ ରେ
ଗୋଲଆଳୁ ମୋ ଭାଇ
ଗରମ ଭାତ ଖସଇ ଖାଲି
ଝୋଳକୁ ଋହିଁ ଋହିଁ ।

ମୋଓ ନାଆଁଟି ନାଉ ଦଅଣା
କ୍ଷୀରଠୁଁ ବେଶି ମିଠା
ସତ କ ମିଛ ବୁଝିବ ପୁଣି
ଖାଇଲେ କର ପିଠା ।

ବୋଇତାଳୁ ମୁଁ ବାହାର ପଡ଼େ
ଘାଣ୍ଟ ଲୁଣକୁ ଆଗ
ଜାଣିବ ମୋର ସୁଆଦ ଯଦ
ପକେଇଥିବ ସାଗ ।

ଖଣ୍ଟାଟି ଯେବେ ଲୁଚିବ ଯାଇ
ବାଡ଼ରୁ ଆଣ ଓଜ
ବେସର ଟିକେ ତନ୍ତିଁରେ ଦେଲେ
ଡାକିବ "ଆଲୋ ବୋଉ" ।

ବୁଝିବ ଯଦ ମୋ ବଡ଼ ପଣ
ଖାଅ ପୋଟଳ ରସା
ଗରମ ଟିକେ ମସଲା ଦେଇ
ଘିଅରେ କର କଷା ।

ଆମାଶା ରୋଗୀ ସଙ୍ଗାତ ମୁହିଁ
କଦଳୀ ମୋର ନାଆଁ
ଲଟକ ଥିବ ପାଟିରେ ତୁମ
ଥରଏ ଯଦ ଖାଆ ।

ମୋ ନାଆଁଟି ଓଲୁଅ ପୋଡ଼ା
ସବୁ ଗୁଣଙ୍କ ଅପା
ପାଟିକୁ ସିନା ପୋଡ଼ଇ ଟିକେ-
ପେଟକୁ କରେ ସଫା ।

ଖୁମ୍ବଆଳୁ ମୋ ନାଆଁଟି-"ରଜା
ବୁଝିଲେ ଶେଷେ ମତେ
ପାଚିଲା ଧାନେ ମଣ୍ଡରେ ପୁଣି
ପଦୁଅଁ ଫୁଟେ ଖେତେ" ।

ସାକର ଯଦ ଖାଇବ ତେବେ
ପାଣିକଖାରୁ କାଟ
ହପଚାକରେ ପଚଳା ଦନ୍ତ
ହୋଇବ ମୋଟମାଟ ।

ମୋର ନାଆଁଟି ଶିମ ଘଇତା
ଖାଇଥା ମାଘେ ଥରେ
ସୁଆଦ ତା'ର ପାରବ୍ ନାହିଁ
ଭୁଲି ଏ ଜୀବନରେ ।

ପପସ୍ୱା କହେ କରମଙ୍ଗାକୁ
ଶୁଣଣ୍ଟୁ ଆରେ ବେଟା
ପାହ୍ୱଲେ ଗଛ ସୁମରେ ମଛେ
ନଛି ପିଳେଙ୍କ ପେଟା ।

"ଦେଖୋଉ କା'କୁ ଭଡ଼ଙ୍ଗ ଆରେ!"
ଟମାଟୋ କହେ ହସି
ରୋଗୀଠୁଁ ମୋତେ ବଇଦ ଯାଏଁ
କେ ନାହିଁ ପ୍ରଶଂସି ।

ଟମାଟୋ ପରେ ଶୁଣିଲେ ପାଚ
ପପସ୍ୱା ହୁଏ ଫାଅଁ
କଲରା କହେ- "ଠିକ୍ ହଜୁର!
ଆଗିଆଁ ସବୁ ହଅଁ ।"

ଭେଣ୍ଡିକୁ ଗୁହିଁ କହଇ ଜହ୍ନି
ଆରେ ନାଜୁଆ ଭାଇ
ମୋଓ ପଟକା ସୁଆଦ କାର
ଅଛି କି କହ କାହିଁ ?

କାକୁଡ଼ି କହେ "ଛୁଆଳେ ତତେ
ଟିକିଏ ନାହିଁ ଲାଜ
ଥରେ ରାନ୍ଧିଲେ ଆଉଥରକୁ
କହନ୍ତି ପରା ଭାଜ ।"

ନ ମଣ ମତେ ହୀନ ହେ ମୁହିଁ
ସବୁକୁ ଆଗଭର
ସବୁରି ସାଥେ ମିଶେ ମୁଁ ସାନ୍ତ
ନ ଭାବ କାକୁ ପର ।

ମୁଁ ବାଇଗଣ ସବୁରି ଗୁଣ
ଗରବ କରା ଧର୍ମ
ଟିକଏ ପୋଡ଼ା ପଖାଳେ ଦେଲେ
ଖାଇବେ 'କୁନ' 'ମନ' ।

ମଣିଷ ପରି ହୋଇବ ମନ୍ଦ
ପଶୁବା ଝୋଳ ଖାଅ
ଶୁଖିବ ଡିମ୍ବ ମାଉଁସ ମାଛ
ପଛକୁ ଯେବେ ପାଅ ।



## ଛୁଇଁଙ୍କ ସଭା

ମଟର ଛୁଇଁ କହେ ମୁଁ ବଟଲେ
କରିଲେ ବି: ଏ: ପାସ୍
କୋବି ବଉଁଶ ଡାକନ୍ତି ମତେ
"ମଇନେ—ଆସ ଆସ ।"

ପାଟିକ ଘର ସୁଆଦ ମୁହିଁ
ଦେହକୁ ଭରି ବଳ
ତେଲରେ ଏଣେ ଭାଜିଲେ ମତେ
ଲାଳ ଏ ପାଟି କଳ ।

କହଇ ଚଣା ମୋ ନାଆଁ ଜଣା
ସାରା ଏ ଦୁନଆକୁ
ଦେଖିଲେ ମତେ କ ପିଲା ବୁଢ଼ା
ଡୁଅନ୍ତି ଟାକୁଟାକୁ ।

ମୋଓ ପରକା ଅଛନ୍ତି ଯେତେ
ସବୁଠୁଁ ବଡ଼ ମୁହିଁ
ପାଟିକୁ ବାଗ ହଗାକୁ ଆଗ
କଦୁଚ ଆଖି ଛୁଇଁ ।

ବଇନ୍ ଛୁଇଁ ବଖାଣେ ମତେ
ଡାକଇ ପୁଷ ମାଘ
ମସଲା ଦଆ ଘାଣ୍ଟ ଭୃଣକୁ
ବାହାର ପଡ଼େ ଆଗ ।

ହାଡ଼ରେ ବଳ କହବ କଥା
ଖାଇଲେ ମତେ ଗ୍ରନ୍ଥ
ବୁଢ଼ା ବଅସେ ଡ଼େଇଁବ ଯୁଦ୍ଧେ
ଯୁବା ସାହସ ବାନ୍ଧ ।

ଯେମିତ ମତେ ଖାଅନା ତୁମେ
ଘର ମୁଁ ସୁଆଦଆ
ପିଆଜ ଦେଇ ଘଜଲେ ଘଚ
ଖୁସିରେ ହୁଏ ଖିଆ ।

ମୋ' ନାଆଁଟି ଝୁଡ଼ଙ୍ଗ ଛୁଇଁ
ବାଡ଼ରେ ମତେ ରଖ
ଖାଇଲେ ମାସେ ମୁହଁଟି ତୁମ
ଦଶିବ ଜକ ଜକ ।

ନାଆଁଟି ମୋର ସଜନା ଛୁଇଁ
ଛୁଇଁଙ୍କର ମୁଁ ରଜା
ପୋଷଣ ଦେଇ ଭାଜିଲେ ମତେ
ବୁଝିବ ମୋର ମଜା ।
ଯେତେ ମତେ ଖାଇବ ଭାଇ
ସେତେ ଦେବ ବଳ
ଭିଟାମିନ୍ କହ ମଟର କହ
ସଭିଏ ମୋର ତଳ ।

ବଢ଼ୁଛି ସିନା ଗଢ଼ିଲେ ଆଗ
ପଢ଼ିବ ପଛେ ପାଠ
ଧନ ବଢୁନେ କୁହତ ବାବୁ
କରି କି ହୁଏ ହାଟ ।
ଖରଚ ଯେବେ କରିବ ବଳ
ମଥାରୁ ସଦା ଦୁହିଁ
ଖାଇବା ବେଳେ ଥାଳରେ ଥାଉ
ଭଲ କି ଭଲ ଛୁଇଁ ।



## ଶାକ-ସବ୍ଜି

ଶାଗ ଅଲଣା- ମାଛ ଲୁଣ
ଏଥିରୁ ବୁଝିବ ରାନ୍ଧୁଣୀ ଗୁଣ ।

ଖାଉଥିବ ଯେବେ ଚଚଲ୍ ଶାଗ
ପାଖେ ରଖିଥିବ ଧାନୁଆ ରାଗ ।

ପଖାଳ ଭାତକୁ ଶାଗ ଖରଡା
ଦରଦର ସିଝା ଛୁଙ୍କଟି କଡ଼ା ।

ରସୁଣ ବଘର କଅଁଳ ଶାଗ
ବାସି ଓପାସକୁ ଆଦ୍ଧା କି ଭାଗ ।

ଖୋଶଲା ଶାଗକୁ କଖାରୁ ବଡ଼
ସୁଅ ଫଳ ନଏ ଗୁଣ୍ଡାକୁ ଚଢ଼ ।

ସଜନା ଶାଗରେ ନାଲ ନଡ଼ିଆ
ଢବୁଠୁ ଜାଣିଥା ଅଡ ବଢ଼ିଆ ।

ପିଚା ଶୁଖୁଆକୁ ଫୁଲୁର ପୋଇ
ନାଚେ ଶଂଖସାରୁ ତାଧେଇ ଧେଇ ।

କହେ ଲେଜଟିଆ ଆସୁଚ ଫେର
ଦାଆ ଆଣିବାକୁ ନ କର ଡେର ।

ବଲ ମଦରଙ୍ଗା କହେ ମୋ ବୁଦା
ପଖାଳ ନାଆଁକୁ ମାରଇ କୁଦା ।

କହେ ମୂଳାଶାଗ ହେଲଣି ସଇ
ଢ’ ବେଲ ପଖାଳ ଚଲଅ ଖଇ ।

କଳମ କହେ ମୁଁ ଲକ୍ଷ୍ମୀଙ୍କ ପ୍ରିୟ
ସବା ଆଗ ମତେ ହାଣ୍ଡିକ ନଅ ।

ମେଥି ବେ ଲେ କାକୁ କୁଣ୍ଡିଆ ମାରେ
ଛୁନୁଛୁନା କହେ ନଦ ମୁଁ ଘାରେ ।

ପାଳଙ୍ଗ କହେ ମୁଁ ଶାଗର ରଜା
ମହୁରଲ କଣ ଗୃଝିବ ମଜା ।

ଘୁ ରୁଣି କହେ ମୁଁ ସୁନ୍ଦରୀ ନୂଆ
ମତେ ଗ୍ଲେବେଇବ ପେଟର ଛୁଆ ।

ବଥୁଆକୁ ଡାକେ ଖଡୁଆ ମାଟି
ଖଡ଼ା କହେ ମତେ ଖାଇବ ଘାଣ୍ଟି ।

ପିଚାଗଦ୍ଦମାକୁ ଠୋକି ଆଦର
ଶାନ୍ତ କଟ ,/ ବୋଲ ଦଗଧ ଘର ।

ଗରମ ଶାଗକୁ ସଜ ପଖାଳ
ଆଉ କସ ଲଗି ମନରେ ଖଳ ।

ଶାଗ ପଖାଳଟି ଗରିବ ପ୍ରାଣ
ଗଢ଼େ ମନ ଦୃଢ଼ କରି ସେ ଟାଣ ।
ଶାଗ ସାଗ ଥିଲେ ଆଉ କ ଚିନ୍ତା
ତାକୁ ଧନ୍ଦାରେ ତାହା ଧନ୍ଦା



## ଚଟଣି ପଞ୍ଚାମୃତ

କଇଁଆ ପଥର କହଇ
ମତେ ଚଟଣି କର
ଜଭେ ଘୃଷି ଘୃଷି ଖାଇଲେ
ଭୁମ ଗୁଡ଼ବ ଜର ।

ଦେଖିବ ନାହିଁ ତ ଜୀବନେ
ଆଉ କଫ ବା କାଶ
ମତେଟି ପାଇବ ସବୁଠି
ସଦା ବରଷ ମାସ ।

ଶୁଣି ତା' କହଇ ପୋଦନା
ମତେ କର ସଙ୍ଗାତ
ଅଣ୍ଟିରୁ ଫିଟାଇ ଖୋଷଣି
ଯେବେ ଖାଇବ ଭାତ ।

କ ଲେଢ଼ା ସଇତା, ସାକର
ଭଜା ତଅଣ ଡାଲି
ବଡ଼ି 'ପର ଗୁଣ୍ଡା ଉଡ଼ବ
ମୋର ବାଟଣା ଖାଲି ।

କହେ ଭୃଙ୍ଗରାଜ ହଲେଇ
ମଥା-ନାଇଁରେ ନାଇଁ
ମୋ ବାସକୁ ଗୁଡ଼ ନଡ଼ିଆ
ଘର ଛୁଅନ୍ତି ବାଇ ।

ନଇତ ସକାଳେ ଅଜାଣ୍ଟି
ମତେ ଜୁହାର କରେ
ଧନ୍ୟ ସେ ଲୋକର କପାଳ
ମୁହିଁ ଥାଏ ଯା' ଘରେ ।

ତା' ଶୁଣି ଧନିଆ ପତର
କହେ ବାହାରେ ବାହା
ଚଟଣି କରିଲେ ବୁଝନ୍ତି
ଲୋକେ ମୋହର ନାଆଁ ।

କାହା ପାଚି ଅଛୁ ବାଇଆ
ଆରେ ମତେ ନ ଖାଇ
ମୋହର ତୁଳନା ମୋହର
ଠେଇଁ ସରିଛୁ ଭାଇ ।

ଥିଇର ଗଳାରେ କହଇ
ଦୂବ ଶୁଣ ହେ ଶୁଣ
ଠିକ ବୋଲି ବୁଝି ନାହାନ୍ତି
ଲୋକେ ମୋ ବଡ଼ ଗୁଣ ।

ନଡ ସଜବଟା ଚଟଣି
ଯେବେ ଖାଇବ ଗୁଟି
ନ ପାରିବ ଭୁଲି ଜୀବନ
ସାଗୁ ମୋର ନାଆଁଟି ।

ଚଟକଣି ମାରେ ଚଟଣି
ଜାଣ ବହୁତ ସ୍ନେହେ
ଉପକାର ପାଏ ଏ ଦେହ
କଞ୍ଚା ରସଟି ଯୋଗେ ।

ସିଝିଗଲେ ଶାଗ ପତର
ତାର ହୁଏଏ ଗୁଣ
ଖରଚ ଭିତରେ ତେନ୍ତୁଳ
ସାଥେ ଟିପାଏ ଲୂଣ ।



## କୋଶଲା ଭଜା

ମୋର ନାଆଁଟି କୋଶଲା ଶାଗ
ସଦା ଡାକେ ମତେ ପୁଷ ମାଘ ।
ନଦୁଁ ଉଠାଏ ଛୁଞ୍ଚିଲା ପାଣି
ଦାଆ ଯଉବନ ଦିଏ ଆଣି ।
ବାପ ଖତ ମୋ ଜୀବନ ନାଡ଼
ବୋଉ କୂଅ ତଳତର ବାଡ଼ ।
ମିଠ ଲଜ ଉଙ୍କ ପୋଇ ଲଠା
ପଖି ରସୁଣ ସୋରିଷ ବଠା ।
ସାରୁ ଏକ ମାଆ ପେଟ ଭାଇ
ପ୍ରାଣ କାନ୍ଦୁଥାଏ ବଡ଼ ପାଇଁ ।
ଆରେ କୋଶଲା ଶାଗକୁ ବଡ଼
ଗୁଣ୍ଡା ପରେ ନଏ ଗୁଣ୍ଡା ଚଡ଼ ।
ଆଖି ଝୁରଇ ତବତ ଭାତ
ମତେ ଉରମାଡ଼େ ସନ୍ନିପାତ ।

ଠଦ ଭେଟେଁ କଞ୍ଚାଲଙ୍କା ଗ୍ରାଗ
ଆଜ କଏ ସେ ପର୍ସ୍ବରେ ବାଗ !
ଗଜା ନାଲିଆ କୋଶଳା ଭଜା
ଶାଗ ଭ'ଟାମିନ୍‌ଙ୍କର ରଜା ।
ଠଦ ଟାଣୁଆ ହବାକୁ ଗ୍ରହଁ
କହେ ଶୀତଦିନେ ମତେ ଖାଅ ।



## ପସାରୁଣି ବରା

ଢହ ସିନା ଗନ୍ଧ ମୋର
ଗୁଣ କନ୍ଥ ବାସ
ପେଟ ରୋଗୀ କହେ ମତେ
ସାବାସ-ସାବାସ !

କବ୍ରା ଗୋଲମରଚରେ
ଖାଇଲେ ମୋ ବରା
ଇଷ୍ଟଗଣେ ଦେଲ ପଶ
ଯାଏ ଅଣ୍ଟାଧରା ।

ନ ରହେ ମନ୍ଥର ଆଜ
ନଅଙ୍କିଆ ବେଶ
ଆମାଶୟ କହେ ବାବା !
କାଳ ହେଲ ଶେଷ ।

ଢହ ସିନା ଗନ୍ଧ ମୋର
ମନ ଘର ଖୋଲ
ଚନ୍ଦ୍ରେ ମତେ-ଗିଳେ ଯେହ୍ନ
କର କଞ୍ଚା ଗୋଲ ।

ଷୀର ଦେଇ ମତେ ସେବା
ଶୀଘ୍ର କର ଖାଏ
ଚଉଦିଗେ ସେ ମୋ ନାମେ
ପରଶଂସା ଗାଏ ।

ନିରମଳ କରେ ମୁହିଁ
ରକତର ସୁଅ
ମୋ ପାଦ ତଳକୁ ସିନା
ଯେତେ ଲତା କୁହ ।

ରୂପେ ପଛେ ହୁଏଁ କଳା
ହୁଏଁ ଅସୁନ୍ଦର
ଗୁଣ ଥିଲେ ହେବ ମୋର
ସବୁଠି ଆଦର ।

ସ୍ୱଭାବ ମୋ କଲେ ମିଠା
ହେଲେ ହସହସ
ସଭିରେ ଡାକବେ ଲୋକେ
'ପାଖେ ବାବୁ ବସ ।'

ବାପାଙ୍କର ହେବ 'ମନା'
ବୋଉର ମୁଁ 'କୁନା'
ଆଉ ସମସ୍ତେ ଡାକବେ
'ବାପ'-'ଧନ'-'ସୁନା' ।



## ତାଳ-ତେନ୍ତୁଳି

ତାଳଗଛ କହେ          ଖୋଲି ହୃଦୟୁ ମୋ
ଡେଙ୍ଗା ହେଲ ବୋଲି ସିଧା
ବାଦୁଆ ବତାସ          ମାରିବାକୁ ମତେ
ନାଇଁତ ଉଣ୍ଡାଏ ବାଧା ।

ଟାଣୁଆ ଗୁଣ୍ଡିରେ          ଚଢୁଆସୁ ନାହିଁ
ଯିବ ବୋଲି କାଳେ ପଡ଼ି
ତାଳ କଥା ଶୁଣି          ଠିକ ଦୂବଗଛ
ହସି ହସି ଯାଏ ଗଡ଼ି ।

କୁଜିଲୁ ବଙ୍କେଇ          କହଇ ତେନ୍ତୁଳି
ସିଧା ହେବା ନୁହେଁ ଭଲ
ଝଡ଼ଠୁଁ ପାହାଲେ          ଖାଇବା ପାଇଁ ମୋ
ପିଠି ହୁଏ ଗଲ ଗଲ ।

ତେନ୍ତୁଳି ଅଙ୍କାରେ          କାଢ କାଢ ଏଣେ
ନରମୂଳୀ ମନ ଖଟା
କପଟେ କେବଳ          ଛନ୍ଦ ବାନ୍ଧ ହୋଇ
ମେଳାନ୍ତୁ ବୋଲି ତା' ଲଟା ।

ତାଳଗଛ ପରି          ନ ଉଠିବ କେବେ
ବେଙ୍କେ ପଚ୍ଛେ ବାଜୁ ଖଣ୍ଡା
ଦୂବଚଛ ପାଏ          ସବୁଠି ଆଦର
ନରମୂଳୀ ହୁଏ ଲଣ୍ଡା ।

ତେନ୍ତୁଳି ପରାଏ          କୁଟିଳ ହୋଇଲେ
ସବୁଠି ଖାଇବ ଧକ୍କା
ସିଧା କଥା କହି          ସିଧାରେ ଚାଲିଲେ
ମନରେ ନ ଥିବ ଦକା ।



## ସୁଆଦ-ଶବଦ

ଭୋଜ ସଭାରେ ସୁଆଦଙ୍କର
ଲାଗିଲା ଦନେ ବଳ
କହିଲା ଶାଗ ସବୁବା ଆଗ
ନୁହଁଇ କେ ମୋ ଭଳ ।

ଫୁର୍ତ୍ତି କରେ ହଜମ କରେ
ଗୋଲମରିଚ ଶାଗ
ସୂରୁଯମୁଖୀ ଲଙ୍କା ମୋ ନାଆଁ—
ଦୁଇଟି ଆମେ ସାଙ୍ଗ ।

କହଇ ମିଠା ସାରଟି ମୋର
ଦହକୁ ଦଏ ବଳ
ଯେତେ ସୁଆଦ ଖଜାର ଆଖୁ
ନବାତ ମହୁ ଚଳ ।

ବୁନ୍ଦିଆ, ଲଡ଼ୁ, ଆରସା, କ୍ଷୀରି,
କାକରା, ଖଜା, ପିଠା
କଏ କରନ୍ତା ଆଦର ସ୍ବାକୁ
ନ ଥିଲେ ମୁହିଁ ମିଠା ।

ଶାଗରେ ଖଟା ଉଭରେ ଯାଇ
ବୁଝ ମୋ କରାମତି
ତେନ୍ତୁଳ, ଲେମ୍ବୁ, କଇଥ, ଓଉ
କରମଙ୍ଗାଙ୍କ କତି ।

ଅରୁଚକ ମୁଁ ଅମୃତ ପର
ପେଟକୁ ପୁଣି ଭଲ
ଖାଇଲେ ମତେ ରୋଗରେ ଲୋକ
ନ ହୁଏ କଲବଲ ।

ମୁହଁ ଶୁଖେଇ ବସିଛୁଁ ବୋଲି
ଭାବୁଛ କ ରେ ହୀନ
ନାଆଁଟି ଆମ ନିଫଳା କଷା –
ଖାଅ ତ ପ୍ରତିଦିନ ।

ଦେଖିବ ତୁମେ ମରିବା ଯାଏ
ହୋଇବ ନାହିଁ ବୁଢ଼ା
ଅଣି ବରଷେ କଜଳ କେଶେ
ବାନ୍ଧିବ ବୁଢ଼ୀ ଜୁଡ଼ା ।

ହସି ହସିକା କଲରା କହେ
ନଚେଇ ଆଖିପତା
'ଫଗୁଣେ ନମ ଚକୁଳି ଖାଇ'
ରହିଛି ପରା କଥା ।

"ଦେହକୁ ହାତ ମାରେ ମୁଁ ପିଉ"
ପିତାଗହମା ପିତା
ଆମର ହେଡ୍ ସରଦାର ନାଁ
କୋଚଲା, ଚରେଇତା ।

ଯତନେ ଯେତେ ହୋଇଛୁ ରନ୍ଧା
ଭୋଜରେ ଆଜ ଶୁଣ
ସବୁର ସ୍ୱାଦ କରନ୍ତେ ମିଶି—
କହଇ ଶେଷେ ଲୁଣ ।

ଉଛୁଳେ ଘର ଥିଲେରେ ପିଲା—
ଥିଲେରେ ମାଆ ବାପ
ଏକା ପାନେକେ ଛଅଟି ସାଗ
ରହିଲେ ଚୂପ୍‌ଚାପ ।



# ତୁଳସୀ

ତୁଳସୀ ଗଛଟେ ତୁଳସୀ ଗଛ
ଆଗ ଜଗୁଆଳ ତୁ ସବୁଠାଇଁ ।

ବଡ଼ ଗଛ ଗଲେ ଫସର ଫାଟି
ସଭିଏଁ ଜପିଲେ ତୋର ନାଆଁଟି ।

ତୋର ପତରପୁ ଗୁଣ ସକାଶୁଁ
ଦୁଇଟି ପତରୁ ଆଗ ତୁ ବାସୁ ।

ଭଲେ କଟେ ଦିନ ତୋ ମୁହଁ ଚାହିଁ
ତୁଳସୀ ଗଛରେ ତୁଳସୀ ଗଛ ।

ତୁଳସୀ ନନାରେ ତୁଳସୀ ନନା
ଛୁଇଁବାକୁ ତତେ ଗାଡରେ ମନା ।

ସ୍ୱର୍ଗି ଯିବ ଯଦି ତୋ ଗୋଡ଼ ହାତ
କିଏ ସମ୍ଭାଳିବ ଦ୍ୱେଗର ନାତ ।

ଜଗିଥାଉ ତେଣୁ ତା ବାଟ ଚାହିଁ
ତୁଳସୀ ଗଛରେ ତୁଳସୀ ଗଛ ।

ତୋ ପତର ବିନା ପୂଜା ବରତ
ଶ୍ରାଦ୍ଧ ଓଷା ବାର ପାଲଟେ ଖତ ।

ଲକ୍ଷ୍ମୀ ନାରାୟଣ ତୋ କଳା ଚୂଳେ
ଗଙ୍ଗା ଗୋଦାବରୀ ତୋ ମାଟି ମୂଳେ ।

ତୋ କାଠ ଚନ୍ଦନ ଯେବେ ଯେ ମୁଣ୍ଡେ
ନ ପଶୁରେ ବୈଦ୍ୟ ସେ ତନୁ ତୁଣ୍ଡେ ।

ତୋ ଛନ୍ଦ ପବନ ତୋ ମୂଳ ପାଣି
କାସ କଫ ନିଏ ସମୂଳେ ଟାଣି ।

ନାଆଁ ଶୁଣି ମାଡ଼େ ଇମିତି ଡର
ବାପା ବାପା ହୁଡ଼ି ପକାଏ ଜର ।

ସନ୍ନିପାତ କହେ    ନ କଲ ଭଲ
କହୁ ଧବେ ମୋର    ଜୀବନଗଲ ।

ଯାଦୁ ଲୁହାଟଇ    ପୂରଲ କାଳ
ରକ୍ଷାକର ମତେ    ହରି-ଗୋପାଳ ।

ନଇତ ତୁଳସୀ    ତୋହର ତଳେ
ମିଞ୍ଜି ମିଞ୍ଜି ସଞ୍ଜ    ବଣାଟି ଜଳେ ।

ଜୁହାରଇ ବୋଉ    ସକାଳ ସଞ୍ଜେ
ବୁଢ଼ୀମାଆ ପାଣି    ଢାଳେ ତୋ ମଞ୍ଜେ ।

କାର୍ତ୍ତିକେ ପହଣ୍ଡ    କରେ ତୋ ସଫା
ମୁହୁଜ ଚକାଏ    ମୋ ବଡ଼ ଅପା ।

ତତେ ମୁଁ ତୁଳସୀ    ଡାକଲେ ଧାଇ
କହୁ ମୋର ଦୁଃଖ    ରହିବ ନାହିଁ ।

ଏତେ ଗୁଣ ତୋର    ଭରିଛୁ ଦେହେ
ଦବୁ କ ତହିଁରୁ    ମତେ ଟିକଏ ।

ପେଟ ହେଲେ ତୁହି    ହବରେ କସ
ବଡ଼ ବଡ଼ଙ୍କର    ମୋଡ଼ୁଛୁ ନଶ ।

ଆଜଠୁଁ ତୋ ସାଙ୍ଗେ    ସଙ୍ଗାତ ବସି
କାଟିବି ଜୀବନ    ମୁଁ ହସି ହସି ।

ଡାକଲେ ମୁଁ ତତେ    ତୁଳସୀ ଧାଇ
ଓଁ କରିବୁ ତୁ    ଦାଣ୍ଡରୁ ଥାଇ ।



# ଦୂବ

ଦୂବ ଓ କାଙ୍କର  ସଙ୍ଗରେ ନିତ  ହେଉଛୁ ଦେଖା
ସବୁ ଯୁଗେ ସବୁ  ପୋଥିରେ ମିଳେ  ଦୁହିଁଙ୍କ ଲେଖା ।
ମନ ଦେଇ ପିଲେ  ପଢ଼ିବ ତାକୁ  ହୋଇଲେ ବଡ଼
ଫୁଟି ନାହିଁ ତୁମ  ଗିଆନ-ସବୁ  ଧରିଛୁ କଡ଼ ।
"ଆସ ଆସ ଗାଈ  ବାଛୁରି ବେଗେ  ଆସରେ ଆସ
ଖାଇବାକୁ ଦେବି  ତୁମକୁ ଏଥି  କଅଁଳ ଘାସ ।"

ବର୍ଣ୍ଣବୋଧେ ଗାଇ-  ଗଲେ ରେ ମଧୁ—  ସୂଦନ କବି
ଲେଖିଗଲେ ଯାହା  ଦିନେ ସେ-ଆଜି  ଦେଖ ସେ ଛବି ।
ଦେଖ ସିନା ଦୂବ  ସରୁଆ ତାର  ବହୁତ ବଳ
ତାକୁ ଖାଇ ଗାଈ  ଆମକୁ ଦିଏ  ଲହୁଣୀ ସର ।
ତାହାର ଭିତରେ  ଅମୃତ ଢାଳି  ଦେଇଛି ବିଧି
ତାହାରି ସକାଶୁଁ  ଜଗତ ସିନା  ରହିଛି ଜୀଇଁ ।

ତାହାରି ଉପରେ  ଗୁଳିଲେ ଦହି  ରହଇ ଭଲ
ଠିକ କୃଷ୍ଣ ଦିନେ  ଚରାଉଥିଲେ  ବାଛୁରି ପଲ ।
ଏ ମରତ ସିନା  ସୁନ୍ଦର ମାଳ  ଦୂବଟି ପାଇଁ
ବହୁ ଗୁଣ ଲୁଚି  ରହିଛି ତାହା  ଭିତରେ ଭାଇ ।
ତୁମେ ସାନ ସାନ  ସିଏ ବି ଦେଖ  ତୁମରି ପରି
ଝଡ଼ ବଢ଼ି ବାଆ  ବତାସେ ତିଳେ  ନ ଯାଏ ଡରି !

ଡାକ ଦିଏ ତାକୁ  ଦେବତା ପୁଣି  ମଙ୍ଗଳ ଶଙ୍ଖ
ନଖିଣ ଗୁଜନ  ଦେଖିଲେ ହୁଏ  ଭାରି ସେ ରଙ୍କ ।
ଫୁଲ ଭଉଣୀଟି  ତା ପଛେ ସଦା  ଗୋଡ଼େଇ ଥାଏ
ସେ ନ ଥିଲେ ପୂଜା  ପରବ ସବୁ  ଫୁରୁସି ଯାଏ ।
ବୁଝିଥିଲେ ତାର  ମରମ-ବେଗ  ହେଗିବ ନାହିଁ
ସାନ ବୋଲି ତାକୁ  ମନରେ କେବେ  ନ ହେଳ ଭାଇ ।

ଦାରୁ ଯା' ନ ଶୁଣେ ଦୁବ ତା' ଆସି କ୍ଷଣକେ କରେ
ବନ୍ଧୁ ବାନ୍ଧବଏ ଶୁଅରେ ଯେବେ ରକତ ଝରେ ।
ମାର ଯେତେ ତାକୁ ଗୋଇଠା-ମନେ ନ ଥାଏ ଦୁଃଖ
ତାହା ପର ତୁମେ ଧୋଇଲେ ସଦା ପାଇବ ସୁଖ ।
ଧରପଟି ଧର ସହିଲେ ସବୁ ଦୁଃଖ ଓ ଶୋକେ
ତୁମ କରାମତ ଦେଖିବେ କାଲ ଜଗତ ଲୋକେ ।

●

## ହଳଦୀ

ହଳଦୀ ଅପାଲେ ହଳଦୀ ଅପା
ଦିଦ୍ଦଟି ତୋର ଚଦ୍ଦଟ ଚମ୍ପା ।
ବାଲଆ ମାଟିରୁ ଜନମ ଯିନା
ରାନ୍ଧଣା ନୁହଁଇ କେବେ ତୋ ବନା ।
ଟିକ ପିଲଙ୍କର ତୁ ଅତ ପ୍ରିୟ
ମନ ଥଣ୍ଡା ପୁଣି ଥଣ୍ଡା ତୋ ଦିଦ୍ଦ ।
ବାଛିବାକୁ ତୋଠି ନାହିଁରେ ଖଣ
ଯିମିତ ରୂପକୁ ସିମିତ ଗୁଣ ।
ଏଣ୍ଡ୍ରର ପିଠାଟି କମ୍ପଇ ରାଗେ
ଅଥାର ହାଣ୍ଡିରେ ନଥିଲେ ପାଗେ ।
ଓଡ଼ଆ ଜାତର ସଙ୍ଗାଳ ଲୁହ୍ଣ
ଅନ୍ତ ହୁଏ ଶୁଦ୍ଧ ଦେଲେ ତୁ ଛୁଇଁ ।
ପିଇଲେ ତୋ ରସେ ମିଶାଇ ମହୁ
ବୁଢ଼ୀ ବ ପାଲଟେ କୁଆଁରୀ ବୋହୂ ।
ବଗିଚ୍ଛରେ ଆମ ରଖିଲେ ପୋଷି
କୃମି ନବ ନାହିଁ ରକତ ଶୋଷି ।
ଦେହେ ମନେ ହେଲେ ତୋ ଭଳ ସଫା
ଗଢ଼ ଜଣିବ ଲୋ ହଳଦୀ ଅପା ।

●

# ଅଦା

ଅଦା ରେ ଅଦା

ଗଛ ପାଣି ପରି ଲୋଡ଼ା ତୁ ସଦା ।

ତୋର କରାମତ ଥିବ ଯେ ଜାଣି
ଚୁନଆ ନୋହିବ ଦେଖି ସେ ପାଣି ।

ଜଉଟିକୁ ପିନା ଲାଗୁ ରେ ରାଗ
ହଜମ ଥଳଟି କରୁ ତୁ ବାଗ ।

ଦେହର କବଜା ଘଙ୍ଗିଲେ ଘାଇ
କେଡ଼େ ବୃନ୍ଦେ ତାକୁ ସଜାଡ଼ୁ ଯାଇ ।

ଅମାବଆ ହେଲେ ରକତ ଶୁଅ
ଆପେ ବାଟ କାଟେ ଦେଖି ତୋ ମୁହିଁ ।

କ ମନ୍ତର ଅଛୁ କହ ତୋ ରସେ
ନାକ ପୋଛୁ ପୁଅ ଖୁସିରେ ହସେ ।

ଭକତ ଜୁଟିଲେ ଲୁଣ ଓ ମହୁ
ନାହିଁ ଜାଗାରେ ତୁ ମାରୁରେ ହଉ ।

ମାଗ୍ରେଗ ଯନ୍ଧ ମୁଁ ହେବ ରେ ହେବ
ଯହିଁ ଯିବ-ତତେ ପକେଟେ ନେବ ।

ଦାନ୍ତ ଭଲ ଥିଲେ ପଢ଼ିବ ପାଠ
ପାଠଟି ପଢ଼ିଲେ ଦଶିବ ବାଟ ।

ଗୁଣ୍ଠୁଁ ତୋର କଛୁ ଦବୁ କ ଧାର
ପାଦେ ତୋର ଅଦା ନମସକାର ।



# ଅରଖ

ଆରେ ଅରଖ

ଡାକ ଦେଲୁ ଶିବ          ରଖ ହେ ରଖ ।

ଅରକ୍ଷ ପରସ୍ତେ          ଥିଲୁ ତୁ ପଡ଼
ଆଜ ଶୋଭୁ ଶିବ          ମଥାରେ ଚଢ଼ି ।

ମହାଦେବଙ୍କର          ହେଲୁତୁ ପ୍ରିୟ
ନିତ ଖାଉ ଦୁଧ          ଲହୁଣି ଘିଅ ।

ମହାଦେବଙ୍କର          ପାଦକୁ ଧରି
ପତର ହେଲୁ ତୋ          ଅମୃତ ଫଳ ।

ନଜମୋନଆଁକୁ          ବଇଦ-ମାଆ
ଜୁହାରଇ ତତେ          ବଷାନ ଘାଆ ।

କଣେଇ ଗୁହ୍ନିଁଲେ          ତୁ ସାପ ଆଡ଼େ
ଦେଖୁଁ ଦେଖୁଁ ତାର          ବିଷଟି ଗୁଡ଼େ ।

ଆମବାତ ବାତ-          ରଣ ପକାଇ
ବଜ୍ରୁନ ପରକା          ପଳାଏ କାହ୍ନିଁ ।

ନ ପଗୁରିଲେଟି          କେହ୍ନି ମରତେ
ଈଶ୍ୱର ଝଷ୍ଟପ୍ଲ          ଗୁହ୍ନିଁବେ ମତେ ।

ପର ପାଇଁ ଦେଲେ          ଏ ମୋର ଦେହ
ସବୁଦିନେ ତାଙ୍କ          ହୋଇବ ପ୍ରିୟ ।

ଅରଖ ପତରେ          ଅରଖ ଫଳ
ବଣ ବୁଦାରେ ମୁଁ          ନ ଯିବ ଝଡ଼ ।



# ଋତୁଫୁଲ

ମୋ ନାଁ— ରଜନୀଗନ୍ଧା
ବଇଶାଖ କାନରେ ମୁଁ ଥାଏ ଗୋ ବନ୍ଧା ।

ମୋ ନାଁ— ବଉଳ ଫୁଲ
ଗଭାକୁ କେ ସାଜେ ନାହିଁ ମୋ ମାଳ ତୁଲ ।

କହେ— ବରଷା ଯୂଇ
ପାଦ ଚପି ଚପି ବାଟେ ଆସୁଚ ମୁହିଁ ।

ମୋ ନାଁ— ବଡ଼ ଚମ୍ପକ
ଝୋଟିଆ ପଶିଲେ ଗନ୍ଧେ କରେଁ ମୁଁ ନାଟ ।

ମୋ ନାଁ— ଥୋପା ମାଳତୀ
କଅା ଡାକେ ମିତ ଟିକେ ଆସ ମୋ କତି ।

ମୋର— ନାଆଁ କଞ୍ଚନ
ଚଗଲ ପିଲଟି ପରି ମୁଁ କନକନ ।

ମୋ ନାଁ— ରଙ୍ଗ ମନ୍ଦାର
ମାଆ ମଙ୍ଗଳାଚଣ୍ଡୀର ମୁଁ ଗଳାହାର ।

କହେ— ଧୋବଲ କଇଁ
ଶରତେ ଦେଖିବ ମୋର ଛଟକ ଛଇ ।

ମୋ ନାଁ— ନାଲି ପଦୁଅଁ
ମୋ ସମାନ ନାହିଁ କାର ଉଜଲ ମୁହଁ ।

ଗୋଟା— ଟଗେଣିଉଳ
ଟିକଏ ଅାଉଁସି ଦେଲେ ପଡ଼େ ଝାଉଁଳ ।

ମୋ ନାଁ— ସୂରୁଯମୁଖୀ
ମଗୁଣିର କହେ ମତେ ଡାକିଲୁ ତୁ କି ?

କୁନ୍ଦ— କଅଁଳପ୍ରାଣ
ଶୀତ କହେ ବୋହୂକୁ ଲୋ ବନ୍ଧେଇ ଆଣ ।

| | |
|---|---|
| ମୋର— | ନାଆଁଟି ମଲ୍ଲୀ<br>ଫଗୁଣ ସଞ୍ଜରେ ଆସେ ମୁଁ ହଲି ହଲି । |
| ମୋ ନାଁ— | କନକ ଚମ୍ପା<br>ନଆଳୀ ଡାକର ମତେ ଅପା ଲୋ ଅପା । |
| ମୋ ନାଁ— | କଣ୍ଟା କେତକୀ<br>ମାଘ ପଛେ ପଛେ ଆସେ ମୁଁ ଛକି ଛକି । |
| ମୋର— | କାମିନୀ ନାଆଁ<br>ପେନ୍ଥାଏ ଫୁଟିଲେ ମୁହିଁ ଚହଟେ ଗାଆଁ । |
| ମୋ ନାଁ— | ଶେତ ଗୋଲାପ<br>ଝିଅଙ୍କୁ ମୁଁ କହେ ମତେ ବେଣୀରେ ଥାପ । |
| ମୋ ନାଁ— | ପେଣ୍ଡା ଅଶୋକ<br>ବସନ୍ତକୁ ଦେଖି ଭୁଲେ ମୁଁ ଶୋଷ ଭୋକ । |
| ଋତୁ— | ଫୁଲଙ୍କୁ ବଳ<br>ଫୁଟି ଆମେ ବାସ ଦେବା ଭଲକ ଭଲ । |



## ବାରମାସୀ କୋଳି

| | | |
|---|---|---|
| 'ଅଙ୍ଗୁର' କହଇ | ମୁହିଁ ତ କୋଳି | ଭିତରେ ସାର |
| ଚାହେଁ ସେହି ମତେ | ଅଣ୍ଟାରେ ଧନ | ଥାଏଟି ଯା'ର । |
| ଯେମିତି ଚହଟ | ଚକଣ ରୂପ | ସିମିତି ଗୁଣ |
| କୋଳି ଭିତରେ ମୁଁ | ରାଣୀ ଲୋ ତୁମେ | ସମସ୍ତେ ଶୁଣ । |
| କହେ 'ବରକୋଳି' | ରାଗରେ, ତେବେ | ମୁଁ କ ତୋ ଦାସୀ |
| କେତେ ଲୋ ଫୁଲେଇ | ହେଉଛୁ ଆମ | ଦେଶକୁ ଆସି । |
| ହଗି ବସୁ ବସୁ | ଲୋଭରେ ମତେ | ଖାଇଲେ ରଜା |
| ଲୁଣେ ମୁଁ ଜଡ଼ିଲେ | ହାଣ୍ଡିରେ ଚଟେ | ମାଡ଼ିବ ଲଜା । |

ଅଣ୍ଡ ଆଣ୍ଡେ କହେ କଣ୍ଢେଇ ମତେ ନ ମଣ ସାନ
ଟିକଟିଏ ସିନା ଦେଖୁଚ ମୋର ସବୁଠି ଥାନ ।

ଖଟିଲ ମିଠିଲ ମହକେ ମୋର ବାସିଲେ ଡାଳ
କେତେ ଶରଧାରେ ଡାକଇ ମତେ ହେମନ୍ତ କାଳ ।

କହେ ପଛେ ବସୁ ଛତଆ-ମୁହିଁ ଜାତଆ କୋଳ
ଯେତେ ଗେହ୍ଲେଇଲେ ଟିକଏ ଦାନ୍ତ ନ ହୁଏ ଘୋଳ ।

ମଞ୍ଜି ବଣ ପଛେ ହୁଏଁ ମୁଁ-ବେଚ କୋଳର ରସ
ପିଲାଝିଲାଙ୍କର ଝକଳା ମୁହେଁ ଖେଳାଏ ହସ ।

ଗିଜର ଗିଜର ହଉଛ କେତେ ଖଜର କହେ
ମତେ ଦେଖି ଗଛେ ବଲୁଆ ଓଠୁଁ ଲାଳ ବ ବହେ ।

ବଇଶାଖୀ ଖରା ଦେଖିଲେ ମୋର ଫୁଲଇ ଦନ୍ତ
ଗୁଡ଼ଜଳକୁ କୋଳ କୁଆଁଏ-ମତେ ନଅ ଲେ ନଅ ।

କହେ 'ନରକୋଳି' ହଲେଇ ମୁହେଁ ଘର ମୁଁ ଗୋଷ
ମହକ ପାଇଲେ ପିଲାଏ ମତେ କରନ୍ତି ଗେହ୍ଲର ।

ଖାଇତା କର ଯେ ପାଇଛୁ ଥରେ ଅପଲ ବାଗ
ସବୁକୁ ପାଶୋର ମତେଟି ସିଏ ଖୋଜଇ ଆଗ ।

ମୋ ପର ତଟକା ହଜମି ରସ ଆଉ ତ ନାହିଁ
ପଡ଼ୁ ପଡ଼ୁ ମତେ ସପନ ପିଲେ ଦେଖନ୍ତି ଖାଇ
କହେ 'ଜାମୁକୋଳି' ଭୁଛାରେ ସିନା କରୁଛ କଳି ;
ବାଣ୍ଟି କୁଣ୍ଟି ଖଧି ଦେଇଛୁ ରସ ଭଲ କ ଭଲ ।

କାକୁଡ଼, ପିଜୁଳି, କମଳା, ଲିଚୁ, ଡାଳିମ୍ବ, ଆତ
ନାଉପର ଫଳବଂଶରୁ ଏହି କୋଳ ଏ ଜାତ ।
ବାରଜାତ କୋଳ ଖାଉ ସେ, ସିଏ ନପାଏ ଫଳ
ବଡ଼ଭାଇ ପର ଦାଣିବ ଯେତେ ହେଲେ ବ ତଳ ।



# ନଡ଼ିଆ

ନଡ଼ିଆ ତୋ ପରି ବଡ଼ିଆ
ଫଳ କି ଅଛି ଆଉ
ନାଡ଼ିଫୁଲ ପରି ଭିତର
ଧଳେ କି ଦାଉ ଦାଉ ।

ଦେହଟି କଠିନ ହୃଦୟ
ଆହା କେଡ଼େ କଅଁଳ
କନ୍ଦପଣା କାନ କାଟଇ
ତୋର ମଧୁର ଜଳ ।

ଚୂଡ଼ା ଢିଷାରେ ଯେ ଖାଇଛି
ତତେ ନଥିବ ଭୁଲି ।
ମୁଢ଼ିରେ ଗୋବେଇ ମୁଢ଼ିଟି
ଚରି ଉଠିବ ଫୁଲି ।

ଭୁବନେଶ୍ୱରେ ତୋ ସୁନାମ
ସାରା ଜଗତ ଜଣା
ତତେ ଦେଖି ଛୁଟି ଉଖୁଡ଼ା
ବାଟ ହୁଅଇ ବଣା ।

ଭଙ୍ଗେ ତାଳସଜ ଗୁମାନ
ତୋର କଅଁଳ ନାଳି
ଦୋରୁଅ ଦେଖିଲେ ଅରୁଆ
କ୍ଷୀରି ମାରଇ ତାଳି ।

ତତେଟି ଫଗୁଣେ ଡାକଇ
ନୂଆ ସଜନା ଶାଗ
ଚଟଣି ସୁଆଦ ବଢ଼ାଏ
ଖଟା ମରିଚ ରାଗ ।

ମଙ୍ଗଳ କାମକୁ ଡାକରା
ପଡ଼ କାନ୍ଧ କ କାନ୍ଧ
ଖାଇବା ପିଇବା ଦହିଁକୁ
ପେଟେ ରଖିଚ ବାନ୍ଧ ।

ସକାଳ ସଞ୍ଜରେ ଯାଦେ ତୋ
ବେଗୀ କରଇ ନମ
ବେଗୀ ପାଉଁରୁଟି ଦୁଧ ତୁ
ଆହା କେଡ଼େ ନରମ ।

ପାଠ ପଢ଼ି ଯେବେ ପିଲାଏ
କାଲ କରବ ନାଆଁ
ନଡ଼ା ଏହ୍ବ ଟାଣ ଫଳକୁ
ଦାନ୍ତେ ଗୋବେଇ ଖାଆ ।

ଖାଇଥିଲେ ଏହ୍ବ ବସ୍ତୁଙ୍କୁ
ତୁମେ ନାଲ ନଡ଼ଆ
ସବା ଆଗେ ସବୁ କାମକୁ
ନଶ୍ଚେ ହୋଇବ ଠିଆ ।



## ବେଲ

ଗୋଲଗାଆଲ କ ରୁଚକର
ପାଚି-ସୁଆଦଆ ଆଖି ସୁନ୍ଦର ।
କଷିବେଳୁ ପୋଡ଼ ଖାଇଲେ ଲୋକ
ଗୁଏଁ ବଢ଼ଯାଏ ଦଗୁଣ ଭୋକ ।
ଦଶେଟି ଖାଇଲେ ମୋରବା କର
ଆମାଶା ପଳାଏ ତା' ବାଟ ଧର ।

ଖାଉଥିବ ଷଣ୍ଢ ପାଚଲା ବେଲ
ବଇଦ ସାଙ୍ଗରେ ହୋଇବ ଗେଲ ।

ମିଠା ବାସନା ତା କ ମହମହ
ନାକ କହେ ଜଭ ଟିକିଏ ରହ ।

ଗୋଲମରିଚଟି ତା' ସାଙ୍ଗ ଭାଇ
ପତ୍ତ ଚନ୍ଦ ତାକୁ ହୁଅନ୍ତ ବାଇ ।

ପଣା ସଂକ୍ରାନ୍ତି ପକାଏ ଡାକ
ଆ' ବେଲ ପଣା ଆ' ମୋ ପାଖ ।

ଶୋଷୀର ପାଣି ସେ ଭୋଜର ଭାତ
ଯୋଗୀ ଭୋଗୀଙ୍କର ସନ୍ତ ସଙ୍ଗାତ ।

ଧରିଥିବ ଷଣ୍ଢ ବେଲର ପିଣ୍ଡୁ
କା'ମ କରିଯିବ ଆପଣା ଇଚ୍ଛା ।



## ଆମ୍ବ

ଆମ୍ବ କହେ ଜଜ୍ ମୁହିଁ
ମୋ ତଳକୁ ସବୁ
କେଉଁ ଫଳ ପେଷ୍କାର
କେ କରାଣୀ ବାବୁ ।

ପୂରିଛି ମୋ ଦେହ ସାରା
ଖାଲି ଭିଟାମିନ୍
ମତେ ଦେଖି ନାଚେ ବଣ
ତାଧିନ୍ ତାଧିନ୍ ।

କୋଇଲିଟି ଥାଏ କାହିଁ
ହୁଏ ସେ ହାଜର
ବଉଳ ପେନ୍ଥାରେ ଦେଖି
ହସଁ ଦରଦର ।

କାକର ବରଷା ଏଣେ
ଡେମ୍ଫ ଦେଲେ କାଠ
ବାଡ ଉଣ୍ଡି ଉଣ୍ଡି କାହୁଁ
ଆସେ ମହୁମାଛି ।

ଛୋଟାରେ ଆଖଡ଼ା ବସେ
ଚନ୍ଦ୍ରୁଁ କଣ୍ଟୁ ଢନେ
ନ ଉଠେ ପଖାଳ ବେଳ୍ଲ
ଆଉ ମୋର ବନେ ।

ପେନ୍ଥି ପେନ୍ଥି ଯେତେବେଳେ
ପବନେ ମୁଁ ଝୁଲେ
କାକସ୍ର ପିଠାଟି ପର
ଛୋଟା ମନ ଫୁଲେ ।

ବଢାଉଲେ ଖଟା ମୋର
ରସୁଣେ କ ବାଗ
ଲଳ ବୁଦ୍ଧେ ଦେଖି ଛେଷ୍ଟୁ
ପଡ଼ିଥିଲେ ସଗ ।

ଆଗୁର ମୋ ଶୁଦ୍ଧି ମନ୍ତ୍ର
ଉଠେ ଧଡ଼ପଡ଼
ଦେଖିଲେ ପିଲ୍ଲାଏ ମତେ
ଖାଲି ଲଡ଼ବଡ଼ ।

ପାଠ ମୁଁ ପବନେ ଯେବେ
ଝଣପଡ଼େ ଘର
ମନ୍ତ୍ରୀଏ ଧରନ୍ତ ମତେ
ମଟରୁ ଓହ୍ଲାଇ ।

କଦଳୀ ମୋ ପାଦେ କରେ
ଶହେ ନମସ୍କାର
ଆଜ୍ଞ ସବୁ ଫଳ ଯେତେ
ହଜାର, ହଜାର ।



## କଦଳୀ

ଚାଟଲ୍ଲ କଦଳୀ ମୁଁ ଫଳରେ ସାର
ଖାଇବ ମତେ କର ପଇସା ଧାର ।
ପଣସ ନାକ ମୁହାଁ ସପୁର ଭାଇ
ସତ କ ମିଛ ବୁଝ ଫେଣାଏ ଖାଇ ।

ସରଗ ଫଳ ମୁଁ ରେ ସରଗ ଫଳ
ସଜାଡ଼ ଦିଏଁ ଗୁଣ୍ଡେ ହଜମ କଳ ।
ବଗିଚ୍ଛ ସନ୍ଦେଶ ମୁଁ ଠାକୁର ଭୋଗ
ଛଡ଼େଇ ଦିଏ ଦେହୁ ସକଳ ରୋଗ ।

ମତେଟି ଯଦି ଲୋକ ସକାଳୁ ପାଏ
ଦିନକ ଲାଗି ପେଟ ଚିନ୍ତା ନ ଥାଏ ।
ପାଟିକ ସୁଆଦ ମୁଁ ପେଟକୁ ନଦା
କାନ୍ଧରୁ ଭାଙ୍ଗି ମତେ ଖାଇବ ସିଧା ।

ରାନ୍ଧିବ ଯଦି କଞ୍ଚା ମୋ ଥୋଡ଼ ମଞ୍ଜା
କ ଲୋଡ଼ା ଆଉ ଖାସି କଲିଜା ଭଜା ।
ପନ୍ଦର ନ ପୂରୁଣୁ ବୋଲାଇ ଭେଣ୍ଡା
ଫୁଲାଇ ଚାଲିବ ରେ ଆଗକୁ ଛେଣ୍ଡା ।

ମୋ ଡାକ ଶୁଣି ପିଲା ଦାଣ୍ଡରେ ହସେ
ଗୃହିଣୀ ଡରି ଘର କଣରେ ପଶେ ।
ଅମୃତ ନାଆଁ ସିନା ଶୁଣିଚ ଘରେ
ଦୁଧ ଓ କଦଳୀ ମତେ ଚାଖିଲ ଥରେ !



## ଲେମ୍ବୁ

ଆଈ ନାଆଁ କମଳା ମୋ
ଅଜା ନାଆଁ ଆତାପି
ମାଆ ନାଁ ନାରଙ୍ଗ ମୋ
ବାପା ନାଆଁ ବାତାପି ।

ଗୁଣବାନ ପୁଅ ମୁହିଁ
କାଗିଜ ମୋ ନାଆଁ ତ
କାଟି ମତେ ସାଙ୍ଗେ ସାଙ୍ଗେ
ଦାଳ ତୁମେ ଖାଆଠ !

ଖଟାଙ୍କର ଗୁରୁ ମୁହିଁ !
ଅଛୁ କନ୍ଥ କାରଣ
ଖାଇବାକୁ ରୋଗ ବେଳେ
ନ କରେ କେ ବାରଣ ।

କରୋଗୀ ଖାଆନ୍ତି ଯେତେ
ରୋଗୀ ପୁଣି ବେଶିକ
ଅଜୀର୍ଣ୍ଣର ମୂଳ ମାରେ
ଖାଇଥିଲେ କସିକ ।

ଜରୁଆର ଗେହ୍ଲାପୁଅ
ହଗୁବର ନାତ ମୁଁ
ଆଉ ଯେତେ ଶ୍ରେଷ୍ଠ ବଡ଼
ରୋଗ କରେ ଶାନ୍ତ ମୁଁ ।

ହଜମି ଔଷଧି ଯେତେ
ମିଳେ ତୁମ ବଜାରେ
ତହିଁରୁ ବୋତଲେ ଥିବ
ମୁଁ ହଜାରେ ହଜାରେ ।

ପାଚିକ ମୁଁ ଖଟା ସିନା
ପେଟକୁ ତ ମିଶିର
ଦେଖି ମତେ ଅଦା ଦନ୍ତ
ମାରନ୍ତୁ ରେ ଶୁଣ୍ଠର ।

ପେଟ ରୋଗ ବୈଦ୍ୟରାଜ
ଦାନ୍ତ ରୋଗ ଯମ ମୁଁ
ଛୁଞ୍ଚ ମାରେ କାଛୁ କାହିଁ
ଛୁଇଁ ଦେଲେ ଚମ ମୁଁ ।

ଫାନ ଫର ଯେବେ ମତେ
କରିଥିବ ଅମଳ
ମନେ ରଖ ! ସପନେ ବି
ନ ଦେଖିବ କାମଳ ।

ଥଣ୍ଡା ଷ୍ଟୁ' କର ମତେ
ପିଅ ନିତି ସକାଳେ
ଗୁଣ ଅଛି—ବୁଢ଼ା ତୁମେ
ନ ହୋଇବ ଅକାଳେ ।



# ପିଆଜ-ରସୁଣ

ପିଆଜ କହଇ ଡାଲିରେ ଥାଇ
ଗୁଡ଼୍ ମଣିଙ୍ଗ୍ ରସୁଣ ଭାଇ ।
ଏତେ ଡେରି କାହିଁ ତୁମର ଆଜ
ଚକେଇ ଦେଲଣି ମୁଁ ଶାଗ ଭଜା ।
ତୁମେ ଥିଲେ ଯାହା ମୁଁ ଥିଲେ ତାହା
ନ ପକାଏ କେହି ତୁମର ନାଆଁ ।
ତୁମର କାମ ମୁଁ ଚଳାଇ ନିଏ
ମତେ ଆଉ ଭଲ ନ ଚାହେଁ କିଏ ।
ପିନ୍ଧେଇ ଦେଇଛୁ ମୋ ମାଟି-ମାମା
କସିକାସି ମତେ ନାଲିଆ ଜାମା ।
ଫୁଲେଇ ଦେଲେ ମୁଁ ଛତ୍ରୁଆ ଜଣ
ଚେଏଁ ଚେଏଁ ହୋଇ ଡାକେ ଆଇଁସ ।
ପଖାଳକୁ ଯେବେ ନ ଜୁଟେ କିଏ
ମୁହିଁ ଚଡ଼ଚାଡ଼ ପେଟକୁ ନିଏ ।
ବଡ଼ଭଜା ଯେବେ ଧରେ ମୋ ପିଛ୍ଛ
ଶିଳକୁ ଯିବାକୁ ନ କରେ ଇଚ୍ଛା ।
ଲଙ୍କା ମୋର ଦାଦା ଲୁଣ ମୋ ବାପ
ଦେଖି ଗୁଲେ ଘାତ ଚୁଡ଼ପ୍ ଚୁପ ।
ଉଜାଡ଼ି କଞ୍ଚାରେ ଘାର ମୋ ଗୁଣ
ଘୁଞ୍ଚ ଆସି ଟିକେ କଣ୍ଠରେ ଶୁଣ ।
ସାଙ୍ଗେ ସାଙ୍ଗେ ଯେବେ ନ ଖାଅ କାଟି
କରଇ ମାଟି ।
କାହା ଆଗେ କହୁ ବଢ଼େଇ ଏତେ
ପିଠିକୁ ଚୋହରି କଣ୍ଟ ବେଚେ ।

ରସୁଣ ଫସୁଣ ନୁହେଁ ମୋ ନାଆଁ
ରସାୟନ ମତେ କହନ୍ତି ଖାଆ ।

ସରଗେ ଦେବତା ଅମୃତ ଖାଇ
ପଚ୍ଛେ ଏଠା କଥା ଭାବିଲେ ଯାଇ ।

ଧଳା ଶିରପାରେ ଗୁଡ଼େଇ ମତେ
କହିଲେ ଏବେ ତୁ ଯାଆ ମରତେ ।

ତତେ ଯେ ଖାଇବ କବଜା କଳ
ଟାଣ ହେବ ଦାନ୍ତ ବଢ଼ିବ ବଳ ।

ରୋଗୀଙ୍କ ପିଳେଇ ହୋଇବ ପାଣି
ସାପ ଲଙ୍ଗୁଡ଼କୁ ଧରିବୁ ଟାଣି ।

ଜାଣିଥା ଆଜଠୁଁ ପିଆଜ ଭାଇ
ଶ୍ରେଷ୍ଠ ବୋଲି ତାକୁ ଭାବିବୁ ନାହିଁ ।

ଯାହାକୁ ମଣିବୁ ସବୁଠୁ ସାନ
ସେହି ମୋଡ଼ିବଟି ସବୁରି କାନ ।

ଶ୍ରେଷ୍ଠ ବଡ଼ କିଛି ସଂସାରେ ନାହିଁ
ମନେ ରଖିଥିବୁ ପିଆଜ ଭାଇ ।



କୋଟିକରେ ଅବା ଗୋଟିଏ ତୁମେ
ଦେଖିବ ମୋପରି ପିଲା
ପଢ଼ିଥିବ କେବେ ଇତିହାସରୁ
ଜଣେ ଅଧେ କେହି ଥିଲା ।

ବୋଉ କହେ ମୁହିଁ ପୁଅରେ ହୀରା
ବାପା କହନ୍ତି ମୁଁ ବୀର
ସାଆନ୍ତ ଡାକନ୍ତି ସୁନା ସଙ୍ଗାଳ
ସାଆନ୍ତ ମା ଡାକେ ଧୀର ।

ମୁଁ କେମିତି ପିଲା ପାରିବ ଜାଣି
ଚୁହିଁ ଦେଲେ ମୋର ମୁଖ
କା'ର ବଡ଼େ ଟିପ ଛୁଏଁ ମୁଁ ନାହିଁ
ନ ବଢ଼ଏ କା ମନେ ଦୁଃଖ ।

ଏତେ ଭଲ ହୋଇ ତଥାପି ସଦା
ପ୍ରାଣେ ତ ବାପାଙ୍କୁ ଡରେ
ମାଆ ଯା କହନ୍ତି ମାନ ତା ସବୁ
ଖେଳଠାରୁ ପଢ଼ା କରେଁ ।



## ମୁଁ କଅଣ ହେବି

ଭାବଇ ବସି ମନେ
କି କି କାମ  କରିବି ମୁହିଁ
ଛୋଟିଆ ମୋ ଜୀବନେ ।

ଗାନ୍ଧି ଆଗ ହେବି
ସବୁରି ସୁଖ  ସୁବିଧା ପାଇଁ
ହୃଦୟ ଢାଳି ଦେବି ।

ହେବି ମୁଁ ଅରବିନ୍ଦ
ମାଟିରେ ସ୍ୱର୍ଗ  ଆଣିବା ଲାଗି
ଭଜିବି ଶ୍ରୀଗୋବିନ୍ଦ ।

ହେଲେ ପରମ ହଂସ
ଗୃର ଦଗରେ  ଖେଳେଇ ଯିବ
ମଳୟ ପରି ଯଶ ।

ବିବେକାନନ୍ଦ ହୋଇ
ଗିଆନ ବଳେ  ସବୁରି ମନୁ
ମଇଳା ଦେବି ଧୋଇ ।

ହେଲେ ମୁଁ ଜୟଦେବ
କଅଁଳ ମୋର  କାବ୍ୟ ଶୁଣି
ଖୁସି ବା କେ ନ ହେବ ।

ବାଜି ରାଉତ ହେବି
ସ୍ୱଦେଶ ପାଇଁ  ଲଢ଼େଇ କରି
ଛାତି ମୋ ପାତି ଦେବି ।

ନ ଭାବ ମୁହିଁ ଶିଶୁ
ଶିଳ୍ପେ ନୂଆ  ଜୀବନ ଦେବି
ବୋଲାଇ ଦିନେ ବିଶୁ ।

ଜନମ ଖାଲି ପାଇ
ବୃଥା ଟି ସିନା  ମହାନ ଆଶା
ମନରେ ଯଦି ନାହିଁ ।



## ମୁଁ କେମିତି ଶୁଏଁ

ପଢ଼ାପଢ଼ି ଶେଷେ ଖାଇ ସାରି
ଦିଏଁ ମୁଁ ନଜର ଶେଯ ପାରି ।
ଖଟ ଉପରେ ଶୋଇ ପଡ଼େ
ବଡ଼ ଭୋରୁ ଉଠେ ଧଡ଼ପଡ଼େ ।
ଶୋଇବା ଉଠିବା ବେଳେ ନିତି
ମନେ ଜପେ ରାମ ନାମ ଗୀତି ।
ଅଳସ କିସ ମୁଁ ଜାଣେ ନାହିଁ
ଶୀତ ଶେଯ ମତେ ଟାଣେ ନାହିଁ ।
ପ କଳ ଧୋଇଲେ ମିଠା ନିଦ
ସ୍ଥିର ମନେ ପାଠ ହୁଏ ସିଦ୍ଧ ।
ଶୋଇପଡ଼େ ବୋଲି ସଅଳରେ
ସକାଳୁ ଉଠି ମୁଁ ବହି ଧରେ ।

●

## କେତେବେଳେ ମୁଁ ଉଠେ

ପହିଲି କୁକୁଡ଼ା ମାରିଲେ ଡାକ
ଉଠଇ ଡାହୁକ ରାବଇ କାକ ।
କାଉ କୁମ୍ଭାଟିଆ ରଟିଲେ ପ୍ରାୟ
ନିଦ ଭାଙ୍ଗେ ମୋର ଆପଣା ଛାଏଁ ।
ନାଲି ଗୁଲୁ ଗୁଲୁ ପୂରୁବାକାଶ
ଆଖି ଟାକ ରହେ ତାହାର ପାଶ ।
ସୂରୁଯର ସାଙ୍ଗେ ମୁହିଁ ବି ଉଠେ
ଠିକନଖି କାମ ଶୀଘ୍ରେ ମୋ' ତୁଟେ ।
ସକାଳ ଆଲୁଅ ସକାଳ ବାଆ
କି ସୁଖ ନ ଦିଏ ପ୍ରାଣକୁ ଆହା ।
ବଡ଼ ଫୁରୁତରେ ଗୃହାଳୀ ଛୁଟେ
କଅଁଳେ ଶୋଇ ମୁଁ ସଅଳେ ଉଠେ ।

# ମୁଁ କେମିତି ପଢ଼େ

କ୍ଲାସରେ ମୁଁ ପ୍ରଥମ ହୁଏ
ପ୍ରତି ବରଷ ଧରି
ପ୍ରଶଂସା ଓ ପୁରସ୍କାରେ
ମନଟି ଉଠେ ଭରି ।
ମୁହେଁ ପଣିକିଆ ବନାନଯାକ
ଅକ୍ଷର ସବୁ ଗୋଲ୍ ଝକାକ ।
ପରିଷ୍କାର ଖାତାରୁ ମୋର
ସ୍ୱଭାବ ଜଣାପଡ଼େ
କଲମ ବନ୍ଧୁ ଦେବେ ମୋ' କନ୍ଧୁ
ମୁଉଁ କେମିତି ପଢ଼େଁ ।

ଚୁଉପ ଚୁଆପ ଲେଖଇ ଖାତା
ଚଉକି ପରେ ବସି
ଥୁଇବି ଥାଆର ପିଲ୍ଟେ ଁ ଦିଏ
ଅଙ୍କଯାକ କଷି ।

ମାଡ଼ଲି ପରି କଣ୍ଠା କାହିଁ
ପଢ଼ିଲାବେଳେ ଝୁଣ୍ଟେ ନାହିଁ
ଶାସ୍ତି କେବେ ପାଏ ମୁଁ ନାହିଁ
ମାଷ୍ଟ୍ର ବେତ ଛଡ଼େ ।
ଚନ୍ତା ବନା ଭାବନା ମୋର
କଲମ୍ମ୍ ଝରି ପଡ଼େ ।



# ମୁଁ କେମିତି ଖେଳେ

ଘଣ୍ଟା ବାଜେ ଟଂ ଟଂ
ଛୁଟି ବେଳ ବଡ଼ିଆ
ମନ ହୁଏଲେ ଚଙ୍ଗ ଚଙ୍ଗ
ଡାକେ ଖୋଲା ପଡ଼ିଆ ।

ଖେଳେ ନଡ଼ି କଡ଼ି କଡ଼ି
ଖେଳେ ମୁହିଁ ବାଗୁଡ଼ି
ବାଘଛେଳି ବୋହୂଚୋର
କେବେ ଡାଳ ମାଙ୍କୁଡ଼ି ।

ଦଉଡ଼ାରେ ଧୁରନ୍ଧର
ସବୁପିଲା ଭିତରେ
କଅଁଳ ଖବରେ ଡଏଁ
ମନ ଖୁସି ଗୀତରେ ।

ଅବେଳାରେ ନ ଖେଳଇ
ଖେଳବେଳେ ଖେଳେ ମୁଁ
ନାଚକୁଦ ମଣେଁ ବିଷ
ଖାଇଥିଲା ବେଳେ ମୁଁ ।

ନେଳ ନାଲି ବଲ୍ ଦୋଟି
ପ୍ରିୟସାଥୀ ମୋହର
ତାକୁ ଘେନ ଖେଳେ କେତେ
ସଞ୍ଜ ଆଉ ଭୋରର ।



# ମୁଁ କେମିତି ହସେ

ମଜାଗପ ଯେବେ ଶୁଣି ମୁଁ ବସେ
କୁରୁ କୁରୁ ହୋଇ ଖୁସିରେ ହସେ ।
ବନ୍ଧୁ ବାନ୍ଧବ କେ ଅଇଲେ ଘରେ
ହସ ମୁହେଁ ତାଙ୍କୁ ଜୁହାର କରେ ।
ଗୁରୁଙ୍କର ପାଖେ ହସେ ମୁଁ ନାହିଁ
ବେତ ପୁରସ୍କାର ପାଇବା ପାଇଁ ।
ବାପା ଘରେ ଥିଲେ ମଜନେ ହସେ
ପଢ଼ାଅଁଲେ କେବେ ସେ ଘରୁ ଖସେ ।

ସବୁବେଳେ ମୋର ହସିଲା ମୁହଁ
ହେଏଁ ହେଏଁ ଅବା ଠୋଓଠୋ ନୁହଁ ।
ମନଖୁସି ବେଳେ ଆଇନା ଧରେ
ଦେଖେଁ ମୋର ହସ ମୁକୁତା ପରେ ।
ହସ କଥା କିଛି ପଡ଼ିଲେ କାହିଁ
କେହି ରହିପାରେ ନ ହସି ଭାଇ ।
ଯେତେ ଦରକାର ସେତିକ ହସେ
ହସ ସାଙ୍ଗେ ନାହିଁ କମର କଷେ ।



# ମୁଁ କେମିତ କାନ୍ଦେ

କହିଦେଲେ ଟାଣେ କେହି
କାନ୍ଦେ ମୁହେଁ ଲୁଗା ଦେଇ
ଆଖି ପାଣି ଗଲେ ଝରି
ବସେ ମନ ଥୟ କରି ।

ଧୀରେ କାନ୍ଦେ ଲୁହ ଢାଳି
ବାପା କେବେ ଦେଲେ ଗାଳି
ମାଆ ଯଦି ରାଗ ହୁଏ
ଭସେ ମୁହଁ ଲୁହସୁଏ ।

ଫୁଙ୍ଗା ଦହ-ଭୋକ ପେଟ
ରୋଗେ ପ୍ରାଣ ଛଟପଟ
ଦେଖି କେବେ ବାଟ କଡ଼େ
ଲୁହ ମୋର ଝରି ପଡ଼େ ।

ଦୁଃଖେ କେହି କାନ୍ଦୁଥିଲେ
ତା' ସାଥେ ମୋ ଆଖିଫୁଲେ ।
ତା' ଲୁହେ ମୋ ଲୁହ ମିଶେ
ସେହି କାନ୍ଦ ମତେ ଦଶେ ।



## ମୁଁ କଅଣ କରେ

ଆସିଲେ କେହ୍ବ କୁଣିଆଁ ଘରେ
ଝଅଟ ଯାଇ ଜୁହାର କରେ ।
ଭଦ୍ରଲୋକ ଡାକଲେ କେହ୍ବ
ପଚ୍ଛରେ ନାମ ଓଳଗି ହୋଇ ।
ପଢ଼ାଇବାକୁ ଅଇଲେ ଗୁରୁ
ପ୍ରଣାମ କରେ ତାହାଙ୍କୁ ଦୂରୁ ।

ଆସିଲେ ଆମ ଘରକୁ ଲୋକ
ପକାଇ ଦିଏ ଚଉକ ସପ ।
ଜଣାଇ ତାଙ୍କୁ ନମସ୍କାର
ବିନୟେ କହେ ବସନ୍ତୁ ସାର୍ ।
ବାପାଙ୍କ ବୋଲେ ସଜାଡ଼ େଠାଆ
ଟେବୁଲ ପରେ ଥୁଅଇ ଖୁଆ ।
କାହାକୁ ପାନ କା' ଲାଗି ପାଣି
ବୋଉର ହାତୁଁ ଦିଅଇ ଆଣି ।

ବାପା ମାଆଙ୍କ ଘରେଇ ଡାକ
କରଇ ସବୁ ମୁଁ ବୋଲ ହାକ ।
ସବୁ କାମକୁ ଯାଏ ମୁଁ ଧାଇଁ
ମୋ ଦେହକୁ ମୋ ବଳ ଯାଇଁ ।



## ମୁଁ କଅଣ କହେ

ଟିକଏ ହେଲେ ଡରେ ବ ନାହିଁ
କହଇ ସତ କଥା
ଜୀବନ ଗଲେ ଯାଉ ବା ରହୁ
କଟୁ ମୋ ପଛେ ମଥା ।

କଥାରେ ଖାଲି ନ ସିଝେ ଶାଗ
ଯାହା ମୁଁ କହେ କରେଁ ତା ଆଗ
ଠାକୁରେ ସଦା ସେହି ସତର
ବାଟଟି ମତେ ବତା ।
ଜୀବନ ଗଲେ ଯାଉ ବା ରହୁ
କହେ ମୁଁ ସତ କଥା ।

କହନ୍ତି ଯାହା ବାପା ଓ ମାଆ
ସେ କଥା କହେଁ କରେ
ସେପାଇଁ କେହି ଚିଡ଼ନ୍ତି ନାହିଁ
ଦିନେ ବି ଆମ ଘରେ ।

ସତ୍ୟରେ ମୁହିଁ ବୋଲାଇ ବୀର
ହୋଇବି ଦିନେ ଯୁଧିଷ୍ଠିର
କାହିଁକି ହେବି ପାପୀ ବା ନୀଚ
କହିଲେ ମିଛ ଥରେ
ସତ ଯେ କହେ ତା ପାଦେ କୋଟି
ପ୍ରଣାମ ମୁହିଁ କରେ ।



## ମୁଁ କଅଣ ଶୁଣେ

ଶୁଣେନା ମୁଁ କା'ର          କଳ କଜିଆ କ
ଦଙ୍ଗା ଦ୍ୱେଙ୍ଗା ମାଡ଼ପିଟ୍
କା' ଉପରେ କେହ୍ବ          ସବୁବେଳେ ରାଗେ
ହେଉଥିଲେ ଖିଟ୍ ଖିଟ୍ ।

ମୁଁ ଶୁଣେ କେଉଁଠି          ମଧୁର ବଇଁଶୀ
କୋଇଲି କୁହୁ ଗାନ
ଭଲ ବନ୍ଧୁ ବନ୍ଧ୍ୱ          ସତ ଉପଦେଶେ
ଡେରି ଦିଏ ମୋର କାନ ।

ମନ ଦେଇ ଶୁଣେ          ମାଆ ଉପଦେଶ
ହିତକଥା ବାପାଙ୍କର
ନଆ ଦୁନିଆର          ଯେତେ ନୂଆ କଥା
ଦେଶ ଅବା ବିଦେଶର ।

ଦୁଃଖୀ ରୋଗୀ ଶୋଷୀ          ଗୁହାରି ଶୁଣେ ମୁଁ
ମନଦେଇ ଶୁଣେ ପାଠେ
ବାଜେ ସବୁ ପଣି          ବାହାରି ଯାଏ ମୋ
ଏ କାନୁ ସେ କାନ ବାଟେ ।



## ମୁଁ କଅଣ ଗାଏ

ବାଟ ଚଲାବେଳେ ଗୀତ ଗାଇ
କାହାର କାନକୁ ଟାଣେ ନାହିଁ ।
ହାଣ୍ଡି ଖାଇ ଚମ୍ପୀ ସୁଲ ଗାନ
ବଷ ପର ମଣେ ମୋର କାନ ।

ମଞ୍ଜି ପକାଳେ ମୁଁ ଆଣ୍ଠୁ ମାଡ଼
ଗାଏ ଗ୍ରମ୍ୟନ ଦୁଇ ଧାଡ଼ି ।
ଜେଜେଙ୍କ ଭଜନ ଜଣ୍ଣ ଆଗେ
ଶୁଣାଏଁ ମାଆଙ୍କୁ ନାନା ସ୍ୱରେ ।

ଉତ୍ସବ ପରବେ ଇସ୍କୁଲେ
ମୋ ଗୀତେ ସବୁର ମନ ଫୁଲେ ।
ମିଠା ସ୍ୱରର ମୋ ଚଢ଼ା ଦର
ପ୍ରାଇଜ୍ ପାଇଚ୍ଛି ପାଞ୍ଚ ଥର ।



# ମୁଁ କଅଣ ପୂଜେ

ମିଛେ ମିଛେ ପୂଜେନା ମୁଁ
ଗୋଡ଼ ଅବା ପଥର
ଦେଇ ବାଜା ଧୂଳ ଭୋଗ
ଥାପି ଫୁଲ ପତର ।

ଘରେ ଦୁଇ ଦଅଁ ଛନ୍ତି
ବାପ ଆଉ ମାଆ ମୋ'
ସବୁ ଦୁଃଖ ବିପଦକୁ
ସେହି ଖାଲି ସାହା ମୋ ।

ଶୁଣେ ତାଙ୍କ ବୋଲ ହାକ
ମାନେ ତାଙ୍କ କଥା ମୁଁ
ସେ ଦୁହିଁଙ୍କ ପାଦ ତଳେ
ନଇଁ ଥାଏ ମଥା ମୁଁ ।

ସେହି ଖୁସି ହେଲେ ଖୁସି
ହେବେ ପ୍ରଭୁ ଆମର
ବଢ଼ିବ କଲ୍ୟାଣେ ତାଙ୍କ
ଗୌରବ ମୋ ନାମର ।

ତାଙ୍କ ପାଦ ଧୂଳ ଆଉ
ମୋର ମଥା ଉପରେ
ପୂଜୁଥିବ ସଦା ତାଙ୍କୁ
ଦେବ ଦେବୀ ରୂପରେ ।



# ମୁଁ କଅଣ ଦେଖେଁ

ଆଖି ପାଇଛନ୍ତି ସଭିଏ
ଶୁଣ ଗୁହିଁବା ପାଇଁ
ଅସଲ ଦେଖିବା କଥାକୁ
କେହି ଅନାନ୍ତି ନାହିଁ ।

ଦେଖିବାକୁ ଏହି ସଂସାରେ
କସ ନାହିଁ ବା କୁହ
ଉପରେ ମୁଁ କେବେ ନ ଗୁହିଁ
କରେ ତଳକୁ ମୁହଁ ।

ଉପରେ ଆଲୁଅ ତଳେ ମୁଁ
ଦେଖେଁ ଘୋର ଅନ୍ଧାର
ଠାଏ ମଉଛବ ଜଳଇ
ପେଟ ଉପାସେ କା'ର ।

ନ ଗୁହେଁ ମୁଁ ଭୋଗୀ ଉଆସେ
ଦେଖେ ଗରିବ ଗୁଳ
ରୋଗୀର ବିକଳ କାନ୍ଦଣା
ଦୁଃଖୀ ରଙ୍କିର ଝାଳ ।

ନ ଦେଖେଁ ମୁଁ କା'ର କଳଙ୍କ
କା'ର ମଳିନ ମୁଖ
ଗୁହେଁ ପ୍ରାଣଖୋଲା ହୃଦୟୁ
ହସ ଶାନ୍ତି ଓ ସୁଖ ।

ସବୁଠୁଁ ହୁଏ ମୁଁ ଅଧିକ
ଖୁସି ଦେଖିଲେ 'କାହିଁ
ଦିଅନ୍ତି ଆମକୁ ଯେ ଲୋକେ
ସିଧା ବାଟ ବତାଇ ।

ସେ ମହତ ସାଧୁ ଦେଖାରେ
ଆଖି ପବିତ୍ର ହୁଏ
ପୂରି ଉଠେ ମୋର ହୃଦୟ
ମହା ଆନନ୍ଦ ସୁଏ ।

ବାହାରକୁ ସଦା ନ ଚାହିଁ
ଦେଖେ ଅନ୍ତର ସ୍ଥଳ
ଭୁଲି ରାଗ ହିଂସା ବିବାଦ
ଧୁଏ ମନରୁ ମଳ ।

ଅସଲ କଥା ଯେ ନ ଦେଖେ
ପଶୁ ଆଲୁଅ କଣା
ଆଖି ଥାଉଁ ଥାଉଁ ହୁଏ ସେ
ଜନ୍ମ ଅନ୍ଧରେ ଗଣା ।



# ମୁଁ କେମିତ ଚାଲେ

ତୁମେ ବି ଚାଲ ମୁଉଁ ବି ଚାଲେ
କେଉଁଠି ଉଠେ କେଉଁଠି ଖାଲେ ।

ଚାଲି ଅଛନ୍ତି ସବୁଏ ଯାଇ
କୁଆଡ଼େ କେହି ବୁଝନ୍ତି ନାହିଁ ।

କେ ଧାଏଁ ଚଲେ କେ ଧାଏଁ ଝୁଲେ
ପବନ ଖାଇ ଝାରେ କେ ବୁଲେ ।

ଚାଲେ କେ ବନ୍ଧୁ କୁଣିଆ ଘର
କଏ ବା ରଖେ ଏତେ ଖବର ।

ଚାଲନ୍ତି କେବା ମଟରେ ଚଢ଼ି
ଉପରେ ଉଡ଼େ କେ ଘଡ଼ ଘଡ଼ ।

ସବୁରି ଚାଲ ଆଖିକ ଦିଶେ
ଅସଲ ଚାଲ ଅନ୍ଧାରେ ମିଶେ ।

ଚାଲଇ ଧୀରେ ମୁଁ ମୋର ବାଟେ
ଦୁଇଦିନିଆ ସଂସାର ହାଟେ ।
ଚାଲେ ମୁଁ ଠେଣ୍ଟୁ ଦେଖି ଓ ଚାହିଁ
ଭୁଲରେ କଣ୍ଟା ନ ମାଡ଼େ ଯାଇ ।
ପକାଏ ନାହିଁ କାହାକୁ ପାଲେ
ସତ ମୁଁ କହି ସିଧାରେ ଚାଲେ ।



# ମୁଁ କଅଣ ଖାଏଁ

ପ୍ରାୟ ମୁଁ
ବାରମାସୀ ଯେତେ ଫଳ
ସବୁ କିଛି ଖାଏ ମୁଁ ।
ମୁହିଁ ଖାଏ ଦୁଧ ଛେନା ଖାଏ ସର କୋରୁଅ
କଦଳୀ ନଡ଼ିଆ ବେଲ ଆମ୍ବ ଆଖୁ ଦୋରୁଅ ।
ଖାଏ ମୁହିଁ ଲେମ୍ବୁ ଆତ
ନିତି ପ୍ରତି ଦୁଧ ଭାତ
ଯେତେବେଳେ ଘରେ ଯାହା
ମାଆ ହାତୁଁ ପାଏ ମୁଁ
ସବୁ କିଛି ଖାଏ ମୁଁ ।
ଫଳ ଦୁଧ ଖାଇ ମୋର ଦେହ ଭାରି ଟାଣୁଆ
ଫଳ ଦୁଧ କରିଛି ମୋ ବୁଦ୍ଧି ବେଶ୍ ଶାଣୁଆ ।
ନ ଛୁଏଁ ମୁଁ ଚେନାଚୁର
ବାରମଜା ମୁର୍ ମୁର୍
ପୁରି ଲଡ଼ୁ ପେଡ଼ା ଗୁଡ଼ ଚୂଡ଼ା ମୁଢି ଗୃହେଁ ମୁଁ ।
ପ୍ରାୟ ମୁଁ
ବାରମାସୀ ଯେତେ ଫଳ
ସବୁ କିଛି ଖାଏ ମୁଁ ।
ଧୀର ମନେ ଧୋଇ ହାତ
ଆସନରେ ବସି ମୁଁ
ଅଝଟ ନ କରି କିଛି
ଖାଏ ହସି ହସି ମୁଁ ।
ରୁଷେ ନାହିଁ କାନ୍ଦେ ନାହିଁ
ବେଶି ବା ଖାଇବା ପାଇଁ
ଭଲ ଚିଜ ହେଲେ ଊଣା
ବୁଝି ଯାଏ ଛୁଏଁ ମୁଁ ।
ପ୍ରାୟ ମୁଁ
ଅବେଳାରେ ଖାଇବାକୁ
ଭଲ ନାହିଁ ପାଏ ମୁଁ ।



# ମୁଁ କଅଣ ପିନ୍ଧେ

ପିନ୍ଧଇ ମୁହିଁ ପେଣ୍ଟ୍ ସାର୍ଟ
ଧୋବ ଫରଫର ହାଓଆନ
ମଇଳା ନ କରେଁ ଖେଳ ବେଳେ
ମାଆର ହୁକୁମ ସଦା ମାନ ।

ଗୋଡ଼େ ମଡ଼ାଏଁ ମୁଁ ଚଟି ଜୋତା
ପାଖେ ପାଖେ ଥାଏ ଟିକ ଛତା
ଝଡ଼ ବରଷାରେ ଗଲାବେଳେ
ନ ବାନ୍ଧବ ବୋଲ ମୋର ମଥା ।

ଅଳପ ଦାମ୍‌ର ହେଉ ପଛେ
ପୋଷାକ ପତର ଯେତେ ମୋର
ସବୁଥିରେ ଥାଏ ବୋତାମ ମୋ
ସବୁଥିରେ ଥାଏ ସଫା ଡ଼ୋର

ଅସନା ମଳକୁ କରେ ଘୃଣା
ଝାଳୁଆ କୁରୁତା ହକାଳେ ମୁଁ
ସାବୁନ ଦଏ ମୋ ପୋଷାକରେ
ନଇତ ନଇତ ସକାଳେ ମୁଁ ।

ପୋଷାକ ହୋଇନ ଶୁଣ ଭାଇ
ଘୋଡ଼େଇବା ପାଇଁ ଖାଲି ଲାଜ
ଖରା ଶୀତେ ରଖି ଦହକୁ ସେ
ଦଶିବାକୁ ବେଶ୍ ସଜସାଜ ।



# ମୁଁ କେଉଁଠି ବୁଲେ

ସକାଳ ସଞ୍ଜେ ମୁଁ ପଦାରେ ବୁଲେ
ମୁକୁଳା ପବନେ ମନଟି ଫୁଲେ ।

ସବୁଜ ଶ୍ରେଣୀ ପକ୍ଷୀର ଗୀତ
କଣିନଏ ମୋର କଅଁଳ ଚିତ୍ତ ।

କେବେ କେବେ ସାନ ଭଉଣୀ ଭାଇ
ମୋର ସାଙ୍ଗେ ସାଙ୍ଗେ ଯାଆନ୍ତି ଧାଇଁ ।

ପ୍ରଜାପତି ପରି ଏକାଠି ବୁଲୁ
ମହୁ ଶୁଙ୍ଖି ଶୁଙ୍ଖି ଫୁଲରୁ ଫୁଲୁ ।

କେବେ ନଈକୂଳେ କେବେ ଚୋଟାରେ
ଖୋଲା ପଡ଼ିଆରେ ପୋଖରୀ ଧାରେ ।

ଚଲାବୁଲା ମୋର ଅମଳ ଭଲ
ଘନେ ଘୁଡ଼ି ଚାକୁ ନ ପାରେ ଚଳ ।

ଆଲୁଅ ପବନ ଏ ଦୁଇ ସାଥୀ
ଘୁଇ ପରି ମୋର ସଙ୍ଗେ ଥାଆନ୍ତି ।

ପୃଥିବୀ ବୁଲଇ ସୂରୁଯ ବୁଲେ
ମୁଁ ବୁଲିଲେ ଆଃ ମନ କି ଫୁଲେ ।



# ମୋ ଦେହଟି ସଫା

ମୋ ଦେହ ବଡ଼ ପରିଷ୍କାର
ମୋ ରୂପ ପରି ନ ଦିଶେ କା'ର ।
ସାବୁନ ମନା ଆମର ଘରେ
ତେଲରେ ନିତି ଗାଧୁଆ ସରେ ।

ତଉଲିଆରେ ହେଲେ ମୁଁ ଘଷି
ଜଳଇ ମୁହଁ ଶରଦ ଶଶୀ ।
ଦେଖତ ମୁଣ୍ଡ କମିତି ସଫା
କୁଣ୍ଡେଇ ଦିଏ ମୋ ବଡ଼ ଅପା ।

ଆଖିରେ ନାହିଁ ଲେଞ୍ଜିରି ମଳ
ମୋ ମୁହଁ ତୋଫା ଫୁଲଟି ଭଳ ।
ହୋଇବ କାହୁଁ କୁଣ୍ଡିଆ ଯାଦୁ
ବୁହିଁଲ ମୋର ମଥାଠୁଁ ପାଦୁ ।

ମୋ ଦେହ ବେଶ୍ ପରିଷ୍କାର
ଧାରେନା ମୁହିଁ ରୋଗ'ର ଧାର
ଦେଖିଲେ ମତେ ଡରଇ ବଥ
ପଶୁର ଡାଇ ମିଛ କି ସତ ।

ପକ୍ଷୀ ପତଙ୍ଗ ପରିଷ୍କାର
ମଣିଷ ପିଲା ତା'ଠୁଁ କି ଗୁର !



## ମୁଁ କଅଣ ହବେଁ

ଟିକି ପିଲା ମୁହିଁ	ଟିକି ବାଳକ
ହବେ ହେବି ଯେବେ	ବଡ଼ ବାଳକ
ପିନ୍ଧି ପାଇଲଟ୍	ପୋଷାକ ସାଜ
ଚଳାଇବି ଯେବେ	ଉଡ଼ାଜାହାଜ ।

ପୁଣି କେବେ ହବେଁ	ବଣିକ ହୋଇ
ଘରକୁ ଧନ	ଆଣିବି ବୋହି
ବୋଇତ ବାହି ମୁଁ	ବାହୁର ବଳେ
ମେଲିବି ବଣିଜ	ଦରିଆ ଜଳେ ।

ପୁଣି ମନେ ହେଜେ	ହେବି ମୁଁ ବୀର
ଅର୍ଜୁନ ସରିକା	ମାରିବି ତୀର
ଲଢ଼େଇ କରି ମୁଁ	ବଇରି ସାଥେ
ଦେଶକୁ ରଖିବି	ଦେଶର ହାତେ ।

ଶେଷେ ଭାବେ ନାଃ	ସବୁକୁ ଛାଡ଼ି
ଜୀବନ ସାରା ମୁଁ	ଅମଡ଼ା ମାଡ଼ି
ବୁଦ୍ଧ ପରି ହୋଇ	ମୁକତିକାମୀ
ଭେଟିବି ମୋହର	ଅନ୍ତରଯାମୀ ।



# ମୁଁ କଅଣ ଚାହେଁ

ଏ ସଂସାରେ ସବୁଠୁଁ ସାର
ଯେତେ ସବୁ ପରିଷ୍କାର ।

ସଫା ଘର ସଫା ଅଗଣା
ସଫା ଖଟ ସଫା ବିଛଣା ।

ସଫା ପାଣି ସଫା ଆକାଶ
ସଫା ଜନ୍ତୁ ଅଶିଣ ମାସ ।

ସଫା ଖାଦ୍ୟ ସଫା ପୋଷାକ
ସଫା କଥା ପ୍ରାଣର ଡାକ ।

ସଫା ଖାତା ସଫା ଅକ୍ଷର
କରେ ମନେ ଅତି ଆଦର ।

ସବୁ ସଫା ଭିତରେ ଚାହେଁ
ମନ ବେଶି ସଫା ଯା'ର ଥାଏ ।

ସଫା ଯା'ର ସରଳ ପ୍ରାଣ
ସେ ସଫାଙ୍କ ମୂଳବ ଜାଣ ।

ଯେତେ ସଫା ସବୁ ମୋ ପ୍ରିୟ
ସଫା ହୃଦ ଦେ ପ୍ରଭୁ ଦିଅ ।



# କିଏ ସେ ମୋର ସାଥୀ

ପୋଷଥିଲି ଗୋଟେ ମଇନା
ଏକ ଲୁହା ପିଞ୍ଜରେ
ନଥିଲା ବେଳେ ମୁଁ ଦିନେ ସେ
ଉଡ଼ିଗଲା ଖଞ୍ଜରେ ।

ମନ ଦୁଃଖ ଜାଣି କହିଲେ
ବାପା ହୋଇଛି ଭଲ
ନୋହୁଥିଲା ଉଡ଼ା ପ୍ରାଣୀଟି
ଆହା କି କଲବଲ ।

ସାଗ୍ର ଛୁଡ଼ିଗଲା ଉତ୍ତରେ
ଏକ ପାଳିଲି ପୁଷି
ଦୁଧ ଭାତ ଖାଇ ସେ ଆମ
ଘରେ ହେଲା କି ଖୁସି ।

ଛୁଡ଼ିଗଲା ମତେ ଦିନେ ସେ
କାହା ପାହାର ଖାଇ
ପଣ କଲି ଆଜ କେବେହେଁ
କିଛି ପୋଷିବି ନାହିଁ ।

କିଣିଲି ବଅଲ କିଣିଲି
ମାଟି କଣ୍ଢେଇ କିଛି
ପ୍ରିୟ ସାଥୀ କରି ଖେଳିଲି
ତାଙ୍କୁ ମୁଁ ମିଛି ମିଛି ।

ଫାଟିଗଲା କଏ ମାସକେ
ପୁଣି କେ ଗଲା ଭଙ୍ଗି
ଛାଡ଼ିଗଲେ ଶେଷେ ଯେତେକ
ଥିଲେ ମୋ ପ୍ରିୟସାଙ୍ଗୀ ।

ହେଲା ତାଙ୍କ ଲାଗି କରତ
ସହୁଁ କଅଁଳ ଛାତି
ଧନ ଗାତ ଚାଲା କଲ ମୁଁ
ଆଜ ହେବ କେ ସାଥୀ ।

ଦୈବାତ୍ ଧନେ ଜାଣିଲ
ଏକ ବନ୍ଧୁ ମୁଁ ପାଇ
ପ୍ରଭୁ ବିନା ଏକା ସଂସାରେ
କେହି ଭରସା ନାହିଁ ।

ସେହିଦିନୁ ତାଙ୍କୁ କଲ ମୁଁ
ମୋର ଅସଲ ସାଥୀ
ତାଙ୍କ ପର ପ୍ରିୟ ବନ୍ଧୁ ମୋ
ଆଉ କେହି ନାହାନ୍ତି ।

ଅଦେଖାରେ ସେହି ଠାକୁର
ସଦା ଆସନ୍ତି ପାଖେ
ଯିଏ ଯେତେବେଳେ ଯେ ଲାଗି
ତାଙ୍କୁ ଆକୁଳେ ଡାକେ ।



## କଅଣ ମୋର ନାଆ

ବାପା ଡାକନ୍ତି ବାବୁନ ମତେ
ବୋଉ ଡାକଇ କୁନା
ଜେଜେ ଡାକନ୍ତି ଜଗତଜ୍ୟୋତି
ଆଈମା ଡାକେ ଟୁନା ।

ଦାଦା ଡାକନ୍ତି ବଗୁଲା ବାବୁ
ଚଗଲା ଡ଼ାକେ ଖୁଡ଼ୀ
ଅତି ସେନେହେ ଚେମା ଡାକେ ମୋ
ସାଆନ୍ତ ମାଆ ବୁଢ଼ୀ ।

ନାଆଁରେ ନାଆଁ ଯୋଡ଼ିକ ମତେ
ଡାକନ୍ତି ବଡ଼ ମାମୁଁ
ମାଇଁ ଡାକନ୍ତି ସଂଖାଳି ଖାଇ
କରିଲେ ତାଙ୍କ କାମୁଁ ।

ଝଅଠ ଉଠି ଶୁଣିଲେ ବୋଲି
ମାଉସୀ କହେ ନଧି
ଅସଲ ନାଆଁ ଜାଣିବା ଲାଗି
ଧରିଲି ଦିନେ ଜିଦ ।

ମାଷ୍ଟ୍ରେ ଦିନେ ବୁଝାଇ ଦେଲେ
ପାଇବୁ କସ ନାମୁଁ
ନାଆଁଟି ବଞ୍ଚେ ଏ ଦୁନିଆରେ
କେବଳ ଭଲ କାମୁଁ ।

ଗଜ ମୁରୁଖେ ଗଣେଶ ନାମେ
ଡାକଲେ କରି ପାଟି
ଲାଜଟି ପାଏ ବଢ଼ିଆ ନାଆଁ
ବୃଥାରେ ହୋଇ ମାଟି ।

ଦେଶ ଜାତିର କୀରତି ଟେକ
ଅନାମ ରଖେ ନାଆଁ
ମୋ' ଭଲ କାମ ଯିବ ମୁଁ କରି
ଯେ ମତେ ଡାକୁ ଯାହା ।



# ଜୁହାର କାକୁ କରେ

ବିଛଣାରୁ ଉଠି ଆଗ
ଜୁହାରଇ ପ୍ରଭୁଙ୍କୁ
ମନେ ମନେ ଡାକ କହେ
ଭଲେ ରଖ ସଭିଙ୍କୁ ।

ଫିଟିଗଲେ ଝର୍କନା
ପୂରୁବର ଦୁଆର
ଗାଧୋଇ ମୁଁ ନିତିପ୍ରତି
ସୂର୍ଯ୍ୟେ କରେ ଜୁହାର ।

ପରେ ବାପା ବୋଉଙ୍କର
ପାଦେ ମଥା ନୁଏଁ ମୁଁ
ଗୁରୁ ପଢାଇଲେ ତାଙ୍କୁ
ନମସ୍କାର କୁହେଁ ମୁଁ ।

ସବୁ କାମ ଭିତରେ ମୋ
ଏ କାମଟି ପହିଲେ
ଜୀବନ ଯେ ମାଟି ପରି
ମନେ ଭକ୍ତି ନୋହିଲେ ।

ଆଶୀର୍ବାଦ ବିନା କାହୁଁ
ହେବ ମୁହିଁ ମହତ
ତୁମ ମଧ୍ୟେ ଜୁହାରେ କେ
ମୋ ପରିକା କହ ତ !



## ଏକଜିଦ୍ଦିଆ ମୁହିଁ

ଭଲ କଥାରେ ଏକଜିଦ୍ଦିଆ ମୁହିଁ
ମନ୍ଦ ବେପାରେ ନୁହେଁ
ଯେଉଁ ଜିଦ୍‌କୁ ଆମର ସାଧୁ ଭକ୍ତ
ଅଧ୍ୟବସାୟ କୁହେ ।

ଜିଦ୍ ମୁଁ ଯେବେ ଧରଇ ହପଚାକେ
ସାରଇ ଏକ ବନ୍ଧୁ
ସେଇଥିରେ ମୁଁ ଦିଅଇ ଡ଼ାକ ମନ
ହେବାକୁ ଶେଷେ ଜୟୀ ।

ଅକଥା ଯେବେ ବାହାରେ କେବେ ତୁଣ୍ଡୁ
ଦେଲେ କେ ବାନ୍ଧି ଥରେ
କେବେ କେ ଆଉ ସେ କଥା ମୋର ମୁଖଁ
ନ ଶୁଣେ ଆମ ଘରେ ।

ପଶୁ ତ ନୁହେ ମଣିଷ ପିଲା ମୁହିଁ
ବିବେକ ଅଛି ମୋର
ଗୋଟିଏ ପଦେ ହୁଅଇ ସାବଧାନ
କାଟିଲେ ମନେ ଜୋର ।

ଏକଜିଦ୍ଦିଆ କହନ୍ତି ଯା'ଙ୍କୁ ଲୋକେ
କି ଯାଏ ଆସେ କା'ର
ସେହିମାନେ ହିଁ ଶେଷେ ତ ନୂଆ କିଛି
କରନ୍ତି ଆବିଷ୍କାର ।



## ମୋର ପ୍ରାର୍ଥନା

ଚଳେ ଆଣ୍ଠୁ ମାଡ଼ି
  ହାତ ଦୁଇ ଯୋଡ଼ି
    ନଇଁଛି ସକାଳେ ତୁମକୁ ପ୍ରଭୁ
ଦିଅ ଭଲ ଜ୍ଞାନ
  ଦିଅ ଭଲ ବୁଦ୍ଧି
    ରାଗ ହିଂସା ମନୁ କାଢ଼ି ସବୁ ।

ତୁମରି ପାଦେ ମୋ
  ରହିଥାଉ ଧ୍ୟାନ
    ଦିଅ ଖାଲି ମତେ ଏହି ବର
ଦୋଷାଦୋଷ ଯାହା
  କରୁଅଛି ଯେତେ
    କ୍ଷମାମୟ ପ୍ରଭୁ କ୍ଷମାକର ।

ଭଲ ମନ୍ଦ କିଛି
  ବୁଝେ ନାହିଁ ବୋଲି
    ତୁମେ ମତେ ବେଶି ଭଲପାଅ
ସୁଖେ ଦୁଃଖେ ଅବା
  ହସ କାନ୍ଦେ ତୁମେ
    ପାଖେ ପାଖେ ମୋର ସଦା ଥାଅ ।



## ମୋର ସଫା କାମ

ନିଜ କାମ ଯେତେ    ନିଜେ ମୁଁ କରେ
ସେଥିପାଇଁ ଘର    ପ୍ରଶଂସା ଘରେ
  ପ୍ରଶଂସା ପଡ଼ିଶା ଗାଏଁ
କେହି ଅଳସୁଆ    ଖୁମାଣ ପୋଚିଲେ
  କଥା ପଡ଼େ ମୋର ନାଏଁ ।

ଅଳଅଳୁ ମୋର ସବୁଠୁଁ ଘଣା
ଦେଖି ସଫାକରେ ମୁଁ ହେଉଛୁଣା
ମୋ ଲାଗି ଆମର ଘରେ
ଅଳଆ ଅସନା ସପନ କେମିତି
ଦେଖିଆସ ଯାଇ ଥରେ ।

କି ସୁନ୍ଦର ଆମ ବଗିଚା ବାଡ଼
ଗଛ ଲଗେଇଛୁ ଧାଡ଼କୁ ଧାଡ଼
ଜାତି ଜାତି ଫୁଲ ଫଳ
ଘାସ ବାଛୁବୁଛୁ ପାଣି ନିତି ଢାଳେ
ଅଛୁ ମୋର ଯେତେ ବଳ ।

ଲୁଗାପଟା ଠାରୁ ବହିପତର
ଟେବୁଲ ଚଉକି ଯେତେ ଆମର
ପରିଷ୍କାର କରେ ଝାଡ଼
ଭୁଲରେ କେବେ ଘରେ ପଶେ ନାହିଁ
ଜୋତା କି ଚପଲ ମାଡ଼ ।

ନିଜ ହାତେ ସଫା କରିବା ପାଇଁ
ବଡ଼ ଖୁସି ମତେ ଲାଗେରେ ଭାଇ
ପର ଖୋସାମତି ଦୁଃଖ
ହାତ ଗୋଡ଼ ଥାଇ ଟଙ୍କା ଗଣି କଅଁ
କିଣିବା ଚାକର ସୁଖ ।

ନିଜର ଚାକର ନିଜେଇ ଆମେ
ଆମେ ଲାଗିଗଲେ ଆମର କାମେ
ଧନ୍ଦା ବି ରହିବ ଭଲ
ରୋଗ ଓ ଅଭାବ ଏଇ ଦୁଇ ଯମ
ନ କରିବେ କଲବଲ ।



# ଅଙ୍ଗ ପ୍ରତ୍ୟଙ୍ଗ ମୋର

ଗୋଡ଼ ପାଇନାହିଁ ନିଜେ ଚାଲିବାକୁ
ପର ଉପକାର ପାଇଁ
ରାତି ଅଧେ କା'ର ପଡ଼ିଲେ ବିପଦ
ବେଗେ ଯିବି ବୋଲି ଧାଇଁ ।

ପେଟ ପାଇନାହିଁ ନିଜେ ଖାଇବାକୁ
ବୁଝିବି ଅପର ଭୋକ
ନିଜ ବାଣ୍ଟୁ କାଟି ଭୋକିଲା ମୁହଁରେ
ପରଷିବି ଦୁଇ ଢୋକ ।

ଛାତି ପାଇନାହିଁ ନିଶ୍ୱାସ ନେବାକୁ
ସହିବାକୁ ସବୁ ଦୁଃଖ
ଏହି ଛାତିରେ ମୁଁ ଧଇରଯ ଧରିଲେ
ଦେବି ସବୁରିଙ୍କୁ ସୁଖ ।

ହାତ ପାଇନାହିଁ ମୁଁ ଚାଳିବା ପାଇଁ
ହାତ ଟେକି ଦେବି ଦାନ
କଲମେ ବାଡ଼ିବି ମଥାର ଯେତିକ
ବଡ଼ ବଡ଼ ଚିନ୍ତାମାନ ।

ବେକ ପାଇନାହିଁ ହାର ପିନ୍ଧିବାକୁ
ପଡ଼ିଲେ ଅସଲ ଘାଟି
ଦେଶରକ୍ଷା ପାଇଁ ନିଜେ ଧରି ଛୁରୀ
ନିଜ ଗଳା ଦେବି କାଟି ।

ମୁଣ୍ଡ ପାଇନାହିଁ ବୁଦ୍ଧି କଉଶଳେ
ନିଜେ ରହିବାକୁ ସୁଖେ
ଚିନ୍ତାକର କଷ୍ଟ ଊଣା କରିବାକୁ
ଦୁନିଆରେ ଶୋକ ଦୁଃଖେ ।

ପାଟି ପାଇନାହୁଁ କଠୋର କଥାରେ
ଆଘାତ ଦେବାକୁ ମନେ
ଜିଭରୁ ଅମୃତ ବଚନ ନିଗାଡ଼ି
ମୋହିବ ଜଗତ ଜନେ ।

ଦାନ୍ତ ପାଇନାହୁଁ ଗ୍ରେବାଇ ଗ୍ରେବାଇ
ଖାଇବାକୁ କ୍ଷୀର ପୁର
ଦେହେ ବଳ ଥିଲେ ଦେଶର ବିପଦେ
ଦୁନିଆ ଆସିବ ଘୂରି ।

କାନ ପାଇନାହୁଁ ଗୀତ ଶୁଣିବାକୁ
ଶୁଣିବାକୁ ଦୁଃଖୀ ଡ଼ାକ
ଆଖି ପାଇନାହୁଁ ଖୁଣ୍ଟିବାକୁ ସଦା
ପର ଦୋଷାଦୋଷପାକ ।

ଭଲ କଥା ଦେଖି ଭଲେ ଚଳ ମୁହିଁ
କରିଯିବ ଭଲ କାମ
ଶେଷେ କହେ ବିଦ୍ଧ ନ ଚଳିବ କଲେ
ଖାଲି ତୁମେ କାମଦାମ ।

ପାଇଅଛ ମତେ ବହୁ ତପସ୍ୟାରେ
ଜୀବନ ସାର୍ଥକ କର
ସାରା ଏ ଜଗତ ଗୋଟିଏ କୁଟୁମ୍ବ
କାହାକୁ ନ ଭାବ ପର ।

ଘଡ଼ିମାଳ ବାଦ୍ୟ କଲେ ଚକଚକ
ସୁନ୍ଦର ଦିଶଇ ନାହିଁ
ଜୀବନ ସଫଳ ହୋଇଲେ ଅମର
ଭଲ ଭଲ କାମ ପାଇଁ ।



# ରଖିବ ସଦା ମନେ

ମରିବ ପଛେ　　　　ମାଗିବ ନାହିଁ
କରିବ ସବୁ ନିଜେ
ପଖାଳ ଶାଗେ　　　　ରହିବ ସୁଖେ
ନ ଲୋଡ଼ି ପର ଚିଜେ ।

ଆପଣା ବାହୁ　　　　ମୋ ଚଳୁଥାଉ
ନ ଚାହିଁ ଆନ ହାତେ
ମୁଁ କରିଯିବ　　　　ମୋ କାମ ଯାହା
ଭାବିବ ସାଥେ ସାଥେ ।

ଏହି ବୟସୁ　　　　ଶିଖିଲେ ବୁଦ୍ଧି
ଶିଖିଲେ ଭଲ ଜ୍ଞାନ
ଦୁନିଆ ଠାରୁ　　　　ପାଇବ ପୂଜା
ପାଇବ ସନମାନ ।

ମାଆଠୁ ମୋର　　　　ଜନମ ମାଟି
କୋଟିଏ ଗୁଣେ ବଡ଼
ତା ମାନ ପାଇଁ　　　　ଲଢ଼ିବ ମୁହିଁ
ଯେତେ ଯା ଆସୁ ଝଡ଼ ।

ବିପଦ ବେଳେ　　　　କରିବ ସେବା
ନ ମଣି କାକୁ ପର
ସଭିଏ ମୋର　　　　ଭଉଣୀ ଭାଇ
ସବୁଠି ମୋର ଘର ।

ଚାଲିବ ସଦା ସତର ବାଟେ　　　　ଚଳିବ ସତ ଧନେ
ଏତିକ କଥା ମରିବାଯାକେ　　　　"ରଖିବ ସଦା ମନେ ।



## ରବିବାରିଆ ଛୁଟି

ଛୁଟିଦିନ ସବୁ କରେ ନାହିଁ କେବେ ମାଟି
ବସେ ଚୁପଚୁପ୍ ନ କରି ବିବାକ ପାଟି
ଠାକୁର ଘରେ ମୁଁ ସକାଳୁ ଘଡ଼ିଏ ଯାଏ
ତାହା ପରେ ଯାଇ ଖାଏ ।

କାମ ଲଗିଥାଏ ଛଅଦିନ ଦିପଟାକେ
ଥକ୍କା ମାରିବାକୁ ରବିବାର ଆସି ଡାକେ
ଦାଲିଆ ଦିହେ ସେ ଭରିଦିଏ ନୂଆବଳ
ମନ ରଖେ ନିରମଳ ।

ସେଦିନ ନିଶ୍ଚେ ମୁଁ ବନ୍ଧୁଘର ବୁଲିଯାଏ
କେତେ ଯେ ମମତା ଆଦର ସେନେହ ପାଏ
ମଉସା ମାଉସୀ ମାମୁଁ ମାଇଁ ଅଜା ଆଈ
ଥାଆନ୍ତି ମୋ' ବାଟ ଚାହିଁ ।

ଭାଇ ଭଉଣୀଏ ଅଛନ୍ତି ଯେଉଁଠି ଯେତେ
ବାଡ଼ି ବଗିଚାରେ ମିଳିମିଶି ଖେଳୁ କେତେ
ନ ଥାଏ ସେଦିନ ଆଉ କିଛି ଖୁସି ଛଡ଼ା
ଭୁଲିଯାଉଁ ପାଠପଢ଼ା ।

ସବୁଦିନ ଠାରୁ ରବିବାର ମୋର ପ୍ରିୟ
ମନଇଚ୍ଛା ତା'ଠୁଁ ବିଶ୍ରାମ ସଭିଏ ନିଅ
କଟାଅ ଏ ଛୁଟି ସକାଳୁ ପ୍ରଭୁଙ୍କୁ ସ୍ମରି
ଅଛ ଯେତେ ମୋଓ ପରି ।



## ଆମ ବାପାଙ୍କ ଗାଳି

ଘରେ ସବୁଠାରୁ ବାପାଙ୍କୁ ଡରେ
ବାପାଙ୍କ ଆଦେଶେ କାମ ମୁଁ କରେ ।

ହସେ ନାହିଁ କେବେ ବାପାଙ୍କ ଆଗେ
ଚାହିଁ ଦେବେ ବୋଲି ସେ ମତେ ରାଗେ ।

# ମୁଁ କେମିତି ପିଲା

କରିଥିଲେ କିଛି  ମୁଁ ଦୋଷ କାମ
ମନେ ଭଜୁଥାଏ  ବାପାଙ୍କ ନାମ ।

ବାପାଙ୍କ ଗାଳିକୁ  ଭାରି ମୋ' ଡର
ଭୁଲ ଦେଖିଲେ ସେ  ହେବେ ପଥର ।

ଦେଇଥାନ୍ତି ମତେ  ସଦା ସେ ଆଖି
ମିଠା ଉପଦେଶ  ବୁଝାନ୍ତି ଡାକି ।

ନ ମାନି ଚାଲିଲେ  ତାଙ୍କର କଥା
ଉପୁଜିବ ନିଶ୍ଚେ  ମନରେ ବ୍ୟଥା ।

ନ ସହିଲେ ଆହୁଁ  ବାପାଙ୍କ ଗାଳି
କୁଳେ ଲଗାଇବ  କଳଙ୍କ କାଳି ।

ଆପଣା ଇଚ୍ଛାରେ  ଚାଲିଲେ ଆପେ
ଜଳିଯିବ ଭାଇ  ସେ ଅଭିଶାପେ ।

ତୁମେ ଭଲ ହେଲେ  ହେବେ ସେ ଖୁସି
ବାପାଙ୍କ ଗାଳିକୁ  ବସନା ରୁଷି ।

ବାପାଙ୍କର ଗାଳି  ବାପାଙ୍କ ଗୁଠ
ବତାଏ ଜୀବନେ  ଅସଲ ବାଠ ।

ନ ବାଜିଛି ସେହି  ବେତ ଯା' ଦେହେ
ଅମଣିଷ ସିଏ  ହୋଇଚି ସ୍ନେହେ ।

ବାପାଙ୍କର ଗାଳି  ଆଙ୍କୁଶି ମୋର
ମନେ ଦିଅଇ ସେ  ଆଘାତ ଜୋର ।

ବାପାଙ୍କ କଥାକୁ  ଥିଲେଟି ମାନି
ହେବ ମହାସୁଖୀ  ହେବରେ ଜ୍ଞାନୀ ।

ଦୋଷେ ତାଙ୍କ  ପାଦେ ଶରଣ ପଶ
ଅରଜିବ ଦିନେ  ବହୁତ ଯଶ ।



# କେମିତି କହେଁ ମୁଁ କେମିତି ଶୁଣେଁ

ଆବୁଡ଼୍ ଯାବୁଡ଼୍ କଥା ମୁଁ
କେବେ ଗପଇ ନାହିଁ
ଖାବ କହୁଥିଲା ବଖତେ
ଜିଭ ସମାଳ ଥାଇ ।
ଏଣ୍ଡୁ ତେଣ୍ଡୁ ଧଦା ବକଲେ
ମଥା ବିଗଡ଼ ଯାଏ
ଆଉ ଯେତେ ସବୁ ଚନ୍ତାକୁ
ମୁଣ୍ଡେ ବୁଝି ନ ପାଏ ।
'ଝୁଣ୍ଟି ମଡ଼େ ନାହିଁ କଥାରେ
କହେ ସିଧା ସଳଖ
ସତ କହେ ବୋଲି ମନେ ମୋ'
ଠିକେ ନ ଥାଏ ଦକ ।
ଶୁଣେ ମୁଁ ଚଞ୍ଚଳ କହଇ
ଧୀରେ ଅଳପ କଥା
ଚବର ଚବର ଶୁଣିଲେ
ମୋର ଘୂରାଏ ମଥା ।
ଶୁଣେ ଭଲକଥା ଯେତିକ
ମନେ ସାଇତି ରଖେ
ଗାଳିମନ୍ଦ ଅବା କୁକଥା
କେବେ ନାହିଁ ମୁଁ ବକେ ।
ସବୁବେଳେ କହେ ନିଜକୁ
ନଷ୍ଟେ ମୁଁ ସୁନାପୁଅ
ସାଥୀମେନେ କେବେ ଅକଥା
ଧରେ ନାହିଁ ମୋ ମୁହଁ ।
କେମିତି କହେ ମୁଁ କେମିତି
ଶୁଣେ ମନେ ପକାଇ
ମୋଓ ପର ତୁମେ ହୋଇବ
ଯେତେ ଭଉଣୀ ଭାଇ ।



# ଜଗତେ ସବୁ ମୋର

ସମସ୍ତେ ମୋର ଭଉଣୀ ଭାଇ
ସଭିଏ ବାପ ମାଆ
ଆପଣା ପର ନ ଭାବ କା'ରେ
ସୁଆଡ଼େ ପଡ଼େ ଯାଆ ।

ଗଢ଼ିଅଛନ୍ତି ବାପ ମା ଯିନା
ଯତନେ ମୋର ଦେହ
ପାଆନ୍ତି ଖୁସି ସଭିଏ ମତେ
ଦିଅନ୍ତି ପୂରା ସ୍ନେହ ।

ସବୁ ଦେଶକୁ ସବୁ ଘରକୁ
ନଜର ମୁହିଁ ମଣେ
ଭାବେଁ ମୁଁ ଖାଲି ହୋଇବ କାଲି
ବାପୁଜୀ ପରି ଜଣେ ।

ବୁଝିବ ସଦା ସବୁରି ଦୁଃଖ
ସବୁରି ମନବ୍ୟଥା
ସବୁରି ଲୁହେ ବତୁରି ଯିବ
ଶୁଖିଲା ଆଖିପତା ।

ସବୁରି ସୁଖେ ହୋଇବ ସୁଖୀ
ନାଚିବ ଆନନ୍ଦରେ
ସବୁରି ଖୁସି ଦେଖିଲେ ଖୁସି
ହେବ ମୁଁ ହୃଦୟରେ ।

ପରକୁ ନିଜ ନ କଲେ ପ୍ରଭୁ
କରିବେ ଯାତପର
ସଭିଏ ମୋର ବାପ ଓ ମାଆ
ସବୁଠିଁ ମୋର ଘର ।



# ଭଉଣୀ ଭାଇ ଶୁଣ

ଶୁଣ ହେ ଭଉଣୀ ଭାଇ
ମୋତେ ପର ହେଲେ ଜୀବନେ ଯାତନା
କେବେହେଁ ଭୋଗିବ ନାହିଁ ।

କଞ୍ଚା ମାଟିପିଣ୍ଡ ଏହି ବଖତରୁ
ଯେମିତ ପାରିବ ଗଢ଼ି
ସେହି ଗୁଣ ତୁମ ଟାଣ ହୋଇଗଲେ
ନ କାନ୍ଦିବ ଦୁଃଖେ ପଡ଼ି ।

ମୋ ପର ବୁଲିଲେ ମୋ ପର ବୁଲିଲେ
ମୋ ପର ପଢ଼ିଲେ ପାଠ
ପିଠିରେ ତୁମର ନ ବାଜିବ କେବେ
ଗୁରୁଙ୍କ କୋରଡ଼ା ଛାଟ ।

କି ଖୁସି ନୋହିବେ ବାପା ମାଆ ପାଇ
ତୁମ ପରି ପୁଅ ଝିଅ
ସଫା ରଖୁଥିଲେ ନିଜ ଜାମାପଟା
ସଫା ରଖୁଥିଲେ ଦାନ୍ତ ।

ସଭିଙ୍କର ସାଥେ ମନଟି ମିଳାଇ
ଚଳିଲେ ମୋହରି ଭଳି
ସବୁ ସୁନା ପରି ସୁଗୁଣ ଯେତେକ
ଉଠିବ ପଦାକୁ ଜଳି ।

ମୋ ପରି ଚଳିଲେ ବଡ଼ ହୋଇ କାଲି
ରଖିବ ଜଗତେ ଯଶ
ଭଲ ବାଟେ ଗଲେ ମନକୁ ଈଶ୍ୱର
ହେବେ ନିଶ୍ଚେ ତୁମ ବଶ ।

●

# ଆସ ଆସ ଭାଇମାନେ

ମଣିଷ ଖାଲି ଜନମ ହେଲେ
ନ ଯିବ ଦୁଃଖ
ଭଲେ ରହି ନିଜେ ପରେ
ନ ଦେଲେ ସୁଖ ।

ନିଜ ଗୋଡ଼େ ନିଜେ ଆମେ
ନ ହେଲେ ଠିଆ
ଛାଲି ମାରି ହସୁଥିବ
ସୁଖ-ଦୁନିଆ ।

ବଞ୍ଚିବା ହେ ଯେତେ ଦିନ
ଲାଗିବା କାମେ
ଫୁଲ ପରି ସମସ୍ତଙ୍କୁ
ମୋହିବା ଆମେ ।

ଆମେ ହେବା ବଡ଼ ନେତା
ବଡ଼ ସଇନ
ନ ମଣିବା କାକୁ ନୀଚ
କାହାକୁ ହୀନ ।

ଦେଶ ପାଇଁ ବଳି ଦେବା
ନିଜର ଦେହ
ପ୍ରାଣେ ପ୍ରାଣ ମିଳାଇ ହେ
ବାନ୍ଧିବା ସ୍ନେହ ।

ହେଲେ ଆମେ ବୀର ଧୀର
ସାଧୁ ସନ୍ନ୍ୟାସୀ
ଏ ମାଟିରେ ଓହ୍ଲାଇବ
ସରଗ ଆସି ।

ପଶୁ ପରି ଆପଣାକୁ
ନ ମଣି ଭାଇ
ଚାଲ ଏବେ କାନ୍ଧେ ମୋର
କାନ୍ଧ ମିଳାଇ ।

ଫିଟିଲାଣି ସରଗର
ସିଂହ ଦୁଆର
ଉଠିଲେଣି ନୂଆ ସୂର୍ଯ୍ୟ
କର ଜୁହାର ।

ଆଗ ପଛ ହୋଇ ଆସ
ଯେତେକ ସାନ
ଶୁଭ ଶଙ୍ଖ ବାଜେ ହେଇ
ଡେର ହେ କାନ ।



ସବୁର ପାଖରୁ
ପାଇବ ଆଦର
ହ୍ୱେ ଟିକି ସାନ·

ଟିକି ପ୍ରଶ୍ନର
ଟିକିଏ ଉତ୍ତରେ
ପାଞ୍ଚିଲେ ଜାଣ ।



# କାହିଁକି ତୁମେ ହସ

କାଖେ ଦେଲେ କେହି କୁତୁକୁତୁକାଳଆ
ହସ ତୁମେ କର କର
ହାବୁକା ମାରେ ସେ ହସର ଡେଉଁ
ଓଠର କବାଟ ଚିର ।

ମଳୟ ପବନେ ଗୋଲାପ ପାଖୁଡ଼ା
ତେଙ୍ଗୁ ପଡ଼ୁଥାଏ ଖସି
ଦେଖି ମାମୁଁ ଘର ମିଠେଇ ହାଣ୍ଡିଟି
ଓଠ ଯେତେବେଳେ ହସି ।

ପାଇଲେ ଯାତରୁ ଜେଜେଙ୍କ ହାତରୁ
ବେଲୁନ ବା ପେଁକାଳି
କେତେ ସରଗରେ ଫୁଙ୍କୁଥାଅ ତାକୁ
ହସି ହସି ମାର ତାଳି ।

ଟୁଆଁ ଟଇଁ ଗପ ମେଲ ଦେଉଁ ଦେଉଁ
ଜହ୍ନବୁଢ଼ୀ ଆଈ
ହସ ଚୁପି ଟାକ ରହିଥାଅ କଥା
ମଞ୍ଜିଟି ଶୁଣିବା ପାଇଁ ।

ହସ ପୁଣି ତୁମେ ଜନମ ଦିନରେ
ଦେଖି ନୂଆ ଜାମାପଟା
ଲୁଚେଇ ଲୁଚେଇ ଖାଉଥିଲେ କେବେ
ଘଉଡ଼ଲେ କୋଳ ଖଟା ।

ଖେଳ ସାଥୀଟିଏ ପଡ଼ିଲେ ହାବୁଡ଼େ
ଦଉଡ଼ିଟି ପିଜୁଳି ଧର
ଆଖି ପିଚୁଳାକେ ଚନ୍ଦମାଭଳିଆ
କଉ ତଳେ ହସ ଭର ।

କେବେ ଠୋଓ ଠୋଓ କେବେ କର କର
ମୃଚୁକ ମୃଚୁକ ହସ
ଯେଉଁ ହସ ଲାଗି ସାରା ଦୁନିଆଁଟା
ତୁମର ପାଖରେ ବଶ ।

ତୁମେ କାହୁଁ ପିଲେ ଚିଭଲ ପାରିବ
ତୁମର ହସର ମୂଲ
ଯେ ହସ ଟିକରେ ଝରି ପଡ଼ୁଥାଏ
ମାଟିରେ ସରଗ ଫୁଲ ।

ତୁମ ହସ ମୂଲ ସେଦିନ ବୁଝିବ
ତୁମେ ହେଲେ ବାପ ମାଆ
ଗୁଲୁ ଗୁଲୁ କଥା କୁଲୁ କୁଲୁ ହସ
କେଡ଼େ ଖୁସିଲାଗେ ଆହା !

କାହିଁକି ହସୁଛ ପଚାରିଲେ ପୁଣି
ଦୁଇଗୁଣ ତୁମେ ହସ
ଭଣି ଭଣି ମୁହଁ ଦେଖିଲେ ବା କାହିଁ
ନିଜ ବାଟେ ନିଜେ ଖସ ।

ଆପେ ତ କେବଳ ହସ ନାହିଁ ତୁମେ
ସାରା ଜଗତକୁ ହସା
ଯେତେ ଦେଖୁଥିଲେ ସେହି ହସଟିକ
ନ ଲାଗଇ ଆଖି ଘସା ।



# କାହିଁକି ତୁମେ କାନ୍ଦ

ସକେଇ ସକେଇ କାନ୍ଦୁଛ କାହିଁକି
ବାପା ଦେଲେ କରେ ଗାଳି
ବନ୍ଧର ମଲ୍ଲିଠ ଚରି ଦେଇଛ କି
ଜାମାରେ ଢାଳିଛ କାଳି ।

ଅବଧାନ ବେତ ବାଜିଲେ ପିଠିରେ
ଗ୍ରୁଡ଼ କେବେ ଭେମାରଡ଼
କେଏଁ କେଏଁ କେବେ ଲଗେଇଥା ସଦା
ଶ୍ରେଗଣେପେ ଘରେ ପଡ଼ ।

କଇଁ କଇଁ ପୁଣି କାନ୍ଦୁଥାଅ କେବେ
ମାଡ଼ ଦେଇଥିଲେ ମାଆ
ନ ମିଳିଲା ଚକ ଅଡ଼ ବସି ଖାଲି
ଭେଏଁ ଭେଏଁ ହେଉଥାଆ ।

ନ ବୁଝି କେଉଁଠି ଆପଣାର ଦୋଷ
କାହିଁକି ମୂଲଅ ମାଡ଼
କେଡ଼େ ବଡ଼ ପାଟି ମେଲା କରି ଦେଇ
ଆଖିପିଛୁଳା ଖାଲି ଝାଡ଼ ।

ହାତରୁ ମିଠେଇ ଝାମ୍ପି ନେଲେ କେହି
ମେଲିଦିଅ ତୁମେ ଆଁ ଆଁ
ବୋଉ ଯାଉଥିଲେ ମାମୁଁ ଘରେ ତୁମ
ଫାଟିପଡ଼େ ସାରା ଗାଁ ।

ଟିକେ ଅସମାନ ହେଲେ ନଜଭାଗ
ହୁଅ ତୁମେ ସଳ ସଳ
କଡ଼ା କଥା ପଦେ କହି ଦେଲେ କେହି
ମନେ ତା ସାଇତି ରଖ ।

ଚନ୍ଦର ମୁହଁକି ବାଦର ଢାଙ୍କଇ
ଥନ ଥନ ହେଲେ ଆଖି
ଟିଇକ କଥାରେ କାନ୍ଦିବାକୁ ଖାଲି
ରହିଥା ଯେମିତି ଟାକ ।

ରାଗ ହେଲେ ରାଗ ଆଖି ଲୁହ ସାର
ଓଠରେ ଫୁଟାଅ ହସ
ସବୁ ଶକତିକ ଠୁଳ କର ତୁମେ
କାନ୍ଦ ସାଙ୍ଗେ ବଳ କଷ ।

କାହିଁକି ବା କାନ୍ଦ ଆପଣା କାନ୍ଦଣା
ଆପେ ନାହିଁ ବୁଝିପାର
ବହକେ ପିନାଟି ଆଖି ମଳ ମଳ
ଲୁହତକ ଖାଲି ସାର ।

କଅଁଳ ଛାତିରେ ଟିକଏ ଆଘାତେ
ଆଖିରୁ ଝରିଛେ ଜଳ
ମନକୁ ତୁମର ବୋଧ ଦେବା ପାଇଁ
କାନ୍ଦଣାଟି ବଡ଼ ବଳ ।।



# କାହିଁକି ତୁମେ ରୁଷ

କାହିଁକି ତୁମେ ରୁଷ କହିଲ ଆରେ ପିଲେ
ଛୁଇ ଛୁ ଶୁଣ ଖାଲି ସୁଗୁଣ ଯେତେ ଥିଲେ ।

ଆଡ଼େଇ ଦିଅ ଘିଅ ଫୋପାଡ଼ ଦିଅ ପିଠା
ମୁହିଁକୁ କର ପିଚା ଯାଚିଲେ ଯେତେ ମିଠା ।

ଚୁଟିଶାଳୀରେ ନିଜେ ଧକେଇ ଦିଅ ଖଡ଼ି
ନ ହେଲା ବୋଲି ନୂଆ ତୁଚ୍ଛାରେ କାନ୍ଦ ଗଡ଼ି ।

ଝିପି ଝିପିଆ ମେଘ ଡିମ୍ବିଲି ଗୋଟି ପଣ
କହିଲେ କେହି ପଦେ ରୁଷୁଛ ତୁମେ କ'ଣ ?

ଉଦୁଉଦିଆ ଖରା ନିଶୂନ ନିଚ୍ଛୁଟିଆ
ପାଚିଲା କଇଁଆରେ ବୁଲଇ ଖେଳଖିଆ ।

ଶୋଇଲେ ଜରେ ତୁମେ ହୋଇବେ ମାଆ ଧନ୍ଦ
ଆପଣା ଭଲ କଥା ନ ବୁଝ ଆପେ ଯନ୍ଦ ।

କୁଣିଆଁ ଦାଣ୍ଡ ଘରେ କରୁଛ ଏଡ଼େ ପାଟି
ଧୋବିଲା ଜାମାପଟ! ହେଉଛି ଧୂଳି ମାଟି ।

ଝରକା କବାଟରେ ଗାରେଇ ଅଛ ଖଡ଼ି
ଭଉଣୀ ଯାଙ୍ଗେ କଳି କରୁଛ ଘଡ଼ି ଘଡ଼ି ।

ନୁହଁ ତ କୋଳି କୁଆ କଥାଟି ଭଲା ମାନ
ଏତିକି ବୁଝିବାକୁ ହୋଇ ନା ଏବେ ସାନ ।

କାହିଁକି ତୁମେ ରୁଷ କାହିଁକି ତୁମେ ରାଗ
ଅପା କି ଖାଏ ମାଛ ତୁମେ କି ଖାଅ ଶାଗ ?

ରୁଷିବା ଠାରୁ ବଳି ନାହିଁ ତ କିଛି ପାପ
ମଣିଷ ରାଗେ ନାହିଁ ରାଗନ୍ତି ବାଘ ସାପ ।

ରାଗିବ ଯେବେ ତୁମେ ରଗାଇ ପୁଣି ଆନେ
କିଏ ସେ ଦେବ ଖୁସି କୁହ ତ ମାଆ ପ୍ରାଣେ ।

କାହିଁକି ତୁମେ ରୁଷ କହିଲ ଆରେ ପିଲେ
ଛୁଇ ଘୁ ଶୁଣ ଖାଲ ହଜାରେ ଗୁଣ ଥିଲେ ।
ରୁଷିବ ଯେବେ ତୁମେ ପାଇବ ଅପମାନ
ତୁମଠୁଁ ଯିଏ ଶ୍ରେଷ୍ଠ ମୋଡ଼ିବେ ତୁମ କାନ ।
ମୁହଁରେ ଝିଙ୍କେ ଦୁଃଖ ଦେଖିଲେ ବାପା ମାଆ
କୋଳକୁ ଆଉଜେଇ କହିବେ ଆହା ଆହା ।
ରାଗିବା ଠାରୁ ବଳ ନାହିଁ ତ ବଡ଼ ବିଷ
ଜଳିଲେ ବୃଥା ରାଗେ କାହାର ଯିବ କିସ ?
ଆପଣା ରାଗେ ନିଜେ ଆପେ ହିଁ ଯିବ ଜଳି
ବୃଥାରେ ରାଗି ରୁଷି ନ କର ବୃଥା କଳି ।



## କାହିଁକି ଧର ଜିଦ୍

କୁହତ ପିଲାଏ ଜିଦ୍ ଧର କାହିଁ ପାଇଁ
ଜିଦ୍‌ଖୋର ବୋଲି ଡାକନ୍ତି ଭଉଣୀ ଭାଇ ।
ଭାଇନା! କୁହନ୍ତି ଅଦିନ କଖାରୁ ଟାଏ
ଚୂପ୍ ରହିଥାନ ନ ଥିବେ ଏସନ ଗାଏଁ ।
ବାପା କହୁଥାନ୍ତି କପାଳେ ନ ଥିଲେ ଭଲ
ଇମିତିକା ଭାଲୁ କରୁଥାନ୍ତି କଲବଲ ।
ଦୁନିଆ ତୁଣ୍ଡରୁ ରାଇଜଯାକର ଗାଳି
ତୁମରି ମୁଣ୍ଡରେ ଦେଇଥାନ୍ତି ସବୁ ଢାଳି ।
ଅମୁକ ଦରବ ଆଣିଦିଅ ଏଇଲାଗେ
ପିନ୍ଧା କାନି ଧରି ଅଡ଼ିବସ ମାଆ ସଙ୍ଗେ ।
କାହିଁକି ପିଲାଏ ଅଜଟ ହେଉଛ କୁହ
କାନ୍ଦିଲେ ବୁଢ଼ୀମା ପୋଛୁ ଦେଉଛୁ ତ ଲୁହ ।

ବାପା ଦେଉଛନ୍ତି ଭଲ ଜାମା ଭଲ ବସ୍ତ୍ର
ବୋଉ ଖୋଉଛନ୍ତି ଖଜା, ପିଠା, ଦୁଧ, ଦସ୍ତ୍ର ।

ଗୋଡ଼କୁ ତ ଦାଦା କଣି ଦେଇଛନ୍ତି ଯୋତା
ମାମୁଁ ଦେଇଛନ୍ତି କଲିକତା ଫୁଲ ଛତା ।

ଆଈ ଦେଇଛନ୍ତି ନାଲିଆ ବଅଲଟିଏ
କାହିଁରେ ତୁମକୁ ବୁଝାଇବ ଆଉ କଏ ?

ତୁମର ପର ତ ଅଛନ୍ତି ଆହୁରି କେତେ
ତୁମ ପରି ସେ କ ଶାସନ ହୁଅନ୍ତି ବେତେ ?

ସାଉଁଳା କଥାରେ ନଗ୍ନ ଛେଳଟି ପର
ତେଉଁଥାନ୍ତି ସଦା କେତେ ସାଙ୍ଗ ସାଥୀ ଧର ।

ଅଳପ କଥାରେ ନ ଯାଅ ପିଲାଏ ରୁଷି
ବୋଲଟି ମାନଲେ ବାପା ବୋଉ ହେବେ ଖୁସି ।

କନ୍ଦଟିକୁ ଗୁଡ଼ କଲେ ହସ ହସ ମୁହଁ
ସାରା କୁଟୁମ୍ବର ହେବ ତୁମେ ଗେହ୍ଲା ପୁଅ ।

ତୁମେ ହେଲେ ଭଲ ତୁମ ଗୁଣ ଦେଖି ସ୍ୱହିଁ
ତୁମ ଭଲ ହେବେ ତୁମର ଭଉଣୀ ଭାଇ ।

ସୁନା ମୁଣ୍ଡାଟିଏ ତୁମେ ଯେବେ ହୋଇ ଯାଅ
ମାଷ୍ଟ୍ରେ କହିବେ ଆରେ ବାଃ—ଆରେ ବାଃ ।



# କାହିଁକି ତୁମେ ନାଚ

ତୁମେ ରେ ଯେତେ ବାଳୁତ ଛୁଆ
ଘଡ଼ିକ ପାଇଁ ନ ପାର ବସି
ତୁମକୁ ଯେତେ ଆକଟ କଲେ
ପବନ ପରି ପଳାଅ ଖସି ।

ବରଷା ନାଚେ—ପବନ ନାଚେ
ଝରଣା ନାଚେ, ନାଚଇ ନଈ
ଖୁସିରେ ତୁମେ ନାଚିଲେ ସବୁ
ଧୂଳିରେ ଆସେ ସରଗ ବହି ।

ପକ୍ଷୀଟି ପରି ହାଲୁକା ମନେ
ଏକାଠି ନାଚ, ଏକାଠି ଉଡ଼
ଜୀବନ ତୁମ ଖେଳରେ ଗଢ଼ା
ଖେଳଟି ତୁମ ଜୀବନ ପ୍ରିୟ ।

ତୁମେ ରେ ଯେତେ ବାଳୁତ ଛୁଆ
ଥିରଟି ହୋଇ ନ ପାର ବସି
ଅଜାଣତରେ ପୋଖତ ହୁଏ
ମନକୁ ମନ ଦେହର କଷି ।

ସେ କସରତେ ନ ବୁଝେ ଝାଳ
ସେ ନାଚକୁ ଦେ ନ ଲାଗେ ଥକା
ସେହି ନାଚରେ ମନର-ନଈ
ହୁଏ ରେ ଟାଣ, ହୁଏ ରେ ପକା ।

ନାଚିବ ବୋଲି ତୁମେ ଲେ ପିଲେ
ନ ମାନ ଖରା ପବନ ପାଣି
ତହିଁରେ ଦେହ ଚିକଣ କରେ
ବିଧାତା ତୁମ ହୃଦୟ ଜାଣି ।

ତୁମର ବଳେ ତୁମେ କି ନାଚ
ନଚୁଛନ୍ତି ଆଜ ତୁମକୁ ଜଣେ
ଇଚ୍ଛାରେ ଯାʼଙ୍କ ଦରିଆ ନାଚେ
ନାଚଇ ଫୁଲ ବଗିଚ୍ଚ ବଣେ ।

ନ ବୁଝ ତୁମେ ତୁମର ନାଚ
ନ ବୁଝ ତୁମେ ଖୁସିର ମୂଲ
ଧୂଳି ମାଟିର ଏ ଖେଳ-ଘରେ
ତୁମେ ରେ ପ୍ରାଣ-ଖେଳନା ତୁଲ ।

ଖୁସିରେ ସବୁ ନାଚ ରେ ନାଚ
ଶୁଖାଅ ନାହିଁ ହସିଲା ମୁହଁ
ତୁମେ ହିଁ ଘର ପରଜାପତି
ମନକୁ ସଦା ମହୁରେ ଧୁଅ ।

ଡେଉଁଛି ପରି ନାଚ ରେ ନାଚ
ହରଣ ପରି ଡଆଁ ରେ ଡଆଁ
ତୁମରି ଖୁସି ଅମୃତ-କୁଣ୍ଡ
ପିଅନ୍ତୁ ଆନେ—ତୁମେ ବି ପିଅ ।



## କାହିଁକି କର ଚୋରି

ଚୋରି କରିବାଠୁ ନାହିଁ କିଛି ବଡ଼ ପାପ
ଶିଖାଇଲେ ଗୁରୁ ଶିଖାଇଲେ ମାଆ ବାପ ।
ବୁଝାଇଲେ ଅଜା ସଞ୍ଜୁଆ ଭଜନ ଗାଇ
ଚୋରଠାରୁ ବଳି ମହାପାପୀ ଆଉ
ଏ ତିନି ଭୁବନେ ନାହିଁ ।

ଯତନ ସାଇତା    ତୁମର ଖେଳନାଟିଏ
କେହି ଆସି ଯେବେ    ତୁମ ଅଜାଣତେ ନିଏ
ଭାବିଲ, ତୁମର    ମନକୁ କପଟ କାଟେ
ଭଲ କି ଲାଗଇ    ସେ ଦିନଟି ତୁମ
ଖେଳ ବୁଲ ପାଠଶାଠେ ?

ଯେ ଦରବ ପାଇଁ    ଲୋଭେଇଛୁ ତୁମ ଆଖି
ବେଳ କାଳ ଦେଖି    କୁହ ତା ବୋଉକୁ ଡାକି ।
ଦେବାକୁ ଯଦି ତା    ଅରାଜି ହୁଅନ୍ତି ନନା
ହେବ ନାହିଁ ବୋଲି    ଆପଣାକୁ ଆପେ
କରିଦିଅ ସଫା ମନା ।

ବାପା ଯା' କହନ୍ତି    ସେ ତୁମ ମଙ୍ଗଳ ପାଇଁ
ଏ କଥାଟି ମନୁ    କେବେ ଭୁଲିଯିବ ନାହିଁ ।
ଆଜି ଯା' ନ ଦେଲେ    କାଲି ତା' ଦେବେ ସେ ଆଣି
ଚେଷ୍ଟ ଚୋରିଠାରୁ    ହେ ପିଲାଏ ତୁମେ
ଦୂରେ ରୁହ ଜାଣି ଜାଣି ।

ଲୁଚି ଓ ଲୁଚେଇ    ତୁମେ ଚୋରିକର ସିନା
ସେ ଚୋର ଧରନ୍ତି    ଆଉ ଜଣେ ତୁମ ବିନା ।
ସଂସାରେ ଯାହାଙ୍କୁ    କେହି ଦେଖିପାରେ ନାହିଁ
ତୁମେ ଯାହା କର    ସେହି ଭଗବାନ
ଦେଖନ୍ତି ସବୁଠିଁ ଥାଇ ।

ଜାଣି ଶୁଣି ଯେବେ    ନ ଛାଡ଼ିବ ଚୋରି ଯମା
କ୍ଷମାମୟ ପ୍ରଭୁ    ନ ଦେବେ ତୁମକୁ କ୍ଷମା ।
କୁଳେ କାଳ ବୋଲି    ଅରଜିବ ଅପଯଶ
ନ କହିବେ କେହି    ଘରକୁ ଆସ, ବା_
ପାଖେ ଟିକେ ବାବୁ ବସ ।

କା’ ବାଡ଼ି ପିଜୁଳି, କମଳା, କାକୁଡ଼ି, ମକା
ଛିଣ୍ଡେଇଛ ଯେବେ ସେହି ଗଛମୂଳେ ପକା ।
ଠାକୁରଙ୍କୁ ଡାକ ହାତ ଯୋଡ଼ି ମନେ ମନେ
ଆଖି ଦେବ ନାହିଁ ପଡ଼ିଛି ବହିରେ
କେବେ ଆଉ ପରଧନେ ।

କହିଛନ୍ତି ଗୁରୁ ଚୋରି ସବୁଠାରୁ ପାପ
ବୁଝେଇ ଅଛନ୍ତି ଘରେ କେତେ ବୋଉ ବାପା ।
ବାର ବାର ପରି ଖାଇ କରିଛନ୍ତି ମନା
ଉଠେଇବ ନାହିଁ ପଡ଼ିଥିଲେ ବାଟେ
ବିକଟେ ବି ଚିରା କନା ।

ଚୋରି କରୁଥିଲେ ଯେତେ ଲୁଚି ଛପି କରି
ଚୋର ଚୋର ବୋଲି ଦିନେ ପଡ଼ିଯିବ ଧରି
ନିଜ ବାପ ମାଆ ନ ଶୁଣିବେ ଶୋଷ ଶୋକେ
ପରି ମାଛ ପରି ତୁମକୁ କେବଳ
ଦେଖିବେ ପଡ଼ଶା ଲୋକେ ।

କୁହ ତୁମେ ସଦା ଖର ଭଲ ପିଲା ଆମେ
ଦିନେ କେ ଖରାପ ଶୁଣେ ନାହିଁ ଆମ ନାମେ
ଆମେ ଯେତେ ସବୁ ସ୍ୱାଧୀନ ଭାରତ ଛୁଆ
ଚୋରି ଛାଡ଼ିଦେଇ ଋଷି ବାଲ୍ମୀକି
ପାଲଟିବୁ କେତେ ନୂଆ ।



# ନ ମାନ କଥାଁ କଥା

କଥା ନ ମାନିବା ତୁମର ଅସଲ ରୋଗ
ଦେଉଛନ୍ତି ଛୁଟିକା ମନାସେ ସେଥିଲାଗି ଭୋଗ
ଜ୍ୟୋତିଷଙ୍କୁ ବୋଉ ଜାତକ ଦେଖାନ୍ତି ନେଇ
ଗୁଣ୍ଡିଏ ପଇସା ଦେଇ ।

ନିତ ଗାଳି ଖାଇ କଥା ମାନ ନାହିଁ କିଆଁ
ଖାଇନା ପିଟନ୍ତି, ବାପା ଯେ ହୁଅନ୍ତି ନିଆଁ
ଏତେ ମାଡ଼ ଗାଳି କେମିତି ହଜମ କର
ଆଖିରୁ ବୁହାଇ ଝର ।

କରିବାକୁ ଯାହା ମନା ହୋଇଥାଏ ବେଶି
ସେଇ କାମ ଲାଗି ହୋଇ ଯାଉଥାଅ ପେଷି
କାନ୍ଥେ କଳା ଲେସ—ଗଛରୁ ଛିଣ୍ଡାଅ ଫୁଲ,
କ୍ଷଣକରେ ସବୁ ଭୁଲ ।

ହସିବାକୁ ପୁଣି କହିଲେ ଉଠିବ କାନ୍ଦ
ସତ ପଚାରିଲେ ମିଛଟି କହିବ ଫାନ୍ଦ
ବଅସ କହିଲେ ଉଠିଯିବ ସେହି କ୍ଷଣି
ସବୁକୁ ଓଲଟା ମଣି ।

ସବୁବେଳେ ଖାଲି ଓଲଟା ସ୍ୱଭାବ ତୁମ
ଶୁଅନା କହିଲେ ଆଖିକୁ ଆସିବ ଘୁମ
ଚେଇଁଥା କହିଲେ ସେଇନା ପଡ଼ିବ ଶୋଇ
ଏ କି ତୁମ ବଦଖୋଇ ।

କହିଲ ପିଲାଏ ନୁହେଁ କି ଏକଥା ସତ
ବନ୍ଧୁଘର କେତେ ନ ହୁଅନ୍ତି ବରକତ
କଦବାପ୍ୟେ କେବେ ଯାଇଥିଲେ ତୁମେ ବୁଲି
ସେ ଘରେ ପଡ଼ଇ ହୁରି ।

ଢେଚନ୍ଦଅ କାହ୍ନା କାଚ ଗିଲସଟି ଯାଇ
ଆଙ୍ଗୁର ବୋତଲ ସଫା କରନ୍ଦଅ ଖାଇ
ସେ ଘର ଘରଣୀ ତୁମକୁ ବିଦାୟ ଦେଇ
ବସେ ମୁଣ୍ଡେ ହାତ ଦେଇ ।

ଆସେ ଇସ୍କୁଲୁ କେତେ ଯେ ତାଗଦା ଚିଠି
ପଡ଼ୋଶୀଏ ପୁଣି ହୋଇଥାନ୍ତି ଖିଟି ଖିଟି
କା' ଜାମା ଚିରଥା—ଫଟେଇଥା କା'ର ମୁଣ୍ଡ
ଘରେ ଶୁଭେ ପାଟି ତୁଣ୍ଡ ।

ଅଶାନ୍ତ ନଆଁରେ ସନ୍ତୁଳିଲେ ତୁମେ ପ୍ରାଣ
ବାପ ପର ମାଆ ହୋଇଯିବେ ଦିନେ ଟାଣ
ଭଲ ମନ୍ଦେ ତୁମ ନ ହୋଇବେ କେହି ସାହା
କହିବାକୁ ଟିକେ ଆହା ।

ନିଜ ଦୋଷ ନିଜେ ନ ପାରିଲେ ତୁମେ ବୁଝି
ମନେ ମନେ ଡାକ ଠାକୁରଙ୍କୁ ଆଖି ବୁଜି
ଦେବେ ସେ ତୁମକୁ ଭଲ ବୁଦ୍ଧି ଭଲ ମନ
ହେବ ତୁମେ ଗୁଣି ଧନ ।

ତେଣୁ ହେ ପିଲାଏ ମୋ ଟିକି କଥାଟି ମାନ
ବଡ଼ଙ୍କ କଥାକୁ କଲେ ତୁମେ ଗୁରୁଜ୍ଞାନ
ବାପା ତ କହିବେ ସାବାସ୍‌ରେ ଆମ ପୁଅ
ଶୁଖିବ ମାଆଙ୍କ ଲୁହ ।



# କାହିଁକି ପଢ଼ ପାଠ

କାହିଁକି ପିଲାଏ ପଢ଼ ପାଠ
ଅବଧାନ ହାତୁଁ ଖାଅ ଛାଟ
ତୁମ ପଢ଼ା ଖାଲି ଜ୍ଞାନ ରାଇଜକୁ
ଖାଲି ଡିପ ଅଙ୍କାବଙ୍କା ବାଟ ।

ଚାଟଶାଳୀ ଘରେ ଖଡ଼ି ଧରି
ପେଡ଼ି-ପଣା ବଣ ସାପ ପରି
ଛୁଟିପିଟି ହେଲେ ଶୁଣ ପଦ୍‌ଟୋଳା
"କମଳ ଲୋଚନ ଶ୍ରୀହର ।"

କହାଁ ତୁମେ ପଢ଼ ଜାଣ କି ହେ
ବୁଦ୍ଧି-ସରୁ ସୂତା ଖିପ୍ରେ ଖିପ୍ରେ
ଜ୍ଞାନ-ଜାଲ ବୁଣି ହେଲେ ତୁମେ ଗୁଣୀ
ବାପାଙ୍କର ଖୁସି ଦେଖେ କିଏ ।

ପହିଲ ପାଠର ପକ୍କା ନଅଁ
ଅ ଆ ଠାରୁ ହ କ୍ଷ
ସେତକ ପଢ଼ିଲେ 'ମା' 'ରମା' 'ଘର'
କାହିଁକି ଉଠେଇ ହାଅ ହାଅ ।

ଗଣିତର ମୂଳ ପଣିକିଆ
ସେ ଖୁଣ୍ଟ ନ ହେଲେ ଘରେ ଠିଆ
ସୁଲୁକା ପବନେ ଭୁଷୁଡ଼ି ପଡ଼ିବ
ହେଉ ହେଉ ନୂଆ ଗୃହଛୁଆ ।

ସାହିତ୍ୟ ଭୂଗୋଳ ଇତିହାସ
ମେଲବାକୁ ହବ ବାର ମାସ
ସେ ଝରକା ସବୁ ଫିଟିଲେ ମିଳିବ
ବାହାର ପବନ ଖସ୍ୱାସ ।

ସେ ଘର ଗୃହଟି ତୁମ ମନ
ଖୋଲିଲେ ପାଇବ ବହୁ ଧନ
ଦୂରରୁ ଆସିବ ତୁମର ପାଇଁକି
କେତେ ପରଶଂସା ସନମାନ ।

ନ'ଜାଣ କହିଁକି ପାଠ ପଢ଼
ପାଠ ପଢ଼ି କାଲି ହେବ ବଡ଼
ଅନ୍ଧ ପରି ହେଲେ ଅନ୍ଧାର ଭିତରେ
ଅଣ୍ଡାଳି ହୋଇବ ହଡ଼ବଡ଼ ।

ଗୁରୁଙ୍କୁ ଦେଖିଲେ ବାଟେ କାହିଁ
ଘରେ ଶେର ପରି ଲୁଚ ନାହିଁ
ଆଜି ଜର କାଲି ଝାଡ଼ା ବାହାନାରେ
ନ ବୁଲ ପଦାରେ ମିଛେ ଧାଇଁ ।

ଆଜି ରବିବାର କାଲି ଛୁଟି
ନ ପଢ଼ିଲେ କା'ର ହୁଏ ତ୍ରୁଟି
ପାଠକୁ ଠକିଲେ ନିଜ ଜୀବନଟା
ଯାଏ ସିନା ବୃଥା ଚଷୂକୁଟି ।

ପଢ଼ିଲେ ଶୁଣିଲେ ଦୁଧ ଭାତ
ନ ପଢ଼ିଲେ ବେକେ ଠେଙ୍ଗା ନାତ
ମୂର୍ଖେ ଅନାଦର—ପଣ୍ଡିତର ପାଦେ
ଯୋଡ଼େ ଏ ଜଗତ ଦୁଇ ହାତ ।



# ଧୂଳିରେ କିଆଁ ଖେଳ

ଧୂଳିରେ କିଆଁ ଖେଳ ହେ ପିଲେ ଧୂଳିରେ କିଆଁ ଖେଳ
ଧୂଳି ଖେଳରେ କଟଇ ତୁମ ସକାଳ ସଞ୍ଜବେଳ ।

ଧୂଳିରେ ଗଢ଼ ଦେଉଳ ଘର ଧୂଳିରେ ରାନ୍ଧ ଭାତ
ଧୂଳିରେ କର ପୋଖରୀ କୂଅ ଧୂଳିରେ ଖୋଳ ଗାତ ।

ଧୂଳିରେ ଶୁଅ ଧୂଳିରେ ବୁଲ ଧୂଳିଆ ତୁମ ଦେହ
ଧୂଳିର ଏଇ ଅବିର ପିଲେ ସବୁଠୁଁ ତୁମ ପ୍ରିୟ ।

ଦିଅନ୍ତି ବାପା ଦାମିକା ଜାମା ବଜାରୁ ବାଛି ବାଛି
କହନ୍ତି ବୋଉ ହାଲିଆ ମୁହିଁ ନଇଁତ କାଚି କାଚି ।

ଧମକ ଡରେ ଯେ ଦିନ ତୁମେ ଧୂଳିକି କର ପର
ସପନ ଦେଖ ରାତିରେ ତୁମେ ସେ ଠିକ ଧୂଳି ଘର ।

ତୁମରି ପରି ଯେତେକ ପିଲା ସବୁରି ମନ ଏକା
ମନ ମଉଜେ ମାରୁଥା କୁଦା ଧୂଳିରେ କାଟି ରେଖା ।

ଧୂଳିରେ ଫୁଟି ରଙ୍ଗ ବେରଙ୍ଗ ଧୂଳିର ସବୁ ଫୁଲ
ଧୂଳିରେ ସଦା ଉଡ଼ିଇଁ ବୁଲୁଥା ପରଜାପତି ତୁଲ ।

ମାଆର କୋଳୁଁ ଧୂଳିମା' କୋଳ ଆରାମ ବେଶି ଲାଗେ
ସେ ଲାଗି ଅବା ହେଉଥା ଲେସି ସେ ଧୂଳି ସାଙ୍ଗେ ସାଙ୍ଗେ

ସେ ବୁଝେ ତୁମ ହୃଦୟ' କଥା ସେ ବୁଝେ ତୁମ ମନ
ତୁମେ ହିଁ ତାର ସନ୍ତାନ ସବୁ ତୁମେ ତା ପ୍ରିୟ ଧନ ।

ଗଦାକୁ ଗଦା କଣ୍ଢେଇ ଦେଲେ ଧୂଳି ହିଁ ମନେ ପଡ଼େ
ବୋଉ କହନ୍ତି ଅସନା ଟୋକା ଧୂଳିରେ ସଦା ଗଡ଼େ ।

ବାପା କହନ୍ତି ନକଲ ଘରୁ ଶୁହିଁ ହେଉନ ଢଙ୍ଗ
ଭିତରେ ତୁମ ମାରଇ ଡାକ ଧୂଳି-ଧୂସର ଦିଅଁ ।

# ବଡ଼ ଠାକୁର କିଏ

ଗଛ ଭିତରେ ଓସ୍ତଗଛ
ପିଲା ଭିତରେ ସୁଧୀର ଯିଏ
ଫୁଲ ଭିତରେ ପଦ୍ମଫୁଲ
ମିଠା ଭିତରେ ଆଖୁର ରସ
ମାସ ଭିତରେ ଶ୍ରେଷ୍ଠ ମାଘ
ଜଳର ମଧ୍ୟେ ଇନ୍ଦ୍ରଜଳ
ଗଛ ଭିତରେ ଅଶିଣ ଜନ୍ଦ୍ର
ଘରର ମଧ୍ୟେ କଳା ତୁଳସୀ
ପଶୁ ଭିତରେ ଗୋମାତା ସାର
କାଠ ଭିତରେ ଚନ୍ଦନ କାଠ
ତେଜ ଭିତରେ ସୂରୁଯ ତେଜ
ଯାତ୍ରା ମଧ୍ୟେ ତୀର୍ଥ ଯାତ୍ରା
ନଈ ଭିତରେ ଗଙ୍ଗାନଈ
କୁଟୁମ୍ବ ମଧ୍ୟେ ସବୁଠୁଁ ବଡ଼
ସେଥିରେ ତୁମ ବଡ଼ ଠାକୁର
ତାଙ୍କର ବରେ ବଡ଼ ଦିନକୁ
ଗୋଟିଏ କଥା ରଖିବ ମନେ
ସୁଖ ଦୁଃଖରେ ରୋଗ ଶୋକରେ
ପୃଥିବୀ ଠାରୁ ମାତା ହିଁ ବଡ଼
ଫୁଲଟି ପରି କଲ୍ୟାଣ ତାଙ୍କ
ଠାକୁର ମଧ୍ୟେ ବଡ଼ ଠାକୁର
ବାତ୍ସଲ୍ୟର ଦୁଇଟି ଧାର
ମାନିଲେ ଚଳ ତାଙ୍କର କଥା
ଜଣିବ ତୁମେ ସାରା ଦୁନିଆ

ମାଛ ଭିତରେ ରୋହି
ସଭିଙ୍କି ପାରେ ମୋହି ।
ଫଳରେ ସାର ଆମ୍ବ
ପିଠାରେ ଭୂଇଁ କମ୍ବ ।
ବସନ୍ତ ଋତୁଗଣେ
ନୈମିଷ ଯେ ବଣେ
ଆଲୁଅ ମଧ୍ୟେ ଖରା
ନକ୍ଷତ୍ରେ ଧ୍ରୁବତାରା ।
ପକ୍ଷୀରେ ଙ୍ଖେଚଲ
କ୍ଷେତରେ ଧାନବିଲ ।
ତୃଣ ଭିତରେ ଦୁବ
ସବୁଠୁଁ ଜାଣ ଶୁଭ ।
ଦେଉଳେ କୋଣାରକ
ବାପ ମା ମ ନରଖ ।
ତାଙ୍କର ପାଦ ସେବ
ବଡ଼ ମଣିଷ ହେବ ।
ବାପଠୁଁ ବଡ଼ ମାଆ
ତୁମର ସେହି ସାହା ।
ଆକାଶ ଠାରୁ ବାପ
ବଜର ଅଭିଶାପ ।
ସେ ବାପ ମାଆ ଦୁହେଁ
ବନ୍ଦେ ସେ ଦୁଇ ମୁହେଁ ।
ହୋଇବ ତୁମେ ବଡ଼
ଜଣିବ ତୁମେ ଗଡ଼ ।

●

## କାହିଁକି କର କଳି

ମାଞ୍ଚି ବୋଲି          ଭଉଣୀ ଭାଇ
ଏକୁ ଆରକେ ବଳି
ଖାଇଲା ବେଳେ          ଶୋଇଲା ବେଳେ
କାହିଁକି କର କଳି ।

କଳିଟି କଲେ          ରାଗରେ ଖାଲି
ରକତ ଉଠେ ତାତି
କି ସୁଖ ମିଳେ          ଭ୍ରମର ଭଳି
କଳହ-ଯୁଦ୍ଧେ ମାତି ।

ଚିଡ଼ନ୍ତି ମାଆ          ପିଟନ୍ତି ବାପା
ରାଗନ୍ତି ଭାଇ ଅପା
ଘୋଳେଇ ହୁଏ          ସବୁର ପାଟି
ସେ କଳି କରି ରଫା ।

ଏକ ସୂତାରେ          ଗୁନ୍ଥା ଯେ ତୁମେ
ଜାତି ଜାତିକା ଫୁଲ
ଏକ ମା' ପେଟ          ଭଉଣୀ ଭାଇ
ଏ କଥା ନାହିଁ ଭୁଲ ।

ଟିକି ପ୍ରାଣର          ଶରଧା ସ୍ନେହେ
ସରଗ ହୁଏ ଘର
ଖେଳ-ମେଳରେ          ହସ ଖୁସିରେ
ଥିଲେଟି ପରସ୍ପର ।

ସବୁରି ପରେ          ଅଛ ଯେ ବଡ଼
ସାନଙ୍କୁ କର କ୍ଷମା
ଆଉ ସେ ସାନ          ତୁମରି ସଙ୍ଗେ
ଲଗିବେ ନାହିଁ ଯମା ।

ଆଉଁସି ଦେଲେ ତାଙ୍କର ପିଠି
ଧରିବେ ତୁମ କାନ
ଚଳିବେ ଅତି ନମ୍ରଭଦ୍ର ଭଳି
ତୁମରି ବୋଲ ମାନ ।

ଉଠେଇ ନବ କାଖକୁ କେହି
ପଡ଼ିଲେ ଟିକେ ଝୁଣ୍ଟି
ବୋଉ ଯା' ଦେବେ ସମାନ କରି
ଖାଇବ ବାଣ୍ଟି କୁଣ୍ଟି ।

ମାଇଲେ ସାନ ତାଙ୍କର କାନ
ମୋଡ଼ିବ ନାହିଁ ପିଲେ
ସେ ଶ୍ରେଷ୍ଠ କାଲି ହୋଇବେ ସାହା
ପଛକୁ ତୁମ ଥିଲେ ।

କଳଟି ଗୁଡ଼ ମେଳଟି ବାନ୍ଧ
ଖେଳରେ ସଦା ମାତ
ନାନା ବାଇଆ ସଙ୍ଗୀତ ଗାଇ
ହାତରେ ଛନ୍ଦ ହାତ ।



## କାହିଁକି ତୁମେ ରୋଗା

ହାତ ଗୋଡ଼ ସରୁ ପେଟଟି କଖାରୁ
ଗଣିହୁଏ ଗୁଡି ହାଡ଼
ଶୋଚା ଢଢ ଚମ କାହିଁକି ତୁମର
ଆଖିରେ ଆଖିଏ ଗାଡ଼ ।

ଆଜ ହୋମେଓପାଥି କାଲି କବିରାଜ
ପରଦିନ ଡାକ୍ତରୀ
ଯେତେ ଅଉଷଧି କେହି ତ ଅସଲ
ରୋଗଟି ନ ପାରେ ଧରି ।

ଅଣ୍ଡା ଚୋପା ନ ଦେହେ ମାଡ଼ିବସେ ଜର
ଫଳ କେଉଁଦିନ
ନାକ ତଳେ ଧାର ଛଣ୍ଡି ମୁଁହେ କଫ
କାନରେ ପୂଜର ଘର ।

ମାସେ ଗୁରୁଦିନ ଗୁହାଳୀ ପିବାରେ
ଗୁ.ରୁଜା ହୁଅନ୍ତି ଖପା
ତାଙ୍କର ହୁକୁମେ ସେଦ୍ଧି କେତେଦିନ
ଦାଢ଼ି ମୁଣ୍ଡ ହୁଏ ସଫା ।

ଦାନ୍ତକୁ ପିଲାଏ ନଜର ନ କଲେ
ତୁମକୁ କରେ ସେ ପର
ନେଲେ ତା ଯତନ ବାର ରୋଗେ ତୁମେ
ନ ହୋଇବ ଜରଜର ।

ବେଳ କାଳ ଜଗି "ଖାଇଲେ" ପିଇଲେ
ଖେଳିଲେ ପଢ଼ିଲେ ପାଠ
ରୋଗ ଆଉ ତୁମ ଦେହେ ପଶିବାକୁ
ନ ପାଇବ ଟିକେ ବାଟ ।

ବଇଦଙ୍କ ପାଦ ନ ପଡ଼ିବ ପୁଣି
ଭୁଲ୍‌ରେ ବି ତୁମ ଘରେ
ଗଧ ରୋଗୀ କନ୍ଧ ମାଷ୍ଟରେ କେବେହେଁ
ନ ଚଢ଼ିବେ ତୁମ ପରେ ।

ଦେହକୁ ମନକୁ ସଫା ରଖିଥିଲେ
ହୋଇ ସଦା ମନ ଖୁସି
ବନେ ବନେ ରୋଗ ବାଟ ଉଣ୍ଡି ଉଣ୍ଡି
ପଳେଇବେ ସବୁ ରୁଷି ।

ସାଙ୍ଗ ସାଥୀ ଆଉ        ତୁମକୁ କେବେହେଁ
ନ କହିବେ ଛୁଇ ଛୁଇ
ଭଲ ହୋଇ କପାଁ        ନ ବଢ଼ିବ ତୁମେ
ଯେତେଦିନ ଅଛ ଜୀଇ ।

ଆଜି ସିନା ଅଛ        ଛୋଟ ଟୁଆ ତୁମେ
କାଲି ସାଜ ଦେଶ ନେତା
ଠାଣ ଧନ୍ଦ ଠାଣ        ମୁହଁରେ ଝାଡ଼ବ
କେତେ ବଡ଼ ବଡ଼ କଥା ।



## ସବୁଠୁଁ କଏ ମିଠା

ତୁମେ ଯା'କୁ ଭାବ        ସବୁଠଉଁ ମିଠା
ନ ମିଳେ ତା ଆଖୁ ଦୋରୁଏ
ସେ ମିଠା ନ ଥାଏ        ଜିଲପି ଲଡ଼ୁରେ
ରବଡ଼ ବା ଦୁଧ କୋରୁଏ ।

ସେ ମିଠା ସୁଆଦ        କେଡ଼େ ସୁଖକର
ଚଖା ନ ଯାଏ ତା ଜିଭରେ
ଯା' ଭାଗେ ନ ପଡ଼େ        ସେ ସୁଖ ତହିଁରୁ
ଜଣେ ଅଧେ କେହି ଥିବ ରେ ।

ପିଇଛ ପଇଡ        ମିଶିର କନ୍ଦର
ବାଟି ବାଟି ସରବତ ହେ
ମାଆ ସ୍ନେହ ପରେ        କେହି ଲାଗଇ କି
କହିଲ ପିଲାଏ ସତ ହେ ।

କେଡ଼େ ମିଠା ସତେ        ମାଆର ଶରଧା
କହି ତା ନ ହୁଏ କଥାରେ
କି ଦୁଃଖ ତୁମର        ମନକୁ ନ ବାଧେ
ପଡ଼ିଲେ ସେ ରୋଗ ଦଶାରେ ।

ମାଆର ଆଉଁସା ମିଠା କଥା ଭାଷା
କଣି ହୁଏ ନାହିଁ ଟଙ୍କାରେ
ଆଜି ଯେତେ ସ୍ନେହ ନାଆଁକୁ ମାତର
ଥାଏ ତା ଉପର ଢଙ୍କାରେ ।

ଆମ୍ବ ପରି ତାର ଉପର ସୁନ୍ଦର
ଭିତର ବି ରସରସିଆ
ସବୁରି ଜୀବନେ ସେ ସେନେହ କା'ର
ନ ହୁଅଇ ପ୍ରାଣ ଘଷିଆ ।

ତା ପରି ନାହିଁ କେ ଏ ତିନି ଭୁବନେ
ବୁଝିବାକୁ ମନ କଥାଟି
ପାଦ ତଳେ ତାର ନଇଁଯାଏ ତେଣୁ
ସାରା ଜଗତର ମଥାଟି ।

ଯେତେ ମନ ଦୁଃଖ ମନେ ଥାଏ ତୁମ
ତାକୁ ହିଁ ଦେଖିଲେ ପାଶୋର
ବଦଳେଇଟି ପରି ପାଖେ ପାଖେ ତା'ର
ହେଉଥା ନସର ପସର ।

ଏତେ ମିଠା ଯିଏ ଚଖାଏ ତୁମକୁ
ମିଠା ଭାବ ରଖ ତାହାଠି
ମରତେ ପିଇଛ ମାଆର ସେନେହେ
ଶୁଣିଲ ଅମୃତ ନାଆଁଟି ।

ସବୁଠାରୁ ମିଠା କଏ ସେ ଏଥର
ବୁଝି ପାରିଲ ତ ପିଲାଏ
ମାଆ ମନେ ସୁଖ ଦେବାରେ ଯେମିତି
ନ କରିବ କେବେ ଢିଲା ହେ ।



## କି କଥା କହେ ଫୁଲ

ଜାଣ କି ପିଲା ତୁମରି ପରି
କି କଥା କହେ ଗଛରେ ଫୁଲ
କେଡ଼େ କଅଁଳ କେଡ଼େ ସୁନ୍ଦର
କହିଲ କଏ ଅଛୁ ତା' ତୁଲ ।

ବଡ଼ି ଭୋରରୁ ଉଠଇ ସିଏ
ସଞ୍ଜିଆ ହେଲେ ମୁଦଇ ଆଖି
ଭଅଁର ସାଙ୍ଗେ ଖେଳିବ ବୋଲି
ଅନେଇ ଥାଏ ତା ବାଟ ଚାକି ।

ଦେଖିଛ କେବେ ମୁହଁରେ ତାର
ନିରାଶା କିବା ବିରସ ଭାବ
ସବୁଠି ଖେଳେ ସବୁଠି ଦୋଳେ
ଯେଉଁଠି ତାକୁ ଦିଅ ବା ଠାବ ।

ତୁମକୁ ଦେଖି କହଇ ସିଏ
ଛୁଅଁ ନା ମତେ ଅନାଅ ଖାଲି
ଛିଣ୍ଡେଇ ଡେମ୍ଫ ନ ଦିଅ ମାରି
ଫୁଟିବ ମହି ପାଖୁଡ଼ା କାଲି ।

ମକଚି ମତେ ଫୋପାଡ଼ ଦେଲ
କାନ୍ଦିବ ଝୁରି ମୋ ଗଛ ମାଆ
ପାଖୁଡ଼ା ତଳେ ରଖିଛି ମହୁ
ଚୁଚୁମି ଯେତେ ଖାଇବ ଖାଅ ।

ଦେଖୁଛ ମତେ ଯେନ୍ତାକୁ ମେନ୍ତା
ଫୁଟିଛି କେଡ଼େ ମୁଁ ସାନ ସାନ
ରାଗେ ମୁଁ ନାହିଁ ରୁଷେ ମୁଁ ନାହିଁ
କାନରେ କା'ର ନ ଦିଏ କାନ ।

ତୁମର ପଦ ଧୂଳିରେ ଗଢ଼ା
ନ କରେ ମଳି ମୋର ଏ ଦେହ
ପଦେ କେ ମତେ ନ ଦିଏ ଗାଳି
ସବୁରି ଠାରୁ ପାଏ ମୁଁ ସ୍ନେହ ।

ସଙ୍ଗାତ ମୋର ପରଜାପତି
ଜୀବନୁ ବଳି ଶରଧା କରେ
ଏକାଠି ଖେଳୁ ଏକାଠି ନାଚୁ
ଦୋହଲି ବଣ ବଗିଚା ଘରେ ।

ବାସନା ମୋର କେଡ଼େ ମଧୁର
ମହୁଟି ମୋର ଜୀବନ ଧନ
ଛୁଣ୍ଡାଇ ମତେ ଦବାକୁ ଦଳି
କମିତି ବଳେ ତୁମର ମନ ।

ତୁମର କାନ ଦେଲେ କେ ମୋଡ଼ି
ତୁମକୁ ପିଡ଼ା କମିତି ବାଧେ
ମୋ ଦେହେ ତୁମେ ଛୁଇଁଲେ ଚିପି
ବିକଳେ ମୋର ହୃଦୟ କାନ୍ଦେ ।

ଫୁଟେ ମୁଁ କଣ୍ଟା ଅରମା ପଙ୍କେ
ଫୁଟେ ମୁଁ ବାଡ଼େ ବଗିଚା ବଣେ
ସବୁଠିଁ ଝରେ ମୋ ହସ-ମହୁ
ମୋ ପରି କାହିଁ ଦେଖିଛ ଜଣେ !



# କଅଣ କହେ ଜହ୍ନ

ଆକାଶେ ହସଇ ଜହ୍ନ
ଦେଖ ତ ସଭିଏଁ କି କହେ ତୁମକୁ ଶୁଣିଛ କି ଦେଇ ମନ ।
ସରଗର ମଥାମଣି
ପିଲାଠାରୁ ବୁଢ଼ା ଖୁସି ହୁଅନ୍ତି ସେ ମୁହଁଟି ଦେଖିଲା କ୍ଷଣି ।
କିରଣଟି କେତେ ଥଣ୍ଡା
ଅଜାଡ଼ି ଦିଏ ସେ ସବୁରି ମନରେ ଅମୃତ କି ହଣ୍ଡା ହଣ୍ଡା ।
ସେ କହେ ମୋ ନାଆଁ ଜହ୍ନ
ଏକୋଇର ବଳା ବଣିକେସନ ମୁଁ ମୋ ମାଆର ଗଣ୍ଠି ଧନ ।
ମୋ ନାଆଁ ସର୍ଗ ଶଶୀ
ମତେ ଚୁହିଁଦେଲେ କାହଣା ପାସୋରି ଉଠ ତୁମେ ସବୁ ହସି ।
ମୁହେଁ ସିନା ମୋର କାଳି
ସବୁରି ଉପରେ ଦିଏ ଚକ ଚକ ରୂପା କିରଣ ମୁଁ ଢାଳି ।
ନ ପଡ଼ନ୍ତି କେତେ ତାରା
ମତେ ଦେଖିବାକୁ ପାଗଳ କାହିଁକି ଜାଣ ଏ ଦୁନିଆ ସାରା ।
ପକ୍ଷେ ଜୀଏ ପକ୍ଷେ ମରେ
ତଥାପି ମୋହର ଉଜଲ ମୁହଁଟି ସଭିଙ୍କି ଅଥୟ କରେ ।
ଛନ୍ଦ-ଝଲମଲ ରାତି
କେତେ ରାଗ ରୁଷା ଭୁଲିଯାଅ ତୁମ ପାଇ ମୋ ପରିକା ସାଥୀ ।
ଡାକ ତୁମେ ମାମୁଁ ମତେ
ମତେ ଦେଖି ଦେଖି ନିଜକୁ ପିଲାଏ ଗଢ଼ିବ କି ସେହି ପଥେ ।
ମୁଁ ରାତି ମଥାର ଟିପ
ତୁମେ ସେହିଭଳି ଗୋଟିଏ ଗୋଟିଏ କୂଳର ଉଜଳ ଦୀପ ।
ରୂପେ ପଛେ ଖୁଣ ଥାଉ
ପିଲାଏ ତୁମର ଗୁଣର ସୁନାମ ଦେଶେ ଦେଶେ ବ୍ୟାପିଯାଉ ।

ପୂଜା ହୁଏ ଗୁଣ ପାଇଁ
କୋଟି ତାରା ପରି ବଞ୍ଚି ରହୁଥିଲେ କେହୁ ପଚାରବେ ନାହିଁ ।

ମୋହ ପରି ଥିଲେ ଏକ
ରଖିଯିବ ତୁମେ କାଳ କାଳ ପାଇଁ ସାରା ଜଗତର ଟେକ ।



## କାହିଁକ ପଚଡ଼ ଖରା

ଜାଣିଚ କ ଖରା ପଡେ଼ କାହିଁକ
ଶୁଣିଥିଲ ଥରେ ମନେ ନାହିଁ କ ?

ସୂରୁଯ ଦେବତା କରଣ ସିଏ
ସବୁରି ଦହରେ ଜୀବନ ଦଏ ।

ଖରା ହେଲେ ତୁମେ ପୋଷାକ କାଢ଼
ଟାଣ କରେ ଫୁଙ୍ଗା ଦହର ହାଡ଼ ।

ଘାଣ୍ଟି ହେଉଥିଲେ ଓଷଦ ବଣ
ରୋଗ ଭଲ କରେ ସେହୁ କରଣ ।

କଅଁଳ ଖରାରେ ଖେଳଚାଲ୍ ବସି
ମୁହଁଟି ଦଶଇ ସରଗ ଶଶୀ ।

ଘରେ ତୁମ କଛୁ ଥାଉ ନ ଥାଉ
ଝରକାରେ ଖରା ଆଲୁଅ ପାଉ ।

ମଟି ଅଗଣାରେ ଲମ୍ଭାଇ ସପ
ଖରା ପୁହିଁ ପୁହିଁ ମାରୁଥା ଗପ ।

ନ ପାଉଥା ଯେବେ ଲହୁଣୀ ଘିଅ
ଅଦେଖାରେ ତାହା ଖରାଠୁଁ ନଅ ।

ଶାଗଭାତେ ବଞ୍ଚେ ମୂଲିଆ ଋଷୀ
ଖରା ଯୋଗେ ସୁଖୀ ସେ ବାରମାସୀ ।

ଝରା ହୋଇ ହୋଇ ତା ଦେହସୁହା
ହାତ ଗୋଡ଼ ତାର ପାଲଟେ ଲୁହା ।

ଝର ଝର ହେଲେ ବୁହାଏ ଝୋଲ
ଶୁଖିଯାଏ ନଈ ପୋଖରୀ ନାଳ ।

ସେହି ପାଣି ଶୋଷି ବରଷା କରେ
ବିଲ ବଣେ ଫୁଲ ଫସଲ ଭରେ ।

ମାଟିରେ ପଡ଼ିଲେ ମେଘ ଅସରା
ଝରିଆଡ଼େ ମେଲେ ଶୋଭା ପସରା ।

ଖରାଟି ନ ଥିଲେ ବୃକ୍ଷ ତା-ପାଟି
ମରୁ ପରି ଶୋଇ ଥାଆନ୍ତା ମାଟି ।

ପହିଲି ଖରାଟି କି ଚକମକ
ବସୁଧା କହେ ମୋ ଜୀବନ ରକ୍ଷା ।

ମାଘମାସ ଶୀତ ବାଘର ବଳ
ଖରା ତଳେ ସବୁ ଗଦ୍ଦ କମ୍ବଳ ।

ଶୀତେ ଯେବେ ଦେହ କାତର ଯାଏ
ଖରା ଲାଗେ ଏକା ଅମୃତ ପ୍ରାୟେ ।

ଖରା କହେ ଆରେ ପିଲାଏ ଶୁଣ
ସମସ୍ତଙ୍କୁ ମୁହିଁ ମଣେ ସମାନ ।

ଧନୀ କୋଠା ଘୁଚେ ଗରିବ ଘରେ
ସମାନ ଭାବେ ମୁଁ କିରଣ ଢାଳେ ।

ଭୋରୁଅରୁ ଆସେ ମୁଁ ସଞ୍ଜରେ ଯାଏ
ନିୟମ ଲଙ୍ଘନ ମୋର ନଥାଏ ।

ନିୟମେ ଚାଲିଲେ ବୋଲାଇ ବଡ଼
ଧନେ ନକ୍ଷେତ୍ର ତୁମେ ଜଣିବ ଗଡ଼ ।



## ଅସଲ ଦେବତା କିଏ

କେଉଁଠି ଥାଆନ୍ତି ଦିଅଁ
ଜାଣିଛ କି ପିଲାଏ
ଜାଣିଛ ଜାଣିଛ କହୁ
ମାରୁ ନାହିଁ ଚାଲ ହେ ।

ଦେବତା ଦେଖିଛ ତୁମେ
ଦେଉଳର ଭିତରେ
ଗନ୍ଧଗନ୍ଧ ଶୁଭେ ଯହିଁ
ହରେ ରାମ ଗୀତରେ ।

ନିତି ପ୍ରତି ବାଜେ ଶଙ୍ଖ
ହୁଏ ସଞ୍ଜ ଆଳତି
ଚନ୍ଦନ ତୁଳସୀ ସାଙ୍ଗେ
ବାସେ ଚମ୍ପା ମାଳତୀ ।

ଦେବତା ନାହାନ୍ତି ସେଥି
ପୂଜା ପାଏ ମୂରତି
ଜୁହାର ହେବାକୁ ମନେ
କରିଥାଏ ଆରତି ।

ଭୋଗ ଲାଗେ ସେଠି ଯେଉଁ
ପଞ୍ଚାମୃତ କାକରି
ସବୁରି ଆଖିକି ସିଏ
ଦିଏ ଖାଲି ଡାକରି ।

ଦେବତା କହନ୍ତି ଖାଲି
ଯୋଗେ ବନ୍ଧା ନୁହେଁ ମୁଁ
ଦୁଃଖେ ଯେଉଁ ଡାକେ ମତେ
ତା' ପ୍ରାଣକୁ ଛୁଏଁ ମୁଁ ।

ଦେବତା ଅଛନ୍ତି ଲୁଚି
ଜଳେ ସ୍ଥଳେ ଆକାଶେ
ସବୁ ଗଢ଼ି ଥୋଇଛନ୍ତି
ଆମ ସୁଖ ସକାଶେ ।

ଅଛନ୍ତି ସେ ଲୁଚି ପ୍ରତି
ଧୂଳିକଣା ଭିତରେ
ଗଛ ଲତା ଜୀବଜନ୍ତୁ
ସଭିଙ୍କର ଚିତ୍ତରେ ।

ଦୁଃଖୀର ସେ ସାହା ବୋଲି
ନାମ ଦୀନବନ୍ଧୁ ହେ
ଦୁଃଖୀର ଯେ ଦୁଃଖ ବୁଝେ
ନ ଛାଡ଼ନ୍ତି କାନ୍ଧ ହେ ।

ଗରିବ ଡାକ ଯେ ଶୁଣେ
ସେହି ଅଟେ ଦେବତା
ବାଟର ଭିକାରି ସେବା
ପାଇଁ ମନ ହେବ ତା' ।

ଦୁଃଖୀ ରଙ୍କି ମନ ବୁଝି
ଦେଲେ ତୁମେ ଦାନ ହେ
ତାଙ୍କ ପାଖେ ହେବ ବଡ଼
ତୁମେ ସାନ ସାନ ହେ ।

ଅନ୍ଧ ଗ୍ଲେଠା କୁଜା ଦେଖି
ନ ହୋଇବ ଖଟେଇ
ବଂଶ କଚ୍ଛ ମାଗୁଥିଲେ
କାନଚିକୁ ପଚେଇ ।

ମଣିଷରେ ଦସ୍ତାକ୍ତ ଯେ
ସେହ୍ନ ବଡ଼ ଠାକୁର
ଯେତେ ଧର୍ମ, ଜ୍ଞାନ, ମାର୍ମ
ସବୁ ତାର ସ୍ବକର ।



## ବାହ୍ବାରେ ବାଃ

ବାହ୍ବାରେ ବାହ୍ବାରେ ବାହ୍ବାରେ ବାଃ,
ସେମେଣ୍ଟା ମୃତ୍ତିକ ଶୀତଳ ଗୃ !
ହାକୁମ ଘଇରେ ଏଇଠି ର୍'
ବନରେ ଡ଼ାଆଣୀ କାହାଣୀ କ' ।
ଅଥଳ ପାଣିକୁ ଦଦଗ ନା',
ବାହ୍ବାରେ ବାହ୍ବାରେ ବାହ୍ବାରେ ବାଃ !

ହାଣ୍ଡିକଳା ବଦ୍ଧ—ଗଉର ନାଁ,
ଫାନେ ରୁଟି ଖାଇ ଛକୋଶ ଧାଁ ।
"ଆସ କଏ ନବ"—"ମୁଁ ହେ ମୁଁ"
ଦବାକୁ ପଡ଼ଲେ ସେ ଯହିଁ ଛୁ ।
ଏ ଘର ମାଉସୀ—ସେ ଘର ମା,
ବାହ୍ବାରେ ବାହ୍ବାରେ ବାହ୍ବାରେ ବାଃ ।

ପବନେ ବାଉଁଶ ଡ଼ାକଇ କେଁ,
ନୂଖୁର୍ ଚକୁଳ ଫୁଲଇ ଚେଁ ।
ଜଭ ଅଠା ଅଠା ମାରୁଚ କ ?
ମହୁ ଗୋନେଇକ ଚୋବ୍ରାଣି ପି' ।
ନ ପଢ଼ି ପଣ୍ଡିତ ଆପଣା ଗୁଁ
ବାହ୍ବାରେ ବାହ୍ବାରେ ବାହ୍ବାରେ ବାଃ ।
ଦୁଃଖରେ ଡାକବୁ···ସୁଖରେ ଥା',
ଛନ୍ଦା ବନା ମଥା ମାରୁଚ ଝାଁ ।
ବନ୍ଧେ ଯେବେ ରମ୍ଭା କୁଣ୍ଡିଆ ଘା',
ବହୁଆଡ ବଣେ ଶୋଇବୁ ଯାଆ ।
ମୋ ଘଣେ ଟିକେ ଭଲ ତୁ ପାଆ,
ବାହ୍ବାରେ ବାହ୍ବାରେ ବାହ୍ବାରେ ବାଃ ।

ଘାସ ଶିଖା ପର ଥିର ଭୁ ହ'
ହଜନ୍ତ ସ୍ୱରକୁ କହରେ ଧ' ।
କାମ ଥାଉଁ ଥାଉଁ ନଅକୁ ଛ,
ପାଟି ବାନ୍ଧ ଦେଇ ଦୁଆରେ ବ' ।
ଭୋଜନରେ ହାତ ଗୃଲଛୁ ବାଁ,
ବାହାରେ ବାହାରେ ବାହାରେ ବାଃ ।
ଧୋ'ରେ ବାଇଆ ଧୋ'ରେ ଧୋ,
ବାବୁଲ୍ କାନ୍ଦୁଛୁ ଭୋଓରେ ଭୋ' ।
ଯେଏଁ କାଳଟିଏ ହାତରେ ଦେ,
ପୁଣି କେତେ ହସ ନଉଛୁ ନେ ।
ତାକ ଧିନା ଧିନ୍ ତାଧିନ୍ ତା,
ବାହାରେ ବାହାରେ ବାହାରେ ବାଃ ।



## ସା, ରେ, ଗା, ମା

ସା ରେ ଗା ମା ପା ଧା ନି ସା
ଚୂଡ଼ା ସଙ୍ଗେ ଦହିକୁ ମିଶା ।
ରାଗିଣୀଟି ବଡ଼ ମଜା
ମୁଣ୍ଡମୁଣ୍ଡୁ ଡାଳ ଗଜା ।
ଶୁଣିଲେ ସେ ମିଠା ତାନ
ଗାଈଁ ସାପ ଡେରେ କାନ ।
ନିଦ ଠଉଁ ବେଶୀ ନିଶା
ସା ରେ ଗା ମା ପା ଧା ନି ସା ।
ଗାଗା ମାମା ପାପା ପାପା
ବୋଉ ଖୁଡ଼ୀ ଦାଦା ବାପା ।
ଶୁଣି ମନ ହୁଏ ଭୋଳ
ଯାଏ ଥମି ପାଟି ଗୋଳ ।
ପୁସି ସଙ୍ଗେ ଖେଳେ ମୂଷା
ସା ରେ ଗା ମା ପା ଧା ନି ସା ।

ଭଲପାଏ ହାରମାନ
ରଙ୍ଗମଞ୍ଚ-ରାଜଧାନୀ ।
ଆଖଡ଼ା ତା' ଝଠିଘର
ବଇଁଶୀ ତା' ସହୋଦର ।
ଗୋସିବାପ ତା' ରେଡ଼ିଓ
କହେ "ଜେଜେ ! ତମେ କହୋ !"

ମୁଣ୍ଡ ପରେ ମହାରଜା
ଗ୍ରାମଫୋନ ଝୋକା ଅଜା ।
କେନ୍ଦ୍ରବତି ତା'ର ବାପ
ଦୋଷାଦୋଷ ସବୁ ମାଫ ।
ଢୂବ ପ୍ରିୟ କଣା ଦାସ
କହେ ପାଶେ ଘୁଞ୍ଚି ଆସ !
ବଗୁଲ୍‌ଟି ବଡ଼ ଦାଦା
ବେଳେ ବେଳେ ହଏ ବାଧା ।
ମାମୁଁ ଝାଞ୍ଜ ମୃଦଙ୍ଗ
ବଷ ମଣେ ତାଙ୍କ ସଙ୍ଗ ।
ବଡ଼ ପୁଅ ଏସ୍‌ରାଜ ତା'
ଦୁହିଁଙ୍କର ଏକ କଥା ।
କଣ୍ଠାଙ୍କ ତା' ଗେହ୍ଲା ନାତି
ତବଲାଟି ପ୍ରାଣ ସାଥୀ ।
ଗୁରୁଦେବ ବୀଣା ତାର ।
ପାଦେ ଶହେ ନମସ୍କାର ।

ମହୁରୀ ତା' ସାନ ଶଳା,
ଢୋଲେ କହେ "ଦୂର୍ ପଳା
ଧିକ୍ ଥାରେ ସ୍ୱର ନାସା"
ସା ରେ ଗା ମା ପା ଧା ନ ସା ।
ସା ରେ ଗା ମା ବର୍ଣ୍ଣବୋଧ
ପଢେ ବନ୍ଧୁ-ଗଦ୍ୟ-ପଦ୍ୟ ।

ବର୍ଣ୍ଣ ଦେଖାଇଲେ ବାଟ
ଧରେ ଶିଶୁ ବଡ଼ ପାଠ ।
ସା ରେ ଗା ମା ଭଗବତ
ଆଗରେ ତାଙ୍କୁ ଦଣ୍ଡବତ ।
ତାହା ପରେ ରମାପୂଣ
ଗୀତା ଭରତ ପୁରାଣ ।
ସା ରେ ଗା ମା ଆଗ ଲୋଡ଼ା
ପଛେ ଗୀତ ଥୋଡ଼ା ଥୋଡ଼ା ।
ପରେ ପରେ ସବୁ ସିନା
ଆଦ୍ୟେ ଲୋଡ଼ା ସା ରେ ଗା ମା ।



## ମଥୁର ଦାସ

"ଶୁଣିଲ ଟିକେ ହୋ ମଥୁର ଦାସ,
ଅଣ୍ଟାରେ ଏ କ'ଣ ଆପୁ ନା ନାସ !

ନାସ ହୋଇଥିଲେ ଟିପାଏ ଦଅ,
କସମସ ଆଜ ଲାଗୁଛି ବଡ଼ ।"

କହିଲା ମଥୁର "ନାସ ଏ ନୁହେଁ,
ପାନ ଖିଲ ଖଣ୍ଡେ ଖୋସିଛି ମୁହେଁ ।

ନାସର ଅଛୁ ନା ଇମିତ ଗୁଣ ?
ଗୃହିଁ ନାହିଁ ହନେ ପିତା କ ଲୁଣ ।

ବୁଢ଼ା ହେଲ ଏଇ ପାନ ଅମଳେ,
କାମ ଗୃଲେ ଖିଲେ ଥିଲେ ଏ କଳେ ।

ହାଟେ ନେଲବେଳେ ପରିବା ବକ,
କାଖେ ଯାକଥାଏଁ ବଟୁଆଟିକ ।

ପାନ ବୃଙ୍ଗ ଡ଼ିଟି ମୋ ଜୀବଧନ,
ତା' ବିନା ଅନ୍ଧାରି ତିନ ଭୁବନ ।"

କହିଲ ମଜସା !
ବଣ୍ଟୁଆରେ ଏବେ
ଶିଇକେ ଏଣିକ
ଅଭ୍ୟାସ କରିକ
ସମଝିଲେ ତା'ର
କଣିବଣି ତାକୁ
ଯାନ ବଡ଼ ନୁହେଁ
ଜଣା ପଡ଼େ ନାହିଁ
ଏଥିରେ ତ ନାହିଁ
ଏ ଅମଳେ କଥାଁ
ନଅଟି ରସରୁ
କ ଯୁବା କ ବୁଢ଼ା
ତହିଁ ପରବନ
ଦାପେ ଯାଉଥିଲେ
କହିଲ ଝେଟେଇ
"ଦେଲ ଦେଲ ତେବେ
କମିଶ ମହିମା
କରିବ ଏଣିକ
ତେର କଥା କାଲ
ଦଉଡ଼ିଆ ଖଟେ
ନାସର ଦୋକାନ
ଶେଷଟା କଟିବ
ବୁଢ଼ାକୁ ଧରିଛୁ
ବଢ଼ିବ ତା' ଯୋଗେ
ଗୁଙ୍ଖିଲେ ନଷ୍ଟପୁ
ହାଟେ ଗୁଲୁ ହେବ

"ହେଲଣି ବୁଢ଼ା,
ଡ଼ୋରକୁ ଗୁଡ଼ା ।
ଧରିବ କାଣ,
ଶୁଙ୍ଘ ନା ନାସ !
ଉତ୍ତର ଗୁଣ
କର ହେ ଗୁଣ ।
ସାମାନ୍ୟ ନଶା,
ଟାଣେ ପଇସା ।
ବେଶି ଖରଚ,
କରୁଚ ପଚ୍ଛ !
ଗୋଟିଏ ରସ,
ସ୍ତ୍ରୀ ପାଖେ ବସ ।"
ଗହିର ପାଟେ
ଅଲଣା ହାଟେ ।
ମଥୁର ଦାସ,
ଶିପାଏ ନାସ !
ବୁଝିଲେ ତା'ର
ସେହି ବେପାର ।
ଭାବଛୁ ମନେ
ବ୍ରତ ନଜନେ ।
ହାଟରେ ଦେଲେ
ସୁଖରେ ହେଲେ !"
ନାସର ଭୂତ,
ଧନ ବହୁତ ।
ଧରିବ ନଶା,
ନୂଆ ବେଉସା ।

"ଶୁଙ୍ଘିଲ ଝିପାଏ ମଥୁର ଦାସ
କମିତ ବାସୁଛୁ ବମ୍ବେଇ ନାସ !"

ନାସ କରଟକୁ ନମୋନମଃ
ଛିଙ୍କି ଛିଙ୍କି ବୁଢ଼ା ନାକେଦମ୍ ।

"ପାନ ଖିଲ ପର କଏ ସେ ହବ
ଚହ୍ନିରେ ଯେ ଛନ୍ତ୍ର ପଞ୍ଚୁ ପାଣ୍ଡବ ।

ଏକା ଦ୍ରୁଜପଦୀ ରହିଚ ନାସେ
କେଭେ ମୁଁ ନ ଯିବ ତାହାର ପାଶେ ।"

କରଟ କହୁଚ ଚରଟି ଷ୍ଟହିଁ
"ଭାଗ୍ୟ ଭଲ, ଫାନ୍ଦେ ପଡ଼ିଲୁ ନାହିଁ !

ନାଶ କର ଏହି ନାସର ମାୟା
କଲଣି ବାୟା ।
ଦୁନଆକୁ ଆଜ

ଅମଳ ମାଚରେ ପାଜଙ୍କ କାଜ
ଶ୍ରେଷ୍ଟ ଭାବ କେବେ ନ ହେବୁ ରାଜ !

ପଡ଼ିବା ତା' ପାଲେ କେଡ଼େ ସହଜ
ଛାଡ଼ିବାକୁ ରାଧେ ଗୋବନ୍ଦ ଭଜ ।"

●

## କାଞ୍ଜି କହାଣ

ଏଣୁ କାଞ୍ଜିପାଣି ଗଲୁ ଖରେ;
ପଶିଲୁ ଓଡ଼ିଶା ଘରେ ଘରେ ।
ପିଇ ପେଟେ ପେଟେ କାଡ଼ି ଢୋଲ
ଦେଲେ ହୁଳହୁଳ ହରିବୋଲ ।

କହ କହ ମତେ କହ କାଞ୍ଜି
ମୂଳାକୁ କାହିଁକ ଏତେ ରାଜ !
ଶୀତ ସାଙ୍ଗେ ତୋର କାଳ କାଳ
ଜଡ଼ାଚେଲ ଆଉ ମେଣ୍ଢାବାଳ ।

ଚୋର ସେଏଁ ସେଏଁ ଶୁଣି ଆରେ,
ବାଡ଼ ଭ୍ରୂରୁଷଙ୍କ ଡାକ ମାରେ ।
ପୋଇ କହେ—'ମଲା ମୁଁ ନାହିଁ,
ଏତେ ଖୁସିବାସି କାହିଁପାଇଁ !'

ଆଖି ଠାରେ ଯେବେ କଞ୍ଚାଲଙ୍କା
ଛାତିଆକ ଦାମ ଦଶ ଟଙ୍କା ।
ରସୁଣ ବଖାଣେ ହସି ହସି—
'ପିଇଯା ସଙ୍ଗାତ ପେଟେ କଷି ।'
ଧନଆଁ ପତର କହେ ଥାଇ—
'ଝୁଅଟ ଖୋଷଣି ଫିଟା ଭାଇ !'

ଆହା କ ବାସନା ମହ ମହ,
ଗୃହିଁ ଦେଲେ ଜଭ ଲହ ଲହ ।
ଦୁଃଖୀ ରଙ୍କିଙ୍କର ଗଣ୍ଠି ଧନ
ସେଥି ଚହ୍ଲି ଥାନ୍ତି ଚୋର ମନ ।
ଫୁଲ ଦୁବ ଦେଇ ଯତନରେ
ବନ୍ଦେଇ ଆଣନ୍ତି ଘରେ ଘରେ ।

ଗ୍ରେର ପର ଆସେ ମାଘ ଖରା,
କାଞ୍ଜି ପିଇବାକୁ ଧରାପରା ।
ଟଙ୍କ ଉଠିଗଲେ ଗୁଣ ନାଶ
'କେ ପିଇବ ବେଗେ ଆସ ଆସ ।'
ଓଡ଼ିଆ ସଙ୍ଗାଳ ବୃଦ୍ଧି ବଳ
ସବୁ ଭିଟାମିନ୍ ଚୋର ଛଳ ।
ଖଟିଲ ଟନକ୍ କବରାଜ,
ଚୋ ମହିମା ଦେଶେ ଯାଉ ବାଜ ।



ଗଣ ୨

# ଗୁପୁଡ଼ଆ କାଲ

ମଳୁ ପର ବୁଲେ ଦାଣ୍ଡେ    ଦେଦେ ନାହିଁ ହାଲ
ଭେଣ୍ଡିଆ ଭମର, ନାଆଁ    ଗୁପୁଡ଼ଆ କାଲ ।

ଗୁକର ରହିବା ପାଇଁ    ବୁଝେ ଘରେ ଘରେ
ଗ୍ରେର ଘବ ଦାରୁ ଛାକୁ    ଘଉଡ଼ାନ୍ତ ଖରେ ।

ଯାଉ ଯାଉ ହାବୁଡ଼ଲା    ବାହାଘର ସାହି
ପେଟ ଯାଉଅଛୁ ଫାଟି    ଭୋଜ ଭାତ ଖାଇ ।

କୁଆ ରଡ଼ବାକୁ ଏଣେ    ପଡ଼ବାକୁ ଚାଳ
ସେଇଠି ଫିଟିଲା ଚାର    ମୁଦଲା କପାଳ ।
ବୋଲ ହାକ କରବାକୁ    ଟହଲଆ ପଣେ
ରଖ ରଖ ଲୋକଟିକୁ    ଡାକ ଦେଲା ଜଣେ ।

ପଗୃର ବୁଝିଲେ ନାଆଁ    ଗୁପୁଡ଼ଆ କାଲ
ଛଅ ମାସ ଜରେ ଶେଠା    ଢଣେ ମୁହଁ ଗାଲ ।

ପଲଉ ପାପୁସ ପୁରୀ    ବଡ଼ ମାଛ ଝୋଳ
ଅମାଲୁ ଦମାଲୁ ସହ    ଦେଖି ହେଲା ଭୋଳ ।

ମଣବଦ ଘଡ଼, ଘର    ହେଲା ଶୂନଶାନ
ପେଟ ଫାମ୍ପି ମୁହେଁ ଉଠେ    ହାକୁଟି-ଚୋଫାନ ।

କାହିଁ ଯିବ ପୋଖରୀ ମୁଁ    ଯିବ ଏବେ କାହିଁ
ହଗ ବେଳେ ବାଘ ଭୟ    ଥାଏ କରେ ଭାଇ !

କେଏଁ ହେଲା ବାଡ଼ ହାର    ବାଲ୍ଟି ଖଡ଼ ଖଡ଼
ଘର ସାଗ 'ଗ୍ରେର' 'ଗ୍ରେର'    "ଉଠ, ଧାଇଁପଡ଼ ।

ହେଇ ଗଲା, ବୃଲ ଗୃଲ    ମାର, ଧର-ଧର"
କାଲ ପାଣେ ପହଞ୍ଚ ନ    ଏ ଯାଏଁ ଖବର ।

ବଜୁଲବଣ ନା କ'ଣ    କେ ଟିପିଲା କାହିଁ
ଭକୁଆ ପରକା କାଲ    ରହିତ ଅନାଇ ।

ପିଚ୍ ପିଚ୍ ଘଣ୍ଟାଂ ଘଣ୍ଟାଂ ବାଜଲା ପିଠିରେ ।
"ବାପାରେ ! ବୋଉଲୋ ! ପାରୁ-ନାହିଁ ତ ଉଠିରେ ।"
"ହାଆଁ ହାଆଁ, ମୁଉଁ ମୁଉଁ" "ପାଜି-ସଇତାନ୍ !
ଚୁପ୍ ବଦମାସ"-କହି ମୋଡ଼େ କେହି କାନ ।

ଅଚେତା ହୋଇଲା କାଲ ଟେକାଟେକ କରି
ଘରକୁ ଆଣିଲେ ବୋହି ଘରର ପଦାଶି ।
"ଦେଖ ଦେଖ, ଚନ୍ଦ୍ର ଚନ୍ଦ୍ର କଏ ରେ ଏ ବେଣ୍ଟା
ଗୁଣ୍ଡରେ ତା ଭୂଷିଦିଅ ଆଣି ମୂନା ଚେଣ୍ଡା ।"

ଘରର ଖାଉଁଦ ନଜେ ଗହଳରେ ପଶି
କୁହାଟିଲେ 'ପାଜ ସବୁ ! କ କରୁଛ ବସି !
ଟିପ ଆଉ ଲୁଆଁ ନାହିଁ, ବୁଝ କଏ ଆଗ
ମଣିଷ ସେ; ନୁହଁଇ ତ ଭାଲୁ ଅବା ବାଘ ।'

ଆଲୁଏ ଦେଖିଲେ ଦ୍ୱାରେ କରିଦେଇ ଠିଆ
ହାସ୍ୟ ହାସ୍ୟ ଏ ଯେ ସେହି ନୂଆ ଗୃକରିଆ !
ଗୃପୁଡ଼ାଏ ଦେଇଥିଲେ ଶୁଣିଥାନ୍ତା ଅବା
ଅସ୍ଥିରତା ଯୋଗୁଁ ସିନା ବସିଲା ଏ ସଭା ।

ଅର୍ଥ କଲେ ଗୃହସ୍ୱାମୀ ଆଉଁସି ତା' ଗାଲ
'ଠିକ୍, ଠିକ୍ ବୁଝାଗଲା ଗୃପୁଡଆ କାଲ ।'
ବୁଝାଇଲେ ଛୁଡ଼ା ହୋଇ ନଜ ପୁରଜନେ
"କହିବା କରିବା ଆଗୁଁ ଭାବ ଥରେ ମନେ ।

ସନ୍ଦେହ ବୁଦ୍ଧିରେ ପଡ଼ି ଭୁଲ ସୁବଗୃର
ଦେହପୀଡ଼ା ମନପୀଡ଼ା ଶେଷେ ହେଲା ସାର !"



# ହନୁ ମାଙ୍କଡ଼

ଡାଳେ ବସିଥିଲା ହନୁ ମାଙ୍କଡ଼
ତାର ଚେହେରାଟି କଷି କାଙ୍କଡ଼ ।
ଚଷା ହଳ କରୁଥିଲା ଗହିରେ
ବେଲେ ଭାତ ରଖି ଛତା ଗୁଡ଼ିରେ ।
ଭୋକ ଲାଗୁଥିଲା ବେଳେ ବେଜାଏ
ପ୍ରାଣୀ ଗିଆନ ଧିଆନ ହଜାଏ ।
ହନୁ ଖଞ୍ଜରେ ଓହ୍ଲେଇ ଗଛରୁ
ଭାତ ଗିଳିଗଲା ସବୁ ପଛରୁ ।
ବଦ୍ଧ ପୋଡ଼ଯାଏ ଝାଞ୍ଜି ବତାସେ
ଚଣ୍ଡି ଅଠା ଅଠା ମାରେ ହତାଶେ ।
ଚଷା ଭାତ ଗଲା କାହିଁ ଜଭେଇ
ଦୁଏ ରକତ ଗ୍ଭଉଳ ଗ୍ଭେବେଇ ।
କଥା ବୁଝିବାକୁ ନାହିଁ ରହିଲା
ହନୁ ଏ ଡାଳୁଁ ସେ ଡାଳେ ଡେଇଁଲା ।
ଚଷା ବୁଝିଲା ମାଙ୍କଡ଼ ଫିସାଦ
ମନେ ଘୋଟିଗଲା ରାଗ ବିଷାଦ ।
ହନୁ ହସି ହସି କହେ—'ଚଷାରେ
ଆଜ ପଡ଼ିଲୁ ବିଷମ ଦଶାରେ ।
ନେଏ ପାଚିଲା କଦଳୀ ପୁଞ୍ଜାଏ'
କହି ଚଷା ମୁହେଁ ଧରି ଗୁଞ୍ଜାଏ ।
ଭୋକ ବଖତେ ଯେତକ ମିଳିଲା
କିଛି ନ ବିଗ୍ଭରି ସବୁ ଗିଳିଲା ।
ପେଟ ନଆଁ ଲିଭୁ ଲିଭୁ ତାହାର
ଯେତେ ମନ୍ଦ ବୁଦ୍ଧି କଲା ବାହାର ।
"ଆଣି ଦେଏ ମୋ ପଖାଳ ଦେଏ ରେ
ପାଜ ନ ଦେଲେ ଦେଖିବୁ ଫେଏରେ ।"

"ନଈ ସୁଅେ ଭୁଟା କାଠି ଆଣରେ
ଖୋଜ ଡଙ୍ଗା କାଚ ବେଳ ନ ସର ।"
ହନୁ ଛୁରୁଲେଇ ପୁଣି ଭଆରେ
"ଆଜ ପରବାସ୍ ଅଛୁ କ ଆରେ ।
ଜାଣୁ ! ମେଘ ପାକା କେଲ୍ ଚେରଠି
ଚେର୍ ଖାଲ ବେଲ୍ ଖଣ୍ଡି ମେରଠି ।
ବେଗେ ପାକା କେଲ୍ ମୋର ଦେଏ ରେ
ଘଚ ବାନ୍ତ କରୁଛୁ ମୁଁ ନେଏ ରେ ।"
ବଣ ଗଧିଆ କହୁଚ ପଠାରେ
"ଏବେ ଯେଝା ବାଟ ଯେଝେ କଟାରେ ।
ଦୁଅ ଅଳପ ବହୁତେ ସନ୍ତୋଷ
ଦୁହେଁ କେହୁ ତ ରହୁ ନ ଉପାସ ।"
ହନୁ କହେ ମିଠି ମିଠି ସ୍ବରେରେ
"ତତେ ସାବାସ୍ ସାବାସ୍ ଭଇ ରେ !"



## ମାଛମରା ଓସ୍ତାଦ

ଠିକ୍ ଠିକ୍—ଏତେ ଦନେ ମିଳଗଲା ତଥ୍ୟ
ସବୁ ରୋଗ ମୂଳ ମାଛ ସତ୍ୟ, ମହାସତ୍ୟ ।
ଜ୍ୱର ଝାଡ଼ା/ଶର୍ଦ୍ଦିଠାରୁ ବଡ଼ ବଡ଼ ରୋଗ
କେବଳ ଏ ମାଛ ଯୋଗେ ହେଉଅଛୁ ଭୋଗ ।
ପାନେ କରୁ ଔଷଧ ମୁଁ କଲେ ଆବଷ୍କାର
କାଲ ପର ସୁସ୍ଥ ହେବ ଦନକେ ସଂସାର ।
ଚେଷ୍ଟାରେ ତ ଅସମ୍ଭବ ନୁହେଁ କଛୁ ଆରେ
ମନଯାଏଁ ଲଗିବ ମୁଁ ଏହୁ କାରବାରେ ।
କଛୁ ଆଜ ନାହିଁ ମୋର ଡେ ଆଣ୍ଡ ନାଇଟ୍
ମାଛ ସାଙ୍ଗେ କରବ ମୁଁ କେବଳ ଫାଇଟ୍ ।
ଛଡପେଇବ ମାଛ ବହୁ ମାଛ ବଛାପନ
ନପାତବ ବଂଶ ତାର ଏହୁ ଖାଷ୍ଟ ପଣ ।

ନେଳ ମାଛି, କଳା ମାଛି, ପୁଣି ରଙ୍ଗ ମାଛି
ବିଲକୁଲ୍ ବିନାଶିବ ସବୁ ପୋଛିପାଛି ।
ମାଛି ବିନା ରୋଗହୀନ ହୋଇଲେ ସଂସାର
ଚାଲି ପରି ପଡ଼ିଯିବ ଜୟ ଜୟକାର ।
ବୈଦ୍ୟଙ୍କର ଗୁରୁ ହେବ, ଡାକ୍ତରଙ୍କ ରଜା
ଖାଲି ଏହି ମାଛି ବଂଶେ ଦେଲେ ଥରେ ସଜା ।

'ମାଛିମରା ବାବୁ' ବୋଲି ପଡ଼ିଗଲା ଡାକ
ସଫା ହେଲା ନାଳୁଆରୁ ଅଳଆ ଡବାକ ।
ଛଡା ହେଲା ଫିନାଇଲ୍, ବ୍ଲିଚିଂ ପାଉଡର
ଚୂନେ ହେଲା ସଫେଇଣ୍ଡ ଯେତେ କୋଠାଘର ।
ମାଟିଘର ଲିପାପୋଛା ହୋଇଲା ଗୋବରେ
ବିଜ୍ଞାପନ ପଢ଼ି ସର୍ବେ ମାତିଗଲେ ଥରେ ।

ଧୀରେ ଧୀରେ ଗଢ଼ିଗଲା ଯହିଁ ଦିନ ଥୋକେ
ସଫାସଫି ଦାଗଦାକୁ ଭୁଲିଗଲେ ଲୋକେ ।
ମଶା ମାଛି ବଂଶ ଯହିଁ ଗଲା ବେଶି ବଢ଼ି
ପିଲା ହେଲେ କଲବଲ ରୋଗଶେଯେ ପଡ଼ି ।
ମାଛିକୁଳ ଯମରାଜ ହେଲେ ଲୋକହସା
ପୁରେ ପୁରେ ମହାମାରୀ ବାନ୍ଧିଗଲା ବସା ।
ଝାଡ଼ା ବାନ୍ତି ଜର ଦିହେ ନ ରଖିଲା ରୁମ
ମାଛିମରା ଓସ୍ତାଦଙ୍କ ଅକଲ ଗୁଡ଼ୁମ ।

ପରିଷ୍କାର ରଖିଥିଲେ ଘରଠୁଁ ବାହାର
ରୋଗ ବଇରାଗ ସଦା ଯୋଡ଼େ ନମସ୍କାର ।
ଭିତର ବାହାର ଆମ ଥିଲେ ସବୁ ସଫା
ଦୁଃଖ ଶୋକ ରୋଗ ଆପେ ଦେବେ ମୁହଁଛପା ।



# ବୈଦ୍ୟ କରାମତ

କହିଲେ ରଜା— ପେଟଟା କଅାଁ
ଦରଜ ଭାରି ଟାଣି,
ଲେମ୍ବୁ ଦେଇ ଜଲ୍ଦି ଆଣ
ଗିଲାସେ ଆଗ ପାଣି ।

ଘୁମ୍ପୁଙ୍କ ପେଟ ଭିତରେ ଆଜ
ଲାଗିଛି ଏ'କ ନାଟ ?
ମନ୍ତ୍ରୀ ବୁଢ଼ା ଶୁଣିଲା ଖାଲି
ଶୁଭୁଛି ଫୁଟଫାଟ ।

ରାଣୀ ମହଲେ ଦାସୀ ମହଲେ
ହାଲୋଳ ଚାଲି ପଡ଼ି,
ମୟୂର ପରି ମଣିମା ଖାଲି
ଧାଉଅଛନ୍ତି ଗଡ଼ି ।

କହିଲେ ରାଣୀ— ଦାରୋଗା ତୁମେ
ଝଟପଟି ଆଣ ଖରେ
ସର୍ବରୋଗ— ଶନଶ୍ଚର
ନଷ୍ଟେ ଥିବେ ଘରେ ।

ଲଗାମ ଦେଇ ଆଣ୍ଠିବନ୍ଧ
ପିଠିରେ ଦେଇଁ ଛାଟେ,
ପବନ ପରି ଶନ୍ୟ ଘୋଡ଼ା
ଛୁଟିଲା ବାଟେ ବାଟେ ।

ଖୁସିରେ ରାଜା ବରଷା ପାଗେ
କରିଲେ ଧନେ ମନ,
ନଡ଼ଆ ସାଥେ ମୁଢ଼ିର ହେଲା
ମଧୁର ଆୟୋଜନ ।

କୋର ଓ ପେଣ୍ଡା 'ଛୁଟ ଉଖୁଡ଼ା
ଖାଇଲେ ମହାରାଜା,
ମୂସୁମୁସିଆ ଗରମ ମୁଢ଼ି
ଚହ୍ନିଁକ କେଡ଼େ ମଜା !

ବୈଦ୍ୟଗୁରୁ ଦେଖିଲେ ନାଡ଼ୀ
ଗୃଳଛୁ ଘଡମଡ,
ପେଟ ବଥାର ଚଢ଼ୁ ସବୁ
ଗାଇଲେ ଧର ଗୀତ ।

ଚତୁର ଗୁଣୀ ସନ୍ଧାମା ତ
ହରେଖି ଛିକେ ଚଳେ,
ଚଅଠ୍ କନା ବେଗର ଖିଅ
ଧରିଲେ କଉଣଲେ ।

ଦଶ ବାରଟି ଶୁଖିଲା ମୁଢ଼ି
ବଛଣା ଦାଢ଼େ ଗୁଣ୍ଠି,
ଜୀର୍ଣ୍ଣ ଜାର ଚୂର୍ଣ୍ଣ ପାନେ
ପାଟିରେ ଦେଲେ ଖୋଇ ।

ଧାରଣା ସହୁଁ ଖାଇଲା ମେଳ
ଓଷଧି କଲା ଓ ଓ,
ଧନ୍ୟ ଧନ୍ୟ ନଅର ସାରା
ଶୁଭିଲା ଘୋଓ ଘୋଓ ।

ଗୃହିଁଲେ ରାଜା ପାନ ମୁଖେ
ଜଉଳୁ ହାତେ କାଢ଼ି,
ଗୁଣିଆଁ ପର ଗୁଣିଆଁ ସିନା
ହଅଇ ବଷ ଝାଡ଼ !

ଭିତରୁ ରାଣୀ କହିଲେ ଶୁଣି—
ସିଦ୍ଧ ବୈଦ୍ୟବର
ବଂଶଧର ହୋଇବେ ବୋଧେ
ଧନ୍ୱନ୍ତରୀଙ୍କର ।

ମହାଜନଙ୍କ ବଚନ ଏ ତ
ଅଟଇ ବେଦ ସାର,
ପଣ୍ଡିତ ସେ ବୃଦ୍ଧିକୁ ସେ
କରଇ ଆଗୁସାର ।

ମନ୍ତ୍ରୀ ଖୁସି ରଜା ବ ଖୁସି
ରାଣୀଙ୍କ ମନ ଫୁଲେ,
ପୁରସ୍କାର ସୁନାର ହାର
ବୃଦ୍ଧ ଗଳେ ଝୁଲେ ।

ମନ୍ତ୍ର ବଳେ ନ ଯାଇ ଆଉ
ଥାଏ କ ଭୂତ ଗନ୍ଧ ?
ଔଷଧଠଉଁ ହୋଇଲା ବଡ଼
ବୈଦ୍ୟ କରାମନ୍ତ ।



## ଚଅଡ଼ୁଗ୍ରୁପ୍ପୁଡ଼ା

ଅଜା ଚଟ୍‌କଣି ଫାମ୍‌ସା ଫାମ୍‌ସା
ପିଠିରେ ବାଜଇ ଢୋଲ,
ଆଈ ଚଟ୍‌କଣି ନଡ଼ିଆ ଚଟଣି
ବୋଉ ଚଟ୍‌କଣି ଓଲ ।

ବାପା ଚଟ୍‌କଣି ଉପରକୁ ଶିଣି
ଭିତରେ 'ଅମୃତାଞ୍ଜନ',
ଦାଦା ଚଟ୍‌କଣି 'କଣ୍ଡୁ ଦାବାନଳ'
ଥଣ୍ଡା କରିଦଏ ମନ ।

ଅପାର ସ୍ୱପୂଡ଼ା ମିଠା କନ୍ଦଫଣା
ଗ୍ରାଇ ମାଡ଼ ପଙ୍ଗାଲୁଣ,
ନୂଆ ବୋହୂଙ୍କର ସନ୍ତୁ ସ୍ୱପୂଡ଼ାଟି
ଲାଗଇ ଇଲସି ଭୁଣ ।

ଭଣଜା ପିଠିରେ ବାଟରେ ଦେଲେ ନାଚ
ଅରଇ ମାମୁଁଙ୍କ ହାତ,
ସ୍ୱପୂଡ଼ାଟେ ଖାଇ ଢଞ୍ଚେଇଲେ ମାଈଁ
ମାସେ ଛୁଟେ ନାହିଁ ଘାତ ।

ମଜସା ପାହାର ଟାଣୁଆ ବଜର
ଗ୍ରାଙ୍ଗଇ ପଞ୍ଜରା ହାଡ଼,
ଗରମା ଗରମ ପୁର ଲୁଚ ପର
ଲାଗଇ ମାଜସୀ ମାଡ଼ ।

ସଙ୍ଗାତଙ୍କ ବିଧା କପୂର ଚନ୍ଦନ
ସାଥୀ ମାଡ଼ ଖିରକୋଳ,
ଯେତେ ମାଡ଼ 'ମିଚ' ଦେଉଥାଏ ଦେହ
ତେତେ ହେଉଥାଏ ଘୋଳ ।

ଶାଶୁ କଥା ପଦ ମାଡ଼ର ବଡ଼ା'ପ
ନମ ଗ୍ରାଇ ଚରେଇତା,
ଗୁରୁ ବେତ ମାଡ଼ ମଥାକୁ ମିଶିର
ପିଠିକୁ କୋଚଲା ପିଚା ।

କଥାଟି ଯେ ମାନେ ଗାଳ ସେ ନ ଶୁଣେ
ମାଡ଼ ଥାଉ ବହୁ ଦୂରେ,
ବଧା ମାଡ଼େ ପିଠି ବଧିଆ ଧଇଲେ
ସେହି ବଧା ମାଡ଼େ ଝୁରେ ।

●

## ନାମବଡ଼ା

ମୋ ନାଆଁଟି ନେକା,
ମୋ ବାପ ନାଆଁଟି ବୋକା,
ବୋଉ ନାଆଁଟି ଚଲ୍ଲି,
ଅପାକୁ ମୋହର                ନ ଜାଣିଛୁ କଏ
ନାଆଁଟି ତା' ବାଉବୁଲୀ ।

ଭାଇ ନାଆଁଟି ହୁଣ୍ଡା,
ମୋ ଦାଦା ନାଆଁଟି ଗୁଣ୍ଡା;
ଗୋସବାପ ନାଆଁ ପାଜି,
ବୁଢ଼ୀ ମା' ମୋହର                ଏ ଘର ସେ ଘର
ନାଆଁଟି ତାହାର କାଞ୍ଜି ।

ମାମୁଁ ନାଆଁଟି ବର
ମୋ ମାଇଁ ନାଁ ସରଗଚର;
ଶଶୁର ନାଁ ଜସ୍ୱହନ୍,
ଶାଶୂ ନାଁ ହୁପୁସୀ                କଥାରେ କଥାରେ
'ଗୁଆଧେ ଶିଶୁଗୋବନ୍' ।

ପିଇସା ନାଆଁଟି ବୁଲ,
ମୋ ପିଇସୀ ନାଁ ଗୁଲୁଗୁଲ;
ମଉସାଙ୍କ ନାଆଁ ଗେଟି,
ବାଡ଼ ଖଣ୍ଡେ ଧରି                ଗାଆଁ ଦାଣ୍ଡ ବୁଲେ
ମାଉସୀ ନାଆଁଟି ଗେଞ୍ଜୀ ।

ଶାଳୀ ନାଆଁଟି ଗେଣ୍ଡ଼ୀ,
ମୋ' ଶଳା ନାଁ କଳଆ ପେଣ୍ଡ଼;
ସମୁଦ୍ଧଙ୍କ ନାଆଁ ଘୋଡ଼ା,
ପାଖ ଦଶ ଗାଆଁ ଉଠୁଛୁ ପଡ଼ୁଚ
ଷଡ଼ୁଙ୍କ ନାଁ ଘରପୋଡ଼ା ।

ଝିଅ ନାଆଁଟି ନାଣ୍ଡ୍ରୀ,
ମୋ' ଯୋଇଁ ନାଁ ଅଥାର ହାଣ୍ଡି;
ପୁଅଟିର ନାଆଁ ବାଇ,
ସ୍ୱବଚୁବ ଦେଇ ସାଇତ୍ତି ରଖ ଲେ
ବୋହୂଟି ନାଁ ହାଣ୍ଡିଖାଇ !

ସାଥୀ ନାଆଁ ନାଗବନ୍ଧୁ,
ମୋ ନାତ୍ତି ନାଁ ଆଗଚପଞ୍ଜା;
ନାତୁଣୀ ନାଁ ଚଞ୍ଚଳା,
କଳାଜାଇ ମଧା ମୁହେଁ ବଡ଼ି ବୁଲେ
ସ୍ତ୍ରିସ୍ତ ନାମ ଶଶୀକଳା ।

କେତେ ତ ଅଛନ୍ତି ନାଥ,
କାଣି କଗୁ ରଧୁଆ ତ,
ନାଆଁ ବା କରିବ କସ,
ଯୋଗା ହେଲେ ବସୁ ବଶ୍ୱନାଥ ବାବୁ
ନଇଲେ ବଣିଆ ବଷ ।

ମୋ ନାଆଁ ଲୋକନାଥ ସ୍ୱାଇଁ,
ସାରା ଦୁନିଆ ଲୋକ ମୋ ଭାଇ;
ସବୁରି ଘର ମୋ ଘର,
ସବୁରି ହୃଦୟେ ମଣେ ମୋ ହୃଦୟ
ନାହିଁ କେ ଆପଣା ପର ।

ଗୁଣ ଯେବେ ନାହିଁ ହାୟ,
ନାଆଁ ଘୋରି ବାଟି କେହ ଖାଏ ?
ଆରେ ଯେତେ ବଡ଼ା ନାମ
ମଗଜଟା ଯେବେ ଖଡଗଦା ସବୁ
ଫଟା ପଇସାର କାମ ।

ଖାଲି ନାମ୍‌ବଡ଼ା ହେଲେ ଲୋକ,
ତା'ର ନ ମେଣ୍ଟେ ଶୋଷ କ ଭୋକ;
ନାମେ ଯେବେ ଗୁଣ ରହେ,
ଯୁଗ ଯୁଗ ପାଇଁ ସବୁରି ମନେ ସେ
ମରି ବ ଅମର ହୁଏ ।



## ରଗଡ଼ା ରଗଡ଼ି

ବର ରଗଡ଼ିଲେ ଗଳଇ ଫାଳ,
ବୁଦ୍ଧି ରଗଡ଼ିଲେ ଫିଟେ କପାଳ ।

କଥା ରଗଡ଼ିଲେ ଉପୁଜେ କଳି,
ଦେହ ରଗଡ଼ିଲେ ଫିଟଇ ଝଳି ।

କାନ ରଗଡ଼ିଲେ ଗଳୁରେ ପାଠ,
ପାଠକୁ ଲଗଡ଼େ ଉତ୍ତମ ଗ୍ରନ୍ଥ ।



## ଆଳୁ-ଦୋଷ

ଫସଲ କର ଆଳୁକୁ ସିନା
ମଣିଷ ଜାତି ଖାଏ,
ଦୋଷଟି ତା'ର ରହିଲେ ଲୋକ
ସବୁଠି ଦଗା ପାଏ ।

ସଞ୍ଜ ପହରୁ ଶୋଇବ ଯେବେ
ଆସିବ ନାହିଁ ପାଠ,
ପାଠ ନ ହେଲେ ପିଠିରେ ଖାଲି
ବାଜିବ ବେତ ଘାଟ ।

ନଦର ସୁଖ ହୁଅଇ ମାଟି
ଶେଯରେ ଥିଲେ ଜଡ଼,
ଶୋଇବ ନାହିଁ ଅଳସଟିକୁ
ଦେହରୁ ଦେଇ ତଡ଼ ।

ଏଇ କଥାଟି ସାଇତି ମନେ
ରଖିଲେ ପିଲା କାନ୍ତ,
ନଦ୍ରା ଯିବ ମାଛ କେବେ
ହେବ ନାହିଁ ନଦ୍ରାକ୍ତ ।

ବଡ଼ ହେବାର ବାସନା ଥିଲେ
ଛାଡ଼ିବ ଆଗ ଭୟ,
ଭୟାକ୍ତ ହେଲେ କେଉଁଠି କେଉଁ
ହୋଇବ ନାହିଁ ଜୟ ।

ଲଜ୍ଜା, ଭୟ ଘୃଣା—ଏ ତିନ
ଉନ୍ନତିର ବାଧା,
ଖାରଟି ପର ନିର୍ଭୟରେ
ଧରିବ ବାଟ ସିଧା ।

| | |
|---|---|
| ହୋଇବ ଯେବେ | ଜୀବନେ ବଡ଼ |
| | ଆଜହୁଁ ଟିକେ ଶୁଣ, |
| ଦସ୍ତାର ପାଶେ | ଆଜ୍ଞ—'ଦୋଷ'ଟି |
| | ପାଲଟେ ଆଜ୍ଞ 'ଗୁଣ' । |
| ଦସ୍ତାଙ୍କୁ ଯିଏ | ଜଗତ ହିତେ |
| | ଜୀବନ ଦିଏ ତା'ର, |
| ଭବିଷ୍ୟତର | ଗରଭେ ଖେଳେ |
| | ତା ଜୟ-ଜୟକାର । |
| ଏ ତତ୍ତ୍ୱ କଥା | ରଖିଲେ ହେଜ |
| | ଖାଇଲା ପରେ ଚଟି, |
| ଆଜ୍ଞ ଦୋଷଟି | ଆପଣା ଗୁଏଁ |
| | ମନରୁ ଯିବ ହଟି । |



## ଫାଉଁଟେନ୍ ବାବୁ

| | |
|---|---|
| ଏଡ଼େ ସକାଳରୁ | ନଷିଆ ଖାଇ |
| କୁଆଡ଼େ ଯାଉଛ | କହିବ ନାହିଁ ? |
| କୁଆ କର ନାହିଁ | କାଆ-କାଆ |
| ବେଶ୍ ଟନଟନ— | ବାହାରେ ବାହା ! |
| ନଷିଆ ମାହାନ୍ତ | ମଣିଷ-ଗାଣ୍ଡ |
| ଏ-ବି-ସି-ଡ଼ି, | ଆସଇ ନାହିଁ । |
| ବିଦେଶୀ ଶବଦ | ମୁହଁରେ ବସା |
| ରୂପ ଧକ, ପାଠ | ଫସରଫସା । |

କହେ ଲକ୍ଷିବାବୁ- ନାହିଁ ହେ ନାହିଁ
ଛଡ଼ବଡ଼ କଆଁ ମ୍ୟାରେଜ୍ ପାଇଁ ?

ଟାଏଫଏଡ୍‌ରେ ଫାଦର ଗଲେ
ଅକଲ ଗୁଡ୍‌ମ୍ ମଦର୍ ମଲେ !

ଜଣାପଡ଼େ ହାତେ ଗୁଲୁଛି ନାଡ଼
ଯାଉଛି ସେ ଲଗି ବଙ୍ଗାଳ ବାଡ଼ ।

ମେଡ଼ିସିନ୍‌ରେ ମୋ ଗଲାଣି ଶହେ
ଯେତକ ଆୟୁକୁ ସେତକ ବୟେ ।

ମୁଖର୍ଜୀ ବାବୁ ଜନାର୍ଦ୍ଦନ
ସେଇଠୁ ଆଣିବ ଇଞ୍ଜେକ୍‌ସନ ।

ହାତେ ଆଜି ଫଟା ପଇସା ନାହିଁ
ଦବ କି ନ ଦବ ଜାଣିଛି ସେଇ ।

ବଇଦ ନାମାସ୍ତେ ଦ୍ୱିଗୁଣ ଶନ
ସନ୍ତୋଷ ହେବେ ପାଇଲେ ମନ ।

ଗଜବ ଦେଖିଲେ— "ଇସ-ଇସ,
ଆସିଅଛ ଯେବେ ପକା ଫିସ୍ ।

ବଡ଼ଲୋକେ ଦେବେ ଆମିଚେୟାର୍
ମଝିମଝିଆଙ୍କୁ ଡୋଣ୍ଟ୍‌କେୟାର ।

ଡାକତର ଜାଣେ ପକେଟ୍ ମୋର
ବେଳେବେଳେ ଥାଏ ଗରମ ଜୋର ।

ଯୋଗକୁ ତ ଆଜ ସନ୍ନିପାତ
ଦେଖାଯାଉ କ୍ୟା କରୁଚ ବାତ୍ ।

ଗୁଡ଼ ମର୍ଣିଙ୍ଗ୍— ଯାଉଛି ଘର
ମନ ଉଠିଲାଣି ମାଆଟିଁ ଯାଉ ।"

କହିଲେ ଡାକ୍ତର ସାବୁନ୍-ହାତେ
ନୋଟ୍‌ବୁକେ ଲେଖ ସାଥେ-ସାଥେ ।

ବାକୀସ୍ତ୍ର ତଳକୁ ତାରଖ ନାଆଁ
ମଥା ମାରଗଲ ଝାଆଁ ଝାଆଁ ।

ଫାଉଁଣ୍ଟେନ ଯା'ର ପକେଟଗତ
କ ମୁସ୍କିଲ ! ଦସ୍ତଖତ ?

'ଲକ୍ଷ୍ମୀକାନ୍ତ' ଯୁକ୍ତାକ୍ଷର
ଲାଜରେ ଲେଖନୀ କ ହରବର !

ବର୍ଣ୍ଣବୋଧ ବନ୍ଧ ହରଣ ଯାଏ
ମନେ ପଡ଼ଗଲ ସପନ ପ୍ରାୟେ ।

ହାତ ପୋଛି ଠିଆ ଡାକ୍ତର ବାବୁ
ନଷ୍ଟିଆର ପାଟି ଆବ୍‌ବୁ-ଆବ୍‌ବୁ ।

ନର୍ସ କହିଲ— ବେଶ୍ ଛେଲେ
ଚପରସି ମୁହେଁ— ଭେଲେରେ ଭେଲେ ।

ବିଦ୍ୟାବିହୀନ ଭଣ୍ଡାଗୁଣେଁ
ଫାଉଁଣ୍ଟେନ୍ ଖୋସି ଫେରଲେ ଲାଜେ ।



## ମଦନଗୋପାଳ

ଠନ୍ ଠନ୍ ମଦନଗୋପାଳ୍
ପକେଟ୍‌ରେ ଯଦ୍ଧ ନ ଥାଏ
ବାପ କହେ ପୁଅକୁ—ଗ୍ଗେପ୍,
ସ୍ୱାମୀ ମୁଖ ସ୍ତିରି ନ ଚାହେଁ ।

ଠନ୍ ଠନ୍ ମଦନଗୋପାଳ୍
ଘନ ଘନ ଯେବେବରେ ବାଜେ
ବସି କେ ବା ଧରମ ନନା
ମାଛ ତେଲେ ମାଛକୁ ଭାଜେ ।

ଠନ୍ ଠନ୍ ମଦନଗୋପାଳ୍
ନଣ୍ଡ ପର ଯେବେରେ ବଢ଼େ
ସଙ୍ଗାତଙ୍କ ବାପର ଶ୍ରାଦ୍ଧ
ନଷ୍ଟେ ଚପ୍ସା ବାଲରେ ପଡ଼େ ।

ଠନ୍ ଠନ୍ ମଦନଗୋପାଳ୍
ଟୁନ୍‌ଶାନ୍ ହୋଇଲେ ଘରେ
ନ ପାଇଣ ଔଷଧ୍ ଢୋକେ
ନିଜ ମାଆ ମରଇ ଜରେ ।

ଠନ୍ ଠନ୍ ମଦନଗୋପାଳ୍
ହେବେ ଯେବେ ଆକାଶୁଁ ପଡ଼େ
ଚ୍ଲେଟ ମନ ଖଲଆ ଘୋଡ଼ା
ପରଗର ପିଢ଼ରେ ଚଢ଼େ ।

ଠନ୍ ଠନ୍ ମଦନଗୋପାଳ୍
ବାଜେ ଯେବେ ରଅଣ ଝଣ,
ଟହଲନ୍ତି କାମ ନ ଥାଇ
ସାଙ୍ଗ ସାଥୀ ପଣକୁ ପଣ ।

ଠନ୍ ଠନ୍ ମଦନଗୋପାଳ୍
ଝାଡ଼୍ ଝୁଡ଼୍ ହୋଇଲେ ଭାଇ,
ଅଦ୍‌ଭୁତ ଭେଳକ ତା'ର
ଭୁଣ୍ଡେ ବ କେ ପଗ୍ଗରେ ନାହିଁ ।

ଠନ୍ ଠନ୍ ମଦନଗୋପାଳ୍
ଯେବେ ଦାମୀ କପାଳେ ଜୁଟେ,
'ଚକଆ'ର ଅସଲ ଗୁଣ
ଯଣ ରୂପେ ଜଗତେ ଫୁଟେ ।

ଠନ୍ ଠନ୍ ମଦନଗୋପାଳ
ଭଲ ରୂପେ ଯାହାକୁ ଚହ୍ନେ,
ଲକ୍ଷ୍ମୀ ଦେବୀ ଆଗକୁ ପାଦ
ନ ବଢ଼ାନ୍ତି କେବେ ତା' ଭବନେ ।

# ମାଧିଆ ଭାଇ

ମାଧିଆ ଭାଇରେ ମାଧିଆ ଭାଇ
ହଅଁ ବଳୁ ନାଆଁ ମୁହଁରେ ନାହିଁ ।

ମିଛ ପାଲସିରେ କଥାକୁ ମାଜୁ
ମାଛର ତେଲରେ ମାଛକୁ ଭାଜୁ ।

ବଡ଼ ଉପ୍ରୋଧିଆ ମାଧବ ନନା
ନାହିଁ କରିବା ତା' ଜାତକେ ମନା ।

ଗୁ ରୁ ଧରେଇଲେ ହାତରେ ଖଡ଼ି
'ଅ' ବଳୁ 'ଆ' ନ ଆସେ ପଢ଼ି ।

ଭୁଲିଲା ଦ'ଗୁଣ ପଢ଼ିଲା ଯେତେ
ହେଲା ନାହିଁ ପାଠ 'ଗୋରୁ'ର ବେଡେ ।

ନ ମାଡ଼େ ମାଧବ ଗୃହାଳୀ ଘର
ଆଜ ଶୂନାଖାଡ଼ା କାଲିକ ଜର ।

ପନ୍ଦର ଦିନକୁ ପେଟ ଦରଜ
ବଗିଡ଼ିଲା ହମେ ଦନ୍ଦର ସଜ ।

ଅନୁଭରୁ ମାଆ ଦେଇଚ ଖାଇ
ବାପା ବୋଲି ଭୁଣ୍ଡେ ଡାକେ ସେ ନାହିଁ ।

ଭଉଣୀ ଓଳିରେ ଆଉଜ ମାଧ
ବାଲକୁ ପହିଲେ ଦେଇଛୁ ପାଦ ।

ବାର କ୍ଷେତ କା'ର ଖାଇଲା ଗାଈ
ଗାଆଁ ସାରା ହୁରି ମାଧିଆ ଭାଇ ।

କା' ପିଜୁଳି ଗଛ ହେଲା ତ ନଣ୍ଡା
ମାଡ଼ରେ ସେହିନ ମାଧିଆ ଥଣ୍ଡା ।

ଯେ ତାଙ୍କୁ ଧଇଲା ଛେଚିଲା ଟାଙ୍ଗେ
ଚାଲଗଲେ ଟିକେ ସେ ଆଡ଼ବାଙ୍କେ ।

ଆକଟି କହିଲେ ଭଣେଇ ଭାଇ
ଚାଗେ କଞ୍ଚା ଲଙ୍କା ଢ଼ଏ ଚୋବାଇ ।

ଚେତେଇ କହିଲେ ପେଟର ଚିନ୍ତା
ଭଉଣୀ ଉପରେ ହୁଅଇ ପିଠା ।

କମିତି ଚଳିବୁ ମାଧିଆ ଭାଇ,
କହେ 'ଜଗା' ମତେ ନବ ଚଳାଇ ।

କମିତି ଠାକୁର ଚଳେଇବରେ ?
କହେ "ମୁଁ ଉପାସେ ଶୋଇବ ଘରେ ।"

ଅନେଶତ ମିଛ ଶହେ କଥାରେ
ଯେତେ ଦୁରୁବୁଦ୍ଧି ମାଧ ମଥାରେ ।

ମେଣ୍ଟାଇ ଦେଇକି ସବୁ ବିବାଦ
ଉଭେଇଲା ଦିନେ ଗାଆଁରୁ ମାଧ ।

× × ×

ଆଜ୍ଞା ଅବଧାନ ମାଧବ ବାବୁ
ମାଡ଼ ଦାଗ ଯା'ର ପିଠିରେ ଆବୁ ।

ଚାକରିଆ ମାଧ କଲକତିଆ
ସେଦନ ମିଛୁଆ ଆଜ ସତିଆ ।

କାଲ ଖିନ ଖିନ ଆଜ ଆଦର
କାଲି ଚିରା ଆଜ ଧୋତି ଚାଦର ।

ଖୋଇ ଦେଉଁ ଦେଉଁ ଭାକୁର ପେଟ
"ନ ଥିଲା ପରତେ ହେବରେ ଭେଟ ।

କହୁଁ କହୁଁ ଅପା ଥରିଲା ଗଳା
ଭଣେଇ କହିଲେ "ଯୋଗା ମୋ ଶଳା" ।

ବୁଢ଼ାଙ୍କ ତୁଣ୍ଡରେ — "ସାବାସ ବାଛା"
ବୁଢ଼ୀଙ୍କ ମୁହଁରେ — "ଆଚ୍ଛା ଆଚ୍ଛା" ।
ଜଗତ କହ୍ୱଲ୍- — "ହେ ରୋଜଗାର
ତୁମ ପାଦେ କୋଟି — ନମସ୍କାର ।
ଯାହାର ପକେଟେ — ତୁମର ଘର
ସବୁଠି ପାଏ ସେ — ବଡ଼ ଆଦର ।"



## ଅବନାକ୍ଷର ଶଠି

ଦଣ୍ଡବତ ବପ ! — କଟକ ନଗର
ପଢ଼ଛ ବହର — ଧବଳ ଟଗର ।
ଡଲ ଚଉଳର — ଦର ଏତ ଚଢ଼
ଭତ ଖଇବକ — ମଉଲଣ ଡର ।
ଚହଳ ଦରମ — ମସକ ଆଠଣ
ମହତ ରଖଛ — ପଦନ ଚଟଣ ।
ଶଉଅଛ ତଳ — ନହ ମର ସପ
ଅଭବ ଅଭବ — କରଅଛ ଜପ ।
ବଢ ହଜଲଣ — କହ କ କରବ
ଗଢ଼ ଗଡ଼ ସନ — ଶଷର ମରବ ।
ଗରମ ଭତର — ଗଡ଼ ପଣ ପଣ
ଚଡ଼ର ମହମ — ଲଖବ କଅଣ !
କଟକ ସହର — ବଡ଼ ମହରଗ
ବଉକ ଜହର — ଅତ ତମ ଜଗ ।
ବଟ୍ଟ ସବ ଦଖ — ବଗ ଟଙ୍କ ପଠ
ନ ଦଲ ଗଅଁକ — ମରବ ଚମଟ ।



ଧନ ଗୃହ ପରେ ଫେରତ ଜବାବ
ଲେଖିଅଛୁ ବାପ ନାହିଁ କଛୁ ଲଭ ।

ପଢ଼ାଇବା ତତେ କଟକ ସହରେ
ହେଜକୁ ତୁ ଧନେ ମୋ' ଅନ୍ନେ ରହରେ !

ମାସେ ଦଶ ଟଙ୍କା କଲୁ ତୁ ଖରଚ
ନାହିଁ ତ ବସ୍ତର ଠିକେ ଆଗ ପଛ ।

ମୁହିଁ ଅଦା ଭୁଜ ହେବୁ ବୋଲି ଶୁଣି
ମନର କାନରେ ଦେଇଥିଲି ଗଣି ।

ବୟସ ମୋଟେ ତୋ' ବରଷ ପନ୍ଦର
ଲେଖି ପାରିଲୁଣି ଏଡ଼କ ସୁନ୍ଦର !

ବଡ଼ ହେଲେ ବୋଧେ ନକ୍ଷୀ ସରସୋଣ୍ଡା
ଦୁହେଁ ତୋର କାନ୍ଧେ କରିବେ ବସନ୍ତ ।

●

## ଆଗତ ପଞ୍ଜୀ

ଚେଲି ବୋଝୁଛି ମୁଣ୍ଡେଇ ଦାଣ୍ଡେ ଘରୁଚ ମାଧ ସାହୁ
ଅଭବ ଖାଲି ଜୀବନ ସାରା ସାଧିଲି ଚାଠି ଦାଉ ।

ଏଣିକ ଯେତେ ବକବ ଚେଲି ନଗଦ ନାରାୟଣ,
ମାହାଜନୀରେ ଲଗାଇ ତାକୁ ଗଣିବ ରଣଝଣ ।

ସେହି ଟଙ୍କାରେ ଗଡ଼ିବ କୋଠା କଣିବ ଧାନବଲି,
ଶଶୁରେ ଆସି ଝାମ୍ପିବେ ତାକୁ ମାଛକୁ ଯଥା ଚଲି ।

ଆସିବ ବୋହୂ ପ୍ରତିମା ପରି ଆଲୁଅ କରି ଘର,
ବାରି ପାଇଛି ଭୁଲାଇବାରେ ନ ଥିବ ଠିକେ ତର ।

ବରଷ ପରେ ହସିବ ପୁଅ ପଦୁଅଁ ଫୁଲ ପରି,
ସେଦନ ଗୁଡ଼ି ଉଠିବ ଫୁଲ କୋଳରେ ଟେଲି କରି ।

'ଧଡଆ', 'ଚେମା' ନ ଡାକ ପୁଏ ଡାକବ 'ବାବୁ', 'ରବ',
ଝିଅଟି ହେଲେ ରଖିବ ନାଆଁ 'ଯୂଥିକା' 'ଉଷା' ଛବ ।

ମାଧିଆ ହେବ ମାଧବ ବାବୁ ନ ବାଛୁ ବଲେ ଘାସ,
ବକିବ ନାହିଁ ମାଲପା ପିଏ କରିବ ନାହିଁ ଗୃଷ ।

ଗହଳ ବାଳେ ଫିରେଇ କାଟି ଟାଣିବ ସିଗାରେଟ୍,
ମହଳ ଖଦ୍ଦ ବଦଳେ ନିତି ପିନ୍ଧିବ ଫୁଲ୍ ପେଣ୍ଟ ।

ବୃକର ଦାସୀ ପୂଝାରି ଘରେ ରଖିବ ଦୁଇ ଗୃରି,
ପେଟରା ଥାନେ ସଜାଇଦବ ଟେବୁଲ୍ ଆଲମାରି ।

ସାହେବୀ ଖାନା ଖାଇବ ନିତି ନବାବୀ ଯଉକରେ,
ହେଁସ ବଦଳେ ବସିବ ନୂଆ ଆରାମ ଚଉକରେ ।

ଖାନ ଭୁଣ୍ଡରେ ଏତିକ ବେଳେ ଡାକିବ ଆସି 'ରବି'
"ବୋଉ କହିଲା ଖାଇବ ଆସ" "ନେହିଁ ଯାଏଗା ଅବି ।"

ମୂରବୀ ପଣେ ହାତକୁ ଗୁଡି କହିବ ବାପ ହସି,
ଭୁଉସୁକନ ଶୁଭିଲା ବେକା ମୁଚୁଳା ମୁଣ୍ଡ ଖସି ।

ପସରା ଠେକ ଉଗୁଡ଼ି ପଡ଼ି ଖପରା ହେଲା ସାର
ନରେନା ଚେଲ ଧୂଳିରେ ଜଡ଼ି ହୋଇଲା ନାରଖାର ।

ଗୁଡୁମ୍ ମାରି ଶୁଣିଲା ମାଧ ହାତରେ ଗୃପି ମଥା,
ଭିତରୁ ଡାକୁ କହୁଚି କିଏ "ପୋଛିଦେ ପଛ କଥା ।"

ଭୁଷୁଡ଼ି ପଡ଼େ କଳପନାର ନକଲି କୋଠାଘର,
କାମିକା ପଛେ ଗୋଡ଼ାଏ ସୁଖ, ସୁଖକୁ କଲେ ପର ।

ସୁଖର ଯେତେ ସପନ ସବୁ ମରୀଚିକାର ବାଲି,
ଆଗତ ପାଞ୍ଚ ନ କରି କିଚ୍ଛୁ କରିଯା' କାମ ଖାଲି ।"

●

## ସରସ୍ୱତୀ ଜଣାଣ

"କୁଏ ପଟକେଇଲ ଚନ୍ଦନ କାଠ,
ଢଅ ସରସ୍ୱତୀ ବିଦ୍ୟା-ପାଠ ।"
ଯେତେ ହେଜ ହେଲେ ମୁଁ ନରଜନେ,
ଘୋଷି ଘୋଷି ପାଠ ରହୁନ ମନେ ।

କେ ଡାକେ ମୂରୁଖ ଗଧ କେ କହେ,
ଶୁଣି ତା ଆଖିରୁ ଲୁହ ମୋ ବହେ ।
ତୁମ ବିନା ନାହିଁ ଅନ୍ୟ ବାଟ,
ହିଅ ସରସ୍ୱତି ବିଦ୍ୟା-ପାଠ ।

କେ କହେ ମଥା ମୋ ଟାଙ୍ଗର ମାଟି,
ତହିଁରୁ ନ ହେବ ଫସଲ କାଟି ।
କେ କହେ, ଗୋବର ଗଣେଶ ଘର,
ଘୁଞ୍ଚରେ ପଡ଼ୁଛି ସେ ଲୁହା ଗାର ।

ଜେଜେ କହୁଥିଲେ ବାପାଙ୍କୁ କାଲି,
ଚକ୍ଷୁକୁଟା ମୋର କପାଳ ଖାଲି ।
ନଆଁ ଧରିବ ନ ମୁଁ ଓଦା କାଠ,
ଦେଖା ଭଗବତି ବତାଅ ବାଟ ।

ତୁମ ପୂଜା ଦିନ ଚନ୍ଦନ କାଠ,
କୂଏ ପକେଇଲେ ଆସିବ ପାଠ-
ଏଇ ବିଶ୍ୱାସ କରିଛି ମାଆ,
ସେଥି ଭରସା ମୋ ତୁମେତି ସାହା ।

ତୁମ ଦୟା ହେଲେ କ୍ଷଣ ମାତର,
ଶୁଣିଛି ଜଡ଼ାକୁ ବାଗ୍ମୀ କର ।
କୂଏ ପକେଇଲି ଚନ୍ଦନ କାଠ,
ହିଅ ବୀଣାପାଣି ବିଦ୍ୟା-ପାଠ ।

ପାଠ ଲାଗି ମୁହିଁ ଯେତେ ନ କାନ୍ଦେ,
ସାଥୀଙ୍କ ଟାପରା ଦ୍ୱିଗୁଣ ବାଧେ ।
ଗାଲ ମାଡ଼ ପାଇଁ ନାହିଁ ମୋ ଡର,
ଦେହେ ମନେ ସେ ତ କଲେଣି ଘର ।

ଭୟେ ଲାଜେ ଦବ ଗଲାଣି ମନ,
କହିଲ ଏବେ ମୁଁ କରିବ କ'ଣ ?

ଶେଷକୁ ଧରିଲି    ତୁମରି ବାଟ,
ଦିଅ ବାଗ୍‌ଦେବୀ    ବିଦ୍ୟା-ପାଠ ।

ବାପ ମାଆଙ୍କର    ହେଲଣି ବିଷ,
ଆଜି ଏ ଜୀବନେ    ଲୋଡ଼ା ବା କିସ ।

ଶ୍ରେଣୀରେ ପ୍ରଥମ    ହୁଅଇ ଅପା,
ଭାଇନା ସେଲାଗି    ମୋଠେଇଁ ଖପା ।

ଯେତେ କଷିଲେ ବି    ପ୍ରାଣ ଆତଙ୍କେ,
କୋଡ଼ଏରୁ ବେଶି    ନ ରହେ ଅଙ୍କେ ।

ବିଜ୍ଞାନେ ମୋଟେ    ଛଅ କି ଆଠ,
ଦିଅ ମା ଭାରତୀ    ବିଦ୍ୟା-ପାଠ ।

ଇଂରେଜୀ ଭାଷା    କି କଡ଼ମଡ଼
ହିନ୍ଦୀକୁ ଛୁଣ୍ଡି    ଧଅଡ଼ପଡ଼ ।

ସାହିତ୍ୟ ପୁଣି    ଅଛୁ ତା ଛଡ଼ା,
ସମାଜ ଶିକ୍ଷା    ଆହୁରି କଡ଼ା ।

ଡ୍ରଇଂ ଶୁଣିଲେ    ହାତ ମୋ ଥରେ,
ଜ୍ୟାମିତି କଲାସେ    ଶୁଏଁ ମୁଁ ଜରେ ।

ସଂସ୍କୃତରେ ବି    ନ ପାଏ ବାଟ,
ଦିଅ ମା ଶାରଦା    ବିଦ୍ୟା-ପାଠ ।

ତାଳଚେରୁ ମିଳେ    ଲୁହା ପଥର,
ଆମ ରାଜଧାନୀ    ଗୋପାଳପୁର ।

ପଞ୍ଜାବେ ବହେ    କାବେରୀ ନଈ,
ଆମାଶୟେ ପଥି    କହେ ମୁଁ ଖାଇ ।

ପଲାସୀ ଯୁଦ୍ଧ    ସମସ୍ତ କେବେ,
ପଚ୍ଚରିଲେ ମତେ    ନ ଆସେ ଏବେ ।

ପକେଇଲି ଚେଣ୍ଟି    ଚନ୍ଦନ କାଠ,
ଦିଅ ଦୟାମୟୀ    ବିଦ୍ୟା-ପାଠ ।

ପରୀକ୍ଷା ଆଉ ଛଗୋଟି ମାସ,
ତୁମେ ଜାଣ ମୋର ଫେଲ୍ କି ପାସ୍ ।

ସେତେବେଳ କଥା ଭାବିଲେ ବସି,
ହାତୁ ମୋ କଲମ ପଡ଼ଇ ଖସି ।

ଭୂତକୋଠି ଲାଗେ ପରୀକ୍ଷା ଘର,
ମତେ ସାହା ହେବ ତୁମେ ଏଥର ।

ଅନ୍ଧାର ନାଶି ଖୋଲ ମୋ ବାଟ,
ଜ୍ଞାନଦେବୀ ଦିଅ ବିଦ୍ୟା-ପାଠ ।

ତୁମରି ଶରଣ ଗଲି ମୁଁ ଏବେ,
ତୁମେ ଜାଣ ଦୟା କରୁଛ କେବେ !

ମୂରୁଖ ଜୀବନ କି ନାରଖାର,
ତୁମେ ନିଅ ଏବେ ସବୁ ମୋ ଭାର ।

ପାଠୁଆ ହେବାକୁ କି ବ୍ୟାକୁଳତା,
କେ ବୁଝେ ମୋ ମନ ଗଭୀର କଥା ।

ନିଶ୍ଚେ ହେବି ମୁଁ ଶ୍ରେଷ୍ଠ ଛାତ୍ର,
ଦିଅ ବୀଣାପାଣି ! ବିଦ୍ୟା-ପାଠ ।

ତୁମେ ମୋର ମାଆ ମୁଁ ତୁମ ପୁଅ,
ତୁମରି କାନରେ ପୋଛ ମୋ ଲୁହ ।

ପଥୁରିଆ ମନ ତରଳ କର,
ଶୁଭଜ୍ଞାନେ ମୋର ହୃଦୟ ଭର ।

ଫୁଲ ଧୂପ ଭୋଗ- ପସରା ଗୁଡ଼ି,
କୁଅ ମୂଳେ ଆଜି ଆସିଛୁ ମାଡ଼ି ।

ଦୁଏ ଘଷେଇଲି ଚନ୍ଦନ କାଠ,
ଦିଅ ସରସ୍ୱତୀ ବିଦ୍ୟା-ପାଠ ।

●

# ନସ୍ୱ ଜଗତ

ମାଘ ପଞ୍ଚମୀ-ତା।୫।୨।୪୭

ଶେଷ—୨୦।୨।୪୭

ଗରିବ ଦୁନିଆଁ  ସରଜଲ୍ କଥାଁ
ସରଗ ପରି ଏ ଥାନେ;
ନବୋଧ ଅଜ୍ଞାନ  ନର ଅକିଞ୍ଚନ
ବୁଝେ ନାହିଁ ତା'ର ମାନେ ।

ତଥାପି ଗରିବ  କହେ ଶିବ ଶିବ
କପାଳରେ ଦୋଷ ବାଡ଼ି,
ହାହାକାର ତା'ର  ଜୀବନେ ସଂବଳ
ତୁମ ପଦ ଧୂଳି ଗୁଣ୍ଡ଼ ।

ଶତ ଶତ ତୁମ  ନସ୍ୱଙ୍କୁ ନେଇ
ଦୁନିଆରୁ ଅଧେ ଗଡ଼ା,
ନସ୍ୱ ଜଗତ  ନସ୍ୱ ପଡ଼ିବେ
କେବଳ ଧର୍ମଙ୍କ ଛଡ଼ା ।

ପୁଷମାସର ଏଇ ନସ୍ତବ୍ଧ ଭାବମଗ୍ନା ସଂଧ୍ୟା ତଳେ ନଗେନ୍‌ର ଅଗଣିତର ସେହି କେତୋଟି ପୁରୁଣା ସ୍ମୃତି ମନେ ପଡ଼ୁଛି—ମନେ ପଡ଼ିବା ଭିତରେ ବେଶି, ଯେଉଁଦିନ ସେ ତା'ର ବୃଦ୍ଧ ପିତାମାତାଙ୍କ ସହିତ ଅସ୍ପଷ୍ଟ ଅନ୍ଧାରୁଆ ସକାଳ ତଳେ ସେ ଗାଁ ଛାଡ଼ିଥିଲା ଏକ ପଳାତକ ଯାତ୍ରୀ ପରି, ମାତ୍ର ଏତିକ ନା ଆହୁରି କଛି—ହଁ ଅଗଣିତର ସେହି ସ୍ମୃତି ଭିତରେ ଲୁଚି ରହିଛି ପଲ୍ଲୀ ତୋଟାମାନଙ୍କର ଶ୍ୟାମଳ ଶୋଭା—ଦିଗ୍‌ଦିଗନ୍ତବ୍ୟାପୀ ପ୍ରାନ୍ତର ଉପରେ କୋମଳ ଦୂର୍ବାଦଳର ସବୁଜ ସମ୍ପଦ ଆଉ ରାମଦାସ ବାବାଜୀଙ୍କର ସେହି ଅତି ପୁରୁଣା ମଠ—ଯେଉଁଠି ଅସଂଖ୍ୟ ଶିଆଳିଲତା ବହୁଯୁଗରୁ ନୁଆଁଣିଆଁ ସେହି ଆମ୍ବଗଛଟା ତଳେ ସୁନ୍ଦର ଦୋଳ କେତୋଟି ଟାଣି ଦେଇଛି—ସେହି ନିର୍ଜନ ସ୍ଥାନଟା ଶୈଶବରେ ଥିଲା ଯାହା ଏକ ଆମୋଦର ସ୍ଥାନ—ପିଲାଦିନେ ତା'ର ମୋହକୁ ଏଡ଼ି ନ ପାରିବାର ଥିଲା ଏକ ମୁସ୍କିଲ ବ୍ୟାପାର, ଆଉ ପଥରଗୁହା ତଳେ ଯେଉଁ ସୁନ୍ଦରମୁଣ୍ଡୀ ଠାକୁରାଣୀ, କେଉଁ କାଳରୁ ସେ ପୂଜା ପାଇ ଆସୁଛି କେଜାଣି—ମଥାରେ ତ ତା'ର ଗୋଳା ସିନ୍ଦୂର ସାତବହଳ ପୀଢ଼ ବସିଗଲାଣି—ଆଉ ପଶ୍ଚିମପଟରେ ତା'ର ସେଇ ଯେ ପ୍ରକାଣ୍ଡ ତାଳ-ମରେଇଟା ନଇତ ରାତି ପହରକରେ ଯେଉଁଠି ଡାଆଣୀ ଆଲୁଅ ଦେଖା-ଦିଏ—ଯେଉଁଠି ବିଲୁଆର ଡାକ ଶୁଭେ—ଅଗଣିତ ଭିତରେ କେତେ ସ୍ମୃତି ଲୁଚି ଯାଇଛି—କିନ୍ତୁ ଲୁଚି ନାହିଁ ଏଇତକ—ଯାହା ଶୈଳ-ଖୋଦିତ ଲିପି ପରି ନଗେନର ହୃଦୟରେ ଲେଖା ରହିଛି—ଶ୍ୟାମଳ ପଲ୍ଲୀ ଭୂଇଁର ସେହି ଅତି ପୁରୁଣା ସ୍ମୃତି ।

କୋଡ଼ିଏ ବର୍ଷ ଜୀବନ ଭିତରେ ବହୁ ଦୁଃଖ ବିପଦର ଝଡ଼ ତାହାର ଏଇ ଛୋଟ ମଥାଟି ଉପର ଦେଇ ବହି ଯାଇଛି—ଏତେ ଦୁଃଖ ଭିତରେ ସୁଦ୍ଧା, ସେ ତା'ର ସେହି ମାଟିର ଗାଆଁଟିକୁ ନିମିଷକ ପାଇଁ ଭୁଲି ପାରିନାହିଁ—ତା'ର ଛୋଟିଆ ବୁକୁତଳେ ସଚେତନ ଉଡ଼ ଧରିଛି—ତାହା ଯେମିତି କେଉଁ ସପନପୁରୀର ଏକ ରାଜକନ୍ୟାର ସ୍ମୃତି ଅଥବା କେଉଁ କଳ୍ପିତ ମାଧବୀ ଯାମିନୀର ଏକ ପ୍ରଣୟ ସ୍ୱପନ, ତାହା ସେ ଭୁଲିନାହିଁ । ଆମରଣ ଭୁଲି ପାରିବନାହିଁ— ନଗେନ୍ ପୌଷ ଆକାଶର ଏଇ ଅସ୍ପଷ୍ଟ ଜୋଛନା ଆଡ଼େ ଅନେଇ ରହିଛି—ଆଉ ଭାବୁଛି—

ଯେଉଁଦିନ ସେ ଆଶ୍ରୟହୀନ କୁଟାଟି ପରି ହତାଶର ପ୍ରଖର ସୁଅ ମଝିରେ ଭାସି ଯାଉଥିଲା—ଶ୍ରେଷ୍ଠ ଜୀବନଟିକୁ ରକ୍ଷା କରିବା ପାଇଁ ସେ ଯେତେବେଳେ ଗୋଟାଏ କିଛି ଆଶ୍ରୟ ତାର ପ୍ରାଣ ଭିତରେ ଖୋଜି ବୁଲୁଥିଲା, ଦୈବାତ୍ ଦିନେ ଉଦାର ହୃଦୟ କୁଳମଣି ବାବୁ ସେହି ସ୍ରୋତ ମୁଖରୁ ତାକୁ ଟେକି ଧରିଲେ—ଆଉ କରୁଣାମୟୀ-ରୂପିଣୀ ସ୍ତ୍ରୀ ତାଙ୍କର ଲତାଦେବୀ ସେହି ଅର୍ଦ୍ଧମୃତ ଦେହରେ ନୂଆ ଜୀବନ ସଂଚାର କଲେ - ଦେହରେ ବିନ୍ଦୁ ବିନ୍ଦୁ ରକ୍ତର ସନ୍ଦିମୟରେ ଯେତେବେଳେ ସେ ନିହାତି ଆପଣାର ଭାବି ନିଜର ପରିବାର ଭିତରେ ସଂପୃକ୍ତ କରିନେଲେ, ସେତେବେଳେ ସେ ମଣିଷ ହୋଇ ବୁଝିଲା, ମଣିଷର ଜୀବନଟା କେବଳ ଅସ୍ଥି ମାଂସ ରକ୍ତ ମଜ୍ଜାର ସମଷ୍ଟି ନୁହେଁ—ତା' ଭିତରେ ଅଛି ଦୟା, କ୍ଷମା, ସ୍ନେହ, ପ୍ରେମର ଅନନ୍ତ ଉତ୍ସ—ଯାହା ସ୍ୱର୍ଗର ଦେବ-ଦୁର୍ଲ୍ଲଭ ଉପକରଣ—ମର୍ତ୍ତ୍ୟର ଏଇ ମଣିଷ ଦିହରେ ଦେଖା ଦେଇଛି ବୋଲି ମନେହୁଏ—ଯାହା ଅଭାବରେ ଏଇ ସୁନ୍ଦର ଜଗତଟା ସମୟରେ ତୃଣ ତରୁହୀନ ରୁକ୍ଷ ମରୁ ପରି ଅସାର ଦିଶେ—ହାହାକାରମୟ ଏକ କ୍ରନ୍ଦନଭରା ଛବି ଧରି ଦେଖାଦିଏ—ଏଇ ସ୍ମୃତିଟା ତା' ଜୀବନରେ ଏକ ଅଭୁଲା ସ୍ୱପ୍ନ ।

ଗାଁ ନାଁ ହରିପୁର—ଡମଠାରୁ ବ୍ରାହ୍ମଣ ପର୍ଯ୍ୟନ୍ତ ସମସ୍ତଙ୍କର ବସୁବାସ—ଶିକ୍ଷିତ, ଅଶିକ୍ଷିତ, ସ୍ୱାକ୍ଷର, ନିରକ୍ଷର ସମସ୍ତଙ୍କୁ ନେଇ ଏଇ ଶ୍ରେଷ୍ଠ ଗାଇଜଟି ଗଢ଼ା—ନିତ୍ୟାନନ୍ଦ ମହାନ୍ତିଙ୍କୁ ଛାଡ଼ିଦେଲେ ଆଉ ପ୍ରାୟେ ସମସ୍ତେ ଦାରିଦ୍ର୍ୟରେ ଏକ ନୌକାର ଯାତ୍ରୀ—ଜ୍ଞାନ, ବୁଦ୍ଧି ଓ ଧନରେ ନିତ୍ୟାନନ୍ଦଙ୍କୁ ଯେ କିଏ ଏମିତି ନ ମାନେ, କୌଣସି କଥା ନାହିଁ । ପ୍ରତ୍ୟେକ ପରିବାରର ଭଲମନ୍ଦ, ନ୍ୟାୟ ନିମିତ୍ତ, ମାଲିମକଦ୍ଦମା, କଳିକଜିଆ ନିତ୍ୟାନନ୍ଦଙ୍କ ବୁଦ୍ଧି ଉପରେ ନିର୍ଭର କରେ—ମୋଟ ଉପରେ ଗ୍ରାମୋନ୍ନତିଟା ଏଇ ନିତ୍ୟାନନ୍ଦଙ୍କ ପାଇଁ—ସେ ଯଦିଓ ବୈଦେଶିକ ଶିକ୍ଷା ପାଇଁ University ରୁ Certificate ନ ଆଣିଛନ୍ତି, ତଥାପି ସେ ଯେ ଅଶିକ୍ଷିତ, ଏଇଟା କେହି ଅସ୍ୱୀକାର କରିବ ନାହିଁ ।

ପଚିଶ ବର୍ଷ ତଳେ ଏଇ ଗାଆଁଟା କ'ଣ ନ ଥିଲା—ଶିକ୍ଷା କହ, ସଭ୍ୟତା କହ, ପବିତ୍ରତା କହ—ପରସ୍ପର ଭିତରେ ସ୍ନେହ-ସୌହାର୍ଦ୍ଦ୍ୟ,

ଏ ସମସ୍ତ ଗ୍ରାମର ବହୁ ଦୂରରେ ଥିଲା—ବେଦ ପୁରାଣ କ'ଣ ଲୋକେ ଶୁଣିବାକୁ ସୁଧା ପାଇ ନ ଥିଲେ—ଦାନ୍ଧ ପୁରୁଷ ଭିତରେ, ଘରେ ଘରେ ଭିତରେ ମାଲିମକଦ୍ଦମାଟା ଗୋଟାଏ ସାଧାରଣ ନିଶା ହୋଇ ଉଠିଥିଲା । କିନ୍ତୁ ତାଙ୍କର ପାଇଁ ଗାଁରେ ଆଜି ସେତିକ ସ୍ୱପ୍ନ ହୋଇପଡ଼ୁଛି । ପ୍ରତି ବିଲ ବାଡ଼ରେ ପରିବା ଗଛ, ପ୍ରତି ଘରେ ଦୁହାଁଳ ଗାଈ, ପ୍ରତି ଘରେ ଅନ୍ନର ଅସରନ୍ତି ଭଣ୍ଡାର ଆଜି ତାଙ୍କର ପାଇଁ—ଭାଗବତ ଘରେ ସଞ୍ଜବେଳର ଖଞ୍ଜଣୀ ଆଖଡ଼ା—ଗାଆଁର ଡାକଘର, ଲାଇବ୍ରେରୀ, ନିଃପ୍ରାଃ ବିଦ୍ୟାଳୟ ସବୁ ନିତ୍ୟାନନ୍ଦଙ୍କ ପାଇଁ—ଅନ୍ଧ କୁସଂସ୍କାର କେତେଟା ନିଭିଯାଇଛି—ମଦଖିଆ, ପଶାଖେଳ, ମାଲି ମକଦ୍ଦମା—ନିତ୍ୟାନନ୍ଦ ଗାଁଟା-ଯାକର ସମସ୍ତଙ୍କ ଆଖିରେ ଏକ ମହାପୁରୁଷ—ମର୍ତ୍ତ୍ୟକୁ ସେ ଆଜି ସ୍ୱର୍ଗକରି ପାରିଛନ୍ତି—କଳୁଷିତ ଗାଁ। ମୁହଁରେ ସରସ ସୁଧାର ଅନନ୍ତ ଝରଣା ସେ ମେଲା ବସିଛନ୍ତି—ସେ ହରିପୁରର ଦେବତା—ଶୁଣାନ ନନ୍ଦନ ପାଲଟିଛି—ମୂକ କଥା କହି ପାରୁଛି—ଅନ୍ଧ ପଥ ଧରି ଆଗେଇଛି—ଯଦି ସେ ତାଙ୍କର ପାଇଁ—ତାଙ୍କର ପ୍ରେରଣାରେ—ହରିପୁର ଆଜି ତା'ର ପୁରୁଣା ଜୀବନକୁ ଭୁଲିଯାଇଛି । ତା'ର ପ୍ରତି ଧୂଳିକଣାରେ ଆଜି ଯେମିତି ଏକ ନୂଆ ଜୀବନ ପଶିଛି—ସମସ୍ତ ନୂଆ ବେଶରେ ଦେଖାଦେଇଛି ।

ସେଇ ହରିପୁର—ଏତେବଡ଼ ଦୁନିଆଁ ଭିତରେ ଗୃହଖଣ୍ଡେ ବୋଲି ଥାନ—ସବୁଜ ଏକ ପଲ୍ଲୀ ଗାଁ । । ସବୁଦିନ ଏକା ପରି ନୁହେଁ—ସବୁଦିନ ସମାନ ଯାଏନା—ନିତ୍ୟାନନ୍ଦଙ୍କୁ ଯେତେବେଳେ ପଚିଶ ବର୍ଷ; ବୃଦ୍ଧ ପିତା ହରିହର ଚିରଦିନ ପାଇଁ ଆଖି ବୁଜିଲେ—ସଂସାରରୁ ବିଦାୟ ନେବାର କେତେ ଘଣ୍ଟା ପୂର୍ବରୁ ସେ ନିତ୍ୟାନନ୍ଦଙ୍କୁ ପାଖରେ ବସାଇ କହିଗଲେ —"ସାନପୁଅ ଅଦ୍ୱୈତ ତତେ ଲାଗିଲା—ସେ ମଣିଷ ହେବା ତୋର ଉପରେ, ନିତ୍ୟନନ୍ଦଙ୍କର ସେହି କଥା କେଇପଦ ହେଲା ବେଦବାକ୍ୟ—ପିତୃଆଜ୍ଞା ଶିରୋଧାର୍ଯ୍ୟ କରିବା ମଣିଷର ସର୍ବାଦୌ କର୍ତ୍ତବ୍ୟ—ନିତ୍ୟାନନ୍ଦ ପିତୃଆଜ୍ଞାକୁ ଅମାନ୍ୟ କରି ନାହାନ୍ତି—ପିତାଙ୍କ ମୃତ୍ୟୁର କିଛିଦିନ ପରେ ଅଦ୍ୱୈତ ପ୍ରତି ସେ ତୀକ୍ଷ୍ଣ ଦୃଷ୍ଟି ଦେଇ ଆସିଲେ—ଭ୍ରାତୃସ୍ନେହ ପରିବର୍ତ୍ତେ ସେ ପୁତ୍ର ନିର୍ବିଶେଷରେ ଟେକିଟ ଭାଇଟିକୁ ପାଳି ଆଣିଲେ ।"

ବିବାହର ଦଶବର୍ଷ ପରେ ହୋଇଯାଇଛି—ନିତ୍ୟାନନ୍ଦ ସନ୍ତାନ ମୁଖ ଦର୍ଶନ କରିପାରିବାର ସୌଭାଗ୍ୟ ଆଜ ପର୍ଯ୍ୟନ୍ତ ଜୁଟିଲା ନାହିଁ—ଦୁଃଖ ଭିତରେ ତାଙ୍କର ଏତିକ । ସେଥିପାଇଁ ଅଦ୍ୱୈତ ହେଲେ ତାଙ୍କର ଜୀବନରତିର ସ୍ୱପ୍ନ । ଅଦ୍ୱୈତ କିନ୍ତୁ ଗୁଣରେ ଥିଲେ ନିତ୍ୟାନନ୍ଦଙ୍କର ବିପରୀତ । ନାଟ, ତାମସା, ଜୁଆ ନିଶାର ସେ ପନ୍ଦର ବର୍ଷ ବୟସରୁ ହୋଇପଡ଼ିଲେ ଏକ ପରମ ଭକ୍ତ । ଏଭଳି ପିଲା ପକ୍ଷରେ ଭ୍ରାତୃ ଆଜ୍ଞା ଅବମାନନା କରିବା ଗୋଟାଏ ବିଚିତ୍ର ନୁହେଁ ।

ନିତ୍ୟାନନ୍ଦ ଅନେକ ସନ୍ଧ୍ୟାରେ ଭାଇକୁ ପାଖରେ ବସାଇ କେତେ ସଦୁପଦେଶ ଦେଇଛନ୍ତି; କେତେ ଧର୍ମଗ୍ରନ୍ଥ ମେଲିଛନ୍ତି—କିନ୍ତୁ ଧୂର୍ତ୍ତ ଅଦ୍ୱୈତର ପ୍ରାଣକୁ ସେ ଉପଦେଶ, ଶ୍ଳୋକ ସବୁ ସୂଚୀବିଦ୍ଧ ପରି ବୋଧ ହୋଇଛି । ମନେ ମନେ ସେ ଭାଇଙ୍କୁ ଅଶେଷ ଭର୍ତ୍ସନା କରିଛନ୍ତି । କୌଣସି ବାଗରେ ଭାଇଠାରୁ ପାଖଛଡ଼ା ହେଲେ ହାଲ୍ଲ—ଏହି ହେଲା ତାଙ୍କର ଦିନରାତି ଭାବନା ।

ଯୋଗକୁ କୁସଂସର୍ଗର ଦଳ କେତେଟା ଜୁଟିଗଲେ—କୁଆଁର ପୂନିଅ ବାସି ନିତ୍ୟାନନ୍ଦ ଯେତେବେଳେ ଗାଁ ଲୋକଙ୍କ ମୁହଁରୁ ଅଦ୍ୱୈତର କଲିକତା ଯାତ୍ରା ସମ୍ବାଦ ପାଇଲେ, ସେ ହତଜ୍ଞାନ ହୋଇପଡ଼ିଲେ—ଅନୁତାପ ଭିତରେ ଏତିକ ପିତା ଯାହା କରିବାକୁ ତାଙ୍କୁ ଆଦେଶ ଦେଇ ଯାଇଥିଲେ; ତାହା ପାଉଁଶରେ ଘିଅ ନିକ୍ଷେପ କରିବା ଭଳି ସବୁ ବ୍ୟର୍ଥ ଯାଇଛି—ସେ ଆଉ ଲୋକଙ୍କୁ ବୁଝେଇବେ କ'ଣ, ଉପଦେଶ ଦେବେ କ'ଣ—ଏହି ହେଲା ତାଙ୍କର ଦିବାରାତ୍ର ଏକ ଗଭୀର ଚିନ୍ତାର ବିଷୟ । ସେ କଲିକତା ଚିଠି ପକାଇଲେ, କେତେ ଲୋକାପବାଦ ସହ୍ୟ କଲେ; କିନ୍ତୁ ଫଳରେ କିଛି ହେଲା ନାହିଁ । ଅନଉଁ ଅନଉଁ ତିନି ବରଷ ବିତିଗଲା । ଅଦ୍ୱୈତଙ୍କର ସାକ୍ଷାତ ନାହିଁ, କି ଦୁଃଖ, ଲୋକଙ୍କ ମୁହଁରେ କିଏ-ଅବା ବାଡ଼ ଦିବ । ଯାହା ମନକୁ ଯାହା ଆସିଲା, ସେ ତାହା କହିଲା । ନିତ୍ୟାନନ୍ଦଙ୍କ ସରଳ ପ୍ରାଣରେ ଏସବୁ ଉପହାସ ଅସହ୍ୟ ହୋଇଉଠିଲା । ଶେଷରେ ସେ ନିଜେ କଲିକତା ଯିବାକୁ ମନସ୍ଥ କଲେ । ଗାଆଁର କେତୋଟିଙ୍କ ମୁହଁରୁ ସେ ଶୁଣିବାକୁ ପାଇଲେ, ଅଦ୍ୱୈତ

କଲିକତା ଯାଇ ଯାହାକିଛି ରୋଜଗାର କରୁଛି, ତାହା ଯୋଡ଼ାଏ ମାଇକନା ପିଛେ ଶେଷ । ଏତେବଡ଼ ଦୁଇଟା ଲୋକଙ୍କୁ କ ସେ ସହଜେ ଏଡ଼ ଗାଆଁକୁ ଆସିବ । ନିତ୍ୟାନନ୍ଦଙ୍କ କାନରେ ଏ ବାକ୍ୟ ବଜ୍ର ପରି ଗର୍ଜି ଉଠିଲା । ସତକୁ ସତ, ଶେଷକୁ ତାଙ୍କୁ ଦିନେ କଲିକତାର ପଥିକ ହେବାକୁ ପଡ଼ିଲା ।

"ଏ କ'ଣ !

ମଦ ?"

ନିତ୍ୟାନନ୍ଦ ଚକ୍ଷୁ ଦୁଇଟାକୁ ବିଶ୍ୱାସ କରିପାରିଲେ ନାହିଁ । ସହରର ଅନତିଦୂରରେ ଥିବା ଅନ୍ଧାରୁଆ ଗଳି ଭିତରେ ଗୋଟିଏ ଘର, ଦୁନିଆ ଗୋଟାକର ସକଳ ଦୂଷିତ ଆବର୍ଜନା ସତେ ଯେମିତି ସେ ଘର ଭିତରେ କେଉଁ ଯୁଗରୁ ଜମାଟ ବାନ୍ଧି ରହିଛି । ନିସ୍ତବ୍ଧ ସନ୍ଧ୍ୟା ପରି ନିତ୍ୟାନନ୍ଦଙ୍କ କଣ୍ଠ ରୁଦ୍ଧ ହୋଇ ଆସିଲା । ଅଂହେିତ ମଦ ବୋତଲଟାକୁ ଦୁଇ ହାତରେ ଧରି ମୁହଁକୁ ଟେକ ଦେଇଛି । ଆଖି ଦୁଇଟା ରକ୍ତାକ୍ତ, ସେହି ଛୋଟ ଅଗଣାର ବାୟୁମଣ୍ଡଳ ଭିତରେ ପଶିଁ ବୁଲୁଛି ଗୋଟାଏ ପ୍ରକାର ଉତ୍କଟ ଦୁର୍ଗନ୍ଧ ।

ବାହାରେ ସେତେବେଳକୁ ଇଲେକ୍‌ଟ୍ରିକ୍‌ର ସ୍ନିଗ୍‌ଧ ଆଲୋକ ଦେଖାଦେଇଛି । ଆଖପାଖ ଏକ କୁଲି ଶ୍ରେଣୀର ସନ୍ଧ୍ୟା ଗାଉନା ସମୀର ହିଲ୍ଲୋଳ ଭିତରେ ଭାସି ଆସୁଛି । ଗମ୍ଭୀର ଭାବନାରେ ବାଧା ଦେଇ ମଶାଗୁଡ଼ାକ ଗୁଣ୍ଠୁ ଗୁଣ୍ଠୁ କରି ଉଠୁଛନ୍ତି ଠିକ୍ କାନ ପାଖରେ । ନିତ୍ୟାନନ୍ଦ ତଳକୁ ଚାହିଁ ଭାବମଗ୍ନ, ବାରଣ୍ଡା ଉପରେ ପଡ଼ିରହିଛି ଛୋଟ ଏକ ଦଉଡ଼ିର ଖଟିଆ ଖଣ୍ଡେ । ଅସଂଖ୍ୟ ଖଣ୍ଡିଆ ବିଡ଼ି ତଳେ ତା'ର ଗଦାମରି ହୋଇ ପଡ଼ି ରହିଲାଣି—ଘର, ବାହାର ଧୂଳିମୟ—ସମୟ ସମୟରେ ନାକରେ ଖାଲି ବାଜି ଯାଉଛି ମଦର ସେହି ଉତ୍କଟ ଦୁର୍ଗନ୍ଧ । ମୋଟ ଉପରେ ପବିତ୍ରତା ଏଠାରେ ସ୍ୱପ୍ନ । ଭାବନାରେ ବାଧା ଦେଇ ହିନ୍ଦୁ ବାରିକ ସେତେବେଳେ ଡାକିଲା—

"ବାବୁ, ଯିବା ନା ରହିବା—ଅଦୁ ବାବୁଙ୍କର ଯେ ନିଶା ଏପର୍ଯ୍ୟନ୍ତ ଛାଡ଼ିବାକୁ ନାହିଁ । କଞ୍ଚା ସୁନା ମୁଣ୍ଡାଟା ତ ଅଙ୍ଗାର ପାଲଟି

ଗଲଣି—ଏମାନେ ବାପ ଅଜାଙ୍କର କୁଳ ରକ୍ଷା କରିବେ ଆଉ କ'ଣ—ନାଁ'କୁ ତ ବୁଡ଼େଇବାକୁ ବସିଲେଣି ବାବୁ ।

ନିତ୍ୟାନନ୍ଦ ଏସବୁ ଶୁଣି ଯାଉଛନ୍ତି ସତ, ମାତ୍ର ତାଙ୍କର ବାକ୍‌ସ୍ଫୂର୍ତ୍ତି ହେଉନାହିଁ । ସେ ଖାଲି ଗାଆଁର ସେହି ପବିତ୍ର କୁଡ଼ିଆଟି କଥା ଏହି ଆବର୍ଜନାମୟ କୋଠାଘର ସାଥିରେ ତୁଳନା କରିବାରେ ନିମଗ୍ନ । ଆଉ ଅଦ୍ୱୈତ କ'ଣ ମଣିଷ ହୋଇ ଅଛି—ତାକୁ ଆଉ କ'ଣ ବୁଝେଇବାକୁ ଅଛି । ତିନିଟା ବର୍ଷ ଭିତରେ ସେ ଯେ ଆଜ ପାପର ସୀମା ବାହାରେ ଛିଡ଼ା ।

"ହରି, ଯା' ହବାର ହୋଇଯାଇଛି, ଗାଆଁରେ ଯେପରି ଏସବୁ କିଛି ପ୍ରକାଶ ନ କରୁ"—ନିତ୍ୟାନନ୍ଦ କ୍ଷୀଣ କଣ୍ଠରେ କହିଲେ ।

"ବାବୁ, ଆପଣଙ୍କ ପାଖରେ ରହି ରହି ଏ ମୁଣ୍ଡର ବାଳ ସବୁ ଧଳା ହୋଇଯାଇଛି, ଦାନ୍ତ ଝଡ଼ି ଯାଇଛି, ହରି ବାରିକ ମିଂଜାସ କ'ଣ ଆପଣଙ୍କୁ ଅଛପା । ବାବୁ, ଯା' ହବାର ହୋଇଯାଇଛି, ମାପିଲେ କିଛି ନାହିଁ । କାଲି ସକାଳୁ ସାନ ବାବୁଙ୍କୁ ଧରି ଯେପରି ଗାଁ ମୁହାଁ ଧରିବାକୁ ହୁଏ—ଏତିକ କଥା । ନିତ୍ୟାନନ୍ଦ ଜବାବ ଦେଲେ, ହଁ, ସେଇପାଇଁ ତ ମୋର ପଚିଶ କୋଶ ଦୌଡ଼ିବାର ଉଦ୍ଦେଶ୍ୟ ।

× × × ×

ଅଦ୍ୱୈତ ଯେତେବେଳେ କଲିକତାରୁ ଫେରିଲେ, ସେହି ବର୍ଷ ପାଖ ଗାଆଁ ରେମୂଣାରେ ଜନୈକ କରଣ ଘରେ ଚିରଦିନ ପାଇଁ ବିବାହ ସୂତ୍ରରେ ଆବଦ୍ଧ ହେଲ—ନିତ୍ୟାନନ୍ଦ ଭାବିଲେ, ଏଥର ସାନଭାଇ ଉପରେ ଏତେଟା ଦୃଷ୍ଟି ଦବାକୁ ଆଉ ପଡ଼ିବ ନାହିଁ ବୋଧହୁଏ—ଅବିବାହିତ ଜୀବନରେ ମଣିଷ ଭିନ୍ନ ଢଗରେ ଚାଲିଥାଏ, ମାତ୍ର ଦାୟିତ୍ୱ ପଡ଼ିଲେ ତା'ର ଚରିତ୍ର, ମତି ଗତି ସବୁ ତା' ସାଙ୍ଗରେ ବଦଳି ପଡ଼େ---କିନ୍ତୁ ଅଦ୍ୱୈତଙ୍କଠାରେ ପରିବର୍ତ୍ତନ ଅଣୁମାତ୍ର ଦେଖାଗଲା ନାହିଁ---ବରଂ ପୂର୍ବଠାରୁ ସେ ଆହୁରି ମଦ୍ୟପାୟୀ ଏବଂ ବେଶ୍ୟାସକ୍ତ ହୋଇ ଉଠିଲେ---ତାଙ୍କ ଆଦେଶରେ ଗାଁ ମୁଣ୍ଡ ପଡ଼ିଆ ତଳେ ଥିଏଟରର ପେଣ୍ଡାଲ

ହେଲା । ଆଜ ନାଟ, କାଲ ପାଲା, ପଅର ଦିନ ରାମନବମୀ । ନିତ୍ୟପ୍ରିୟ ଗାଉଁଲି ମଧ୍ୟ ସେଥିରେ ଷୋଳପଣ ମାତିଲେ । ପ୍ରତି ଘରୁ ଚାନ୍ଦା ଆଦାୟ ହେଲା, ଯଥା ସମୟରେ ବାଦ୍ୟଯନ୍ତ୍ର କିଣା ହେଲା । ଦିନରାତି ହାର୍‌ମୋନିୟମର ମଧୁର ନିସ୍ୱନରେ ଗ୍ରେଟ ଗାଆଁଟି ମୁଖର ଉଠିଲା । ଆଠ ଦଶ କୋଶ ଦୂରରୁ ଲୋକ ଜମିଲେ । ମୋଟ ଉପରେ ନିତ୍ୟାନନ୍ଦ ଯେଉଁ ଯେଉଁ ବିଷୟର ପକ୍ଷପାତୀ, ଅଦ୍ୱୈତ ସେହି ବାଟରେ ଚାଲିଲେ । ଫଳତଃ ହରିପୁର ପୁଣି ତା'ର ପୂର୍ବ ଅବସ୍ଥାକୁ ଗତି କଲା ।

ଏଣେ ପୁଣି ଘର ଭିତରେ ଦିନରାତି ଦୁଇ ଯାଆଙ୍କ ଭିତରେ ଗ୍ରେଟ ଗ୍ରେଟ କଥା ନେଇ ମନୋବିବାଦ ଚାଲିଲା । ବିଶେଷତଃ ନିତ୍ୟାନନ୍ଦଙ୍କର ଏବେ ଯେଉଁ ଗ୍ରେଟ ପୁଅଟି ହୋଇଛୁ, ତା' ପାଇଁ ଅଧେ । ବଡ଼ ଯାଆ ଯଦି ସବୁ କାମକୁ ପିଠେଇ ନେଲା, ତେବେ ସେ ଦିନଟି ଭଲରେ ଗଲା । ନଚେତ୍ ଘରର କେତେଟା କାମ ପାଇଁ ଦୁଇଜଣଙ୍କ ଭିତରେ ସବୁବେଳେ ବିରାଟ ମହାଭାରତ ରାମାୟଣର ସୃଷ୍ଟି ହେଲା ।

ନିତ୍ୟାନନ୍ଦଙ୍କ ନୀରବ କୁଟୀରଟି ଦୀର୍ଘ ଚଉଦ ବରଷ ପରେ ଶିଶୁର ଦରୋଟି କଣ୍ଠରେ ମୁଖର ଉଠିଛି । ଆହା, ଦୁଇଟି ତାପିତ ପ୍ରାଣରେ ଆନନ୍ଦର ଶୀତଳ ମନ୍ଦାକିନୀ ବହି ଯାଉଛି । ନିତ୍ୟାନନ୍ଦଙ୍କ ଉପରେ ଭଗବାନଙ୍କର ଏ ଯେ ଗୋଟିଏ ଅସୀମ ଦାନ ।

ବାପ ଅତି ଶ୍ରଦ୍ଧାରେ ପୁଅଟିର ନାଁ ରଖିଛନ୍ତି ନଗେନ୍ । ଗ୍ରେଟ ପିଲାଟି ଗୁରୁଣ୍ଡିବା ଅଧ୍ୟାୟ ସମାପ୍ତ କରି ଯେତେବେଳେ ଦୁଇଗୋଡ଼ ପକାଇ ଚାଲିବାକୁ ଆରମ୍ଭ କଲା, ସେତେବେଳେ ଘରର ଅନେକଟା ଦରକାରୀ ଜିନିଷ ବାର ଖତ ଗଦାରେ ମୁହଁମାଡ଼ି ପଡ଼ି ରହିଲେ । ଆଜ କାଚ ଗିନାଟାଏ, କାଲ ବୋତଲଟାଏ, ଏମିତି କେତେ । କେତେବେଳେ ଅବା ପାଣି ମାଠିଆଟା ଘରସାରା ଲହଡ଼ି ଖେଳିଲା । ପିଲାଙ୍କର ସାଧାରଣତଃ ଏଇ ମାଟିଖିଆ ସ୍ୱଭାବ ପାଇଁ ଲପା କାନ୍ଥ ବିକଳାଙ୍ଗ ବେଶ ଧାରଣ କଲା । କହିବାକୁ ଗଲେ ଏହି ପିଲାଟି ପାଖବାଖର କଳହର ଏକ ଅଗ୍ରଦୂତ ରୂପେ ଦେଖାଦେଲା ।

ସେଉଁଦିନ ଖରାବେଳେ ପିଲାଟା କାନ୍ଦ କାନ୍ଦ ବେହାଲିଆ ହୋଇପଡ଼ିଲା, ଆରଘରୁ ନିତ୍ୟାନନ୍ଦଙ୍କ ସ୍ତ୍ରୀ ଉଠିଆସି ଦେଖନ୍ତି ତ ଶ୍ରାବଣ ଧାର ପରି ପାଟିରୁ ଅଜସ୍ର ଭାବରେ ରକ୍ତର ଧାର ଛୁଟିଛି ।

"ଏ କ'ଣ ସାନବୋହୂ" କହି ଯେତେବେଳେ ପଣତ କାନରେ ଲୁହ ପୋଛି ବଡ଼ଯାଆ ପୁଅକୁ ଟେକ ଧରଲେ, ଚଣ୍ଡୀର ଭୈରବୀ ମୂର୍ତ୍ତି ଧରି ସାନଯାଆ ଗର୍ଜି ଉଠିଲେ ।

"କଥା ଏଣିକୁ ଅଲଗା କର, ଏମିତି ଏମିତି ଆଉ କେତେ ଦିନ ଫଟା ହାଣ୍ଡିରେ କାଦୁଅ ଲେସି ରହିହବ ? ପାଞ୍ଚଟଙ୍କାର ଲଣ୍ଟଣଟା ଯେ ଭାଙ୍ଗି ଟିକ ଟିକ ହେଲା ତାକୁ କଏ ସଜାଡ଼ିବ ପଇସା ଖର୍ଚ୍ଚ କରି---ଆଉ ପୁଅ ପାଇଁ ସୁଆଗ ବାହାରିଲା । ହଁ, କହି ଦଉଚ୍ଛି, ଏଣିକୁ ସେ ପିଲାକୁ ତମ କାଇଦାରେ ରଖ, ଯେମିତି ମୋ ଦୁଆର ମୁହଁ ସେ ନ ଢ଼ଏଁ ।"

କଇଁ କଇଁ ସ୍ୱରରେ ପିଲାଟି ଖାଲି ଅର୍ଦ୍ଧସ୍ଫୁଟ ଭାଷାରେ କହି-ଚାଲିଚ୍ଛି, ଖୁଇ ମାଇଲା---ଏଁ-ଏଁ-ଏଁ ।

ଘରେ ସେଦିନ ସବୁ କାମରେ ପୂର୍ଣ୍ଣଚ୍ଛେଦ ପଡ଼ିଲା । ବିଲରୁ ଫେରି ନିତ୍ୟାନନ୍ଦ ଯେତେବେଳେ ସନ୍ଧ୍ୟା ସ୍ତୋତ୍ର ଆରମ୍ଭ କଲେ, ଗୃହିଣୀଙ୍କ ତୁଣ୍ଡରେ ଶ୍ରାବ୍ୟ ଅଶ୍ରାବ୍ୟ ଯାହା ବାହାରିଲା, ଅଦିନର ଝଡ଼ ପରି ସେ ବରଷିଗଲେ ।

କଥା ବୁଝି ବୁଝି ନିତ୍ୟାନନ୍ଦ ବଡ଼ ରାଗାନ୍ଧ ହୋଇ ଉଠିଲେ ।

"ଆଉ ତମେମାନେ ମତେ ଏଠି ରଖେଇ ଦବନାହିଁ ଦେଖୁଚ୍ଛି । ନଇତ ସଞ୍ଜବେଳକୁ ଘରକୁ ଫେରିଲେ ସେଇ ଏକା କଥା---କଳି-କଳି-କଳି ।"

"ହଁ, ସତ କହୁଛି, ମୁଁ ଏଠି ଆଉ ରହିପାରିବି ନାହିଁ । ପିଲା ବୋଲି ଖଣ୍ଡେ, ସେଥିରେ ତା' ଉପରେ ସବୁବେଳେ ଦାନ୍ତ କଡ଼ମଡ଼ । ମୋ' ଦେହ ଇଆ ସହିବ ନାହିଁ ସତ କହୁଛି । ଦିନରାତି ଗଧ ଖଟଣୀ ଖଟି ଏ ଘରେ ମୁହୂର୍ତ୍ତିଟିଏ ପାଇଁ ହେଲେ ଦିନ ଭଲରେ ସରିଲା ନାହିଁ । ଦେଖୁଛନା, ପୁଅର ମୁହଁଟା କେମିତି ଫୁଲି ଉଠିଲାଣି ।" ଗୃହିଣୀ ଏକା ନିଃଶ୍ୱାସକେ ବାକ୍ୟଟିରେ ପୂର୍ଣ୍ଣଚ୍ଛେଦ ପକେଇଲେ ।

"ଆରେ ସତରେ ତ"---କହୁ କହୁ ନିତ୍ୟାନନ୍ଦ ପିଣ୍ଡା ଉପରେ ବସି ପଡ଼ିଲେ ।

"ଗୋଟାଏ ମସ୍ତବଡ଼ ଗୋଇଠା ମାଡ଼; ଘୃ। କ'ଣ ଧର୍ମ ସହିବ ! ନାଁ, ଏଥର ଚଳାଚଳ ସବୁ ଅଲଗା କର, ମୁଁ ଏତେକଥା ଆଉ ବରଦାସ୍ତ କରିପାରିବି ନାହିଁ ।"

ନିତ୍ୟାନନ୍ଦ ଚୂପ୍ ଚୂପ୍ ବୁଝେଇ ବସିଲେ । "ମୁଁ ଆଜ ଅଦ୍ୱୈତଠାରୁ ପୃଥକ୍ ହବାକୁ ଗୃହିଁବ, ଲୋକେ ମତେ କ'ଣ କହିବେ--- ସେ କଥା ଭାବୁଛଟି ? ଆମେ ପରି ଭଙ୍ଗା ମନକୁ ଯୋଡ଼ୁଛୁ---ପାଞ୍ଚ ମନକୁ ଏକାଠି କରୁଛୁ; ଅଥଚ ନିଜ ଘରେ ଆଜ ସେହି ଘରଭଙ୍ଗା କଥା ସୃଷ୍ଟି । ନାଁ, ଏଇଟା ବାହାରକୁ ନିହାତି ଅସୁନ୍ଦର ହୋଇପଡ଼ୁଛି ନଗେନ୍ ବୋଉ---ମତେ ଆଉ ସେ କଥାରେ ବଳାନା । ମୋ' ଦ୍ୱାରା ତା' କୌଣସି ପ୍ରକାରେ ହୋଇପାରିବ ନାହିଁ ।"

ଏକ ଦୁଇ କରି ଦିନ ଆଠଟା ଗଡ଼ିଗଲା । ଅଦ୍ୱୈତ କଟକରୁ ଥିଏଟରର ସିନ୍ ଧରି ଘରକୁ ଫେରିଲେ । ଏରୁଣ୍ଡୀ ଉପରେ ପାଦ ନ ଦେଉଣୁ ସ୍ତ୍ରୀ ତାଙ୍କର ଗଙ୍ଗାଠାରୁ ଗୟା ପର୍ଯ୍ୟନ୍ତ ଟିକନିଖି ସବୁ ବର୍ଣ୍ଣନା କରିଗଲେ ।

ଅନ୍ୟଘରୁ ଥାଇଁ ଭାଉଜଙ୍କୁ ଶୁଣେଇଲା ଭଳି ଅଦ୍ୱୈତ ବଡ଼ ପାଟିରେ କହି ଉଠିଲେ, "ଏଠି କ'ଣ ତାମସା ଚାଲିଛି । ମୁଁ ଘରେ ନାହିଁ, ଏତେ ସାହସ ?"

"ନା, ତମକୁ ମୁଁ ଘଣ ଦେଇ ମନା କରୁଛି, ଘରର କାମ ତମେ ଏଥର କଛି କରନ । ଦେଖିବା, ଘର କମିତ ଅଚଳ ହେଉଛି ।"

ନଗେନ ବୋଉ ଆର ଘରୁ ଥାଇଁ ସବୁ ଶୁଣିଲେ, ନତ୍ୟାନନ୍ଦଙ୍କୁ ନଦରୁ ଉଠାଇ କହିଲେ, "ଶୁଭୁଛିଟି, ଅଦ୍ୱୈତଙ୍କ ପାଟି । ତମେ କମିତକା ଗୋଟିଏ ଅଦ୍ଭୁତ ମଣିଷ । ମତେ ଭାର ଆଶ୍ଚର୍ଯ୍ୟ ଲାଗୁଛି । ଏ'କଣ—ମଣିଷଙ୍କୁ ଏଠାରେ ରଖେଇ ଦବନାହିଁ ।"

ସ୍ୱାମୀ ଉତ୍ତର କଲେ, ତା' କଥାରୁ ତୁମେ କ'ଣ ପାଇବ । ଛାଡ଼, କେଉଁ ପାଣି କେଉଁ ଆଡ଼କୁ ଯାଉଛି, ଦେଖାଯାଉ— ।

ମାଘ ପଞ୍ଚମୀ ଶୁଭଦନ ଅଛି, ଗୃହିଣୀ ଏକା ଜଦ୍ଦ ଧର ବସିଲେ । ପୁଅର କାନଫୋଡ଼ା, ବଦ୍ୟାରମ୍ଭ ଏକାଠି ହବ, ପୁଅକୁ ଆସି ଅନୋଉଁ ଅନୋଉଁ ଛ' ପୂର ସାତ ଚାଲିଲା । ଆଉ କେତେଦନ ଅନେଇବ । ଏଥର ଯେ କୌଣସି ମତେ ତା'ର ବଦ୍ୟାରମ୍ଭ ହେବ ।

ନତ୍ୟାନନ୍ଦ ବୁଝିଲେ—ପ୍ରକୃତ ତାଙ୍କର କର୍ତ୍ତବ୍ୟ ସେ ଭୁଲ ଯାଇଛନ୍ତି ।

ଯଥା ସମୟରେ ହାଟ ବଜାରରୁ ଜନଷପତ୍ର ନସ୍ତୁ ହେଲା । ଗୁଡ଼, ଘିଅ, ପରିବା ଠାରୁ ଆରମ୍ଭକର ଲୁଗାପଟା ପର୍ଯ୍ୟନ୍ତ କଛି ବାଦ ପଡ଼ଲା ନାହିଁ । ବନ୍ଧୁ ଘରକୁ ଗୁଆ ଚଳଲା ।

ଶ୍ରୀପଞ୍ଚମୀ ସକାଳୁ ହରପୁର ବାଦ୍ୟନାଦରେ କମ୍ପି ଉଠିଲା । ପିତାମାତାଙ୍କ ହୃଦୟ—ସମୁଦ୍ରରେ ଆଜ ଆନନ୍ଦର ଶତ ଶତ ଢେଉ ମଥା ଟେକ ଗର୍ଜି ଉଠୁଛି । ସତେ, ଏମିତ ଦନଟିଏ କ'ଣ ଜୀବନରେ ସେ କେବେ ଆଶା କର ପାରଥିଲେ । ବନ୍ଧୁ ବାନ୍ଧବ ସାଇ ପଡ଼ୋଶୀ; ପାଣ ବ୍ରାହ୍ମଣ ସମସ୍ତଙ୍କ ସୁର ମିଶି ହରପୁରର ଆକାଶକୁ ଆଜ ପ୍ରତଧ୍ୱନତ କରୁଛି । ଘରେ ବାହାରେ ପ୍ରତ ପଦରରେ ବ୍ରାହ୍ମଣ ମିଷ୍ଟାନ୍ନ ଭରଣି ଚାଲଛି ।

ବେଦୀର ଗୁରି ପାଖରେ ଆମ୍ର ତୋରଣ, ଫୁଲକୁଣ୍ଡ-ମଙ୍ଗଳ ଶଙ୍ଖ ହୁଳହୁଳର ପବନ ନସ୍ତନ ପ୍ରତି ପ୍ରାଣରେ ଆନନ୍ଦର ବଙ୍କୁଳ ଚମକ ଖେଳାଇ ଦେଉଛି । ବ୍ରାହ୍ମଣଙ୍କର ବେଦ ଆରମ୍ଭ ହୋଇଗଲାଣି । ସୁନ୍ଦର ଝଲମଲ ଏକ ଚନ୍ଦ୍ରାତପ ତଳେ ଉପବିଷ୍ଟ ସାତ ବରଷର ବାଳକ ନଗେନ୍ । ଗୌର ଦେହରେ ପାଟଲୁଗା ଖଣ୍ଡି ବଡ଼ ଚମକ୍ରାର । ନିତ୍ୟାନନ୍ଦଙ୍କ ପାଇଁ ସମସ୍ତଙ୍କ ମୁହଁରେ ଆଜ ଧନ୍ୟ ଧନ୍ୟ ପ୍ରଶଂସା ।

"ଏ ଆଡ଼ମ୍ବର କ'ଣ ପାଆଁଶ ଟଙ୍କାର ଉପର ନୁହେଁ ?" ଗୃହିଣୀ ଚୁପ୍ ଚୁପ୍ ଅଦ୍ୱୈତଙ୍କ କାନ ପାଖରେ କହି ବସିଲେ ।

"ତୁ ଏଇକ୍ଷିଣା କିଛି କହନା, ସବୁ ଦେଲ ତତେ । ମୁଁ ଆଜ ଯାଉଛି ସରଦେଈପୁର । ବେଶୀ ନୁହେଁ, ବାଟ ତିନପା । ହବତ ସଞ୍ଜବୁଡ଼କୁ ଫେରିବ । କ'ଣ ସବୁ ନାଟ ହଉଛି, ହେଇଯାଉ । ସବୁ କଥାର ଆଜ ଗୋଟାଏ ଶେଷ ସମାଧାନ ନକରି ମୁଁ ଗ୍ରଡ଼ୁଛି ନା ସହଜେ ଦେ, ଦେ, ମୋ ଚଦରଟା, ଯାଏଁ ଶୀଘ୍ର । ଆଉ କହି ଯାଉଛି, ତତେ ଆଜ ଲୁଗା ଯାଚଲେ ପିନ୍ଧିବୁ ନାହିଁ । ଖବରଦାର ।" ଅଦ୍ୱୈତ ନିତ୍ୟାନନ୍ଦଙ୍କ ଅସାକ୍ଷାତରେ ସରଦେଈପୁର ବାହାରିଗଲେ । ଗୁରିଆଡ଼େ ବାଦ୍ୟନାଦ । ଜନତାର କୋଳାହଳ ।

କୈକେୟୀଙ୍କ ପରି ଗୃହିଣୀ ଏଣେ ତାଙ୍କର ବିଛଣାଟି ଧରି ଜର ବାହାନାରେ ଶୋଇଲେ ।

ପୁଅ ବେଦୀରୁ ଉଠି ସମସ୍ତଙ୍କ ପାଖରେ ଥାଳ ପତେଉଛି ଟଙ୍କା ପାଇଁ । ଯାହାର ଶକ୍ତି ଯେତିକ, ସେହି ଅନୁସାରେ ସେ ଦେଉଛି, ଥାଳରେ ଟଙ୍କା ଆଦାୟ ସରିଲା । ଏଥର ଖୁଡ଼ୀଙ୍କ ପାଳି ପଡ଼ିଲା ।

ସତରେ ତ, ସାନବୋଉ କାହିଁ ? ନଗେନ୍ ବୋଉ ଘରକୁ ପଶିଗଲେ । ଅସୀମ ଆନନ୍ଦରେ ଆତ୍ମହରା ହୋଇ ସେ ଆଜ ପୂର୍ବର କଳି ସମସ୍ତ ଭୁଲି ଯାଇଛନ୍ତି । ଛ'ମାସ ହେଲା ଉଭୟଙ୍କ ଭିତରେ କଥା ବନ୍ଦ ହୋଇଛି, ଭୁଲରେ ତାଙ୍କ ପାଟିରୁ ଆଜ ବାହାରି ପଡ଼ିଲା ।

"ସାନ, ଶୋଇଛୁ ଯେ । ନଗେନ ଥାଳରେ ଟଙ୍କା ଦବୁ ନାହିଁ କି ?"

"ବଡ଼ଟା କାହିଁକି ଜରଜର ଲାଗୁଛି" ଖୁବ୍ ନମ୍ରେଜ କଣ୍ଠରେ ସାନବୋହୂ ଉତ୍ତର କଲେ । ହାତଟା ମାରି ନଗେନ ବୋଉ ଚମକି ପଡ଼ିଲେ । "ହଁ ତ, ବଡ଼ଟା କାହିଁକି ଉଷୁମ ଲାଗୁଛି । ହଉ, ହଉ, ଉଠିଆ । ପୂଅଟା ଯେ ଛିଡ଼ା ହୋଇ ରହିଲା ।"

"ନାଇଁ, ମୋ ମୁଣ୍ଡ ବୁଲେଇଉଛି । ମୁଁ ଉଠି ପାରିବି ନାହିଁ ।"

ଥାଳରେ ଟଙ୍କା ଆଦାୟ ସରିଛି । ଏଥର ଟଙ୍କା ଅନୁସାରେ ଲୁଗା ସମସ୍ତଙ୍କୁ ପିନ୍ଧିବାକୁ ଦିଆଯିବ । ନିତ୍ୟାନନ୍ଦ ଉଚ୍ଚ କଣ୍ଠରେ ଡାକ ଦେଲେ । "ଅହେ, କୁଆଡ଼େ ଗଲୁ କରେ ।" ଅନେକ ତା' ଭିତରୁ ଏକ ସୁରରେ କହିଲେ ସକାଳୁ ତ କାହିଁକି ସାନବାବୁଙ୍କର ଦେଖା ନାହିଁ । ନିତ୍ୟାନନ୍ଦ ଘର ଭିତରକୁ ଆସି କହିଲେ, "ଦେଖୁଚୁଟି ଆଜି ଏତେ ଆନନ୍ଦ ଭିତରେ ଟୋକାଟା କୁଆଡ଼େ ମୁହଁ ଲୁଚି ଦେଇ ରହିଲା । ଲୋକର ତ ପୁଣି ଟିକେ ମୁହଁ ମୂଲଜା ଅଛି । କଥାକୁ ପାଟିରୁ ଛଡ଼େଇ ଗୃହିଣୀ କହିଲେ—

"ସାନ ପରି ଦେଖୁଛ ସକାଳ ପହରୁ ମୁହଁ ମାଡ଼ି ବିଛଣାଟାରେ ପଡ଼ିଛି । କଥା ଭିତରେ ବଦହରେ ଟିକିଏ ସାମାନ୍ୟ ଉଷୁମ ପୁରେଇଛି । ବଅ ଛାଡ଼, ସେ ସବୁ ଆମ ଦୁର୍ଭାଗ୍ୟ । ନନ୍ଦା କପାଳରେ ଆଉ ଭଲ ଶୁଣିବାକୁ ଅଇଲା କୁଆଡ଼ୁ । ହଁ, କଥା କହିଲାରୁ ମନେ ପଡ଼ିଲା, ଦବକି ଖଣ୍ଡେ ଭଲ ଶାଢ଼ୀ । ଏତେ ବେଳଯାଏ ଲୁଗା ପିନ୍ଧିନ ବୋଲି ଦେଖି ହେଉ ମୁହଁ ଫୁଲେଇ ଶୋଇଛି ବୋଧେ ।"

ସାଙ୍ଗେ ସାଙ୍ଗେ ଚଉପାଢ଼ୀରୁ ଲୁଗା ଆସିଲା । ନୂଆ ଲୁଗାଟିରେ ହଳଦୀ ଚିହ୍ନ ମରିଗଲା । ନଗେନ୍ ବୋଉ ଲୁଗା ଖଣ୍ଡି ଧରି ଚଳଘରକୁ ପଶିଗଲେ ।

"ଉଠିବୁଟି ସାନବୋହୂ, ଏଇ ଲୁଗା ନେ, ପିନ୍ଧ ।"

"ନାଇଁ ମୁଁ ଲୁଗା ପିନ୍ଧିବ ନାଇଁ ।" ସାନଯାଆ ଗମ୍ଭୀର ଭାବରେ ଜବାବ ଦେଲେ । ଓଃ, ମୁହଁରେ କି ଅସମ୍ଭବ ରକମର ବିରକ୍ତିର ଚିହ୍ନ । ସତେକି ଆକାଶ ଗୋଟାକର କଳାହାଣ୍ଡିଆ ବଉଦଗୁଡ଼ା ଏଇ ମୁହଁ ଖଣ୍ଡିକରେ ଆସି ଦେଖାଦେଇଛି । ବସୁଧା ଫାଟିଗଲା । ପଡ଼ୋଶୀ ବୁଝେଇଲେ, କିନ୍ତୁ ମୁହଁରେ ସେଇ ଏକାକଥା—"ମୁଁ ଲୁଗା ପିନ୍ଧିବ ନାଇଁ । ଏତେଗୁଡ଼ା ସ୍ନେହ, ଅମାରରେ ସାଇତି ଦିଅ । ଦିଅର ଆସିଲେ ଦେଖିଦେଇବ । ମୋ ପାଖରେ ସେ ମାଖୁନା କଥା ଗୁଡ଼ା ଚଳେନା ।"

ବଡ଼ଯାଆ ଚୁପ ରହିଲେ—ପାଟିରୁ ବର୍ତ୍ତମାନ ପଦେ ବାହାରିଲେ ଏ ଘର ଛପର ଉଡ଼ିଯିବ—ବନ୍ଧୁ ବାନ୍ଧବ ସାଇପଡ଼ୋଶୀ, ତିନି ଗାଁଆର ଲୋକ-ଖିଆପିଆ ଏପର୍ଯ୍ୟନ୍ତ ସୁଦ୍ଧା ସରିବାକୁ ନାହିଁ । ବଡ଼ଯାଆ କପାଳରେ ଗଭୀର ଚିନ୍ତାର ରେଖା ଫୁଟାଇ ତଳ ଘରୁ ଫେରିଲେ ।

ଦିବସର ସକଳ କୋଳାହଳ ଅବସାନ ହୋଇଛି । ସଞ୍ଜ ଗଡ଼ି ଯାଇ ମାଘ ପଞ୍ଚମୀର ବଙ୍କା ଜହ୍ନ ଗାଆଁ ମୁଣ୍ଡ ବରଗଛ କନ୍ଧରେ ଦେଖା ଦେଇଛି । ନିକଟବର୍ତ୍ତୀ ଇଷ୍ଟଦେବ ଦଧିବାମନଙ୍କ ଠାରେ ସେଦିନ ମହା ଆଡମ୍ବର, କଳାଘୋଡା ଧଳା ଘୋଡ଼ାର ନାଚ । ଜନତାର ଭିଡ, ଷ୍ଟେଟ ବଡ଼ କରି କେତୋଟି ମନୋହାରୀ ଦୋକାନରେ ଠାକୁରଙ୍କର ବହୁତ ଆମ୍ବ ବଗିଚା ସୁସଜ୍ଜିତ । ଆଜି ଶ୍ରୀପଞ୍ଚମୀର ମହୋତ୍ସବ, ଏଥିରେ ବହୁ ନାଟୁଆ ଦଳଙ୍କର ଆଗମନ ବାର୍ତ୍ତାରେ ଦଶକୋଶ ଦୂରରୁ ଲୋକେ ଚୂଡ଼ା ଗୁଡ଼ଳ ଧରି ସବୁଜ ପଡ଼ିଆର ବକ୍ଷ ଚିରି ବାହାରିଥିବା ସରୁ ପଥରେ ଅବିଶ୍ରାନ୍ତ ଭାବରେ ଚାଲିଛନ୍ତି । ନିଖିଳ ପ୍ରକୃତି ଆଜିର ଏଇ ଶୁକ୍ଳା ନିଶୀଥରେ ଏକ ନୂତନ ମନୋଜ୍ଞ ବେଶରେ ଦେଖାଦେଇଛି । ହରିପୁର ପଲ୍ଲୀଟି ମଧ୍ୟ ଆଜି ମାରିବ ଉଠିଛି । ଶ୍ରୀପଞ୍ଚମୀର ମହୋତ୍ସବ ଉପଲକ୍ଷେ ଗ୍ରାମର ସମସ୍ତେ ପ୍ରାୟେ ନିମନ୍ତ୍ରିତ ହୋଇ ଠାକୁରଙ୍କ ପାଖକୁ ଯାଇଛନ୍ତି । ନିତ୍ୟାନନ୍ଦଙ୍କ ଆମନ୍ତ୍ରିତ ବନ୍ଧୁବର୍ଗ ମଧ୍ୟ ଠାକୁରଙ୍କ ଦର୍ଶନରେ ବାହାରି ପଡ଼ିଛନ୍ତି । ସମସ୍ତ ଘରଟାରେ ଦୁନିଆଁ ଗୋଟାକର ସକଳ ମାରିବତା ଯେମିତି ଜମି ଉଠିଛି ।

ଦାଣ୍ଡ କବାଟରେ ଖଡ଼ ଖଡ଼ ଆଓ୍ୱାଜ ଶୁଣି ନିତ୍ୟାନନ୍ଦ ଦେଖନ୍ତି ତ ସରଦେଈପୁରର ପଣ୍ଡିତ ଗୋବିନ୍ଦ ମିଶ୍ରଙ୍କ ସହ ଅଦ୍ୱୈତ ଦୂର ଦେଶରେ ଦଣ୍ଡାୟମାନ-ଲଣ୍ଠନଟାକୁ ଉପରକୁ ଟେକି ନିତ୍ୟାନନ୍ଦ କହି ଉଠିଲେ—"ଏ କିଏ ଗୋବିନ୍ଦ ନନା, ଓଳଗି, ଆପଣ କୁଆଡ଼େ ?"

ଆସିଛି ଅନେକଟା ବିଷୟ ନେଇ, ଆଗେ ଟିକେ ଆମ ଖବର ବୁଝିଲେ ଯାଇଁ ଯେଉଁ କଥା। ଜାଣନ୍ତି ନା ନିତ୍ୟାନନ୍ଦ ବାବୁ—ମୁଁ ସ୍ୱ'ର ଜଣେ ପରମ ଭକ୍ତ। ସେତିକି ଟିକିଏ ହେଲେ ମୋର ଆଉ କିଛି ଚିନ୍ତା ନ ଥାଏ।"

ମିଶ୍ରଙ୍କୁ ଦେଖି ଦେଖି ନିତ୍ୟାନନ୍ଦଙ୍କ ପ୍ରାଣରେ ଏକ ମହା ଆତଙ୍କ ଚେଇଁ ଉଠିଲା—ସେ ଘର ଭିତରକୁ ଯାଉଁ ଯାଉଁ କହିଲେ, ଏଇ ଅଧଘଣ୍ଟାକ ଭିତରେ ସବୁ ହେଉଛି। ଆପଣ ଏଇ ପିଣ୍ଡାରେ ବସନ୍ତୁ।

'ମିଶ୍ରେ କାହିଁକି ଆସିଛନ୍ତି' ନଗେନ୍ ବୋଉ ପଚାରୁ ପଚାରୁ ତାଙ୍କର ଆପାଦମସ୍ତକ ସ୍ପନ୍ଦିତ ହେଲା—ଘଟଣା କ'ଣ ବୁଝିବାକୁ ଯାଇ ଉଭୟେ ବଡ଼ ସନ୍ଦେହରେ ପଡ଼ିଲେ।

"ହଇହେ—ମିଶ୍ରେ ଯେ ବଡ଼ ଘରଭଙ୍ଗା ଲୋକ, ତାଙ୍କର ଏଠାକୁ ଆସିବାର ମାନେ ?"

"ମାନେ ଭିତରେ ଅଦ୍ୱୈତର ଏତିକି କୁହିମ, ହଉ, ଭାବନା କିଛି ନାହିଁ। ଖାଲି ସ୍ୱ' ଟିକେ ବସଉଥା—ମୁଁ ଆସୁଛି କହି ନିତ୍ୟାନନ୍ଦ ଦାଣ୍ଡକୁ ବାହାରି ପଡ଼ିଲେ।

ମିଶ୍ରେ ଆରମ୍ଭ କଲେ—"ବୁଝିଲ ନିତ୍ୟାନନ୍ଦ ବାବୁ—ମୋ ଆସିବା କଥା ପଚାରୁଥିଲ। ଟୋକାଟା ତ ମତେ ଦିନରାତି ଆଉ ବସେଇ ଉଠେଇ ଦେଲାନାହିଁ। ନନା, ଆପଣଙ୍କ ହାତ ନ ବାଜିଲେ ଆମ ଦୁଇଭାଇଙ୍କ ଭିତରେ ପୃଥକ ହବା ଅସମ୍ଭବ—ସଂସାରେ ଭାଇ ହୋଇଥିଲେ ତ ଭିନ୍ନେ ହୁଅନ୍ତି—ଆଶ୍ଚର୍ଯ୍ୟ ଭିତରେ କିଛି ନାହିଁ। ତେବେ ଏତିକି—ପିଲାଦିନରୁ ସେ ପିତାମାତା ହରାଇ ତମର ଆଦର

ସ୍ନେହରେ ବଢ଼ି ଆସିଛୁ । ସେଇଥିପାଇଁ ହୁଏତ ଏସବୁ ଖୋଲି ତମ ଆଗରେ କହିବାକୁ ତାକୁ ସଂକୋଚ ଲାଗୁଛି । ତୁମର ଏଥିରେ ମତ କ'ଣ ନିତ୍ୟାନନ୍ଦ ବାବୁ ?" ନିତ୍ୟାନନ୍ଦଙ୍କ ଆଖି ଆଗରେ ଆକାଶ ପାତାଳ କେତେ ସ୍ମୃତି ମୂର୍ତ୍ତି ଟେକି ଦଣ୍ଡାୟମାନ । ଭାବନା ଭିତରେ ଏତିକି । ଅଦ୍ୱୈତ ମୋ ଠାରୁ ପୃଥକ ହବାକୁ ଚାହୁଁଛି ।

କ'ଣ ଭାବୁଛ ନିତ୍ୟାନନ୍ଦ ବାବୁ—କଳିଯୁଗର ଘଟଣାତ ତ ଆଖିରେ ଦେଖୁଛ—ହାଡ଼େ ହାଡ଼େ ଅନୁଭବ କରୁଛ । ଆଜିଠାରୁ ପଥ ପରିଷ୍କାର କରିନିଅ । ମଣିଷର ସ୍ଥାନ ସଂସାରରେ କେଇଟା ଦିନ ପାଇଁ । ସେଥିପାଇଁ ଏତେ କଳି—ଏତେ ଅଶାନ୍ତି ଭୋଗ କରିବା ଦରକାର କ'ଣ ?"

କଥା ପଡ଼ୁ ପଡ଼ୁ ଅଦ୍ୱୈତ ଗୁଁ ଗିଳିସଟା ନେଇ ପହଞ୍ଚିଲେ । ନିତ୍ୟାନନ୍ଦ ଲଣ୍ଠନଟା ତେଜୁ ତେଜୁ କହିଲେ —"ତା'ର ଯଦି ମୋ ଠାରୁ ପୃଥକ ହେବା ପାଇଁ ଏତେ ଜିଦ୍ ଚାଲିଛି, ମୋର ଆଉ ସେଠାରେ ପ୍ରତିବାଦ କରିବାର କିଛି ନାହିଁ । ବାପ ଯାହା ସମ୍ପତ୍ତି କରି ଯାଇଛି ସେଥିରୁ ଦୁଇଭାଇଙ୍କର ତ ଅଧେ ଅଧେ -ସେଥିରେ ମୋର ଆଉ ଏତେ ଆପତ୍ତି ଅଭିଯୋଗ ବାଡ଼ିବା ଦରକାର କ'ଣ ?" ମିଶ୍ରେ ଉତ୍ତର କଲେ—

"ଯାହା କହୁଛ ଉଚିତ, ତୁମେ ତ ଅଶିକ୍ଷିତ ନୁହଁ ନିତ୍ୟାନନ୍ଦ ବାବୁ । ସେହି ସୁଶିକ୍ଷା ପାଇଁ ହରିପୁର ଲୋକଙ୍କର ତୁମେ ଆଜି ଆଖି ଖୋଲିଛ—କଥା ଭିତରେ ଏତିକି କରିଜରୁ ତୁମ୍ଭଙ୍କୁ ଅଧେ ନବାକୁ ପଡ଼ିବ । ତା' ନ ହେଲେ ପିଲାଟା ଯେ ସଂସାରରେ ଆଉ ତିଷ୍ଠି ପାରି ମତେ ଲାଗୁନାହିଁ । ପିଲାଦିନୁ ତାକୁ ଯେପରି ପୁତ୍ର ଦୃଷ୍ଟିରେ ତୁମେ ଦେଖି ଆସିଛ, ସେମିତି ଭାବରେ ତାକୁ ପୃଥକ କରିବାର ଦେଖିଲେ ଆମ୍ଭେ-ମାନେ ସୁଖୀ ହେବୁ ।

କଥାକୁ ପାଟିରୁ ଛଡ଼େଇ ନିତ୍ୟାନନ୍ଦ କହି ଉଠିଲେ, "ମିଶ୍ରେ ମହାଶୟ—କରିଜ କ'ଣ—ମୁଁ ତ କିଛି ବୁଝି ପାରୁନାହିଁ ।"

ଝ୍' ଗ୍ଲାସଟାକୁ ତଳେ ଥୋଇ ମିଶ୍ରେ ଉତ୍ତରଲେ । "ତୁ କଣ ଅବଧି ଜାଣି ନାହୁଁ ବାପ, ସାନ ଭାଇଟା'ତ ତୋର ଗୋଟାଏ ପାଗଳା । ଗୌରହରବାବୁଙ୍କ ମୃତ୍ୟୁ ପରେ ଅଦ୍ୱୈ ସରଦେଈପୁର ସରଦାର ଘରୁ ଯେଉଁ ପାଞ୍ଚହଜାର ଆଉ ହଅଁ ମଠ ମହାଜନଠଉଁ ବନା ସୁଧରେ ଯେଉଁ ଦୁଇହଜାର ଟଙ୍କା ଆଣିଛି—ତୁ କ'ଣ ତାହା ଜାଣିନାହୁଁ ପୁଅ । ନିତ୍ୟାନନ୍ଦ ଆଖି ଦୁଇଟାକୁ ରକ୍ତାକ୍ତ କର ଗର୍ଜି ଉଠି କହିଲେ— "ଏଠି କ'ଣ ପିଲା ଖେଳ ଲାଗିଛି—ହଜାର ହଜାର ଟଙ୍କାର ମିଛ ବ୍ୟବସାୟ । ମିଶ୍ରେ ଆପଣେ—ଦେଏଣା ଫେଏଣା ସୁଝା ମୋ ଦ୍ୱାରା ହୋଇ ପାରବ ନାହିଁ । କାହିଁ, ମତେ ତ ଏସବୁ ଏକବାରେ ସଂପୂର୍ଣ୍ଣ ଅଜଣା—ଆପଣ କଣ ଏଇ ମାମଲତ କରିବାକୁ ଆସିଛନ୍ତି ।"

ଆରଘରୁ ପୁଳାଏ କାଗଜପତ୍ର ଧରି ଲକ୍ଷ୍ମଣ ସହ ଅଦ୍ୱୈତ ଝଡ଼ ବେଗରେ ପହଞ୍ଚିଲା ।

"ମିଶ୍ରେ, ଏଇଟା କ'ଣ ମିଛ ହୋଇପାରେ । କାଗଜପତ୍ରରୁ ଦେଏଣା ଦେଖୁ ନାହାନ୍ତି । ଗୌରହର ପୁଅ ମିଛ କହିବ ନାହିଁ ମିଶ୍ରେ, ମିଛ କହିବ ନାହିଁ—"

ମିଶ୍ରେ ଖଣ୍ଡିକାଶ ମାର କହିଲେ—ଦେଖ ନିତ୍ୟାନନ୍ଦ ବାବୁ କାଗଜପତ୍ର ଦେଖ । ନିତ୍ୟାନନ୍ଦ ପୁଣି ଗର୍ଜି ଉଠିଲେ—"ମିଶ୍ରେ ଆପଣେ, କ ଅନ୍ୟାୟ ପ୍ରସ୍ତାବ ବାଢ଼ୁଛନ୍ତି । ମୁଁ ତ ପଇସାଟିଏ ସେ କରଜରୁ ଧାର ନାହିଁ—ମୁଁ ତ ବେଶ୍ୟା ଘର ଯାଇନାହିଁ—ମଦ ଖାଇନାହିଁ । ଆଖଡ଼ା କରିନାହିଁ—ଆଉ ଆପଣ ଆଜ କହିଲେଣି ସାତ ହଜାର କରଜ, ଯେଉଁ ଟଙ୍କାଟା ନାଲିସ କଲେ କ ଜମିଦାର ନିମିଷକେ ଧନ ଦ୍ୱିପ୍ରହରେ ଆମକୁ ମଣ୍ଟି ଦାଣ୍ଡରେ ଛିଡ଼ା କରେଇବ । ଏ ସବୁତ ମୁଁ ଆଜଯାକେ ଜାଣେନା, ବାପ ଆମର ପଇସାଟିଏ ଧାର ନ ଥିଲେ । ଅଥଚ ତାଙ୍କ ମୃତ୍ୟୁ ପରେ ଆଜ ସାତହଜାର କରଜ । ସମ୍ପତ୍ତି କ'ଣ ଘର, ଉହତଳ ତ ଏଥିରେ ରହିବା ଭଲ ମତେ ଲାଗୁନାହିଁ । ମିଶ୍ରେ ଆପଣେ କ'ଣ ଏଇ ନ୍ୟାୟ କରିବାକୁ ଆସିଛନ୍ତି । ଯାଉନ୍ତୁ—ଯାଉନ୍ତୁ ।"

ଅଦ୍ୱୈତ କାଗଜ ଉପରୁ ମୁହଁ ଫେରାଇ ଗର୍ଜି ଉଠି କହିଲେ—"ମୋ କରଜଟା ଦେଖାଯାଉଛି—ଆଜ ଶ୍ରୀପଞ୍ଚମୀ ପୂଅ ବିଦ୍ୟାରମ୍ଭରେ ଯେ ପାଞ୍ଚଶ ଟଙ୍କାରୁ ବେଶୀ ଖର୍ଚ୍ଚ ଯାଇଛି—ସେଇଟା କ'ଣ ଟଙ୍କା ନୁହେଁ, ଗୋଡ଼—ମିଶ୍ରେ ରାଗି ଉଠି କହିଲେ—

"ହଁ, ସେଇଟା ଗୋଡ଼, ତୋ କରଜଟା ଟଙ୍କା । ବୁଝ୍‌ନୁ ଅଦ୍ୱୈତ, ଏ ପରା କଳିକାଳ, ମୁଁ ବୁଝିଲିଣି ନିତ୍ୟାନନ୍ଦ ତତେ ପ୍ରାୟେ ଏ ସଂସାରରେ ଆଉ ରଖିବ ନାହିଁ—"

ଅଦ୍ୱୈତ ଗର୍ଜି ଉଠିଲେ—"ସେ ମତେ ରଖୁନାହିଁ କି ମୁଁ ତାକୁ ରଖୁନାହିଁ ଦେଖନ୍ତୁ । ଏଠାରେ ଗାଁଟିଆ ମାମଲତ ଖାଟିବ ନାହିଁ ମିଶ୍ରେ—ଏଠି ଓକିଲ ଦରକାର, ଆଇନ କାନୁନ୍‌ର ଲୋଡ଼ା, ଏଠାରେ ମାମା ଦୁର୍ଯ୍ୟୋଧନର ମିତ୍ତ ବାକ୍ୟ ପ୍ରଯୁଜ୍ୟ, ବିନା ଯୁଦ୍ଧରେ ସୂଚ୍ୟଗ୍ର ପରିମିତ ଭୂମି ଅଦ୍ୱୈତ ଛାଡ଼ିବ ନାହିଁ । ଯାହା କହୁଛି ସତ୍ୟ—ସତ୍ୟ ତିନିବାର ସତ୍ୟ ।"

ଏମିତି ପଦେ ଦୁଇପଦରୁ ବାକ୍‌ବିତଣ୍ଡା ଗୃଲୁ ଗୃଲୁ ମିଶ୍ରେ ହଠାତ୍ ଲନ୍‌ଟନ୍‌ଟା ନିଭେଇ ଦେଲେ । ସମ୍ମୁଖସ୍ଥ ବଉଳ ଗଛ ଆଡ଼୍‌ଆଳରୁ ଗୃରିଜଣ ବଳିଷ୍ଠ ଯୁବକ ନିତ୍ୟାନନ୍ଦଙ୍କ ଉପରେ ସମସ୍ତ ବଳ ପ୍ରୟୋଗ କଲେ । ଭୟବିହ୍ୱଳ ଚିତ୍କାରରେ ମଧ୍ୟାହ୍ନ ନିଶୀଥର ସୁପ୍ତ ପଲ୍ଲୀ ଚେଇଁ ଉଠିଲା । ନଗେନ୍‌ର ବୋଉ ଗଛଲଟା, କଣ୍ଟା ଖଞ୍ଜର ବାଧା ନ ମାନି ବାଡ଼ପଟ ଦେଇ ସମ୍ମୁଖରେ ଉପସ୍ଥିତ ହେଲା ବେଳକୁ ସେଠାରେ ଆଉ କେହିନାହିଁ । ପାହାଚ ତଳେ ନିତ୍ୟାନନ୍ଦ ବାତ୍ୟାଘାତପ୍ରାପ୍ତ ଏକ ରମ୍ଭା ବୃକ୍ଷ ସଦୃଶ ଶାୟିତ, ନାସାରୁ ତାଙ୍କର ଘନ ଘନ ଭାବରେ ଖର ନିଶ୍ୱାସ ବାହାରୁଛି । ଏପରି ରୋମାଞ୍ଚକର ଦୃଶ୍ୟରେ ସ୍ତ୍ରୀ ତାଙ୍କର କିଂକର୍ତ୍ତବ୍ୟ ବିମୂଢ଼ା ହୋଇ ଯେତେବେଳେ ଭୂମିରୁ ତାଙ୍କୁ ଟେକିଲ ଧରିଲେ ନିତ୍ୟାନନ୍ଦଙ୍କର ଚେତା ଆସିଲା—"କିଏ ନଗେନ ବୋଉ—ବର୍ତ୍ତମାନ ଉପାୟ କ'ଣ—ମୋର ଜୀବନ ରଖିଲ ।"

ନିମିଷକ ପାଇଁ ଉଭୟେ ଉଭୟଙ୍କ ମୁହଁକୁ ଚାହିଁ କାନ୍ଦ ଉଠିଲେ । "ଆଉ ଏ ରାଜ୍ୟରେ ରହିହେବ ନାହିଁ ନଗେନ ବୋଉ—" କହୁଁ କହୁଁ ସେମାନେ କ୍ଷିପ୍ର ଗତିରେ ବାଗ ବାଟ ଦେଇ ଘରେ ପ୍ରବେଶ କଲେ । ଆଉ ଘରେ ଆଲୁଅ ଜଳୁଛି । ଏପର୍ଯ୍ୟନ୍ତ ନିଭିନାହିଁ—ନଗେନ ବୋଉ ଯେତେବେଳେ ଘର ଭିତରେ ପ୍ରବେଶ କରି ଧଡ଼ କରି କବାଟ ବନ୍ଦ କରିଦେଲେ, ତାଙ୍କର ମନେ ହେଲା, ସତେ କି ସେ ଏକ ଭୀଷଣ ବିପଦ ଡେଇଁ ଗୋଟାଏ ନିରାପଦ ସ୍ଥାନକୁ ଫେରି ଆସିଛନ୍ତି । ନିତ୍ୟାନନ୍ଦଙ୍କ ଛାତି ଗୋଟା ଉଠୁଛି ପଡ଼ୁଛି । ମୁଣ୍ଡ ଉପରେ ଶହେଟା ବଜ୍ରପାତ ହେଲା ପରି ବୋଧ ହେଉଛି ।

ଓଃ; କି ବିପଦ ଆଜି ଡେଇଁଗଲା—ଭାଗ୍ୟ ବଡ଼, ଯୋଗ ବଡ଼ ନଗେନ ବୋଉ—ମୋର କଣ୍ଠ ରୁଦ୍ଧ ହେଉଛି । ଆଉ କହି ପାରିବନାହିଁ । ସ୍ତ୍ରୀ ଆଖିରେ ଆଗଠାରୁ ଅଧିକ ଲୁହ ଜମି ଉଠିଥିଲା । ତା' ପରେ ଉଭୟେ ନୀରବ ।

ପାହାନ୍ତି ଅନ୍ଧାର ପରିଷ୍କାର ମଉଳ ନାହିଁ । ଉଜ୍ଜ୍ୱଳ ଶୁକତାରା ଉଷା ଦେବୀର ମଥାମଣି ସ୍ୱରୂପ ଅନ୍ଧାରୁଆ ଆମ୍ବତୋଟା ଉପରେ ଏଇ ଯେ ଦେଖାଦେଲାଣି । ପାହାନ୍ତା ପ୍ରହରର ବିଲୁଆ ଡାକରେ ନିତ୍ୟାନନ୍ଦଙ୍କର ନିଦ ଭାଙ୍ଗିଲା । ସ୍ତ୍ରୀ ସହିତ ଯେତେବେଳେ ସେ ନଗେନକୁ ଧରି ବାହାରି ପଡ଼ିଲେ, ବୃଦ୍ଧେଟି ଆଖିର ଲୁହ ଧାରରେ ଘରର ମାଟି ଚଟାଣ ଭିଜିଗଲା । ନାଁ, ଆଉ ଡେରି ନାହିଁ, ଖୁବ୍ ଶୀଘ୍ର ଚାଲିବାକୁ ହେବ– ଚିରଦିନ ପାଇଁ ଗାଆଁମାଟିର ମାୟା ମମତା ଭୁଲି ଯିବାକୁ ହେବ । ବିଲ ବାଟ ଦେଇ ଚାଲିଛନ୍ତି ତିନୋଟି ପ୍ରାଣୀ, ଆଗରେ ନିତ୍ୟାନନ୍ଦ, ପଛରେ ସ୍ତ୍ରୀ, କାଖରେ ଛୋଟ ପୁଅଟି । ପଛରେ ପଡ଼ି ରହିଲା ପ୍ରାଣପ୍ରିୟ ସବୁଜ ଜନ୍ମଭୂମି । ଯାହାର ପାଣି ପବନରେ, ତରୁଲତାରେ ତଟିନୀ, କେଦାରରେ, ଦୂବଘାସରେ, ଧୂଳି ମାଟିରେ ଅନ୍ତରର ଗଭୀର ସ୍ନେହ ଲାଗିରହିଛି । ଏପର୍ଯ୍ୟନ୍ତ ଛାଡ଼ିନାହିଁ ତା'ର ଅସୀମ ମମତା ଅତଳ ସମୁଦ୍ରଠୁ ବଳି ଗଭୀର ଯାହାର ଆକର୍ଷଣ—ସେ ସବୁକୁ ପଛକୁ ପକାଇ ଶ୍ରାବଣର ଅମାବାସ୍ୟା ତଟିନୀ ସ୍ରୋତଟି ପରି ନିତ୍ୟାନନ୍ଦ ଆଜି କ୍ଷଣିକ ଭ୍ରାନ୍ତିରେ ଆଗେଇଛନ୍ତି ।

ମନେପଡ଼ୁଛି ଖାଲି ହରିପୁର କଥା । ଆଉ କିଛିଦିନ ରହିଥିଲେ ଲୋକଗୁଡ଼ାଙ୍କର ଆଖି ଫିଟି ଯାଇଥାଆନ୍ତା ପର—ମାଇନର ସ୍କୁଲଟା ସଂପୂର୍ଣ୍ଣ ମୂଣ୍ଡଟେକ ନାହିଁ । ଭାଗବତ ଘରେ ଆହୁରି କେତେଟା ପୋଥିର ଅଭାବ ରହିଛି । ଠାକୁରଙ୍କର ପୋଖରୀଟା ଅଧାପନ୍ତରିଆ ପଡ଼ି ରହିଲା । ଲାଇବ୍ରେରୀ ମେମ୍ବରମାନଙ୍କ ଠାରୁ ଅଧେ ଟଙ୍କା ଆଦାୟ ହୋଇ ପାରିନାହିଁ ଏସବୁ ଆଉ କାହା ଉପରେ ପକାଇ ଆସିଲି ? ଧନ୍ୟ ଜନ୍ମଭୂଇଁ, ଧନ୍ୟ ତୋର ଅସୀମ ମମତା । ନିତ୍ୟାନନ୍ଦ ଆଗେଇଛନ୍ତି ଭାବନାର ବୃତ୍ତ ରଥଟିକୁ ଆଖି ଆଗରେ ଚଳାଇ । ବାଆଁ ହାତ ରହିଗଲା ମଶାଣି ପଦା । ଯେଉଁଠି ଅସ୍ଥି କଙ୍କାଳର ଶତ ଶତ ସ୍ତୂପ । ବହୁ ପୁରାତନ ସେଇ ଓସ୍ତ ଗଛଟା ସତେ ଯେମିତ ତା'ର କେଉଁ ଯୁଗର ପ୍ରହରୀ, ଗୃହଆଡ଼କୁ ଶାଖାପତ୍ର ମେଲି ଅନେଇ ରହିଛି । ହରିପୁର ଗାଆଁର ଏଇ ଅନ୍ତିମ ତୀର୍ଥ । ଏଇଠି ବୃଦ୍ଧ ପିତା ଗୌରହରି ମିଶି ଯାଇଛନ୍ତି ଆଜକୁ ଦୀର୍ଘ ଦଶ ବରଷ ହେଲା, ଦୀର୍ଘ ଦଶବରଷ ବିତିଯାଇଛି । ତାଙ୍କରି ଅଭାବରେ ଘରଟା ଆଜି ଛାରଖାର ହବାକୁ ବସିଲାଣି ସିନା, ବୃଦ୍ଧ ପିତା ଗୌରହରିଙ୍କର ବଳିଷ୍ଠ ବପୁ, ଉଦ୍ରୋଚିତ ସରଳ ବ୍ୟବହାର, ମୃଦୁ ମିଷ୍ଟ କଥା ସବୁ ଏଇଠି ମିଶି ଯାଇଛି । ଏଇ ଓସ୍ତଗଛ ଅଛି, କଆଁମୋଚ୍ଛ ଅଛି, ବିଶାଳ ମଶାଣି ପଦା, ସମସ୍ତେ ଅଛନ୍ତି, ସେଦିନର କଥା ହୁଏତ ସବୁ କହିବେ । ଆଉ କଏ ଅଛି, ଆଗରେ ଦୃଷ୍ଟି ପଡ଼ିଲା, ରାମଦାସ ବାବାଜୀଙ୍କର ସେହି ଜୀର୍ଣ୍ଣ ମଠ; ଯେଉଁ ଇଟା ପଥରରେ ଆଜି ଅସଂଖ୍ୟ ଗୁଳ୍ମ ଫୁଟି ଉଠିଛି । ଭିତରେ ଯାହାର ବାରବୁଲା ଛେଳି, କୁକୁରଙ୍କର ଧୂମ, ଚେମିଣୀ ଚଢ଼େଇର ଚେଁ ଚୁଁ ଶବ୍ଦ, ଫାଟରେ ଯାହାର ବିଷାକ୍ତ ସର୍ପର ଯାତାୟାତ, ସେହି ମଠ କହିବ ସେ ଦିନର ଘଟଣା । ହାଡ ପରେ ହାଡ଼, କଆଁସ ପରେ କଆଁସ ଅତିକ୍ରମ କରି ଚାଲିଛନ୍ତି । ଦୁଇଟି ପ୍ରାଣୀ ଆଗରେ ଧାନଖାଇ ନାଳ ପୋଲ, ଶିଉଳିରେ ଭୁଠଟା ନେଳି ପାଲଟି ଯାଇଛି । ଘାଟରେ ପଡ଼ିଛି ଗୋଟାଏ ଜୀର୍ଣ୍ଣ ନୌକା ଅକମ୍ପିତ ସ୍ୱଚ୍ଛ ଜଳରେ ପ୍ରଭାତ ତାରାର ଉଜ୍ଜଳ ମୁଖ ଶ୍ରୀ ପରିଷ୍କାର ଆଙ୍କି ହୋଇ ଯାଇଛି । ସହରର ପୂରୁବ ପାଖଟା ରଙ୍ଗିଆ ପଡ଼ି ଆସିଲାଣି, ପହିଲି କାଉ ତା'ର ଡ଼ାକ ଦବାକୁ ଆଉ ବେଶୀ ଡେ଼ରିନାହିଁ । ଦିଗଶେଷ ପାହାଡ ଜଙ୍ଗଲ ଡକ୍ଟ କାଳିମାଟା ପରିଷ୍କାର ହୋଇ ଯାଉନାହିଁ ।

ଦୁଇଜଣଙ୍କ ଭାବନାରେ ବାଧା ପହଞ୍ଚାଇ ନଗେନ ଯେତେବେଳେ ନିଦରୁ ଉଠି କାନ୍ଦିଲା, ମା' ବୁଝେଇଲେ ।—

"ହେଇ ଦେଖ୍ ନଈ, ବିଲ, ଧାନକିଆରି, ବଗ, କୁଆ, ଗେଣ୍ଡାଳିଆ ।"

"ଆମେ କୁଆଡେ ଯାଉଛେ—ମାଆ" "ପୁରୀ ଜଗନ୍ନାଥ ଦେଖି କାନ୍ଦେନା ବାପ ।" ନିତ୍ୟାନନ୍ଦ କହିଲେ, "ମାଘ ସପ୍ତମୀ କାଲି, ସମୁଦ୍ରରେ ବୁଡ଼ ପକେଇବୁ, ନହଡ଼ ଭାଙ୍ଗିବୁ, ଠାକୁର ଦେଖିବୁ, ମିଠେଇ ଖାଇବୁ, କାନ୍ଦେନା, ହେଇ ଦେଖିଲୁ ମହାନଦୀ, କେଡ଼େ ବଡ ନଈ-ଆଗରେ ନାଆ ପଡ଼ିଛି । ନାଉରିଆ ଗୀତ ଗାଉଛି, ଏଇ ଯେ ଡ଼ଙ୍ଗା ଖେଳିବୁ ।"

କଥା ଶୁଣି ଶୁଣି ନଗେନ୍ କହିଲା, "ମା, ମୋ ମୂଷା, ମୋ ଘୋଡ଼ା, ଛୁଆ ଶଙ୍ଖ କଣ୍ଢେଇ, ରବର ବୋହୂ, କିଛି ତ ଆଣିନୁ, ଯାହାକୁ ଦୋଳଯାତରୁ କିଣିଥିଲ । ଆଉ ଆମେ କ'ଣ ସେ ଗାଆଁରୁ ମୋଟେ ଫେରିବା ନାହିଁ ।"

"ହଁ ଫେରିବା, ସେଠାରେ ଅନେକ କଣ୍ଢେଇ ଅଛି । ମୂଷା ଅଛି, ଘୋଡ଼ା ଅଛି, ଆଉ ଅଛି ସମୁଦ୍ର, ଠାକୁର, ଦେଉଳ ଏମିତି କେତେ କ'ଣ ।" ମା ବୁଝେଇଲେ ।

ଏଥର ଝିରଆଡ଼ ଫରକ୍ ପଡ଼ିଗଲାଣି । ତରଗୁଡ଼ା ମଉଳି ଗଲେଣି । କାଉ ଡାକିଲାଣି । ପ୍ରଭାତ ସମୀର ହିଲ୍ଲୋଳରେ ନଈପାରି ନାଉରୀର ଗୀତ ଢେଣା ମେଲି ଉଡ଼ି ଆସୁଛି । ସେ ସଙ୍ଗୀତରେ ମିଶି ରହିଛି କେଉଁ ଯୁଗର ରଜାପୁଅର ଇତିହାସ । ମନ୍ତ୍ରୀକନ୍ୟାର ବିରହ ବ୍ୟଥା । ପ୍ରଜାପାଟକର ବିଦ୍ରୋହ । କାନରେ ଖାଲି ପଦେ ପଦେ ଛୁଇଁ ଯାଉଛି ।

"ଏଇ କ'ଣ ମହାନଦୀ—"

"ହଁ, ଏଇ ମହାନଗ । ପ୍ୟାଚ କୂଳରେ ଆଗେ ଜାହାଜ ଲଗୁ ଥିଲା । ଏଇଠି ଥିଲା ନବଡଳ ପ୍ରାସାଦ । ଏଇ ଯେ ବସ୍ତୀର୍ଣ୍ଣ କ୍ଷୁଦ୍ରକ୍ଷେତ୍ର ବାରବାଟୀ—ଅତୀତ ଇତହାସର ମୂକସାକ୍ଷୀ ।"

"ସତରେ ଏକା, କେତେବଡ଼ ପଡ଼ିଆ । ଆଖି ପାଉନାହିଁ ।" ପୁଣି କଛି ସମୟ ପରେ ନତ୍ୟାନନ୍ଦ କହିଲେ, "ଜାଣ, ଓଡ଼ଶାର ପ୍ରାଚୀନ ରାଜା ଅନଙ୍ଗ ଭୀମଙ୍କର ଏ କୃତ୍ୟ । ଦେଖିବାର କନଷ ଆଜ ଏଠି କଛି ମାତ୍ର ନାହିଁ । ସବୁଠି ଆଜ ଶୂନ୍ୟତା । ଖାଲ ହାହାକାର ପୂରି ରହିଛି ।"

ନଈ ଭତରେ ନାଆ ଚାଲଛି । କଳା ଭଅଁର ପରି ପାଣି । ଲହରର କୁଳୁକୁଳୁ ଛନ୍ଦ ସାଥିରେ ନାଉରର ବେସୁରା ରାଗିଣୀ ତାଳ ଦେଇ ଚାଲଛି ।

ସୂର୍ଯ୍ୟ ଏଇ ଯେ ଦେଖା ଦେଲେଣି । କ ସୁନ୍ଦର, ନାଲ ଟହ ଟହ । ନୂଆ ସକାଳର ମୁହଁରେ ଆଜ କ ସୁନ୍ଦର ହସ । କ ମନୋଜ୍ଞ ଗୁହାଣୀ—କବତା ବର୍ଣ୍ଣମୟ । ନାଆ କୂଳ ଛୁଇଁବାକୁ ଆଉ ଅଳ୍ପ ବାଟ—ନତ୍ୟାନନ୍ଦ କହିଲେ ।

—"ବୁଝିଲ ନଗେନ୍ ବୋଉ, ଆମର ଏ ଆକସ୍ମିକ ଯାତ୍ରାରେ ଭଗବାନଙ୍କର କ ଉଦ୍ଦେଶ୍ୟ ଅଛି, କଏ ଜାଣେ ।" ଦନ ଏଗାରଟାରେ ଟ୍ରେନ ଛାଡ଼ଲା । ଅସଂଖ୍ୟ ଯାତ୍ରୀ, କଟକ ଷ୍ଟେସନରେ ଜନତାର ମହା କୋଳାହଳ । କଏ କାହା କଥା ପଚାରେ ? ପଅରଦନ ମାଘ ସପ୍ତମୀ ବୁଡ଼ । ମଝିରେ ଗୋଟିଏ ଦନର ବ୍ୟବଧାନ । ଜଗନ୍ନାଥ ସଡ଼କରେ ଲୋକେ ଚାଲିଛନ୍ତ, ରାଉଳ ଧର ପିମ୍ପୁଡ଼ ଧାର ପରି ଚାଲଛନ୍ତ । ଟ୍ରେନ୍ ଏକ ବକଟ ଚତ୍କାର ଛାଡ଼ଲା । କୋଳାହଳ ଭତରେ ମାରବତା ଯେମିତ ଚେଇଁ ଉଠିଲା । ଟ୍ରେନ୍ ଧାଇଁଲା ତା'ର ଗନ୍ତବ୍ୟ ପଥରେ । ପଛରେ ପଡ଼ ରହିଲା ଷ୍ଟେସନ୍‌ର **waiting room** । କୋଲ, ପେଡ଼ା, ଖବର କାଗଜ, ଚା, ପାଉଁରୁଟି, ଚନାବାଦାମ ହକରର ଡାକ । ଦୁଇ

ପାର୍ଶ୍ୱରେ ଗଛଲଟା ସ୍ତମ୍ଭୀତ ହୋଇ ଅନାଇ ରହିଲେ । ବନ ଭୂଇଁକୁ ପ୍ରକମ୍ପିତ କରି ଟ୍ରେନ୍ ଧାଇଁଛି ତା'ର ଲୌହବର୍ତ୍ମ ଧରି ଅବଗ୍ରମ ଗତିରେ ।

ନିତ୍ୟାନନ୍ଦ କହିଲେ, "ବୁଝିଛ ନଗେନ ବୋଉ, ଗାଆଁରେ ଆଜ ଗୋଟାଏ ବିରାଟ ଶୂନ୍ୟତା ଆସିଥିବ ପ୍ରତି ପ୍ରାଣରେ । ଏ'କ ଆକସ୍ମିକ ଅନ୍ତର୍ଦ୍ଧାନ । ଗାଆଁ ଛାଡ଼ିଲେ ସତ, ଶ୍ରୀକ୍ଷେତ୍ର ଧାମରେ ପାଦ ପଡ଼ୁ ପଡ଼ୁ ବାସସ୍ଥାନ କେଉଁଠି ଆମ୍ଭମାନଙ୍କର କିଛି ଭାବି ପାରୁନାହିଁ ।" ସ୍ତ୍ରୀ ଉତ୍ତର କଲେ—

"ହଁ, ଭଗବାନ ଅଛନ୍ତି । ସେହି ଜଗନ୍ନାଥ ବୁଝିବେ । ମଣିଷ ହାତରେ କିଛି ନାହିଁ । ଗରିବର ଡାକ ଶୁଣିବେ । ନିଃସହାୟର ମିନତି ଶୁଣିବାକୁ ସେ କେବେ ବଧୀର ହେବେନାହିଁ । ପତିତପାବନ ବାନା ବ୍ୟର୍ଥ ନୁହେଁ ତାଙ୍କର । ଏଠାକୁ ଯେ ଅଣେଇଛନ୍ତି, ସେଇ କଅଣ ତା'ର ବନ୍ଦୋବସ୍ତ କରିବେ ନାହିଁ ? ସେଇ କ'ଣ ବୁଝିବେ ନାହିଁ ?" ନିତ୍ୟାନନ୍ଦ କହିଲେ "ତା' ନୁହେଁ କଅଣ, ମଣିଷ ହାତରେ କିଛି ନାହିଁ ।"

ପାର୍ଶ୍ୱସ୍ଥିତ ଭଦ୍ରବ୍ୟକ୍ତିଟି ବହି ପଢ଼ୁ ପଢ଼ୁ ମୁହଁ ଟେକି ପଚାରିଲେ ।

—"ଆପଣଙ୍କ ଘର ?"

ନିତ୍ୟାନନ୍ଦ କହିଲେ କଟକ ସବ୍‌ଡ଼ିଭିଜନ ହରିପୁର ଗାଁ ।

"କ'ଣ ସପ୍ତମୀ ବୁଡ଼ ପକେଇବାକୁ ଯାଉଛନ୍ତି ?"

—"ହଁ ।"

କଥା ପ୍ରସଙ୍ଗରୁ ବୁଝାଗଲା ଆଗନ୍ତୁକ ବ୍ୟକ୍ତିଟି ଅତ୍ୟନ୍ତ ଭଦ୍ର ଏବଂ ଦୟାଳୁ । ନାଁ ତାଙ୍କର ସୀତାନାଥ ପଟ୍ଟନାୟକ । ସାଙ୍ଗରେ ପାଞ୍ଚ ବରଷର ପୁଅ ଏବଂ ବୃଦ୍ଧା ଜନନୀ । ପୁରୀ ଏମାରମଠରେ ସେ ମ୍ୟାନେଜର ।

ସୀତାନାଥ ବାବୁ କଥା ପ୍ରସଙ୍ଗରେ ଆରମ୍ଭ କଲେ—"ବୁଝିଲେ ନିତ୍ୟାନନ୍ଦ ବାବୁ, ମୋର ଜୀବନ ଗୋଟାଏ ହାହାକାରମୟ ଇତିହାସ । ଶୈଶବରୁ ପିତାଙ୍କୁ ହରାଇ ଯେମିତି ଦୁଃଖ ନିରାଶାକୁ ପିଠେଇ ଆସିଛି ତାହା ଆପଣ ଅନୁଭବୀ ହୋଇଥିଲେ ବୁଝି ପାରନ୍ତେ । ହତାଶ ମୋ ଜୀବନର ଏକ ବିଶେଷତ୍ୱ । ବାପାଙ୍କ ଠାରୁ ବିଚ୍ଛେଦ ବେଳେ ମତେ ମୋଟେ ବର୍ଷ ଚଉଦ । ବୁଢ଼ୀ ମା'ଟିକୁ ଗାଆଁରେ ଏକାକିନୀ ଯେନ୍ତେବେଳେ ମାମୁଁ ଘରେ ରହି ମାଇନର ସ୍କୁଲର ଛାତ୍ର ଭିତରେ ଜଣେ ହେଲି, ସେଇ ଦିନରୁ ପରମନ ନବାକୁ ଗୋଟାଏ ପ୍ରକାର ଶିକ୍ଷାପତ୍ର ଧରି ଆସିଲି । ମାମୁଁ ମାଇଁଙ୍କ ମନ ନେଲେ ସେମାନେ କିମିତି ମୋର ଉଚ୍ଚଶିକ୍ଷା ପାଇଁ ଚେଷ୍ଟା କରିବେ—ଏଇ ଥିଲା ମୋର ସରଳ ହୃଦୟର ଏକ ବିଶ୍ୱାସ । ମାଇନର ପାଶ ପରେ ଯେତେବେଳେ ମାଟ୍ରିକୁଲେସନ୍‌ର ପ୍ରଥମ ସୋପାନକୁ ପାଦ ବଢ଼ାଏ, ହଠାତ୍ ଏକ ଆକସ୍ମିକ ବିସୂଚିକାରେ ଯନ୍ତ୍ର ମାମୁଁ ଚିରଦିନ ପାଇଁ ଇହଧାମରୁ ବିଦାୟ ନେଲେ । ସେହି ଦିନଠାରୁ ଉଚ୍ଚଶିକ୍ଷାରେ ମୋର ଚିର ଦିନ ପାଇଁ ପଡ଼ିଲା ପୂର୍ଣ୍ଣଚ୍ଛେଦ ।

ବିଧବା ମାଇଁଙ୍କର ଅବସ୍ଥା ଯେମିତି ମର୍ମନ୍ତୁଦ; ତାଙ୍କୁ ସେତେବେଳେ ପଢ଼ା ବିଷୟ କହିବାକୁ ମୋର ତୁଣ୍ଡ ଖୋଲିଲା ନାହିଁ । ମତେ ସେତେବେଳକୁ ବର୍ଷ ସତର । ଗୃହଆଡ଼୍ ନିରାଶ ହେଲି । ଏଆଡ଼େ ବିଧବା ମା, ସେଆଡ଼େ ମାଇଁ । ଦୁଇ ଜଣଙ୍କର ଏକ ଦଶା ଦେଖି ମୋର ହୃଦୟ ଫାଟିଗଲା । କାହାରି ଅନୁମତିକୁ ଅପେକ୍ଷା ନ କରି ପ୍ରଥମକରି କଲିକତାରୁ ଯେତେବେଳେ ୩୦ ଟଙ୍କା ଘରକୁ ପଠାଇଲି; ମା ଏକବାରେ ଗାଆଁକୁ ଫେରିଯିବାକୁ ଏକାଜିଦ କରି ଗୋଟାଏ ଚିଠି ଲେଖିଲେ । ଦୁଇମାସ ପରେ ମତେ ତାର ଚିଠି ପୁଣି ଗାଆଁକୁ ଫେରେଇ ନେଲା । ମାମୁଁ ଘରେ ମା'କୁ ଛାଡ଼ି ସେହି ମାସ ପୁଣି ଆସିଲି । ବିଧିର ଏକ ଘଟସୂତ୍ରରେ ଉଦାର ହୃଦୟ ମୋର ପିତୃତୁଲ୍ୟ ସୁଦର୍ଶନ ବାବୁଙ୍କ ଆଶ୍ରୟ ନେଲି । ତାଙ୍କର ଅଶେଷ ଚେଷ୍ଟା ଫଳରେ ଏମାରମଠର ମ୍ୟାନେଜର କାମରେ ଜଏନ୍ କଲି ପ୍ରଥମେ ୩୫ ଟଙ୍କା ବେତନରେ । ସେଇଠି ଥଳ ପାଇଲି ନିତ୍ୟାନନ୍ଦ ବାବୁ । ସେହିଦିନ ଠାରୁ ଦୁଃଖ ସୁଖ ସମନ୍ୱିତ ଦିନଗୁଡ଼ିକ କଟି ଚାଲିଲା ।

ଦୁଇ ବର୍ଷ ପରେ, ମତେ ଯେତେବେଳେ ଊଣେଇଶ ବର୍ଷ, ମୁଣ୍ଡରେ ଦୁର୍ବାକ୍ଷତ ପଡ଼ିଲା । ସଂସାର ବନ୍ଧନ ଭିତରେ ଲିପ୍ତ ହୋଇ ଭାବିଲି, ଏଣିକି ଆଉ ଦୁଃଖ ଭିତରେ ବିଶେଷ କିଛି ନାହିଁ । ମାଆର ମନସ୍କାମନା ପୂର୍ଣ୍ଣ ହୋଇଛି । ପୁଅର ଯାହା ମାଆ ପ୍ରତି କର୍ତ୍ତବ୍ୟ—ତାହା ଅଳ୍ପ ବହୁତେ କରି ପାରିଛି ଭାବି ଏକ ସ୍ୱସ୍ତିର ଦୀର୍ଘଶ୍ୱାସ ମାରିଲି । ଏ ବୟସରେ ତାଙ୍କୁ ଆଉ ଘରର ଦାୟିତ୍ୱ ମୁଣ୍ଡାଇବାକୁ ପଡ଼ିବ ନାହିଁ । ଏତିକି ମାତ୍ର ମନରେ ସାନ୍ତ୍ୱନା ଆସିଲା । ତା'ପରେ, ବିବାହର ବର୍ଷକ ଉତ୍ତାରେ ଏହି ପୁଅଟିର ଜନ୍ମ । ଭାବିଲି ଭଗବାନଙ୍କର ମୋ ପ୍ରତି ଏତେଦିନେ ଦୟାର ସଂଚାର ହୋଇଛି । ଇଚ୍ଛାମୟଙ୍କର ଯାହା ଇଚ୍ଛା ହୋଇଯିବ, ମଣିଷ ସେଥିରେ କିଛି ବାଧାଦେଇ ପାରିବ ନାହିଁ ।

ଆଉ କଅଣ ଶୁଣିବେ ନିତ୍ୟାନନ୍ଦବାବୁ ! କଣ୍ଠ ରୁଦ୍ଧ ହୋଇ ଆସୁଛି--କିନ୍ତୁ କହୁ କହୁ ଭଦ୍ରଲୋକଟି କହିଁ କହିଁ ହୋଇ କାନ୍ଦି ଉଠିଲେ । ବସିଥିବା ବୃଦ୍ଧା ଜନନୀଙ୍କ ଶୁଖିଲା ଆଖିକୋଣରୁ ଲୁହର ଦୁଇଟା ଟୋପା ଛୁଟି ଆସିଲା ।

ନିତ୍ୟାନନ୍ଦବାବୁ ବୁଝେଇ ବସିଲେ—ଦୁଃଖସୁଖର ସଂସାର—ଆପଣ କିଣ ବୁଝନ୍ତି ନାହାନ୍ତି ସୀତାନାଥବାବୁ--"କାନ୍ଦନ୍ତୁ ନାହିଁ--ଆପଣଙ୍କ ଇତିହାସ ଠାରୁ ମୋ' ଇତିହାସଟା ଯେ କେତେ କରୁଣ, କେତେ ମର୍ମନ୍ତୁଦ ଆଉ ବିରାଟ—ଶୁଣିଲେ ହୁଏତ ଆଶ୍ଚର୍ଯ୍ୟ ହେବେ ।"

ରୁମାଲରେ ଆଖି ଦୁଇଟା ପୋଛୁ ପୋଛୁ ସୀତାନାଥବାବୁ ଛୋଟ ପୁଅଟିକୁ ନିର୍ଦ୍ଦେଶ କରି କହିଲେ—"ନିତ୍ୟାନନ୍ଦବାବୁ, ଏଇ ପିଲାଟି ଆଜିକୁ ପନ୍ଦରଦିନ ହେଲା ମାତୃହୀନ—ଏଇଥିରୁ ସବୁ ବୁଝିବେ—ଟେଲି-ଗ୍ରାମଟା ପାଇ ସାଥେ ସାଥେ ଘରକୁ ଯିବାବେଳକୁ ସ୍ତ୍ରୀଙ୍କ ଜୀବନର ଗୋଟାଏ ଶେଷ ସମାଧା ହୋଇ ସାରିଛି—ଏଇ ତ ପଅରଦିନ ଶୁଦ୍ଧି ସାରି ଆଜି ପୁଣି ଫେରିଛି—ଏଇଥିରୁ ବୁଝନ୍ତୁ ମୋର ଜୀବନଟା କେମିତି ଦୁର୍ବହ—କେମିତି ହୃଦ-ବିଦାରକ । କଥା ସୁଅରେ ବାଧା ପଡ଼ିଲା—ଦଳେ ଯାତ୍ରୀ ଯେତେବେଳେ ଷ୍ଟେସନର ମାଠବତାକୁ ଭାଙ୍ଗି ଡ଼ାକ ଦେଲେ—

"ଜୈ—ଜୈ—ଲଙ୍ଗରାଜ କ ଜୈ ।"

ନଗେନକୁ କୋଳରେ ବସାଇ ସୀତାନାଥବାବୁ ପଚାରିଲେ—
"ଏଇଟି କ'ଣ ଆପଣଙ୍କର ଏକମାତ୍ର ପୁଅ ନିତ୍ୟାନନ୍ଦବାବୁ ?"

"ହିଁ—ସେଇଟି ଏକମାତ୍ର—ଦୁଇଟି ଜୀବନର ସର୍ବସ୍ୱ—କେତେ ଦିଅଁ ଦେବତା ପୂଜାର ସେଇ ଗୋଟିକ ଇପ୍‌ସିତ ଧନ—ଆଜି ଜୀବନରେ କୌଣସି ପାଇଁ ଚିନ୍ତା ନାହିଁ ସୀତାନାଥବାବୁ—ତା'ର ଭବିଷ୍ୟତ କେମିତି ଉଜ୍ଜ୍ୱଳ ହେବ, ସେଇ ଏକମାତ୍ର ଦୁଇଟି ପ୍ରାଣରେ ଦିବାରାତି ଭାବନା—କଥା ପ୍ରସଙ୍ଗରେ ହରିପୁର ବିରାଟ ମହାଭାରତର ପ୍ରତ୍ୟେକଟି ପୃଷ୍ଠା ଲେଉଟା ହେଲା—ତା' ଭିତରେ କନିଷ୍ଠଭ୍ରାତଃ ଅଦ୍ୱୈତଙ୍କର ଗୁଣାବଳୀ—ନିଜର ଆକସ୍ମିକ ପଳାୟନ—କିଛି ଆଉ ବାଦ ପଡ଼ିଲା ନାହିଁ । × ×

ସୀତାନାଥବାବୁ ପୂର୍ବ ଜବାବ ଦେଲେ, ତାଙ୍କୁ ସେ ଆଶ୍ରୟ ଦେବେ । ତହସିଲଦାର ଗୃହଖଣ୍ଡିକ ତାଙ୍କ ହାତ ମୁଠାରେ—ବିନା ଭଡ଼ାରେ ମଠ ତରଫରୁ ଘର ମିଳିବ—ଆଉ ଚିନ୍ତା କିଛି ନାହିଁ ନିତ୍ୟାନନ୍ଦବାବୁ, ସେଇଠାରେ ରହିଯାଆନ୍ତୁ—ଖୁବ୍ ଭଲ ହେବ ।

କୃତଜ୍ଞତାରେ ନିତ୍ୟାନନ୍ଦଙ୍କ ମସ୍ତକ ଅବନତ ହେଲା । ଓଃ—ଈଶ୍ୱର କ ବଡ଼ଲୋକ, ଷ୍ଟେସନରେ ଗାଡ଼ି ଚଢ଼ୁ ଚଢ଼ୁ ବାସସ୍ଥାନ ପାଇଁ ଉଭୟଙ୍କ ପ୍ରାଣରେ ଯେଉଁ ଭାବନା ଛୁଇଁଥିଲା; ତାହା ନିର୍ଦ୍ଦିଷ୍ଟ ସ୍ଥାନରେ ନ ପହଞ୍ଚୁଣୁ ସଫଳ ହୋଇଛି । ଭଗବାନଙ୍କ ପାଦତଳେ ଉଭୟଙ୍କ ମସ୍ତକ ଅବନତ ହେଲା ।

ଟ୍ରେନ ଉତ୍ତରତ, ଷ୍ଟେସନରେ ଗାଡ଼ି ଅଟକିଲା—ମହା କୋଳାହଳରେ ଆକାଶ ବଧିର୍ଣ୍ଣ ହେଲା—ଯାତ୍ରୀ ଓହ୍ଲାଇଲେ ।

ଶକଟ ଭିତରେ ବସିଲେ ନଗେନବୋଉ, ନଗେନ୍ ବୁଢା ଜନନୀ, ଆଉ ତାଙ୍କ ଜ୍ୟେଷ୍ଠ ପୁଅ ବ୍ରଜ, ଆଗରେ ଚାଲିଲେ ସୀତାନାଥ ଆଉ ନିତ୍ୟାନନ୍ଦ ।

ଆଜ ମାଘ ସପ୍ତମୀ—ନିଖିଳ ହିନ୍ଦୁଜାତିର ଏକ ଶ୍ରେଷ୍ଠ ପର୍ବ ଦିବସ—ପାହାନ୍ତି ଅନ୍ଧାରର କାଳିମା ଆକାଶରୁ ପରିଷ୍କାର ମଉଳି ନାହିଁ । ପଥଘାଟରେ ସ୍ରୋତଚଳନ୍ତି ଅଗଣିତ ଯାତ୍ରୀ, ସମୁଦ୍ରରେ ଆଜ ବୁଡ଼ ପଡ଼ିବ ।

ପଛରେ ପଡ଼ି ରହିଲା ସଡ଼କର ଗୈରିକ ରଙ୍ଗମାଟି—ଆଗକୁ ଦିଶିଲା ବିସ୍ତୀର୍ଣ୍ଣ ଧବଳ ସୈକତ—ଆଖିଆଗରେ ଗଙ୍ଗୋପସାଗରର ଦିଗ-ଦିଗନ୍ତବ୍ୟାପୀ ସୁନୀଳ ଜଳରାଶି ଲହରୀର ମସ୍ତକୋତ୍ତୋଳନ କରି ଗରଜୁଛି, ଚାରିଆଡ଼େ ପହଁରି ବୁଲୁଛି ସତେ କି ଆନନ୍ଦର ଏକ ଉଛୁଳା ଢେଉ—ପ୍ରଭାତର ଶାନ୍ତ ଶୀତଳ ସାମୁଦ୍ରିକ ପବନ ପ୍ରତି ଦେହରେ ଫୁଲ ପରି ତାହାର କଅଁଳ ପରଶ ବୋଳି ଦେଇଯାଉଛି । ସମସ୍ତ ଯାତ୍ରୀ ସାଗର ଜଳରେ ଅବଗାହନ କରି ଶରୀରକୁ ଶୁଦ୍ଧ ପୂତ କଲେ—

ସମୁଦ୍ର ଆରପାରି ଦିଗ୍‌ବଳୟ ଭାଗ ଅରୁଣର ଲୋହିତ ରାଗରେ ରଞ୍ଜିତ ହୋଇ ଉଠିଲା । ଢେଉ ମୀରବ ସଙ୍ଗେ ସଙ୍ଗେ କ୍ଷଣକ ପାଇଁ ଜନତାର କୋଳାହଳ ମଧ୍ୟ ଥମି ପଡ଼ିଲା । ସାଗରର ସ୍ୱଚ୍ଛ କାଚ ପରି ସୁନୀଳ ଜଳରାଶି ଉପରେ ଅକଳ୍ପିତ ସ୍ୱର୍ଣ୍ଣ ସୁଷମା ଝରିପଡ଼ିଲା । ଶୁଭ ହୁଳାହୁଳି ସହିତ ପବିତ୍ର 'ହରିବୋଲ' ରବରେ ମସ୍ତକୋପରି ଉଦାର ଆକାଶ ପ୍ରତିଧ୍ୱନିତ ହେଲା । ବଡ଼ ଦେଉଳ ଦର୍ଶନୋଦ୍ଦେଶ୍ୟରେ ଯାତ୍ରୀ ସାଗରୋପକୂଳରୁ ଫେରିଲେ ॥

"ଏହି କ'ଣ ବଡ଼ଦାଣ୍ଡ—ଏତେ ବଡ଼ ?"

ମୁଣ୍ଡରେ ତା'ର ଧୂଳି ମାରୁ ମାରୁ ନଗେନବୋଉ ପଚାରିଲେ ।

—"ହଁ, ଏଇ—"

ଗରୁଡ଼ ସ୍ତମ୍ଭତଳେ ଶିର ଲଗେଇ ଲଗେଇ ନିତ୍ୟାନନ୍ଦ ଉତ୍ତର ଦେଲେ ।

ଓଡ଼ିଆ ଜାତିର ଗୌରବ ଗୀତଗାଇ ମନ୍ଦିର ଚୂଡ଼ା ନୀଳଚକ୍ର ଉପରେ ପତିତପାବନବାନା ସମୀରଘାତରେ ଆନ୍ଦୋଳିତ । ମା' କହିଲେ, "ନଗେନ୍ ଦେଖିଚୁଟି, ଏଇ ପୁରୀ—ଏଇ ଯେ ଦେଉଳ, ଠାକୁର

ପତାକା, ଦୋକାନ, ବଜାର । ବାଇଶ ପାହାଚରେ ସୀତାନାଥ, ନିତ୍ୟାନନ୍ଦ ଇତ୍ୟାଦି ସମସ୍ତେ ଗ୍ଳଲିଛନ୍ତି । ଆଗ ଆଗରେ ଏଇ ସେ ବଳଭଦ୍ର, ଜଗନ୍ନାଥ, ସୁଭଦ୍ରା ତିନିମୂର୍ତ୍ତି ବଡ଼ସିଂହାର ବେଶରେ ସୁସଜ୍ଜିତ । ପଦତଳେ ତାଙ୍କର କୋଟି କୋଟି ମସ୍ତକ ଅବନତ, ଘଣ୍ଟାନାଦ ଏବଂ ଜନତାର ରବରେ ଉତ୍ତୁଙ୍ଗ ଦେବାଳୟ ପ୍ରତିଧ୍ୱନିତ ।

ଧନ୍ୟ ଓଡ଼ିଆ, ଧନ୍ୟ ତୋ'ର କୃତିତ୍ୱ, ଧନ୍ୟ ତୋ'ର ଶିଳ୍ପ ନୈପୁଣ୍ୟ । ମନ୍ଦିର ବେଢ଼ାରେ ଦୃଷ୍ଟି ନିକ୍ଷେପ କରୁ କରୁ ନିତ୍ୟାନନ୍ଦ ସୀତାନାଥଙ୍କୁ ଉଦ୍ଦେଶ୍ୟ କରି କହିଲେ । ସୀତାନାଥ ଗମ୍ଭୀର ଦୁଃଖ ପ୍ରକାଶ କଲି ଭଳି କହିଲେ—

"ଆଜି ଆଉ କ'ଣ ସେ ପ୍ରାଚୀନ ଓଡ଼ିଶା ଅଛି ନିତ୍ୟାନନ୍ଦବାବୁ, ପ୍ରାଚୀନ ଓଡ଼ିଶାର ଗୌରବମୟ ଇତିହାସ ଆଜି ଏଇ ରୁକ୍ଷ ପଥରରେ ଥିବା ସୁନ୍ଦର ଆଲେଖ୍ୟାବଳୀ କହିବେ, ଏଇ ଶୃଙ୍ଖଳିତ ପଥର ତା'ର ଜଳନ୍ତ ସାକ୍ଷୀ, ସେହି ଆଜି ଆର୍ଯ୍ୟଜାତିର ଇତିହାସ କହିବ । ମଣିଷ କହି ପାରିବ ନାହିଁ. ନିତ୍ୟାନନ୍ଦବାବୁ, ଏଇ କାଠ ପଥର କହିବେ । ନୀଳଚକ୍ର ଉପରେ ଏଇ ଗୌରବକେତନ ପତିତପାବନବାନା କହିବ । ଓଡ଼ିଆ ଆଜି ଅନ୍ଧ ହୋଇ ପଥ ଭୁଲିଛି । ଯେଉଁମାନେ ଆଲୋକ ଜାଳି ଦୁର୍ଗମ ପଥକୁ ସୁଗମ କରି ଉନ୍ନତିର ଚରମ ସୀମାକୁ ପଥ କଢ଼ାଇଥିଲେ ସେମାନେ ଆଜି ନାହାନ୍ତି । ସେହି ମହାପୁରୁଷମାନଙ୍କୁ ହରାଇ ଉତ୍କଳ ପୁଣି ତା'ର ପଥ ଭୁଲିଛି । ଯାଇଛି, ଆଗେଇ ପାରିନାହିଁ । ଅନ୍ଧ ପରି ସବୁଠି ବାଟ ହରାଇଛି ।

ପଣ୍ଡାଙ୍କ ଭିତରେ କଳି ଲାଗିଲା—କିଏ କାହାକୁ କ'ଣ ଦେଖେଇବ । ଏଇ ଲକ୍ଷ୍ମୀଙ୍କ ଦେଉଳ, ଏଇ ସୁନା କୂଅ, ଏଇ ରୋହିଣୀ କୁଣ୍ଡ । ଗୋଟିଏ ଠାରୁ କୋଟିଏ ଦେବତା ଦେଖା ସରିଲା । ଦୁଇଘଣ୍ଟା ଭିତରେ କେହି ଆଉ ବାକି ରହିଲେ ନାହିଁ । ପଇସା ଲୋଭରେ ପଣ୍ଡା ଦୁଇଟା ଆଗେଇଛନ୍ତି ।

"ମା ! ଦେଖନ୍ତୁ, ଏଇଟା ହେଉଛି ଜଗନ୍ନାଥ ମହାପ୍ରଭୁଙ୍କର ମାଧବୀ ବନ । ବାର ବରଷରେ ଥରେ ଏଇଠି ତାଙ୍କର ଦାହ କାର୍ଯ୍ୟ ଅନୁଷ୍ଠିତ ହୁଏ ।

ଗୋଟି ଗୋଟି କରି ସମସ୍ତ ଦୃଶ୍ୟ ଚଳଚ୍ଚିତ୍ର ପରି ଦେଖାଦେଇ ଚାଲିଗଲେ । ନିକଟବର୍ତ୍ତୀ ରାଜା ନଅରରେ ଟଂ ଟଂ କରି ବାରଟା ବାଜିଲା । ଅଭଡ଼ା ଭୋଗ ଧରି ନିତ୍ୟାନନ୍ଦ, ସୀତାନାଥ ଇତ୍ୟାଦି ଘରକୁ ଆଗେଇଲେ । ନଗେନ ବୋଉ ପଛକୁ ଫେରି ଚାହିଁଲେ, ପଣ୍ଡା ଡାକୁଛନ୍ତି—

"ମା—

ଆମ

ବିଦାକି ?"

ସମୟ କାହାରିକୁ ଅପେକ୍ଷା କରେନାହିଁ, କଲନାହିଁ, ବହିଗଲା । ନିତ୍ୟାନନ୍ଦବାବୁ ଏମାରମଠର ତହସିଲଦାର ରୂପେ ନିଯୁକ୍ତ ହେଲେ କୋଡ଼ିଏ ଟଙ୍କା ବେତନରେ । ନଗେନ ପାଠ ପଢ଼ିଲା ଆଖପାଖ ଗୋଟିଏ ମିେଅର ସ୍କୁଲରେ । ଦୁଃଖେ ସୁଖେ ଛୋଟ ପରିବାରଟି ଚଳିଲା । ଦୁଇଟି ପ୍ରାଣରେ ଆଉ ଭାବନା ଭିତରେ କିଛି ନାହିଁ । ପିଲାଟି କିପରି ମଣିଷ ହୋଇ ଦୁନିଆ ଭିତରେ ପାଁ' ଜଣଙ୍କ ସାଙ୍ଗରେ ବାଟ ଚାଲିବ, ଏହି କଥାଟା ହୋଇ ପଡ଼ିଲା ଦିନରାତି ଏକ ରାତ୍ରିର ଚିନ୍ତାର ବିଷୟ । ନିତ୍ୟାନନ୍ଦ ଭାବିଲେ, ସଂସାରରେ ତାଙ୍କର ଜୀବନଟା ଆଉ କେତେଦିନ ପାଇଁ । ବାଉନ ପୂରି ତ ତେପନ୍ ଚାଲିଲାଣି । ମଣିଷର ପରମାୟୁ ହାରିହାରି ଧରିବାକୁ ଗଲେ କଳିଟୋ ଷାଠିଏ । ଯା'ରି ଭିତରେ ସତେ ନଗେନ୍ ଅନ୍ତତଃ ମ୍ୟାଟ୍ରିକ୍ୟୁଲେସନଟା ଡେଇଁ ଯିବ, କେଜାଣି ? ବୃଦ୍ଧଙ୍କ ମନକୁ ବିଶ୍ୱାସ ପାଏନା । ମଣିଷ ଦ୍ୱାରା କିଛି ହୋଇ ପାରେନା, ହେବନାହିଁ, ସବୁ ବିଧିର ବିଧାନ, ସବୁ ଅଦୃଷ୍ଟର ଇଚ୍ଛା ।

ନଗେନକୁ ଏଇଠି ଦଶ ପୂରି ଏଗାର ଚାଲିଛି । ତା'ର ବୁଦ୍ଧି ଅତ୍ୟନ୍ତ ତୀକ୍ଷ୍ଣ । ତୁଳସୀ ଦୁଇ ପତ୍ରରୁ ବାସିଲା ଭଳି, ପିଲା ଦିନରୁ କେତୋଟି ଉଦାହରଣରେ ତା'ଠାରେ ଉଚ୍ଚ ବୁଦ୍ଧିର ଯଥେଷ୍ଟ ପରିଚୟ ମିଳି ପାରିଛି ।

ଆଠକାଳ ବାରମାସୀ ନିତ୍ୟାନନ୍ଦ ଯେତେବେଳେ ବଜ୍ର ଗମ୍ଭୀର ସ୍ୱରରେ ପାହାନ୍ତିଆ ସ୍ତୋତ୍ର ପଢ଼ନ୍ତି, ନଗେନ ଅଳି କରି ବସେ— "ବାପା, ମୁଁ ଶିଖିବି ।" ବର୍ଷକ ଭିତରେ ଛୋଟ ପିଲାଟି କଣ୍ଠରେ ଚାଣକ୍ୟଶ୍ଳୋକ ସ୍ପଷ୍ଟ ରୂପେ ଉଚ୍ଚାରିତ ହେଲାଣି । ବାସ୍ତବିକ, ଏଇ ଚାଣକ୍ୟ ଶ୍ଳୋକ ତା'ର ଜୀବନକୁ ସେହି ଆଦର୍ଶରେ ଗଢ଼ି ନେଇଛି ।

ନଗେନ୍ ଆଜି ଅଳ୍ପ ବୟସରେ ପିତାମାତାଙ୍କର ଦାରିଦ୍ର୍ୟ ବୁଝି ପାରିଲାଣି । ତଥାପି ଶୈଶବ-ସୁଲଭ ଚପଳତାର ଝଙ୍କ ସମୟ ସମୟରେ ତା'ର ଦୁର୍ବଳ ମସ୍ତିଷ୍କଟି ହଲାଇଦିଏ—

"ବାପା, ମୋର ଭଲ ଲୁଗା ଚଦର, କାମିଜ, ଗେଞ୍ଜି— ନିତ୍ୟାନନ୍ଦ ତା'ର ଏତେ ବଡ଼ ଆଗ୍ରହକୁ ଏଡ଼ି ପାରି ନାହାନ୍ତି କେତେବେଳେ । ପୁଅ ଯାହା ଯେତେବେଳେ ଚାହିଁଛି, ତାହା ସେ ତାଙ୍କର ସକଳ ଅଭାବ ଭିତରେ ପୂରଣ କରିବାକୁ ଯଥାସାଧ୍ୟ ଚେଷ୍ଟା କରିଛନ୍ତି । ନଗେନ୍ ଯେ ତାଙ୍କର ଏତେବଡ଼ ଦୁନିଆ ଭିତରେ ସର୍ବସ୍ୱ— ତା'ରି ପାଇଁ ତାଙ୍କର ଏ ବୃଦ୍ଧ ବୟସରେ ସୁଦୂର ବିଦେଶରେ ପଡ଼ି ଅଭାବ ସମୁଦ୍ରରେ ଉବେଇ ଟୁବେଇ ହେବାର ଚରମ ଉଦ୍ଦେଶ୍ୟ । ନଗେନ୍ ଯେ ତାଙ୍କର ଜୀବନ, ଆକାଶର ଧ୍ରୁବ ତାରା, ଘନ ତମସାର ଉଜ୍ଜଳ ରେଖା—"

ଦୈବାତ୍ ଯେଉଁଦିନ ସମୁଦ୍ର କୂଳରେ ନିତ୍ୟାନନ୍ଦଙ୍କ ସାଥିରେ ଚାଁପୁର ଦଧି ବିଶ୍ୱାଳଙ୍କର ଭେଟ ହେଲା, ବିଶ୍ୱାଳେ ଚମକି ପଡ଼ିଲେ—

"କି ନିତ୍ୟାନନ୍ଦବାବୁ—ଆପଣ କ'ଣ ଏଠି ହେ ?"

"ମହାଭାରତର ଇତିହାସ କ'ଣ ହରିପୁରଠାରେ ସତ୍ୟ ହେଲା, ତେବେ ପାର୍ଥକ୍ୟ ଭିତରେ ଏତିକି; ପାଣ୍ଡବକୁଳ ବନବାସ କରିଥିଲେ ବାରବର୍ଷ ପାଇଁ । ଆଉ ତୁମେ 'ତୀର୍ଥବାସ' କଲ ଚିରଦିନ ସକାଶେ ।"

"ନା ଭାଇ ! ଈଶ୍ୱରଙ୍କର ଯାହା ଯେତେବେଳକୁ ବିଧିବିଧ ଅଛି ହୋଇ ଯାଉଛି, ହେଉଥିବ । ମଣିଷ ହାତରେ ଶାଗ ସିଝିବ ବିଶ୍ୱାଳେ ? ଆଉ ଗାଆଁର ଖବର କ'ଣ ?"

"ଗାଆଁର ଖବର କ'ଣ ଆଉ—ହରିପୁର ପୁଣି ଯେଉଁ ତିମିରରେ ଆଜକୁ ପଚ୍ଚିଶ ବର୍ଷ ତଳେ ବୁଡ଼ି ରହିଥିଲା; ଆଜି ପୁଣି ତା'ର ସେହି ଅବସ୍ଥା । ଲକ୍ଷ୍ମୀ ତ ତମରି ସାଙ୍ଗରେ ଗାଁରୁ ବିଦାୟ ଘେନି ଆସିଛନ୍ତି । ପାଞ୍ଚବର୍ଷ ତଳର ହରିପୁର କ'ଣ ଆଉ ଆଜି ହୋଇଅଛି । ଅଦ୍ୱୈତବାବୁ ତ ଗାଆଁର ଜ୍ୟୋତି ବୁଡେଇଲେ । ଯେଉଁ ଭାଗବତ ଘରେ ପୁରାଣର ପବିତ୍ର ବିସ୍ୱନରେ ସନ୍ଧ୍ୟା ଗଗନକୁ ମଥିତ କରି ପ୍ରତି ପ୍ରାଣରେ ଅମୃତର ଧାରା ବୁହାଇ ଦେଉଥିଲା, ସେଠାରେ ଆଜି କୁକୁଡ଼ା ଛେଳି ମାଂସ ଆଉ ମଦର ସଦ୍‌ବ୍ୟବହାର ଚାଲିଛି । ହରିପୁରର ପ୍ରାୟେ ପ୍ରତ୍ୟେକ ଚାଷୀ ମଜୁରିଆ ମଦ୍ୟ ସେବନକୁ ଗୋଟାଏ ପ୍ରକାର ଶିକ୍ଷା ବୋଲି ଧରି ନେଲେଣି । ଆଉ କୁହନା ଭାଇ ସେକଥା, ଯେଉଁ ଲାଇବ୍ରେରୀ ଘରଟା ସମ୍ପୂର୍ଣ୍ଣ ମୁଣ୍ଡଟେକ ଛିଡ଼ା ହୋଇପାରି ନଥିଲା, ସେ ଆଜି ଗୋଟାଏ ପ୍ରକାଣ୍ଡ ଅଟ୍ଟାଳିକାରେ ପରିଣତ ।

"ସେଠାରେ ଆଜକାଲି କ'ଣ ହେଉଛି ବନ୍ଧୁମାନେ ?" ନିତ୍ୟାନନ୍ଦ ବଡ଼ ବ୍ୟଥିତ କଣ୍ଠରେ ପ୍ରଶ୍ନ କଲେ ।

'ନା—ଆଉ ହବ କ'ଣ । ଜଜ୍‌କୋର୍ଟ ନା ପାର୍ଲିଆମେଣ୍ଟ । ସେଠାରେ ଖାଲି ରାଇଜ ଗୋଟାକର ଭଣ୍ଡାମସା ଚାଲିଛି । ଗାଉନା-ବାଜଣା—ବେଶ୍ୟାନାଚ । ସଞ୍ଜବୁଡ଼ିକୁ ତ ଲୋକଘାଟରେ ପିମ୍ପୁଡ଼ିଟିଏ ଚାଲିବାକୁ ରାହା ମିଳୁନାହିଁ । କୁହନା ନିତ୍ୟାନନ୍ଦବାବୁ—ତୁମରି ପାଇଁ ଆଜି ଏ ଗାଆଁର ଦଶା । ତୁମେ ଥିଲ ହରିପୁରର ଦେବତା । ସତ୍ୟ, ଧର୍ମ, ନ୍ୟାୟରେ ନିଜେ ଚାଲି ଗାଆଁଟାକୁ ସେହି ବାଟରେ ଚଲେଇ ଆଣୁଥିଲ, ଅନ୍ଧକୁ ଚକ୍ଷୁଦାନ କରିଥିଲ, ପ୍ରତିପ୍ରାଣରେ ଧର୍ମର ପବିତ୍ର ବାରି ସେଚନ କରିଥିଲ, ଗାଆଁ ଆଉ ତୁମ ଭିତରେ ଥିଲା ଜୀବପରମ ସମ୍ବନ୍ଧ । ତୁମେ ଥିଲ ଗାଆଁର ପ୍ରାଣ ଆଉ ଗାଁ ଥିଲା ତୁମରି ପ୍ରାଣ । ପାଞ୍ଚବର୍ଷର ହରିପୁର ଆଜି ଆଖି ଆଗରେ ସ୍ୱପ୍ନ ହୋଇ ପଡ଼ୁଛି ନିତ୍ୟାନନ୍ଦବାବୁ ।

ଗାଆଁର ଯେଉଁ ସର୍ବସାଧାରଣ ଔଷଧାଳୟ ଥିଲା, ସେଇଟା ଟ୩୦୦୯କୁ ଏଇ ଗଲାମାସ ବନ୍ଦ ହୋଇଯାଇଛି । କୋଦୁଅପଡ଼ା

ହୋମିଓପ୍ୟାଥିକ୍ ଡାକ୍ତର ଶରତବାବୁଙ୍କୁ ଜାଣନା ନିତ୍ୟାନନ୍ଦବାବୁ, ସେଇ କଣିଲେ—ଆଲମିରା-ବୋତଲ-ଔଷଧ ଇତ୍ୟାଦି ବଲ୍‌କୁଲ ସବୁ । ଉକ୍ତ ୪୩୦୦୯ରେ ଆସିଛୁ ଯାତ୍ରା ଦଳର ଆଧୁନିକ ଯୁଗର ଲୁଗା, ପୋଷାକପତ୍ର, ଲାଇଟ୍, ବାଦ୍ୟଯନ୍ତ୍ର । ଗାଆଁରେ ଆଉ କ'ଣ ଲକ୍ଷ୍ମୀ ଅଛନ୍ତି ନିତ୍ୟାନନ୍ଦବାବୁ ?

ଏଇ ଗତସନ ଯେଉଁ ହଇଜା ଆସିଲା, ସେଥିରେ ତ ଗାଆଁରୁ ଅଧିକ ମଶାଣି ପଦାକୁ ଉଠିଗଲେ । ଔଷଧ ନା ବୈଦ୍ୟ । ସରକାରୀ ଡାକ୍ତରଖାନାଟା ତ ଘର ପାଖକୁ ଯେମିତି ଅଟପା ଜାଣିଛ । ତହିଁରେ ପୁଣି ଫସଲହାନି ଦୁଇବର୍ଷ ହେଲା ଲାଗି ରହିଛି । ଲୋକେ ଏଥିରେ ପେଟପାଟଣା ପାଳିବାକୁ ଆସାମ, ରେଙ୍ଗୁନ, କଲିକତା ଯାଆନ୍ତେ କ'ଣ; ଥିଏଟର-ସହାସ ଗୀତ ଶିଖୁ ଶିଖୁ ତ ତାଙ୍କର ସମସ୍ତ ଖତମ୍ । କହିବା ଭଲ ! ଗାଆଁର ଅବସ୍ଥା ଯେମିତି ବର୍ତ୍ତମାନ ଶୋଚନୀୟ । ହଁ—ମନେ ପଡ଼ିଲା; ତମର ସେ ଯେଉଁ ଯୌତୁକ ଶାଳଆ କଆଁରି ଆମ୍ବ ତୋଟାଟା ଏବେ ନିଲାମରେ ଉଠିଲା—ତାକୁ ମିଶ୍ରେ ଧରିଛନ୍ତି ।"

"କେଉଁ ମିଶ୍ର ?"

ନିତ୍ୟାନନ୍ଦ ଶୁଣି ଶୁଣି ଜଡ଼ ପାଲଟି ଗଲେଣି ।

"ସରଦେଈପୁର ଗୋବିନ୍ଦ ମିଶ୍ର ।"

"ବୁଢ଼ା ଆଜଯାକେ ବଞ୍ଚିଛି ?"

"ବଞ୍ଚିଛି କ'ଣ ନିତ୍ୟାନନ୍ଦବାବୁ—ଜୀଇବାହିଁ ଯେ ମରଣଠୁ ବଳି ପଡ଼ିଲାଣି । ବର୍ଷେ ହେଲା ତ ବୁଢ଼ାକୁ ରାଜକାଶ ଧରିଲାଣି, ବଡ଼ପୁଅ ତ ବସନ୍ତ ରୋଗରେ ଅନ୍ଧ ହୋଇ ଗୋଟିଏ ଜାଗାରେ ବସି ରହିଛି । ସାନପୁଅ ଯେ କଲିକତା ଝୋଟ କଳରେ ସରଦାର ଥିଲା; ତାକୁ କ'ଣ ଗୋଟାଏ ଅସ୍ତୁନକା ମରୁଡ଼ି ଧଇଲା ଯେ, ଟୋକାଟା ଦିନ ଦୁଇଟାରେ ଶେଷ ।"

ନିତ୍ୟାନନ୍ଦଙ୍କ ନିସ୍ତେଜ ହୃଦୟରେ ଏଇଠି ଦିଗ୍‌ବିଜୟୀ ସାରର ବିଷମ ଡେଇଁ ଉଠିଲା ।

"ହଁ ବାଣ୍ଟାନେ, ଧର୍ମ ଥିଲେ ବୁଝିବ ! ବୁଡ଼ା ତ କମି ଅତ୍ୟାଗୁଷ୍ଟ ନୁହେଁ । ସରଦେଈପୁର ଏକା କାହିଁକି, ଆଖପାଖ ଦଶଖଣ୍ଡ ଗାଁ ତାହାର ପ୍ରତାପରେ ଥରହର । ସଂସାରେ ତ ପୁଣି ଧର୍ମ ଅଧର୍ମ ଦୁଇଟା—ଫଳ କ'ଣ ତା'ର ଦୁଇଟା ନ ହୋଇ ଗୋଟାଏ ହବ । ହଉ ବାଣ୍ଟାନେ, ସବୁ କଥା ତ ଗଲା, ଅଦ୍ବୈତ ବାବୁଙ୍କ ଚରିତ୍ର ତ କହୁ ଶୁଣାଇଲ ନାହିଁ ।

"ଗାଆଁର ଦୁର୍ଦ୍ଦଶାରୁ କ'ଣ ବାବୁଙ୍କର ହୃଦୟ ବୁଝି ପାରୁନାହିଁ ?

ଅଦ୍ୱୈତ ତ ଆଜକାଲ ଆଉ ମଣିଷ ହୋଇ ନାହିଁ । ସ୍ୱଭାବ ଯେପରି ଆସୁରିକ, ଚେହେରାଟା ମଧ୍ୟ ସେମିତି ଧରି ଆସିଲାଣି । ଏତେ ବଡ଼ ଗୋରା ଦେହଟା ତ ମୁଗୁନି ପଥରଠୁ ବଳି ଗଲାଣି । ଧନରାଣ ଯେଉଁ ଗଞ୍ଜେଇ ଟଣା, ସେଇ ଦୋଷରୁ ତ ଅଧେ ।

ତଦସ୍ତା ତା'ର ଯେଉଁ ପୁଅଟା ହୋଇଥିଲା, ସେ ତ ଏକୋଇଶା ରାତି ବ'ଞ୍ଚଙ୍କ ଶେଷ । ସେଇ ଦୁଃଖରେ ମାଇପ ବାପ୍ପାଣୀର ବେଶ ଧରି ଏଇକ୍ଷିଣା ଯାଇ ବାପ ଘରେ । ଅଦ୍ୱୈତ ବି ଦୁଇମାସ ହେଲା ସେଇ ଶଶୁର ଘରେ ।

"ଆଉ ଜମିବାଡ଼ ?"

ଜମିବାଡ ଆଉ କଅଣ, ଯାହା ଯେମିତି ଭାଗ ବଖରା ଲାଗିଛୁ । ବୁଝିଲ ନତ୍ୟାନନ୍ଦ ବାବୁ, ମୋଟ ଉପରେ ଗାଆଁରେ ଏ ସବୁ ଯେଉଁ ଲକ୍ଷ୍ମୀଛଡ଼ାର ଖେଳ ଚାଲିଛୁ; ତା'ର ଅଗ୍ରଣୀ ନେତା ହେଉଛନ୍ତି ଚନ୍ଦ୍ରଧର ।

"ଚନ୍ଦ୍ରଧର ପୁଣି କଏ ?"

"ମୁଁ ତ ଦେଖୁଛି ତୁମେ ପାଞ୍ଚଟା ବର୍ଷ ଭିତରେ ଦୁନିଆଁଟାକୁ ଭୁଲି ଗଲଣି ? ଜାଣନାହିଁ ଚନ୍ଦ୍ରଧରକୁ । ଅଦ୍ୱୈତର ଶଳା ।"

"ଓ, ଚନ୍ଦ୍ରଧର; ଜାହ୍ନବୀକ, ସେ ପରା କ'ଣ ଗୋଟାଏ ଲୁଗା ବ୍ୟବସାୟରେ ପଶିଥିଲା ।" ନିତ୍ୟାନନ୍ଦ କହିଲେ—

"ଖାଲି କ'ଣ ଲୁଗା ବ୍ୟବସାୟ, ତା' ଭିତରେ ଆହୁରି କେତେ ଘଟଣା । ମନେ ତିନି ସହୁଛି କେଉଁଠି ଯେ, ସେ ସବୁ ବିରାଟ ମାଦଳା ପାଞ୍ଜିକୁ ଗୋଟାଏ ରାତରେ କହିବାକୁ ।"

"ଜାହ୍ନବୀକ ବଶ୍ୱାଳେ—ଏଡ଼େ ତରତର, ଆପଣ ଆମ ଘର ଆଡ଼େ ଟିକେ ଯାଇ ନାହାନ୍ତି । ଏ ଗୋଟାଏ କଥା ନା ।

କଥାକୁ ପାଟିରୁ ଛଡ଼େଇ ବଶ୍ୱାଳେ ଉତ୍ତର ଦେଲେ ।

'ପଅରଦିନ ଅଦାଲତରେ ଯେ ମକଦ୍ଦମା ତାରିଖ ସେଇଥି ପାଇଁ ତ ଆସିଥିଲି । କେବଳ ପୂଜାରେ ଶୀତଳାଙ୍କଠେଇଁ ଯେଉଁ ଶାଢ଼ୀ ଘଣ୍ଟ ହୋଇଥିଲି ତଦସ୍ତ୍ର ଠାକୁରାଣୀ ବରଷ, ଆଜି ପର୍ଯ୍ୟନ୍ତ ସେ ସୁଯୋଗ ଘଟି ନ ଥିଲା । ଘନଆକୁ ଯେଉଁ ଠାକୁରାଣୀ ହୋଇଥିଲେ ନିତ୍ୟାନନ୍ଦ ବାବୁ; ତାଙ୍କୁ ଆମେ କ'ଣ ଆଉ ଆଶା କରିଥିଲୁ । ଯା' ହେଉ, ମା' ଶୀତଳାଙ୍କ ଦୟାରୁ ସେ ଉଦ୍ଧିରିଲା । କଥାକୁ ଅଧାରୁ ରଖି ନିତ୍ୟାନନ୍ଦ କହିଲେ—

"ବଶ୍ୱାଳେ, କାହା ସହିତ ତୁମର ମକଦ୍ଦମା ?"

"ହଁ, ସେଇକଥା ତ ଅଧା ଥିଲା । ଅଦ୍ୱୈତ ଶଳା ଚନ୍ଦ୍ରଧର ଯେଉଁ ଲୁଗା ବ୍ୟବସାୟ କରିଥିଲା; ସେଥିରେ ଯୋଗ ଦେଲା ଆମ ଘନଆ । ବର୍ଷକ ପରେ ସେଥିରେ କୌଣସି ଲାଭ ନ ଦେଖି ଯେତେବେଳେ ଚମ୍ପୁର ହାଟ ସାହି ଦାଣ୍ଡରେ ଗୋଟାଏ ହଜାର ଟଙ୍କାର ଗୋଦାମ ପଡ଼ିଲା, ମୁଁ ସେଇଦିନୁ ଜାଣିଛି ନିତ୍ୟାନନ୍ଦ ବାବୁ—ଏ ଗୋଦାମ ନୁହେଁ ଯେ ଗୋଟାଏ ବିପଦର ଆଗମ ।"

ଗୋଦାମଟା ଅବଶ୍ୟ ଛଅଟି ମାସ ଭଲ ଚାଲିଥିଲା, କିନ୍ତୁ ଯେଉଁଦିନୁ ଅଦ୍ୱୈତ ଚନ୍ଦ୍ରଧରଙ୍କୁ ପାଖରେ ମନ୍ତ୍ରୀ ତୁଲ୍ୟ ରଖି ସମସ୍ତ ବୁଦ୍ଧି

ବୃତ୍ତିକୁ ତା'ର ମୁଣ୍ଡରୁ କାଢ଼ି ନେଲେ; ସେଇଦିନୁ ଉଭୟଙ୍କ ଭିତରେ ଭିତରି କଳହ ଚାଲିଲା ।

କାନକୁ ମୋର କେତେବେଳେ କେମିତି ଉଡ଼ାକାଣ୍ଡିଆ ଖବର ଆସିଲା ଯେ, ଚକ୍ରଧର ସମସ୍ତ ଗୋଦାମଟାକୁ ଉଠେଇନବ । ସେଥିରେ ଘନଆର କିଛି ମାନ ଦାବୀ ନାହିଁ । ଦିନେ ଘରକୁ ତାକୁ ଡକାଇ ଗୋଦାମ ବିଷୟ ନେଇ ଗୋଟାଏ ବଚସା ଆରମ୍ଭ କଲି । କଥା ଭିତରେ ଏତିକ କହିଛି—

"ଚକ୍ରଧର ବାବୁ; ତୁମର ଯଦି ହରିପୁର ନରକ କୁଣ୍ଡରେ ପଶି ବେଶ୍ୟାଙ୍କର ଗୀତ ଶୁଣିବାକୁ ଇଚ୍ଛା ଥିଲା, ତୁମେ ଏଥିରେ ବା ହାତ ଦେଲ କାହିଁକି ? ଏଇ ପଦକ କଥା ପାଇଁ ତ ସେଦିନ ରାତିରେ ଉଭୟଙ୍କ ଭିତରେ ଯେତେ ବାକ୍‌ବିତଣ୍ଡା ଚାଲିଲା । ସେଇ କଥା ପଦକ ପାଇଁ ତ ଦୁଇ ବର୍ଷ ଭିତରେ ଏଇ ମକଦ୍ଦମାରେ ଉଭୟ ପକ୍ଷରୁ ତିନି ହଜାରରୁ ଉର୍ଦ୍ଧ୍ୱ ଖର୍ଚ୍ଚ ଗଲାଣି ।

ଅଦ୍ୱୈତ ଯେ ଏ ମକଦ୍ଦମାର ମୂଳ କାରଣ । ବୁଝିନାହିଁ ନିତ୍ୟାନନ୍ଦ ବାବୁ ? ଆମେ ହରିପୁରଟାକୁ କେଉଁଥିପାଇଁ ନରକକୁଣ୍ଡ କହିଲୁ । ଏଇତ ହେଉଛି ବେଦର ଗାର ।

କଥା ହେଉଁ ହେଉଁ ରାତି ବାରଟାରୁ ବେଶୀ ହୋଇଯାଇଛି । ସମୁଦ୍ର କୂଳରୁ ଜନ ସମାଗମ କମି ଗଲେଣି । ଗଳ୍ପରେ ପୂର୍ଣ୍ଣଚ୍ଛେଦ ପଡ଼ିଲା । ଦୁଇଜଣ ଉଠିଲେ—ସେତେବେଳକୁ ଦଶମୀର ଶେଷ ଜ୍ୟୋତ୍ସ୍ନା ମଉଳି ଆସୁଥିଲା ସୁଦୂର ଦିଗ୍‌ବଳୟ କୋଣରେ—ନିତ୍ୟାନନ୍ଦ ନୈଶାକାଶ ତଳେ ଘରମୁହାଁ ହୋଇ ଚାଲିଛନ୍ତି । ରାସ୍ତାର ଦୁଇ କଡ଼ରେ ଦୋକାନ ବଜାରର ଆଲୁଅ ନିଭିଯାଇଛି । ସେ ଚାଲିଛନ୍ତି ସତ, ମାତ୍ର ବିକ୍ରିତ ମସ୍ତିଷ୍କଟା ତାଙ୍କର ଚକ୍ରପରି ଘୂରୁଛି । ଯେଉଁ ପ୍ରାଣପ୍ରିୟ ପବିତ୍ର ଜନ୍ମଭୂମି ହରିପୁରକୁ ସେ ଦେବଦ୍ୱିଜଂସାହାନ ସହରର ସୁରମ୍ୟ ନନ୍ଦନ ବୋଲି ମନେ କରି ଆସିଥିଲେ; ତାହା ଆଜି ଏକ ଦୂଷିତ ଆବର୍ଜନାପୂର୍ଣ୍ଣ ନରକରେ ପରିଣତ ହୋଇଛି—ବେଶୀ ନୁହେଁ - ମୋଟରୁ ପାଞ୍ଚଟା

ବର୍ଷ ଭିତରେ—ଯାହାଙ୍କୁ ଲଗାପୂତ ପାଞ୍ଚଖଣ୍ଡି ମୌଜାର ଲୋକ ଦେବତା ବୋଲ ମନେକରି ଆସୁଥିଲେ ଅଥଚ ନିଜ ଘରେ ସ୍ତ୍ରୀଙ୍କୁ ତାଙ୍କୁ ଏକ କୂଟ ଚକ୍ରାନ୍ତରେ ପକାଇ ଚିରଦିନ ପାଇଁ ସେହି ଗ୍ରେଟିଆ ଘରଜରୁ ତଡ଼ ଦେଇଛି । ଆତ୍ମାରେ ଆଜୀବନବ୍ୟାପୀ ଗୋଟାଏ କଳଙ୍କର ଦାଗ ଲଗାଇ ଦେଇଛି । ଧିକ୍ ଅଦ୍ୱୈତ—ଧିକ ତୋର ପୁରୁଷତ୍ୱକୁ, ଏକୋଦର ଜାତ ସହୋଦରର ବକ୍ଷଛେଦରେ ତୁ ଆଜି ହରିପୁର ଗାଆଁର ଏକ ପ୍ରତାପୀ ରାଜା ରୂପେ ପ୍ରତି ହୃଦୟରେ ଆତଙ୍କ ଆଣିଛୁ । ପୃଥିବୀ ତତେ ଯା ସହୁଛି ?

ଭାବନାରେ ବାଧା ପଡ଼ିଲା—ନଗେନ ବୋଉ ଯେତେବେଳେ କହିଲେ, "ତମେ ଏତେବେଳଯାଏ ଆଜ କୁଆଡ଼େ ଥିଲ କି ? ତଉଲିଆରେ ଗୋଡ଼ ପୋଛୁ ପୋଛୁ ଅନ୍ୟମନସ୍କ ଭାବରେ ଉତ୍ତର ଦେଲେ, ନା—ଆଉ ଥିବ କେଉଁଠି ? ଏଇତ ଆସୁଛି । ଗୃହିଣୀ କହିଲେ—

ଭାବଚକ୍ର ଉତ୍ତରଟା ଦେଉଛ ନା ଏଣ୍ଡୁତେଣ୍ଡୁ ଗୁଡ଼ାଏ କଅଣ କହିଯାଉଛ—କିଛି ବୁଝିପାରୁ ନାହିଁ । ଏଥର ନିତ୍ୟାନନ୍ଦବାବୁ ଭାବ-ରାଜ୍ୟରୁ ପରିଷ୍କାର ଫେରି ଆସିଲେ—ହଁ-ହଁ-ମୋର ଡେରି କାହିଁକି ହୋଇଯାଇଛି-ଏଯା ତ ପଚାରୁଛ ?

ହଁ-ମୁଁ ବି ଜାଣେ-ରାତି ବହୁତଗୁଡ଼ାଏ ହୋଇଯାଇଛି । ଆଜ ଚଁପୁର ବିଶ୍ୱାଳଙ୍କ ସାଥିରେ ଦେଖା ହୋଇଥିଲା ।

"ଚଁପୁର ବିଶ୍ୱାଳ, କିଏ ଦଧି ବିଶ୍ୱାଳ ? କ'ଣ ସବୁ କହୁଥିଲେ ।"

"ନା-ଆଉ କହିବେ କ'ଣ, ସେ କଥା ତ କହି ବସିଲେ ମଣିଷ ପାଟିରେ ଆଗ ପାପ ଛୁଇଁବ ।"

"କ'ଣ ଯେ ଏମିତିଗୁଡ଼ାଏ ଖାଲି ପାପ ବୋଉ଼ୁଛ ।"

ନିତ୍ୟାନନ୍ଦ କହି ଗ୍ଭଲିଲେ ଅବାଧଗତିରେ, ହୁଣ୍ଡପୁରର ବର୍ତ୍ତମାନ ଦୁର୍ଦ୍ଦଶା । ଅଦ୍ଵୈତଙ୍କର କୃତ୍ୟ ବଣ୍ଟାଳଙ୍କର ମକଦ୍ଦମାଠାରୁ ଆରମ୍ଭ କରି ସାନବୋହୂଙ୍କର ଆକସ୍ମିକ ପିତ୍ରାଳୟ ଗମନ—ଆଉକିଛି ବାଦ ପଡ଼ିଲା ନାହିଁ ।

ନଗେନ ବୋଉ କେବଳ ଆଁ ଟାଏ କରି ଘରର କାନ୍ଥକୁ ଆଉଜି ନର୍ବାକ-ନିସ୍ପନ୍ଦ ଭାବରେ ବସି ରହିଲେ । କଥା ଶୁଣୁ ଶୁଣୁ ପ୍ରତି ଘଟଣାର ଖାଉଥ୍ର ବର୍ଷିକା ବର୍ଣ୍ଣନାବଳୀ ତାଙ୍କର ନାରୀସୁଲଭ କୋମଳ ହୃଦୟରେ ଧକ୍କା ଖାଇଲାପରି ବୋଧହେଲା ।

"ହଁ-ମଣିଷ ନ ମରି ଏଇଗୁଡ଼ାକ ଶେଷକୁ ଶୁଣିବାକୁ ତା'ର ଭାଗ୍ୟରେ ଥିଲା । ଗୃହିଣୀ ଏକ ଦୀର୍ଘଶ୍ୱାସ ସହ ଅଶ୍ରୁବେଦନା ବହୁଳ ଏକ ଓଦାଳିଆ ଜବାବ ଦେଲେ ।

ସେ ସାରା ରାତିଟା ନିତ୍ୟାନନ୍ଦଙ୍କ ଆଖିରେ ନିଦ ଆଉ ଧରିଲୁଆଁ ଦେଲାନାହିଁ । ବିଛଣା ଉପରେ ଯେତେବେଳେ ସେ ତାଙ୍କର ଦେହ ଲତାଟିକୁ ଲୋଟାଇ ଦେଇ କ୍ଳାନ୍ତି ହରିବାକୁ ଇଚ୍ଛାକଲେ, ଦୁଷ୍ଟ ଏକ ଅଶୁଭ ଗ୍ରହପରି ଅଦ୍ଵୈତର ସେ ଭୀଷଣ ପୈଶାଚିକ ମୂର୍ତ୍ତିଟା ଆଖି ଆଗରେ ତାଙ୍କର ଘନ ଘନ ଭାବରେ ଉଙ୍କି ମାରିଲା । ଭୂତପ୍ରେତ ପରି କଳ୍ପିତ ଆକୃତିଟା ତାଙ୍କ ଦୁର୍ବଳ ହୃଦୟରେ ଭୟର ଉଦ୍ରେକ କଲା ।

ଆଖି ଆଗରେ ଅତୀତର ସ୍ମୃତି ଗୋଟି ଗୋଟି ମୁଣ୍ଡ ଟେକି ଛିଡ଼ାହେଲେ, ଦଶବର୍ଷ ବେଳେ ମାଆ ସେପାରି ରାଇଜର ଡ଼ାକ ଏଡ଼ି ପାରିଲେ ନାହିଁ । ସେଇଦିନ ରାତିର ଛବିଟି ପରିଷ୍କାର ଆଜି ଏ ହୃଦୟ କାଗଜରେ ଆଙ୍କି ହୋଇଯାଇଛି । ରାତିଅଧ ବେଳେ ଯେତେବେଳେ ଅଣଆଣ ବହିଲା; ମାଆ ଏଇ ହାତ ଉପରେ ଅଦ୍ଵୈତର ହାତଯୋଡ଼ି ଦେଇ କହି ଯାଇଥିଲେ—"ନିତ, ମୁଁ ଗଲି, ସେଇଟା ତୋର ଟ୍ରେଟ ଭାଇ, ପିଲାଳିଆ ଖୋଇ ଭାଙ୍ଗିନାହିଁ । ଜାଣେ; ତାର ଦୁଷ୍ଟାମି ଖୋଳ ପଣରୁ ପଣେ ହେଲେ ଛୁଡ଼ ଯାଇନାହିଁ । ସେଇ ଛୁଆଟି ତତେ ଲାଗିଲା ନିତ । ମରଣର କବାଟ ପାଖରେ ପହଞ୍ଚି ସୁଦ୍ଧା ମାଆର ତା'

ପିଲାଠାରୁ ଲେଉ ଗୁଡ଼ପାରୁ ନାହିଁ ଗୁବ କମ ଆଶ୍ଚର୍ଯ୍ୟ ହେଲ ନାହିଁ । ତା'ପରେ ଦୁଇଟି ଧାର ଲୁହ ଏଇ ହାତ:ର ପୋଛୁ ଦେଇଛୁ ତା'ର, ମା ମୁଖରେ ମରିପାରିଲ ନାହିଁ । ବହୁତ ହନ୍ତସନ୍ତ, ବହୁତ ମନସ୍ତାପ କରି କରି ତା'ର ପ୍ରାଣ ଯାଇଛୁ । ପୁଅର ମାଆ ପ୍ରତି ଯାହା କର୍ତ୍ତବ୍ୟ, ତା' ସେ ଟୋକ ଅଣାରୁ ଅଣାଏମାନ୍ଧ ପୂରଣ କରିପାରି ନାହାନ୍ତି । ନତ୍ୟାନନ୍ଦଙ୍କ ମନରେ ଗମ୍ଭୀର ଅନୁଶୋଚନା ଆସିଲ । ତା'ପରେ ନଜକଥା ମନେ ପଡ଼ିଲ । ମାଆର ମଲ ବାସିଠାରୁ ସେ ସମସ୍ତ ସ୍ତ୍ରୀ ଜାତିଙ୍କୁ ମା' ବୋଲି ମାନନବାକୁ ଶିଖିଲେ । ଏତେବଡ଼ ଦୁନଆଁରେ ମା' ଊରି ଆଉ କେହି ନଜର ହୋଇପାରେ, ଯେ ଦୁଃଖ କ'ଣ ନ ବୁଝିଛୁ, ସେ ସୁଖ ଅନୁଭବ କରିପାରେ ନା । ଅନ୍ଧାର ନ ଭୋଗିଲେ ଆଲୋକର ସ୍ନିଗ୍ଧତାଟା ଜୀବନରେ ଅସମ୍ଭବ ।

କୈଶୋରରୁ ମାତୃହୀନ ହୋଇ ନତ୍ୟାନନ୍ଦ ଯେପରି ଦୁଃଖ ହତାଶାକୁ ଅଙ୍ଗେ ନଭେଇ ଆସିଲେ; ଅଦ୍ୱୈତ ତାହା ମୁହୂର୍ତ୍ତିଏ ପାଇଁ ଅନୁଭବ କରିଥିଲେ ତା'ର ଦଶା ଆଜ ଏପରି ହୋଇ ନ ଥା'ନ୍ତା ।

କନ୍ତୁ ନତ୍ୟାନନ୍ଦ ଯେ ଅଦ୍ୱୈତଙ୍କୁ ଦୁଃଖ କ'ଣ ନମିଷକ ପାଇଁ ବୁଝିବାକୁ କମ୍ବା ଗୁବବାକୁ ଦେଇ ନାହାନ୍ତି—ତାଙ୍କର ଯେ ଏଇଟା ଭୁଲ ଭିତରେ ଏକ ମସ୍ତବଡ଼ ।

ଗୁବନାରେ ପୂର୍ଣ୍ଣଚ୍ଛେଦ ପଡ଼ିଲ, ନତ୍ୟାନନ୍ଦଙ୍କ ଆଖିରୁ ଅଜସ୍ର ଘାବରେ ଲୁହଧାର ଛୁଟିଲ । ଅଜାତ ସ୍ମୃତିରେ ହୃଦୟଟା ତାଙ୍କର ତଳ ତଳ ହୋଇ ଦଗ୍ଧ ହେବାକୁ ଲଗିଲ । ସେ ଆଉ ସମ୍ଭାଳି ନ ପାରି ଶ୍ରାବଣ ନଈ ପରି ଫୁଲି ଫୁଲି କାନ୍ଦିବାକୁ ଲଗିଲେ ।

ପାହାନ୍ତା ଗଡ଼ିଯାଇଛୁ । ଧର୍ମଶାଳାରେ ଘଣ୍ଟା ବାଜଲ । ନଗେନ ବିଛଣା ଉପରେ ବସି ସ୍ତୋତ୍ର ଆରମ୍ଭ କଲ । ସ୍ତୋତ୍ର ଶେଷ ହୋଇନାହିଁ । ସେ ଚମକ ପଡ଼ିଲ । ବାପା କାହିଁକ କାନ୍ଦୁଛନ୍ତି । ଏଇ ଯେ ଘନ ଘନ ଘାବରେ ସମୁଦ୍ର ଢେଉ ପରି କୋହ ଉପରେ କୋହ ଉଠୁଛୁ ।

କିଛିକ୍ଷଣ ପରେ ନିତ୍ୟାନନ୍ଦ କହି ବସିଲେ ଦୀର୍ଘ ଜୀବନର ଏକ ସବିଶେଷ ଆଲୋଚନା, ନଗେନ ଶୁଣି ଯାଉଛି । କିଶୋର ପ୍ରାଣରେ ଏ ସବୁ କେଉଁ ଯୁଗର ଏକ ଅଳୀକ ଇତିହାସ ପରି ମନେ ହେଉଛି । ଏତେଦିନ ପରେ ପୁଅ ଆଜି ବୁଝୁଛି, ବାପା ତା'ର ଯେମିତି ଅଭାବ—ସମୁଦ୍ରରେ ପଡ଼ି ଅନୁତାପର ଏକ ଜ୍ୱଳନ୍ତ ଛବି ସେ ନିରୀକ୍ଷଣ କରୁଅଛନ୍ତି । ଏତେ ଦିନ ପରେ ତା'ର ଆଜି ମନେ ପଡ଼ୁଛି—ଘୋଡ଼ଉରୁ ସେ ଯେଉଁଦିନ ସେହି ବଲ ବାଟ ଦେଇ ମା' କାଖରେ ଆସିଥିଲା; ସେହି ତା'ର ଗାଆଁ, ଯାହାକୁ ସେ ସ୍ମୃତିପଟରୁ ଏକବାରକେ ବିସ୍ମୃତ ହୋଇପଡ଼ୁଛି । ଏଇ ସେଦିନର କଥା ଚଳଚ୍ଛବି ପରି ଆଖି ଆଗରେ ତା'ର ଗୋଟି ଗୋଟି ଭାସି ଯାଉଛନ୍ତି । ବାଳକର କ୍ଷୁଦ୍ର ହୃଦୟରେ ଆଜି ଗୋଟାଏ ବିରାଟ ଆନ୍ଦୋଳନ ଚାଲିଛି ।

ଏକ କ୍ଷଣିକ ଭ୍ରାନ୍ତିରେ ଭାଇର ନାଲିଆଖି ତଳୁ ରକ୍ଷା ପାଇବାକୁ ସେ ଆଜି ପଶ୍ଚିମ କୋଣ ଦଫାତରେ ଗାଁ ଠାରୁ ଅଲଗା, ଧନ୍ୟ ସଂସାରରେ ଭ୍ରାତୃବିବାଦ—ଭାଇ ସିନା ଭାଇର ଶତ୍ରୁ, ଏତେ ବଡ଼ ଦୁନିଆଁ ଭିତରେ ଭାଇର ଖଣ୍ଡା ସିନା ଭାଇ କ ଗୋଡ଼େଇଛି । ଭାଇର ରକ୍ତ ସିନା ଭାଇ ପିଇବାକୁ ଚାହିଁଛି । ବାଳକର କ୍ଷୁଦ୍ର ମସ୍ତିଷ୍କରେ ଆଜି ସମୁଦ୍ର ପରି ଅସୀମ ଭାବନା । ନୀରବ କୋଠରୀଟିକୁ ଥରାଇ ଏକ ଅଶ୍ରୁ ଗଦଗଦ ସ୍ୱର ଶୁଭିଲା ।

"ଦିଅ ଛାଡ଼ି, ସେ ସବୁକୁ ଆଉ ମାପି ଲାଭ କ'ଣ ? ଦୁଇଟି ହୃଦୟରେ ଜମାଟ ବାନ୍ଧିଥିବା ହିମାଳୟ ପରି ଉତ୍ତୁଙ୍ଗ ଆଶା କେବଳ ଏଇଟି ଉପରେ କଥାକୁ ସମ୍ପୂର୍ଣ୍ଣ କରିବାକୁ ନ ଦେଇ ଗୃହିଣୀ ବଡ଼ ନମ୍ର-ସ୍ୱରରେ କହିଲେ ।

ହଁ, ସତେ ଏଇ ଦୂବଗଛଟା ଦାରୁ ହବ ?. ସେତେବେଳକୁ ରାତି ପାହି ଆସିଥିଲା । ନଳକଟବର୍ତ୍ତୀ ମୁଖର୍ଜିଙ୍କର ବାଉଁବାଟଟା କେଁ କରି ଆର୍ତ୍ତନାଦ କରି ଉଠିଲା । ନିତ୍ୟାନନ୍ଦ ବିଛଣାରୁ ଉଠୁ ଉଠୁ କହିଲେ ।

କିଂ ନ କରୋତି ବହ୍ନିଭୁକ୍ଷ୍ଣ ?
କିଂ ନ କରୋତି ବହ୍ନି ଭୁକ୍ଷ୍ଣ ॥

ନଗେନ ଯେଉଁଦିନ ମାଇନର ପରୀକ୍ଷା ଶେଷକରି ଘରକୁ ଫେରିଲା ସେଦିନ ଆଜ ପିତାମାତାଙ୍କ ହୃଦୟରେ ଆନନ୍ଦର ସୀମା ରହିଲା ନାହିଁ । ପୁଅ ନିଶ୍ଚୟ ପରୀକ୍ଷାରେ କୃତକାର୍ଯ୍ୟ ହେବ । ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ । ନଗେନ ଭାରି ମେଧାବୀ ଛାତ୍ର, ପ୍ରତି କ୍ଲାସରେ ସବୁ ବର୍ଷ ସେ ପ୍ରଥମ ସ୍ଥାନ ଅଧିକାର କରି ଆସୁଛି ଭାବି ନିତ୍ୟାନନ୍ଦ ଅଚିର ଭବିଷ୍ୟତର ଆନନ୍ଦରେ ଅଧୀର ହୋଇ ଉଠିଲେ ।

ଭଲ ହେଉ, ମନ୍ଦ ହେଉ, ପରୀକ୍ଷାଟା ସରିଯାଇଛି । ମୁଣ୍ଡ ଉପରୁ ପର୍ବତ ପରି ଏକ ବିରାଟ ବୋଝ ଉଭୁରି ପଡ଼ିଛି । ନଗେନ ଏକ ସ୍ୱସ୍ତିର ଦୀର୍ଘଶ୍ୱାସ ମାରିଲା । ଏଇ ଦୁଇମାସ ଭିତରେ ସେ ଘରଦ୍ୱାର, ଖାଇବା, ଖେଳିବା, ପିତାମାତା, ସାଙ୍ଗସାଥୀ ସବୁକୁ ଭୁଲିଯାଇଛି । ପଢ଼ିବାକୁ ଦିନ ରାତି ଅଣ୍ଟି ନାହିଁ । ଏଇ ପଢ଼ା ନିକଟରେ ପୁଷମାସର କାଠୁଆ ପାହାନ୍ତ ଶୀତ ପରାଜୟ ମାନି ନେଇଛି । ଆଖି ଦୁଇଟାକୁ ଆଜ ଫୁରୁସତ ମିଳିନାହିଁ ।

ନଗେନ୍‌ର ଏକ ମହାଭାବନା—ଦିନଆପାକର ଦାରିଦ୍ର୍ୟ ଭିତରେ ପିତା ତା'ର ଗଣି ଗଣି ଅର୍ଥ ବ୍ୟୟକରି ଶିକ୍ଷା ଦିଗରେ ତାକୁ ଚଳେଇଛନ୍ତି । ଫେଲ୍ ହୋଇଗଲେ ଯେ ସେତକ ସବୁ ପାଣି ସୁଅରେ ଯିବ । ଗରିବ ପିତା ଅବଶେଷକୁ ଖାଲି ହତାଶ ହୋଇପଡ଼ିବେ । ମା' ଯେ ଏଇ ବାର୍ଦ୍ଧକ୍ୟରେ ତା'ରି ପାଇଁ ଗୃହର ଏତେ କାର୍ଯ୍ୟରେ ବ୍ୟସ୍ତ ହୋଇପଡ଼ୁଛି । ତା'ଭଳି ଏକମାତ୍ର ପୁଅଠାରୁ ଯଦି ବିଦ୍ୟା-ଲାଭର ଆଶା ନ ଦେଖନ୍ତି, ସେମାନେ ତା' ହେଲେ କ'ଣ ଦେଖି ଜୀବନ ଧାରଣକରିବେ । ନଗେନ ଭାବିଲା, ହଁ ଜଗନ୍ନାଥ ଅଛନ୍ତି, ଗରିବର ଡାକ ନିଶ୍ଚୟ ଶୁଣିବେ । ଭାବୁ ଭାବୁ ଶ୍ରମକ୍ଲିଷ୍ଟ ଆଖି ଦୁଇଟିକୁ ତା'ର ନିଦ୍ରାଦେବୀ ସ୍ପର୍ଶ କଲେ । ନଗେନ ଦୁଇମାସ ପରେ ଆଜ ସନ୍ଧ୍ୟାରେ ବିଛଣା ଧରିଛି । × ×

ଜାନୁଆରୀ ଦୁଇ ତାରିଖ—ଏ ଦିନଟି ନଗେନ୍‌ର ଜୀବନରେ କେବେ ଭୁଲିବାର ନୁହେଁ । ଆଜ ପରୀକ୍ଷାର ଫଳ ବାହାରିବ । ଗତ

ଶତ ଛାତ୍ର ଉତ୍କଣ୍ଠିତ ହୃଦୟରେ ସ୍କୁଲର ବାରଣ୍ଡା ଏପାଖ ସେପାଖ ଟହଲ ମାରୁଛନ୍ତି । ଆଜି କଏ ଗୋଟାଏ ବର୍ଷର ଶେଷ ସୀମାକୁ ଆଗେଇଯିବ ଆଉ ବା କଏ ପୁଣି ପଛରେ ପଡ଼ି ଶତ ବର୍ଷର ସ୍ମୃତିରେ ଅନୁଶୋଚନାରେ ଦଗ୍ଧ ହେବ । ଶ୍ରାବଣର ଛଟିଆ ବନ୍ୟାପାଏ । ଅଟକେ ନାହିଁ, ଅଟକିବାର ନୁହେଁ, କିନ୍ତୁ ଆଶ୍ୱିନର ମାର ଧାର ତାକୁ ଗୋଡ଼ାଇପାଏ—ଛୁଏଁ ନା, ଛୁଇଁ ପାରେନାହିଁ । ଆଜି ଛାତ୍ର ଶ୍ରେଣୀର ମସ୍ତିଷ୍କରେ ଅଗଣିତ ଭାବନା । ପୂର୍ବ ନଇଲେ ପଶ୍ଚିମ, ଏପାଖ ନଇଲେ ସେପାଖ ।

ଏଇ H. M. ଆସିଲେ । ଘଣ୍ଟା ବାଜି ଯାଇଛି, ସେ ଘଣ୍ଟା ନାଦରେ ଛାତ୍ର ସମାଜର ପ୍ରତିପ୍ରାଣ ଚମକି ଉଠିଛି । ବିପଦ ନୁହେଁ, ଭୟ ନୁହେଁ, ଏକ ଆଶଙ୍କା । ସମୁଦ୍ର ପରି ଗମ୍ଭୀର, ଆକାଶ ପରି ବୃହତ । ବି. ସେକ୍ସନ ଫଳ ଉକାହେଲା—'ନଗେନ ଚନ୍ଦ୍ର ମହାନ୍ତି ପ୍ରଥମ ।' ଆନନ୍ଦର ଅସୀମତା ଭିତରେ ନଗେନ ହଜିଗଲା । ଗୋଟିକ ପରେ ଗୋଟିଏ ମସ୍ତକୋତ୍ତୋଳନ କଲେ । ନିମିଷକ ମଧ୍ୟରେ କାହା ମୁଖରେ ସୁଖ-ଶାରଦର ମଧୁର ଜ୍ୟୋତ୍ସ୍ନା ଖେଳିଗଲା, ଆଉ ବା କାହା ମୁଖରେ ଦୁଃଖ ପ୍ରାବୃଟର କାଳିମା ଛବି ପ୍ରତିଫଳିତ ହେଲା । କାହା ମୁହଁରେ ଆନନ୍ଦର ହାସ୍ୟ, କାହା ମୁହଁରେ ବିଷାଦର ମୀରବ ଅଶ୍ରୁ ।

ଛୁଟି ଘଣ୍ଟା ପଡ଼ିଲା—କୃଶ ଛାତ୍ର ନଗେନ ଦ୍ରୁତପଦରେ ଗୃହାଭିମୁଖୀ ହେଲା । ପିତାମାତା କି ଆନନ୍ଦ ନ ହେବେ ସତେ ! ନଗେନ ପଥସାରା ଭାବି ଭାବି ଯାଉଛି । ବଡ଼ଦାଣ୍ଡ ଟପିଯାଇ ଆଉ ଗୋଟିଏ ଅଣଓସାରିଆ ରାସ୍ତା କଡ଼ରେ ନଗେନ ଚାଲିଛି ।

ଆରେ, ଦେଉଳ ଯେ ପଛରେ ପଡ଼ି ରହିଲା ! ସେ ପଛକୁ ଫେରିଲା । ସମ୍ମୁଖରେ ଗରୁଡ଼ ସ୍ତମ୍ଭ, ତା'ର ତଳେ ଶିର ନୁଆଁଇ କେତେ କ'ଣ ସେ ପ୍ରାର୍ଥନା କଲା । ପଥର ସ୍ତମ୍ଭ ଶୁଣିଲା କି ନ ଶୁଣିଲା କିଏ ଜାଣେ ? ଛୋଟ ବାଳକର ବିଶ୍ୱାସ, ନିଶ୍ଚୟ ଶୁଣିଛି । ସେ ଏକା ନିଃଶ୍ୱାସକେ ବାଇଶି ପାହାଚ ଗୋଟିକ ପରେ ଗୋଟିଏ ଡେଇଁ ଚାଲିଛି । ଜଗନ୍ନାଥଙ୍କ ପଦତଳେ ମୁଣ୍ଡିଆ ନ ମାରି ସେ କୌଣସିମତେ ଘରକୁ

ଫେରିବ ନାହିଁ । ତା'ର ଏକ ଶୈଶବ ସୁଲଭ ବିଶ୍ୱାସ ଆନନ୍ଦ ସମୟରେ ଠାକୁରଙ୍କୁ ନ ଜଣେଇଲେ; ବିପଦ ସମୟରେ ସେ ତମ ଦୁଃଖ ପାଇଁ ସେଷ୍ଟ ପାଷାଣ ମୂର୍ତ୍ତି ପରି ମୂକ ରହିବେ । ଦୁଃଖରେ ଆଉ ଜବାବ ଦେବେ ନାହିଁ । ବିଶାଳ ପୃଥିବୀଟା ତାଙ୍କର ଏକ ଖୋଷଣ ପରୀକ୍ଷାର ସ୍ଥଳ । ମଣିଷ ପରୀକ୍ଷିତ ହେବାକୁ ଏଇଠି ତା'ର ମାନବ ଜନ୍ମ । ନଗେନ ଭୁଲ ନାହିଁ—ଜଗନ୍ନାଥଙ୍କ ଝଲମଲ ମୂର୍ତ୍ତି ସମ୍ମୁଖରେ ସେ ଯୋଡ଼ହସ୍ତରେ ତା'ର ଦୁଃଖ ଜଣାଉଛି—ଭବିଷ୍ୟତର ଉନ୍ନତି ପାଇଁ ପ୍ରାର୍ଥନା । ଈଶ୍ୱର ଯେ ପରମ ପିତା ! ତାଙ୍କ ପାଖରେ ମଣିଷ ସନ୍ତାନର ମିନତି ବାଡ଼ିବା କ'ଣ ନିରର୍ଥକ ଯାଏ ? ନାଁ, ଯାଏନା ।

ନଗେନ ଉଚ୍ଚ କଣ୍ଠରେ ବ୍ରାହ୍ମଣ ନିତ୍ୟାନନ୍ଦଙ୍କ କୃତ 'ଆରତ ଧ୍ୱଂସନ' ଗାଉଛି । କିଶୋର ହୃଦୟରେ ତା'ର ଆଜଠାରୁ ଏ ଈଶ୍ୱର-ନିଷ୍ଠା । ଆଖି ଦୁଇଟିକୁ ସେ ବୁଜିଛି ସତ, ମାତ୍ର ତଳେ ତା'ର ବହି ଆସିଛି କେତୋଟି ଲୁହର ଗାର ।

ସନ୍ଧ୍ୟା ହେବାକୁ ଆଉ ଅଳ୍ପ ଡେରି । 'ଆରତ ଧ୍ୱଂସନ'ର ଉପସଂହାରରେ ନଗେନ ପହଞ୍ଚିଛି । ହଠାତ୍ ଏ କାହାର କୋମଳ ଶୀତଳ କରସ୍ପର୍ଶ ! ଆଖି ଖୋଲି ଦେଖେତ ହେଃ ମାଃ ପୂଅ ଛାମାନ୍ତ । ସ୍ତୋତ୍ରରେ ବାଧା ପଡ଼ିଲା, ହେଃ ମାଷ୍ଟର ଯେ ଜଣେ ନୈଷ୍ଠିକ ବ୍ରାହ୍ମଣ । କାମିଜ ପିନ୍ଧି ଦେଉଳ ଭିତରେ ପ୍ରବେଶ କରିବାଟାକୁ ସେ ଶାସ୍ତ୍ର ବିରୁଦ୍ଧ ବୋଲି ମନେ କରନ୍ତି ।

"କିଏ ନଗେନ, ଘରକୁ ଯାଇନାହୁଁ ସ୍କୁଲରୁ ଫେରିଲା ବେଳଠୁ ? ଆଉ କେବେ ଏମିତି କାମିଜ ପିନ୍ଧି ଦେଉଳ ଭିତରକୁ ଆସିବୁ ନାହିଁ । ନଗେନ ଲଜ୍ଜାଭିରାବନତ ଶ୍ରେଷ୍ଠ ମସ୍ତକଟି ତଳକୁ କରି କହିଲା, ନାଁ ଆଜ୍ଞା ।"

ବାଳକ ସମୁଦ୍ର ପରି ଅସୀମ ଆନନ୍ଦ ନେଇ ଘରକୁ ଆଗେଇଛି । ଏ କ'ଣ ? ଆଖି ଦୁଇଟା ତା'ର ବୁଜି ହୋଇପଡ଼ିଲା । ଏରୁଣ୍ଡି ଉପରେ ପାଦ ନ ଦେଉଣୁ ମା' ଉଚ୍ଚ ସ୍ୱରରେ ପୂଅକୁ ଦେଖି କାନ୍ଦି ଉଠିଲେ, "କ'ଣ ଆକ୍ସିଡେଣ୍ଟ ।"

"ହଁ, ଆକ୍‌ସିଡେଣ୍ଟ ! ମାଆ ବହ୍ୱଳ କଣ୍ଠରେ ଜବାବ ଦେଲେ ।
ନତ୍ୟାନନ୍ଦ ବାରଣ୍ଡାରେ ପଡ଼ଛନ୍ତ, ଗୋଡ଼ରୁ ଧାର ଧାର ହୋଇ ରକ୍ତର ଅବରାମ ପ୍ରବାହ ଛୁଟିଛି । ସାରା ମୁହଁଟା ମ୍ଳାନ ପଡ଼ଯାଇଛି । ମଠରୁ ଘରକୁ ଫେରୁ ଫେରୁ ଦନ ଗୃଟାଟା ବେଳରେ ଏ ଆକସ୍ମିକ ବପଦ । ଚତୁର୍ଦ୍ଦଶ ବର୍ଷୀୟ କଶୋର ହୃଦୟରେ କଠିନ ବଜ୍ର ପର ଏକ ଭୀଷଣ ଆଘାତ ଲାଗିଲା । ସେ କିଂକର୍ତ୍ତବ୍ୟବମୂଢ଼ । ସୀତାନାଥବାବୁ ଡାକ୍ତର ଡକାଇ ବ୍ୟାଣ୍ଡେଜ ବାନ୍ଧ ଯାଇଛନ୍ତ । ସତେ କ'ଣ ଏଥିରୁ ବୃଦ୍ଧ ଉଧୁରବେ ? ବାଷଠି ବର୍ଷର ମାର୍କ ଦଶାଟା ଯେ ଆଠଦନ ତଳେ କୋଷ୍ଠୀରୁ ପଣ୍ଡିତେ କହ ଯାଇଛନ୍ତ । ବାଳକର କୋମଳ ହୃଦୟ କଇଁ କଇଁ ହୋଇ କାନ୍ଦ ଉଠିଲା ।

ମା ଶତପ୍ରତମାଟି ପର ମୁଣ୍ଡରେ ହାତ ଦେଇ ବସି ଯାଇଛନ୍ତ । ହୃଦୟରେ ତାଙ୍କର ସମୁଦ୍ର ଢେଉ ପର ଅଗଣିତ ଭାବନା ସତେ କ'ଣ ସ୍ୱାମୀ ଏ ବପଦରୁ ବଞ୍ଚ ଉଠିବେ । କେଜାଣି ବଶ୍ୱାସ ଆସୁନାହିଁ, ସ୍ତ୍ରୀ ସମ୍ପୂର୍ଣ୍ଣ ଆଶା ଛାଡ଼ ବସିଗଲେ ।

ନଗେନ ବୃଦ୍ଧ ପିତାର ପଦ ତଳେ କଇଁ କଇଁ ହୋଇ କାନ୍ଦ ଉଠିଲା । ବୃଦ୍ଧ ଅତ୍ୟନ୍ତ କ୍ଷୀଣ କଣ୍ଠରେ ଜବାବ ଦେଲେ ।

"ଏ କଏ, ବାପ ନଗେନ୍, ଆଜ କହ ହେଲା ନାହିଁ । କଥାକୁ ଅସମ୍ପୂର୍ଣ୍ଣ ରଖି ବୃଦ୍ଧ କାନ୍ଦ ଉଠିଲେ; ପୁଣି ହାତକୁ ଯେତେବେଳେ ଉପରକୁ ଟେକ କହଲେ "ଆଜ ନୁହେଁରେ ବାପ, ନୁହେଁ ।" ଅସ୍ତ ମା ପୁଅଙ୍କର ମସ୍ତକ ଉପରେ ଆକାଶର ଶହେଟା ବଜ୍ର ସତେ ଯିମିତ ଅଜାଡ଼ ହୋଇପଡ଼ଲା । କ ପଥର ତରଳା କରୁଣ କାହାଣୀ; ମାଆ ପୁଅକୁ ଗୃହିଁଛି । ପୁଅ ମାଆକୁ ଗୃହିଁଛି । କାହାର ମୁହଁରୁ ବାକ୍‌ସ୍ଫୁର୍ତ୍ତି ହେଉ ନାହିଁ । ବୃଦ୍ଧ ଏକବାରକେ ଜଡ଼ ପାଲଟିଗଲେଣି ।

ରାତ ନଅଟାରୁ ବେଶୀ ହୋଇ ଯାଇଛି । ଷ୍ଟେସନରେ ଏଇ ଯେ ମେଲ୍‌ଗାଡ଼ଟା ସିଟି ଦେଲାଣି । ମାଆ ପୁଅ ସେମିତ ନର୍ବାକ୍ ନସ୍ପନ୍ଦ-ଭାବରେ ବୃଦ୍ଧଙ୍କ ଶଯ୍ୟା ପାଖରେ ପଥର ପାଲଟି ଯାଇଛନ୍ତ । ବୃଦ୍ଧଙ୍କ

ଜୀବନ ସେ ଷୋଳପଣ ଆଶାଶୂନ୍ୟ; ଏଇଆ ଭାବି ଦୁଇଟି ବର୍ଷରୁ କୋହ ଉପରେ କୋହ ଉଠୁଛି । ନାନା ଅଶୁଭ ଚିନ୍ତା ପ୍ରାଣକୁ ଛୁଇଁ ଯାଉଛି । ବୃଦ୍ଧ ଖାଲି ରହି ରହି ଏତିକି କହୁଛନ୍ତି—

"ପିଲାଟା ଅଧାରୁ ରହିଗଲା ।" ନଗେନ ବୃଦ୍ଧ ପିତାର ଅନ୍ତିମ ଶଯ୍ୟା ତଳେ ବସି ରହି କେତେ କ'ଣ ଭାବିପାଉଛି । ଅସୀମ ଆକାଶ ପରି ତାହାର ଭାବନା, ବାପ ଲାଗି ସଂସାରେ ଦୁଃଖ କଅଣ, ସେ ଅନୁଭବ କରିନାହିଁ । ପିତାମାତାଙ୍କର ଅସୀମ ସ୍ନେହ । ଏ ବିଶ୍ୱରେ ଯାହା ଅତୁଳନୀୟ, ସେହି ଦୁଇଟି ସ୍ନେହ-ସ୍ରୋତ ଭିତରୁ ଗୋଟିଏ ଯେ ଆହା କୁଆଡ଼େ ନାହିଁ କୁଆଡ଼େ ବହିଯିବ; ଯାହା କି ଭାବି ବସିଲେ ଆଉ କେବେ ଏ ଜୀବନରେ ଲେଉଟିବାର ନୁହେଁ । ସେ ବହିଯିବ । ଆଉ ଫେରିବ ନାହିଁ ।

ତା'ପରେ ତା'ର ଭବିଷ୍ୟତ, ଏ ସଂସାରଟା ଯେ ତା' ପରି ଏଡ଼େ ଛୋଟ ପିଲା ପକ୍ଷରେ ଏକ ଅଥଳ ସମୁଦ୍ର । ତାକୁ କୂଳ ଦେଖେଇବ କିଏ, କାହାର ନୌକା ସାହାଯ୍ୟରେ ସେ ଏତେବଡ଼ ସଂସାର-ସମୁଦ୍ରକୁ ପାର ହୋଇପାରିବ । ଅନ୍ତର ଭିତରୁ ସତେ ଯେମିତି କିଏ ଖୁବ୍ ଦମ୍ଭର ସହିତ ଜବାବ ଦେଲା ।

"ଈଶ୍ୱର, ଈଶ୍ୱର ଭଗବାନ ।"

ହଁ, ଭଗବାନ, ବାଳକ ଏକ ତୀବ୍ରଭେଦୀ ଦୀର୍ଘଶ୍ୱାସ ମାରିଲା, ବୃଦ୍ଧ ଡାକିଲେ—

"ବାପ, କେଉଁଠି ତୁ ।" ନଗେନ ଲଣ୍ଠନ ଟେକିଲା । ବୃଦ୍ଧଙ୍କର ଏଇ ଶୁଷ୍କ ନୟନ ତଳୁ ଅଶ୍ରୁର ଅନନ୍ତ ଉତ୍ସ ଅବାଧ ଗତିରେ ଛୁଟିଛି । ସ୍ତ୍ରୀ ପଣତକାନିରେ ଲୁହ ପୋଛିଦେଲେ । ନୀରବ କୁଟୀରକୁ ଥରାଇ ଏକ କ୍ଷୀଣ ସ୍ୱର କାନରେ ବାଜିଲା ।

"ବାପ, ଅଧା ବାଟରୁ ରହିଲୁ ।"

ସ୍ତ୍ରୀ ଗୃମୁବେ ଦୁଧ ମୁହଁ ପାଖରେ ଦେଖେଇଲେ । ରୋଗୀ ଅନିଚ୍ଛା ପ୍ରକାଶ କଲା । ଗୋଟିଏ ହାତ ନଗେନ ଏବଂ ଅନ୍ୟଟି ସ୍ତ୍ରୀ ମୁଣ୍ଡ ଉପରେ ରଖି ବୃଦ୍ଧ ଭେ ଭେ ଡକା ପାରିଲେ । ଅଶ୍ରୁର ଛଅଟି ଧାରରେ ଚଟାଣ ଭିଜିଗଲା । ଭବିଷ୍ୟତ କଥା ଛାଡ଼, ବୃଦ୍ଧଙ୍କର ଆଖିବୁଜିବା ପର ମୁହୂର୍ତ୍ତରେ ଅବସ୍ଥା କ'ଣ ହବ । କିଶୋର ବାଳକ ହତାଶ ହୋଇ ପଡ଼ିଲା । ନିରାଶାର ଅନନ୍ତ ମେଘମାଳା ଭିତରେ ଆଶାର ବିଜୁଳି ପରି କେବଳ ମାତ୍ର ଏତେବଡ଼ ସହର ଭିତରେ ସୀତାନାଥବାବୁ, ଆଶା ଭିତରେ ଏତିକି, ସହର ପଲ୍ଲୀ ଭୂଇଁର ଆଶା ଯେ ନଗେନ ପକ୍ଷରେ ଏକ ସ୍ୱପ୍ନ, ଆଉ ସ୍ଥାନ କେଉଁଠି । ମସ୍ତିଷ୍କରେ ତା'ର ଶତବୃଶ୍ଚିକ ଦଂଶନ ହେଲା । ହଉ, ବିଧିର ବିବାଦ ।

ବାର ନଡଆ ଗଛ ଉପରେ ପାହାନ୍ତିଆ ତାରା ଉଠିଲାଣି । ତଥାପି ଏ ପର୍ଯ୍ୟନ୍ତ ବୃଦ୍ଧଙ୍କ କଣ୍ଠରେ ଭାଷା ନାହିଁ । ନୀରବ କୋଠରୀଟିରେ ଲଣ୍ଠନର ବତୀଟି କେବଳ ମିଞ୍ଜି ମିଞ୍ଜି କରୁଛି ଯାହା, ନଗେନ ଡାକିଲା । "ବାପା, ବା-ପା—" ବୃଦ୍ଧ କିନ୍ତୁ ନିରୁତ୍ତର । ଗୁଳ୍ଫ ଉପରେ କରସ୍ପର୍ଶ କରି ବାଳକ ମୁଣ୍ଡ ବାଡ଼େଇଲା । ଦେହଟା ଯେ ବରଫ ପରି ହୋମାଳ···। ତୁଣ୍ଡରେ ତା'ର ଆଉ ବାକ୍ୟ ସ୍ଫୁରିଲା ନାହିଁ । ସ୍ତ୍ରୀଙ୍କର ଜ୍ଞାନଲୁପ୍ତ ହେଲା । ତା'ର ସଂସାରେ ସବୁ ସରିଗଲା··· ।

ଆକାଶରେ ସେଦିନ ରାଇଜଯାକର ମେଘ ଘୋଟିଆସିଲା । ଦମକା ପବନରେ ଘରର ଝରକାଗୁଡ଼ା ବାଡ଼େଇ ହୋଇ ଚିତ୍କାର କରି ଉଠିଲେ । ଗରିବ କପାଳକୁ ଅଦିନରେ ଏ ଝଡ଼ ରାତି —

ନଗେନ ଧୈର୍ଯ୍ୟ ଧରି ପତିତପାବନ ଜଗନ୍ନାଥଙ୍କୁ ଧ୍ୟାନକଲା । ବର୍ତ୍ତମାନ ଆଉ କର୍ତ୍ତବ୍ୟ କ'ଣ ? ସ୍ତ୍ରୀ ବାହୁନି ଉଠିଲେ । କାଳୀ ନିଶୀଥର ଏହି ପ୍ରଳୟଙ୍କରୀ ବତାସ ଭିତରେ ସେ ବକ୍ଷଭେଦୀ କରୁଣ ବାହୁନା ହଜିଗଲା । ମସ୍ତକ ଉପରେ ଅଦିନ ବଜ୍ରଟା ସାରା ବିଶ୍ୱକୁ ପ୍ରକମ୍ପିତ କରି ଯେତେବେଳେ ଗରଜି ଉଠିଲା, ନଗେନ ଡାକିଲା ।

"ବାପା, ବାପା ।"

ସୀତାନାଥବାବୁଙ୍କୁ ମିଶାଇ ଆଗରେ ପାଞ୍ଚୋଟି ଲୋକ ଚାଲିଛନ୍ତି । କଳାହାଣ୍ଡିଆ ଆକାଶ ତଳେ, ମେଘର ଝୁମୁର ଝୁମୁର ନିନାଦ ଭିତରେ ଶୁଭୁଛି ମଲା ମଣିଷର ଗନ୍ତବ୍ୟ ପଥର ଶେଷ ଡାକ, "ରାମ ନାମ ସତ୍ୟ ହେ ।"

ସବା ପଛରେ ଚାଲିଛି ନଗେନ, ଅଦେଖା ଭବିଷ୍ୟତର ଅନ୍ଧକାର ଭିତରେ ସେ ସମ୍ପୂର୍ଣ୍ଣ ବୁଡ଼ି ରହିଛି । ତା'ର ଖାଲି ମନେ ପଡ଼ୁଛି, କୋକେଇ ଭିତରେ ମଲା ମଣିଷର ଶରୀରଟା, ଗୋଟାଏ ଶରୀର ସତ୍ୟ; କିନ୍ତୁ ସେହି ଜୀବନଟା ଯେ ଏକ ପ୍ରକାଣ୍ଡ ଇତିହାସ, ତାହା କିଏ ଜାଣୁଛି । ପଥଚଲା ଲୋକ ହୁଏତ ମନେ କରୁଥିବେ ଏକ ଶବ ଯାଉଛି । କିନ୍ତୁ ପଛରେ ଚାଲୁଥିବା ତା'ର ପୁଅଟି ଯେ କେଡ଼େ ନିରୀଖୀ, କେଡ଼େ ନିଃସହାୟ ! ତାହା ଆଜ କ'ଣ କାହା ହୃଦୟକୁ ସ୍ପର୍ଶ କରୁଥିବ । କାହା ପ୍ରାଣକୁ ବାଧୁଥିବ !!

ସମ୍ମୁଖରେ ଏଇ ଯେ ସ୍ୱର୍ଗଦ୍ୱାରର ସିକତା ଶଯ୍ୟା, କେତେ ଶବ ଏଇଠି ମିଳେଇ ଯାଇଛି । ମଣିଷର କଙ୍କାଳ, ହାଡ଼, ଏଇ ବାଲି ଢିହରେ ମିଶି ବାଲିରେ ପରିଣତ ହୋଇଛି । ସେ କଥା ଆଉ କିଏ କହିବ କେଜାଣି ତା'ର ଛଡ଼ା—

ଆଜିର ଏଇ ବିଷଣ୍ଣ ଆକାଶ ପରି ନଗେନର ମୁହଁ ଭାରି ଗମ୍ଭୀର, ଭାରି ମଳିନ । ମସ୍ତକୋପରି ଏତେବଡ଼ ବିଶାଳ ଆକାଶରେ ଅସଂଖ୍ୟ ମେଘମାଳା । ନିମ୍ନସ୍ଥିତ ଏଇ ବାଳକର ହୃଦୟରେ ସମୁଦ୍ର ଢେଉ ପରି ଅଗଣିତ ଭାବନା; ମେଘ ଥମି ଆସିଛି । ଚିତା ତା'ର ଲେଲିହାନ ଶିଖା ତୋଳି ଏ ଭିଜା କାଠରେ ସୁଦ୍ଧା ହସି ହସି ଜଳିଲା । ନଗେନ ଆଖିରୁ ବୋହି ପଡ଼ିଲା ଏଇ ଛୋଟ ଛୋଟ ମେଘଟୋପା ପରି ଅସୁମାର ଲୁହବିନ୍ଦୁ ।

ସୀତାନାଥବାବୁ ବୁଝେଇ ବସିଲେ—

"ଭାବନା କରନା ବାପ, ଭାବନା କରନା, ଭଗବାନ ଅଛନ୍ତି । ନଗେନର କୋହ ଅସମ୍ଭାଳ ହୋଇ ଉଠିଲା ।" "ବାପା ଚାଲିଗଲେ" କହି

ସେ ସେହି ସିକତା ଶେଯରେ ମୁଣ୍ଡ ପିଟିଲା । ଉପସ୍ଥିତ ଭଦ୍ରମଣ୍ଡଳୀ ସମଦୁଃଖ ଅନୁଭବ କଲେ । ତା' ଭିତରୁ କୁଳମଣିବାବୁ ବଡ଼ ସଦାଶୟ, ଦୟାଳୁ ସେ ସୀତାନାଥବାବୁଙ୍କର ବାଲ୍ୟସଙ୍ଗୀ । ସୀତାନାଥବାବୁଙ୍କ ଠାରୁ ଏହି ନିରାଶ୍ରୟ ବାଳକଟିର ଘଟଣା ଶୁଣିବାରେ ତାଙ୍କ ଦୟାର୍ଦ୍ର ହୃଦୟ ତରଳିଗଲା ।

"ସୀତାନାଥବାବୁ, ଯାହା ହେଉ ପଛେ ଏ ପିଲାଟିର ଭବିଷ୍ୟତ ମୁଁ ବହନ କରୁଛି । କିଛି ଚିନ୍ତା କରନ୍ତୁ ନାହିଁ ।"

ସେହି ଜ୍ୱଳନ୍ତ ଚିତାକୁ ସାକ୍ଷୀ ରଖି ମ୍ୟାନେଜରବାବୁ କୁଳମଣି-ବାବୁଙ୍କ ହାତରେ ନଗେନର ହାତ ଯୋଡ଼ିଦେଲେ । ଗଙ୍ଗା, ଯମୁନା, ସରସ୍ୱତୀର ସଙ୍ଗମ ପରି ତିନୋଟି ହୃଦୟ ଏକାଠି ହୋଇଗଲା ।

ଲୋତକ ସମ୍ବରଣ କରି ସୀତାନାଥବାବୁ ଆରମ୍ଭ କଲେ—

"ବୁଝିଲ କୁଳମଣିବାବୁ, ୟା'ଙ୍କ ପିତା ନିତ୍ୟାନନ୍ଦବାବୁଙ୍କ ଜୀବନ ଏକ ପ୍ରକାଣ୍ଡ ଇତିହାସ, କହି ବସିଲେ ବହୁତ ହେବ । ତେବେ ତା'ର ସାରାଂଶ, ଏହି ପିଲାଟି ସକାଶେ ସେ ବହୁଦୂରରୁ ଆସି ଏମାର-ମଠରେ ପଡ଼ି ରହିଥିଲେ । ଦୁଃଖ ଭିତରେ ଏତିକ ତାଙ୍କର ଉଦ୍ଦେଶ୍ୟ ଅସମ୍ପୂର୍ଣ୍ଣ ରହିଗଲା । ଆଉ ଆପଣଙ୍କ ଦୟାରେ ଯେବେ···"

କଥା ପାଟିରୁ ଛଡ଼ାଇ କୁଳମଣିବାବୁ ଆର୍ଦ୍ର କଣ୍ଠରେ କହିଲେ । "ମୋ' ପାଖରେ ଦ୍ୱିଧାର କଥା ନାହିଁ । ସୀତାନାଥବାବୁ, ଯାହା ଯବାବ ଦେଇଛି, ତାହା କେବେ ଅନ୍ୟଥା ହେବ ନାହିଁ ।"

ଦୟାର୍ଦ୍ରହୃଦୟ କୁଳମଣିବାବୁ ହତାଶ ବାଳକର ପ୍ରାଣରେ ଆଶାର କ୍ଷୀଣ ରଶ୍ମି ରେଖାପାତ କଲେ । "ହତାଶ ହୁଅନା ବାପ, ହତାଶ ହୁଅନା । ତୋ' ବାପ ମରିନାହାଁ ମନେକର । ମୁଁ ଯାହା କହୁଛି, ତାହା କଦାପି ଭାଙ୍ଗିବ ନାହିଁ । ମୋ' ପାଖରେ ରହିବୁ ତ !"

କୃତଜ୍ଞତା ଜ୍ଞାପନ କରି ବାଳକ ତା'ର ଶ୍ରେଷ୍ଠ ମସ୍ତକଟି ଅବନତ କଲା ।

ଦିନ ବାରଟାରୁ ବେଶି ହୋଇ ଯାଇଛି । ସୂର୍ଯ୍ୟଙ୍କର ପ୍ରଖର କିରଣରେ ସମୁଦ୍ରର ନେଳଆ ପାଣି ଚକ୍ ଚକ୍ କରି ଉଠୁଛି । ପ୍ରଜ୍ୱଳିତ ଚିତାଗ୍ନି ମରି ଆସିଲା । ଭଦ୍ରମଣ୍ଡଳୀ ସ୍ନାନାର୍ଥେ ନରେନ୍ଦ୍ରଙ୍କୁ ଫେରିଲେ । ନଗେନ ଫେରିଲା ତ୍ରିଭୁବନ ଦୁର୍ଲ୍ଲଭ ପିତାର ଅସୀମ ସ୍ନେହକୁ ପଥସାଥି ଘିନି ଭାବ ।

× × ×

"ମା', ମା' ଏ ମା"—ନଗେନ ଭୟବିହ୍ୱଳ କଣ୍ଠରେ ଡାକିଲା ! ମା' ଯେ ଶୁଣିବାକୁ ନାହିଁ । 'ଉଠିବୁ ନାହିଁ ମା' ବାଳକ ହଲେଇଲା । ବୁଢ଼ୀ ଆଖି ମେଲିଲେ, ମୁଣ୍ଡ ଆଗରେ ଆକାଶ ଘୂରୁଛି । ଧରା ରସାତଳକୁ ଗତି କରୁଛି ପରି—

"ଧନ ବାପ, ଧନ ମତେ" କହି ବୁଢ଼ୀ ପଡ଼ିଗଲେ । ଚେତା ବୁଡ଼ିଗଲା ବୋଧେ, ଅପ୍ରାପ୍ତ ବୟସ୍କ ବାଳକ ହତାଶ ହୋଇ ପଡ଼ିଲା । ବହୁ ଶ୍ରମସ୍ୱୀକାର, ବହୁ ଯତ୍ନରେ ଶୁଶ୍ରୂଷା ପରେ ବୁଢ଼ୀଙ୍କର ଜ୍ଞାନ ଫେରି ଆସିଲା । ପୁଅକୁ ପାଖରେ ବସାଇ ସେ କଇଁ କଇଁ ହୋଇ କାନ୍ଦି ଉଠିଲେ, କହିଲେ—

"କଣ କରିବ ବାପ, ମତେ କିଛି ବୁଦ୍ଧିବାଟ ଦିଶୁନାହିଁ । ଯେଉଁ ଆଡ଼କୁ ଚାହୁଁଛି, ସେଆଡ଼େ ନିଆଁ, ସେଆଡ଼େ କଣ୍ଟା । ଆଜି ଏ ଅସ୍ଥିକଙ୍କାଳସାର ବେଶ ଧରି କେଉଁ ଭରସାରେ ଗାଆଁକୁ ଯିବାକୁ ମନ କରିବି କହ । ଗାଆଁରେ ବା ମୋର ବୋଲି କିଏ, ମୋ ଆଖିରେ ପୃଥିବୀ ସମ୍ବଳଶୂନ୍ୟ । ବାପଘରେ ମଧ୍ୟ ସେମିତି ଅବସ୍ଥା । ନଙ୍ଗଳା ହିଡ଼ ଖଣ୍ଡିକରେ ତ ବାଲୁଆ ଡେଉଁଛି । ମୋର ଏ ହୀନ କପାଳକୁ ଯୋଡ଼ାଏ ଯୋଡ଼ାଏ ଭାଇ କେହି ରହିନାହାନ୍ତି । ତାଙ୍କୁ ଏ ବୟସରେ ଭରସା କରିବାକୁ ପଡ଼ିବ ବୋଲି ହୁଏତ ସେ ସେଇଥିପାଇଁ ଆଗରୁ ବାଟ କାଟିଛନ୍ତି । ଆଉ ହରିପୁରର ଖବର ତ ଶୁଣିଛୁ, ଅଦ୍ୱୈତ ମଣିଷ ହୋଇ ନାହିଁ । ଦୁର୍ଭାଗ୍ୟକୁ କ'ଣ ଦାନବକୁ ଦେବତା ବୋଲି ଭାବି ଶେଷକୁ ତା'ରି ପଦତଳେ ଆଶ୍ରୟ ଖୋଜିବି; ଯାହାପାଇଁ ଆଜି ଦେଶତ୍ୟାଗୀ, ଗୃହତ୍ୟାଗୀ ।'

'ନା, ଏଣିକୁ ଆଉ ହତାଶ ହେଲେ ଚଳିବ ନାହିଁ । ନଗେନ କହିଲି, ମା, ମୁଁ ଥାଉଁ ଥାଉଁ ତୋର ଗୋଟାଏ ଭାବନା କ'ଣ ? ମୂଲ ଲାଗେ, ବୋଝ ବୁହେଁ, ତୁ ମୋ ଠାରୁ ନବଗଣ ହୋନା । ଭଗବାନ କ'ଣ ଏଥିପାଇଁ କିଛି ଗୋଟାଏ ହେଲେ ଉପାୟ କରିବେ ନାହିଁ । ହେଇତ ଦେଖୁଛୁ, ତାଙ୍କର ଅଶେଷ ଦୟାରୁ ସେଥିପାଇଁ ଏକ ସୁଯୋଗ ଜୁଟିଛି । ସୀତାନାଥବାବୁ ମୋର ଜୀବନ ଆଉଜଣକ ଉପରେ ନ୍ୟସ୍ତ କରିଛନ୍ତି, ତୁ ସେଥିପାଇଁ କିଛି ଚିନ୍ତା କରନା ।

'ତୋର ଜୀବନ ଆଉ ଜଣକ ଉପରେ, ସେ କିଏ ସେ ?'

ଅନ୍ୟମନସ୍କ ଭାବରେ ନଗେନ ଆରମ୍ଭ କଲା । ସେ, ସେ ଜଣେ ଆମର ଜାତିପ୍ର କରଣ, ଅଦାଲତ ଅଫିସର ପେସ୍‌କାର କୁଳମଣିବାବୁ । ମୁଁ ଜାଣେ ତାଙ୍କୁ ବହୁ ଆଗରୁ, ତାଙ୍କ ବଡ଼ପୁଅ ଆମର କ୍ଲାସ୍‌ରେ ପଢ଼େ । ସେ ସୀତାନାଥବାବୁଙ୍କୁ ପୂରା ଜବାବ ଦେଇଛନ୍ତି, ମତେ ପଢ଼େଇବେ । ନଗେନ ଏତିକ କହି ନୀରବ ହେଲା ।

ମା' କହିଲେ, ''ତୋ ଖବର ବୁଝିବେ ବୋଲି କ'ଣ ମୋ ଚିନ୍ତା ତାଙ୍କୁ ଲାଗିବ । ଭଦ୍ରଲୋକଙ୍କୁ ଏତେଟା ଦାୟିତ୍ୱରେ ପକାଇବା କ'ଣ ମଣିଷର କର୍ତ୍ତବ୍ୟ । ମୋ ଚଳିବା ପୁଣି କାହା ଉପରେ ।''

''ସେଥିପାଇଁ କ'ଣ ଭଗବାନ ନାହାନ୍ତି ମା ।''

''ଆରେ ଖାଲି ତ ସେହି ଭଗବାନ, ଭଗବାନ କହିଲୁ । ଭଗବାନ ଚଳୋଉନାହାନ୍ତି ତ ମଣିଷ କଣ .ତା' ସ୍ୱଇଚ୍ଛାରେ ସଂସାରେ ଚଳୁଛି । ତେବେ ଉପସ୍ଥିତିରେ କ'ଣ କରାଯିବ ।''

ନଗେନ ସାହସଧରି କହିଲା—

'କାହିଁକି, ଆମକୁ କ'ଣ ଧାର ମିଳିବ ନାହିଁ ।'

'ଧାର ପୁଣି କାହାଠୁ ଆଣିବୁ ।'

'କାହିଁକି, ସୀତାନାଥବାବୁ ଦେବେ ନାହିଁ ।'

ହଁ, ସେ ଦେବେ ସତ, ତୁ ପିଲଟା ଯେ, ଯୁଝିବୁ କେଉଁଠୁ ?

'କଣ, ମୁଁ ଟଙ୍କା କେଇଟା ଯୁଝି ପାରିବ ନାହିଁ ।'

ବୃଦ୍ଧାଙ୍କ ଆଖି ଦୁଇଟାରେ ଲୁହ ଝଳଝଳ ହୋ'ଇ ଉଠିଲା । ନଗେନ ବାଷ୍ପରୁଦ୍ଧ କଣ୍ଠରେ କହିଲା, 'ଯାହା ଯେତେବେଳକୁ ବିଧାତା ଅଛି ହୋଇଯିବ । ସଂସାରଟା କ'ଣ ମଣିଷ ଭାବିବାରେ କିଛି ଅଛି, ସବୁ ବିଧିର ବିଧାନ । ସବୁ ଭାଗ୍ୟର ଫେର, ବୃଦ୍ଧା ଲୁହ ପୋଛୁ ପୋଛୁ କହିଲେ, ଭାଗ୍ୟ ନୁହେଁ କଅଣ ମଣିଷ କଥା ।

ଦାଣ୍ଡ କବାଟରେ କଡ଼ା ଖଡ଼୍ ଖଡ଼୍ ହେଲା । ନଗେନ ଯାଉଁ ଯାଉଁ କହିଲା ।

'ସୀତାନାଥବାବୁଙ୍କ ପାଟି ତ ଶୁଭୁଛି, ତୁ ସପ ଖଣ୍ଡେ ଆଣୁଥା ।'

ବାରଣ୍ଡା ଉପରେ ସୀତାନାଥବାବୁ ବସି ନିଜ ଜୀବନର କେତେକ ଅଶ୍ରୁଭିଜା କାହାଣୀ ବର୍ଣ୍ଣନା କରିଗଲେ । ନଗେନ ସୀତାନାଥ-ବାବୁଙ୍କ ବିଷୟରେ ସେମିତି ବିଶେଷ କିଛି ଜାଣେ ନାହିଁ । ସେ ଖାଲି ଏତିକି ଜାଣେ, ଛୋଟ ବଡ଼ ପ୍ରତ୍ୟେକଙ୍କ ଜୀବନରେ ଥରକପାଇଁ ସୁଦ୍ଧା ଦୁଃଖ ବିପଦର ବତାସ ବହେ । ଅଶ୍ରୁର ମେଘ ବରଷେ, ଆଉ ହତାଶାର ବିଜୁଳି ମାରେ ।

ସୀତାନାଥବାବୁ ତାଙ୍କ ଅତୀତ ଜୀବନର ପାଶୋରି, ଦରପାଶୋରା ଘଟନାବଳୀ ବର୍ଣ୍ଣନା କରିଗଲେ । କେତେ ଛୋଟ, କେତେ ମଧୁମୟୀ, କେତେ ମର୍ମଭେଦୀ । ବୃଦ୍ଧା ଚୁପ୍ ହୋଇ ସବୁ ଯନ୍ତ୍ରଚାଳିତ ପରି ଶୁଣି ଯାଉଥିଲେ । କଥା ମଝିରେ କହିଲେ—

"ତୁମେ ଯାହା କରିବ ସୀତାନାଥବାବୁ, ଗରିବ ପିଲାଟି ଯଦି ତୁମର ଆଶ୍ରାରେ କୂଳରେ ଲାଗେ, ଧର୍ମ ତୁମର, ପୁଣ୍ୟ ତୁମର ।"

'ମୁଁ କ'ଣ ଧର୍ମ ପୁଣ୍ୟ କରିବାକୁ ଯାଉଛି - ସୀତାନାଥବାବୁ ଉଚ୍ଚହାସ୍ୟରେ କହିଲେ, ମୋର ସେ ମତ ନୁହେଁ । ମୋଟ ଉପରେ

ପିଲାଟି କପାଳ ଏଇ ମ୍ୟାଟ୍ରିକ୍ୟୁଲେସନ ଖଣ୍ଡ ଡେଇଁଯାଉ । ତା'ପରେ ମୁଁ ତ ସେଥିରେ ଷୋଳପଣ ସାହାଯ୍ୟ ଦେଇପାରୁ ନାହିଁ । ମୋର ସେଥିରେ ସାମଗ୍ରିକ, ସେଥିରେ ପୂର୍ଣ୍ଣ ଜବାବ ଦେଇଛନ୍ତି କୁଳମଣିବାବୁ । ଆପଣ କିଛି ଚିନ୍ତା କରନ୍ତୁ ନାହିଁ । ସେ କଦାପି ଏଥିପାଇଁ ନିରାଶ କରିବେ ନାହିଁ । ତାଙ୍କର ବ୍ୟବହାର ମୁଁ ସ୍କୁଲରେ ପଢ଼ିଲାବେଳୁ ଅନୁଭବ କରିଆସିଛି । ଶୁଣେ ସେ ସ୍ତ୍ରୀଟି ମଧ୍ୟ ତାଙ୍କର ବଡ଼ ଧୀର । ବଡ଼ ଦୟାବନ୍ତ । ପରକୁ ସେ ନିମିଷକେ ଆପଣାର କରିପାରନ୍ତି । କଥା ଭିତରେ ଏତିକ, ନିଜ ପର ବୋଲି କିଛି ନାହିଁ ସଂସାରେ । ଲୋକ ପାଖରେ ସୁ-ବ୍ୟବହାର ଦେଖେଇ ପାରିଲେ ତୁମେ ନିଜର ହୋଇ ପଡ଼ିବାକୁ ବେଶି ଡେରି ଲାଗିବ ନାହିଁ ।'

'ବୁଝିଲୁ ନଗେନ, କୁଳମଣିବାବୁ ଏବଂ ତାଙ୍କ ସ୍ତ୍ରୀଙ୍କୁ ତୁ ଯେବେ ପିତାମାତା ନିର୍ବିଶେଷରେ ଭକ୍ତିକରି ସେମାନଙ୍କ ମତାନୁସାରେ ଚଳିବୁ; ସେମାନେ କ'ଣ ଆଉ ତୋତେ ପୁଅ ଦୃଷ୍ଟିରୁ ଅନ୍ତର କରି ଦେଖିବେ । ଏହା କଦାପି ହୋଇ ନ ପାରେ । ଶରତ ଇତ୍ୟାଦିଙ୍କି ତୁ ଯେବେ ଭାଇଭଉଣୀ ଚକ୍ଷୁରେ ଦେଖିବୁ, ସେମାନେ କ'ଣ ବଡ଼ଭାଇ ବୋଲି ତୋତେ ଭକ୍ତି କରିବେ ନାହିଁ । ସେମାନେ କ'ଣ କେବେ ସ୍ନେହରୁ ଊଣା କରିବେ । ନଗେନ ଉତ୍ତର କଲା—

'ମଉସା, ଆପଣ ଯାହା କହୁଛନ୍ତି, ମୁଁ ବୁଝୁଛି, ତାହା ଅକ୍ଷରେ ଅକ୍ଷରେ ସତ୍ୟ । ମାତ୍ର ସେମାନେ କ'ଣ ଆମ ଦୁଇଜଣଙ୍କୁ ପୋଷିବେ ?'

'ଦୁଇଜଣ କିଏ'—ସୀତାନାଥବାବୁ ଏଇଠି ଟିକିଏ ଇତସ୍ତତଃ ହୋଇପଡ଼ିଲେ । ତା'ପରେ କ'ଣ ଟିକେ ଭାବି କହିଲେ ।'

'ହଁ, ନ ପୋଷିବେ କାହିଁକି ! ସେଇପାଇଁ କ'ଣ ଉପାୟ ନାହିଁ । ଏ ବନ୍ଦୋବସ୍ତଟା ତୋ ଉପରେ ସମ୍ପୂର୍ଣ୍ଣ ନିର୍ଭର କରୁଛି, ତୁ ଯଦି ସେମାନଙ୍କ ମନ ସନ୍ତୁଷ୍ଟ କରି ପାରିବୁ, ସେ କଣ ଏଥିସକାଶେ ଅସମ୍ମତ ସ୍ୱୀକାର କରିବେ । ସଂସାରରେ ମନ ନବାଇବା ଏକ ବଡ଼ ଜିନିଷ । ତୋ ଆଡ଼ୁ ଯଦି ସେତକ ହୋଇ ଯାଇଲା; ତା' ହେଲେ ଆଉ ଚିନ୍ତା କ'ଣ ?

ଏଇ ଗତକାଲି ସନ୍ଧ୍ୟା ବେଳେ ତ ଅଫିସ ପାଖରେ ତାଙ୍କର ଓ ମୋର ଦେଖା ହୋଇଥିଲା । ତୋର ଭବିଷ୍ୟତ ଜୀବନ ନେଇ ବହୁତ ଆଲୋଚନା ଚାଲିଥିଲା ଦୁଇଜଣଙ୍କ ଭିତରେ । ସେ ତ ନିଜେ ତାଙ୍କର ଆଡ଼ୁ କହିଲେ ।

'ସୀତାନାଥବାବୁ, ସେ ପିଲାଟି ଯଦି ପଢ଼ାଶୁଣାରେ ଚାଲିବ, ବିଧବା ମା'ଟି ତା'ର ଆଉ କାହାକୁ ଭରସା କରି ଜୀବନ ନିର୍ବାହ କରିବ ।'

ମୁଁ କହିଲି, ତା' ନୁହେଁ ତ କ'ଣ । ଏହି ପ୍ରଶ୍ନଟା ତାଙ୍କ ପ୍ରାଣକୁ ଖୁବ ନିବିଡ଼ ଭାବରେ ଛୁଇଁଛି । ନିକଟସ୍ଥ ବୃଦ୍ଧାଙ୍କୁ ଉଦ୍ଦେଶ୍ୟ କରି ସୀତାନାଥବାବୁ କହିଲେ ।

କ'ଣ ! ଆଉ ଆପଣଙ୍କର ଏ ବିଷୟରେ ମତ ଯାଉଛି ? ବୃଦ୍ଧା ଅତି ଧୀର ସ୍ୱରରେ କହିଲେ—

"ଏଥିରେ ଆଉ ମୋର ମତବାଦ କରିବାର କ'ଣ ଅଛି । ଆପଣ ତ ନଗେନର ଧର୍ମ ପିତା । ତା' ଜୀବନ ଆପଣଙ୍କ ଉପରେ ସଂପୂର୍ଣ୍ଣ ନିର୍ଭର କରୁଛି । ନଗେନ ଆପଣଙ୍କ ମହୋପକାର ତା'ର ଜନ୍ମେ ଜନ୍ମେ ପରିଶୋଧ କରି ପାରିବ ନାହିଁ ସୀତାନାଥବାବୁ । ମୋର ଏ ସଂସାରରେ ବା ଆଉ କେଉଁଟା ଧନ । କେବଳ ନଗେନ କପରି ମଣିଷ ହୋଇ ପାଁ' ଜଣଙ୍କ ସାଙ୍ଗରେ ବାଟ ଚାଲିବ । ହିଁ ଶେଷରେ ଏହି ପବିତ୍ର କ୍ଷେତ୍ର ସ୍ୱର୍ଗଦ୍ୱାରରେ ମୋର ଅନ୍ତିମ ଶଯ୍ୟାଟି ରଚିତ ହବ ।

କଥାର ସୁଅ ଅବିରାମ ଗତିରେ ଚାଲିଛି । ଦିନ ଗଡ଼ିଯାଇ ସଞ୍ଜ କେତେବେଳୁ ଆସିଗଲାଣି । ସନ୍ଧ୍ୟାର ଘଣ୍ଟା ନିନାଦରେ କର୍ଣ୍ଣ ବଧିର ପ୍ରାପ୍ତ । ପ୍ରତି ଘରେ, ଦୁଆରେ, ଏରୁଣ୍ଡୀ ଉପରେ ସଳିତାର ଟିକି ଆଲୋକ ଉଙ୍କି ମାରି ଉଠିଲାଣି । କାହାର ଗୋଟିଏ ପରିଚିତ କଣ୍ଠ-ସ୍ୱରରେ ସୀତାନାଥବାବୁ ଚମକି ପଡିଲେ ? ଏ' ଯେ ନିଷ୍ଠାପ୍ତ କୁଳମଣି-ବାବୁଙ୍କ ସ୍ୱର । ନଗେନ କବାଟ ଖୋଲି ଭୂମିଷ୍ଠ ପ୍ରଣାମ କଲା । ସୀତାନାଥବାବୁ ବୃଦ୍ଧାଙ୍କ ପାଖରୁ ଉଠୁ ଉଠୁ କହିଲେ—

"ହେଇତ, କୁଳମଣିବାବୁ ଆସିଲେଣି ।" ଡାକ୍ତର ଆହ୍ୱାନ ଶୁଣି କାମସାର ସୁଇ ନେଇ କଟାରେ ନଗେନ ଯେତେବେଳେ ସୀତାନାଥ ବାବୁଙ୍କ ସହ କୁଳମଣି ବାବୁଙ୍କ ଘରେ ପହଞ୍ଚିଲା, ସ୍ତ୍ରୀ ଲତାଦେବୀ ଗୋଡ଼ତଳୁ ନଗେନର ଶ୍ରେଷ୍ଠ ମସ୍ତକଟି ତୋଳି ଧରିଲେ । ନିର୍ଦ୍ଦେଶ କରି କହିଲେ—

"ଏଇ ପିଲାଟି ନା !" 'ହଁ, ଏଇ ପିଲାଟି ।' ଜୋତାର ଫିତାଟା ଖୋଲୁ ଖୋଲୁ କୁଳମଣିବାବୁ କହିଲେ—

"ବାପୁ ବସ"—କହି ସେ ଆଉ ଘରକୁ ପଶିଗଲେ । ବାରଣ୍ଡା ଉପରେ ଲତାଦେବୀ ଗୋଟିଏ ଥାଳରେ କିଛି ଜଳଖିଆ ଧରି ଛୁଡ଼ା-ହେଲେ । ସଙ୍ଗେ ସଙ୍ଗେ ଶ୍ରେଷ୍ଠ ଝିଅଟି ଗୋଟିଏ ଗିଲାସରେ ପାଣି ନେଇ ପହଞ୍ଚିଗଲା । ଏଇ ବୋଧେ କୁଳମଣି ବାବୁଙ୍କର ଝିଅ ହେବ ପରା ! ନଗେନ ଭାବିଲା ସାଙ୍ଗରେ ବସାଇବ, କିନ୍ତୁ ପାରିଲା ନାହିଁ । ତା'ର ଶ୍ରେଷ୍ଠ ହୃଦୟ ଏତେ ବଡ଼ କାମରେ ସତେ ଯେମିତି ହସ୍ତକ୍ଷେପ କରିବାକୁ ନାରାଜ ହେଲା । ନଗେନର ଖାଇବା କଥା ଆଜି ମନେ ପଡ଼ୁ ନାହିଁ । ସେ କେବଳ ଗୃହସ୍ଥଙ୍କ ଆଡ଼କୁ ଚାହିଁ ଗତ ସପ୍ତାହରେ ଘଟିଥିବା କରୁଣ ଇତିହାସ ବର୍ଣ୍ଣନା କରିବାରେ ବ୍ୟସ୍ତ ହୋଇପଡ଼ୁଛି । ହଠାତ୍ ଥାଳି ଉପରେ ଦୃଷ୍ଟି ପଡ଼ିଲା । "ବାପ, ଏ ପର୍ଯ୍ୟନ୍ତ ଖାଇ ନାହଁ ଯେ ।" ଏକ ବିସ୍ମିତ କଣ୍ଠରେ ଜବାବ ଦେଲେ ଲତାଦେବୀ । ନଗେନ ଦେଖିଲା, ସତେତ ତା'ର ଏ ପର୍ଯ୍ୟନ୍ତ ଖିଆ ହୋଇ ନାହିଁ । ଲତାଦେବୀ ଅନ୍ୟ ଘରକୁ ଯାଇଥିବା ଅବସରରେ କୌଶଳୀ ନଗେନ ଦେଖିନେଲା । ଶ୍ରେଷ୍ଠ ଥାଳିଟିରେ ଜଗନ୍ନାଥଙ୍କ ମହାପ୍ରସାଦ, ଜଗନ୍ନାଥବଲ୍ଲଭ, ଆଉ ଲୁଚି ସୁଦରଖଣ୍ଡ । ତଳକୁ ଉହୁଙ୍କ ପଡ଼ ଗୃହିଣୀ ଯେତେବେଳେ ସିଲେଟ୍ କମଳାର କୋଲାଗୁଡ଼ିକ ଉକ୍ତ ଥାଳରେ ଦବା ପାଇଁ ଉଦ୍ୟତ ହୁଅନ୍ତେ ନଗେନ ମହାପ୍ରସାଦଟି ନେଇ ଲତାଦେବୀଙ୍କୁ ଖୁଆଇଦେଲା ।

ଗୃହିଣୀ ପ୍ରଶ୍ନ କଲେ, "ଏ କ'ଣ ?"

"କିଛି ନୁହେଁ । ଆଜ ଠାରୁ ଆପଣ ମୋର ମାଉସୀ ହେଲେ ।

ନଗେନ ଆଉ ବେଶି କିଛୁ କହି ପାରିଲା ନାହିଁ । ଆଉ କିଛୁ କହିବା ପୂର୍ବରୁ ତା' ମୁହଁରେ ସତେ ଯେମିତି କିଏ ହାତ ଦେଇ ମନାକଲା । ଲତାଦେବୀ ଏକ ମସ୍ତବଡ଼ ହସ ହସିଲେ । ପିଲାଟାକୁ ତ ଆଉ ପାରିହବ ନି । ବାପ୍ସ୍‌ଟା କରେ ଭୁ ! ନଗେନ ତା'ର ମୁହଁକୁ ତଳକୁ କରି ଏଣ୍ଟ୍ରେନ୍ସ କ'ଣଗୁଡ଼ାଏ ସତେ କି ଭାବିବାକୁ ଆରମ୍ଭ କଲା । ନଗେନକୁ ଆଜ ସେଦିନ ତାଙ୍କ ଘରକୁ ଯିବାକୁ ଦେଲେ ନାହିଁ । ରାତିରେ ଏକାଠି ବସି ଖିଆପିଆ ହେଲାବେଳେ ରାଇଜ ଗୋଟାକର ଗପ ଆସି ପହଞ୍ଚିଲା—ଲତାଦେବୀ ଯେମିତି ଗପପ୍ରିୟ ସେମିତି ମେଳାପୀ । ପ୍ରଥମ ଦର୍ଶନରେ ନଗେନ ପ୍ରତି ଗୋଟାଏ ବାତ୍ସଲ୍ୟ ମମତା ତାଙ୍କର ନାରୀ-ସୁଲଭ ହୃଦୟକୁ ଆବୋରି ବସିଲା; ସତେ କି ସେ ଆଜ ଦଣ୍ଡେ ତାକୁ ଛାଡ଼ି ରହି ପାରିବେ ନାହିଁ ପରି । ସେ ସେଦିନ ନଗେନକୁ ସବୁଦିନେ ତାଙ୍କର ବସାରେ ରହିବାକୁ ପରିଷ୍କାର ମତ ରଖିଲେ । "ମାଆ ଯେ ଏକା" ନଗେନ ଖୁବ୍ ଆସ୍ତେ ଉତ୍ତର ଦେଲା । କୁଳମଣିବାବୁ ଥାଇଁ କହିଲେ—'ସ୍ତ୍ରୀ' କ'ଣ ହୋଇପାରେ କେବେ ।" ସଂସାରେ ଯାହାର ଏକମାତ୍ର ମାଆ, ସେ ତାକୁ ଛାଡ଼ି କେଉଁଠି ରହିପାରେ । ଗୃହିଣୀ ବଡ଼ ଅପ୍ରତିଭ ହୋଇପଡ଼ିଲେ । ତା' ନୁହେଁ କଅଣ ?

ତହିଁଆରଦିନ ମ୍ୟାଟ୍ରିକ୍‌ର ପ୍ରଥମ କ୍ଲାସରେ ନଗେନର ନାମ ଲେଖାହେଲା । ଟଙ୍କାସବୁ କୁଳମଣିବାବୁଙ୍କର, କି ଉଦାର ହୃଦୟ ସତେ ! ଲତାଦେବୀ କହିଥିଲେ ସ୍କୁଲରୁ ଫେରିଲାବେଳେ ତାଙ୍କର ଘରବାଟ ଦେଇ ଆସିବାକୁ । ଶରତ ମଧ୍ୟ ନଗେନର ସହପାଠୀ ସାଙ୍ଗ ହୋଇ ଘରକୁ ଫେରିଲେ ।

ମାଉସୀ ବଡ଼ ଜିଗର କଲେ, "ନାଇଁ ନଗେନ; ତତେ ଯେ କୌଣସିମତେ ଦି'ଟା ଖାଇଦେଇ ଯିବାକୁ ହେବ । ଏତେ ଆଗ୍ରହ ଏତେ ବାଧବାଧକତାକୁ ସେ ଆଉ ଏଡ଼ି ପାରିଲା ନାହିଁ । ଶରତ ସହ ନଗେନ ଅସୀମ ସଂକୋଚ ନେଇ ଥାଳ ପାଖରେ ବସିଲା । ମାଉସୀ କହିଲେ; "ମୋ' ପାଖରେ ତୋ'ର ଗୋଟାଏ ଲାଜ କ'ଣ ? ଏତକ ଯେ କୌଣସି ମତେ ଖାଇଦବାକୁ ହେବ । ଏଣ୍ଟ୍ରେନ୍ସ କ୍ଲାସର ଖବର୍ ନେଇ ଗପ କରୁ କରୁ ଥାଳରେ ଜଳଖିଆ ଶେଷ ହୋଇ ଆସିଥିଲା । ପାଞ୍ଚଟାରୁ ଯେ

ବେଶି ହୋଇଗଲାଣି । ନଗେନ ଘରକୁ ଯିବାକୁ ଅନୁମତି ଗୁହିଁଲା, ଲତାଦେବୀ କହିଲେ—

"ଯାଆ ପଛେ, କାଲି ପୁଣି ସ୍କୁଲରୁ ଫେରିଲାବେଳକୁ ତତେ ଏଇ ବାଟଦେଇ ଯିବାକୁ ପଡ଼ିବ । ଶରତ ଯେ ସାଙ୍ଗରେ ଅଛୁ, ଉଦ୍ଦେଶ୍ୟ କରି କହିଲେ—ଏଇ ଯେ ନଗେନ ଭାଇକୁ ତୋ'ର ସାଙ୍ଗରେ ଆଣିବୁ । ନଗେନ ଘରକୁ ଫେରିଲା, ପଥସାରା କୁଳମଣିବାବୁଙ୍କ ପରିବାରର ସ୍ୱର୍ଗ-ଦୁର୍ଲ୍ଲଭ ଅସୀମ ମମତାକୁ ବାଟସାରା ଭାବି ଭାବି । ତାଙ୍କର ସେ ଶ୍ରେଷ୍ଠ ଝିଅଟି 'ମନା'ର ପଚୁଆ ଡାକ—"ନଗେନଭାଇ, କାଲି ଆସିବ ।" ପରିବାରର ପ୍ରତ୍ୟେକଟି ପ୍ରାଣରେ ତା' ପାଇଁ ଏତେ ମମତା, ଏତେ ସ୍ନେହ କାହିଁକି ? ଭାବୁ ଭାବୁ ନଗେନ ଦୁଆରମୁହଁରେ ପହଞ୍ଚି ଯାଇଥିଲା ।

"କିରେ, କାଲିଠଉଁ ଯେ ତୋ'ର ଦେଖା ନାହିଁ ।" ମାଆ ସଞ୍ଜ ଦୀବୋଜୁ ବୋଜୁ କହିଲେ ।

"ନାହିଁ ମା', କୁଳମଣିବାବୁ ଆଜି ତାଙ୍କ ସ୍ତ୍ରୀଙ୍କର ଯେଉଁ ଆଗ୍ରହ ତାକୁ ସହଜେ ଲୋକ ଏଡ଼ି ପାରିବ ନାହିଁ । ସେ ଏକା ନୁହନ୍ତି । ତାଙ୍କ ପୁଅ ଝିଅ ସମସ୍ତେ ଅସୀମ ଆକାଶ ପରି ହୃଦୟ ତାଙ୍କର ଉଦାର । ମା, ସେମାନଙ୍କ ସ୍ନେହ ସହଜେ ଲୋକ ଭୁଲି ପାରିବ ନାହିଁ । ସ୍ତ୍ରୀ ତ ତାଙ୍କର କହୁଥିଲେ ସବୁଦିନେ ସେଇଠି ରହିବାକୁ, କୁଳମଣିବାବୁ ସେଥିରେ ଅରାଜି ହେଲେ । କହିଲେ, ଯ୍ୟା' କ'ଣ କେଉଁଠି ହେଲାଣି । ଏକମାତ୍ର ମାଆକୁ ଛାଡ଼ି ସେ ରହି ପାରିବ । ତା'ପରେ କାଲି ରାତିରେ ତ ଦୁନିଆଁ ଯାକର ଗପ ପଡ଼ିଲା । ବାପାଙ୍କ ମୃତ୍ୟୁରେ ସେମାନେ ବଡ଼ ବ୍ୟଥିତ, ସତରେ ମା' ତାଙ୍କ ପରି ଲୋକ ଦୁନିଆରେ ଅତ୍ୟନ୍ତ ବିରଳ ।

ତା'ପରେ ଆଜ ସକାଳେ ମୋର ସ୍କୁଲରେ ନାମ ଲେଖାହେଲା । ସେଇ ତ ପ୍ରତି ମାସରେ ଟଙ୍କା ଯୋଗେଇବେ । କଥା ମଝିରେ ମାଆ ଆଣି ଜଳଖିଆ ଥାଳିଆ ଥୋଇଲେ । ନଗେନ କହିଲା, ମୁଁ ଏଇ ତ ତାଙ୍କ ଘରେ ବର୍ତ୍ତମାନ ଖାଇ ଆସିଲି । ସ୍କୁଲକୁ ଯିବାବେଳଠୁ ସେ ମତେ ଜଗିରି କରିଛନ୍ତି । ମା' ସବୁ କଥାରେ ଖାଲି ହଁ ଭରି ଯାଉଛନ୍ତି । ପୁଅ କହିଲା

ମା, ମୁଁ ଠିକ୍ ଜାଣେ ଈଶ୍ୱର ବଡ଼ଲୋକ, ତାଙ୍କର ଯାହା ଇଚ୍ଛା ତାହା ହୋଇଯିବ । ମଣିଷର କିଛି ମାତ୍ର ଆୟତ୍ତ ନାହିଁ । ତାଙ୍କର ଦୟାରେ ଯେବେ ଏ ଗୁରିଟା ବର୍ଷ ଯାଏ··· । ମା' ଗୋଟାଏ ଦୀର୍ଘଶ୍ୱାସ ନିକ୍ଷେପ କରି କହିଲେ ହଁ, ଏତେ କପାଳ ତୋ'ର ହେବ । କେଜାଣି ସେହି ଜଗନ୍ନାଥ ଜାଣନ୍ତି । ଆମ ଭଳି ଗରିବ ଏତେବଡ଼ ଆଶାଟାଏ କେମିତି ବାନ୍ଧିବ ?

ଆମେ ଗରିବ, ଆଉ ସଂସାରରେ ବଡ଼ଲୋକ କିଏ; ବଡ଼ଲୋକ ଭଗବାନ । ନଗେନ ବହିର ପୃଷ୍ଠାଟା ଲେଉଟାଉ ଲେଉଟାଉ କହିଲା ।

ସମୟ କାହାରିକୁ ଅପେକ୍ଷା କରେ ନାହିଁ । ବହିଗଲା—ସ୍ୱା' ଭିତରେ ଦିନ ଦିନ କରି ଗୁରୋଟି ବରଷକାଳର ଗର୍ଭର ଗହ୍ୱରରେ ଲୁଚି ଯାଇଛି । ସମୟ ବହି ଯାଇଛି ସତ, ମାତ୍ର ଅଛି ତା'ର ସ୍ମୃତି । ସବୁ ଅଭୁଲ, ସବୁ ଅପାସୋରା ।

ନିତ୍ୟାନନ୍ଦବାବୁଙ୍କର ପୃଥିବୀରୁ ଚିର ବିଦାୟ ନେବାରେ ଏଇଠି ଗୁରି ବରଷ ପୂରିଯାଇଛି । କୁଳମଣିବାବୁଙ୍କ ପାଖରେ ନଗେନର ରହିବା ମଧ୍ୟ ଗୁରିବରଷ ହେଲା ହୋଇଗଲାଣି । ଏନ୍ ଟ୍ରାନ୍ସ ପାସ୍ କରିବାକୁ ତା'ର ଆଉ ବର୍ଷଟିଏ ମାତ୍ର ବାକୀ ଅଛି । ସ୍ୱାର ଭିତରେ ଦିନ ଦିନ କରି ନଗେନର ପରମ ଦୁଃଖର ଦିନଗୁଡ଼ିକ କଟିଯାଇଛି । ସେ ଆଜି କୁଳମଣିବାବୁଙ୍କ ପରିବାରଟାରେ ସଂପୂର୍ଣ୍ଣ ସ୍ନେହର ପାତ୍ର ହୋଇ ଉଠିଛି । × × ×

ନଗେନ ଆଜି ଏଇ ବସନ୍ତ ରୋଗୀ ଶରତର ପୀଡ଼ିତ ଶଯ୍ୟା ପାଖରେ ବସି କେତେ କ'ଣ ଭାବି ଯାଉଛି । ଆକାଶ ପାତାଳ ପରି ତା'ର ଅସୀମ ଭାବନା । ମାଉସୀ ମଉସା ଯେ ଶରତଠାରୁ ସଂପୂର୍ଣ୍ଣ ଆଶା ଛାଡ଼ି ବସିଗଲେଣି । ଶରତ ପାଇଁ କେବଳ ତାଙ୍କର ଏତେବଡ଼ ସଂସାର । କେତେ ଆଶଙ୍କା, କେତେ ନୈରାଶ୍ୟ ନଗେନର ଦୁର୍ବଳ ବୁକୁରେ ଶେଳବିଦ୍ଧ ହେଲାପରି ରହି ରହି ବାଜୁଛି । ଏକମାତ୍ର ପୁଅଟିର ଯଦି ଆଜି କିଛି ନା କିଛି ହୁଏ, ସେମାନେ ଆଉ ହୃଦୟ ଧରି

ରହିବେଟି—ଘବୁ ଘବୁ ଆଖିରୁ ତା'ର ଝରପଡ଼ିଲା ଲୁହର ଅଗଣିତ ଟୋପା । ରାତି ଦୁଇଟାରୁ ବେଶି ହୋଇଯାଇଛି । ଶରତ ପିଇବାକୁ ହାତ ହାରା ସଙ୍କେତ କଲା । ମିଶ୍ରି ମିଶ୍ରି ପାଣିରୁ ନଗେନ ଗ୍ଲାସ୍ଟରେ ମାଟି ପାଖରେ ଦେଲା । ଶରତ ଦେଖିଲା ନଗେନ ଭାଇ ଆଖିରେ ଖୁବ୍ ଜୋରରେ ଲୁହ ଜମି ଆସୁଛି । ନଗେନର କଣ୍ଠରୁଦ୍ଧ ହେଲା । ମନରେ ତା'ର ଏକ ଗଭୀର ସଂଶୟ, ସତେ ଏଥିରୁ ଶରତ ବଞ୍ଚି ଉଠିବ । ଗୃହକାନ୍ଥସ୍ଥିତ ମଙ୍ଗଳାଙ୍କ ପାଖରେ ପ୍ରଦୀପର ସ୍ନିଗ୍ଧ ଆଲୋକ ଶିଖାଟି ଊର୍ଦ୍ଧ୍ୱକୁ ମସ୍ତକ ତୋଳି ଉଠିଛି । ଗନ୍ଧଚନ୍ଦନ, ଧୂପ ଝୁଣାର ଆମୋଦରେ କକ୍ଷଟି ସୁରଭିତ । ନଗେନ ଦେଖେିଲ ଘଣ୍ଟାର କଣ୍ଟାଟି ଦୁଇଟା ଉପରକୁ ଉଠିଲାଣି । ଆଖିକୁ ତା'ର ଏପର୍ଯ୍ୟନ୍ତ ନିଦ ସ୍ପର୍ଶ କରିନାହିଁ । ହତାଶ ହୃଦୟ ଦମ୍ପତି ଅନ୍ୟ କୋଠରୀଟିରେ ତନ୍ଦ୍ରାରେ ପଡ଼ିଯାଇଛନ୍ତି । ବାଳକ ପାଣିପାଇଁ ପୁଣି ସଙ୍କେତ କଲା । ନଗେନ ଗ୍ଲାସ୍ଟିରେ ପାଣି ଦେଉଥିବା ବେଳେ ମାଉସୀ ଆସି ପହଞ୍ଚିଲେ । "ଏପର୍ଯ୍ୟନ୍ତ ଶୋଇନାହୁଁ ବାପ ! ଆଖିରେ ଏଥର ଅଶ୍ରୁର ଧାରା ଆଉ ବନ୍ଦ ହୋଇ ରହିପାରିଲା ନାହିଁ । ନଗେନ ରୁଦ୍ଧ ଆବେଗକୁ ଚାପିରଖି କହିଲା, 'ନାଇଁ, ମାଉସୀଙ୍କ ଆଖି ଦୁଇଟା ବି ବତୁରି ଆସିଲା । ରୋଗୀ ଏଇ ସମୟରେ ଖୁବ୍ କଷ୍ଟରେ କର ଲେଉଟାଇଲା । ବରକୋଳି ପରି ଜଳଜଳ ଫୁଟୁକାଗୁଡ଼ାକ ଚାପିହୋଇ ଯାଇଛନ୍ତି । କି ଯନ୍ତ୍ରଣା-ଦାୟକ ରୋଗ, କୋମଳ ଚୂନୀଟିଲୁ ମଧ୍ୟ ଏଥିରେ କଣ୍ଟକିତ ହୋଇ ଉଠିଛି ।

ଆଜି ନବରାତ୍ର । ଯେକୌଣସିମତେ ପରିବାର ଭିତରୁ ଜଣକୁ ଅନିଦ୍ରା ରହି ରାତିଟା କଟେଇଦବାକୁ ହେବ । ନଗେନ ସ୍ୱଇଚ୍ଛାରେ ସେ ଭାରଟା ନେଇଛି । ତା'ର ଗଭୀର ଭାବନାରେ ବାଧାଦେଇ ଲତାଦେଈ କହିଲେ, 'ତୁ ଯାହା କରିବୁ ନଗେନ, ମୋର କିଛି ଗୁରା ନାହିଁ । ସେ କାନ୍ଦକାନ୍ଦ ସ୍ୱରରେ କହିଲା, "ମାଉସୀ, ଭଗବାନଙ୍କୁ ଡ଼ାକନ୍ତୁ ।" ଶୀତଳାଙ୍କୁ ସ୍ମରଣ କରନ୍ତୁ । ମଣିଷର ସମସ୍ତ ଚେଷ୍ଟା ଏଇଠିତ ପରାଜୟ ମାନି ନେଇଛି । ମଣିଷର ଏଥିରେ ହାତ ଯାଏନା ।

ଲତାଦେବୀଙ୍କ କଣ୍ଠ ଆର୍ଦ୍ର ହୋଇ ଉଠିଲା । ମୋର ସବୁ ଏତେ କପାଳ । ସୁର ବଞ୍ଚିବ, କେଜାଣି ।

ମଙ୍ଗଳାଙ୍କ ପ୍ରତିମୂର୍ତ୍ତି ତଳେ ମାଉଷୀ ମୁଣ୍ଡ ବାଡ଼େଇଲେ । ସ୍ଥିରବଦନ ହେଲା ଯେ ପିଲାଟା ଥକି ପଡ଼ିଲାଣି । ନଦ କୁଆଡ଼େ ଗଲା । ନଅଦିନ ହେଲା ନଗେନ ଯେ ରାତିର ବିଛଣା ମାଡ଼ିନାହିଁ । ଅନ୍ତତଃ ଏଇତକ ପାଇଁ ଭଗବାନ କ'ଣ ସୃହିଁବେ ନାହିଁ । ଲତାଦେବୀଙ୍କ ମୁଖରୁ ଏଇ ପଦକ କଥା ନ ସରୁଣୁ ଅଦୂରବର୍ତ୍ତୀ ହଷ୍ଟେଲ ଘଣ୍ଟାରେ ଟଂ ଟଂ କରି ଗୃହଟା ବାଜି ଉଠିଲା ।

ଆଜି ବସନ୍ତର କରାଳ କବଳରୁ ସୁର ଉଦ୍ଧୁରିପିବାର କୋଡ଼ଏ ଦିନ ହୋଇଯାଇଛି । ଫୋଟକାଗୁଡ଼ା ଝଡ଼ିପଡ଼ି ଦେହଟା ବଳକାଙ୍ଗ ଦିଶୁଛି । ମାଆ ସୁରଠେଇଁ ନମ୍ଭିହୋଳଘା ମାଳିସ କରୁ କରୁ କହିଲେ—

"ଶୀତଳାଙ୍କ ଦୟା ସତ, କିନ୍ତୁ ନଗେନ ଯେ ସୁରର ଜୀବନ ପାଇଁ ଷୋଳପଣ ଦାୟୀ । ତା'ର ପାଇଁ ଆଜି ଏ ହାଡ଼ ଗୃହଖଣ୍ଡ ପଡ଼ି ରହିଲା । ଦିନ ରାତି ଅଣ୍ଟି ନାହିଁ । ତା'ର ଯେଉଁ ସେବା, ଯେଉଁ ଯତ୍ନ—ସେହି ଶୁଶ୍ରୁଷା ଫଳରେ......... ।"

ସ୍ତ୍ରୀଙ୍କ ପାଟିରୁ କଥା ଛଡ଼େଇ କୁଳମଣିବାବୁ କହିଲେ, 'ସାନଭାଇ ଠାରେ ବଡ଼ଭାଇର ଯେଉଁ କର୍ତ୍ତବ୍ୟ; ତାହା ସେ ଅକ୍ଷରେ ଅକ୍ଷରେ ପାଳନ କରିଛି । ତାହାର ପାଇଁ ସେ ଆହାର ନିଦ୍ରା ପର୍ଯ୍ୟନ୍ତ ଭୁଲି ଯାଇଛି । ରାତି ରାତି ଅନିଦ୍ରାରେ ତା' ଦିହକୁ ଆଉ କ'ଣ ଅନେଇ ହେଉଛି ନା । ଏତେ କମ୍ ବୟସରୁ ତା'ର ଧୈର୍ଯ୍ୟ ଅସୀମ । କଥା ଭିତରେ କୁଳମଣିବାବୁ କ'ଣ କେଜାଣି ଭାବି ରହି ରହି କହିଲେ ।

"ହଁ, ଭଗବାନ ତା'ର ମଙ୍ଗଳ କରନ୍ତୁ । ପିଲାଟି ଦିନରୁ ସେ ଯେମିତି ଦୁଃଖ ହତାଶାକୁ ପିଠେଇ ଆସିଛି । ଈଶ୍ୱର କେମିତି ଖାଲି ତା'ର ଭବିଷ୍ୟତ ମଙ୍ଗଳ କରିବେ । ଏଇ ହେଉଛି ଆମର ଦେଖିବାର କଥା । ପାଟିରୁ କଥା ପଦକ ସରିଛି କି ନାହିଁ, ନଗେନ ବେଗ କୁଡ଼ୁଆଟିଏ ଧରି ପହଞ୍ଚିଲା, ଲତାଦେବୀ କହିଲେ ।

"ହାତରେ କ'ଣ ତୋର", "ଏଇ ?"

ନଗେନ ରହି ରହି କହିଲା, ରୋଗ ଫର୍ଦ୍ଦ । ସୂରର ରୋଗଶଯ୍ୟା ପାଖରେ ଯେଉଁ ରୋଗପାଇଁ ଶୀତଳାଙ୍କଠାରେ ମନାସିଥିଲା, ସେହି ।

କୁଳମଣିବାବୁଙ୍କ ତୁଣ୍ଡରୁ ଆନନ୍ଦରେ ବାକ୍ୟ ଫୁଟିଲା ନାହିଁ । ଲତାଦେବୀ ରୋଗ ରଖି ରଖି କହିଲେ—

"ତତେ ଆଉ ପାରହବ ନାହିଁ ଦେଖୁଛି ।"

ଭଲ ହେଉ, ମନ୍ଦ ହେଉ, ଏନ୍‌ଟ୍ରାନ୍‌ସ ପରୀକ୍ଷାଟା ମୁଣ୍ଡ ଉପରୁ ଉଭେଇ ଯାଉଛି । ନଗେନ ଗୋଟାଏ ସ୍ୱସ୍ତିର ଦୀର୍ଘଶ୍ୱାସ ମାରିଲା—ପରୀକ୍ଷାରେ ସେ'ତ ଯେ କୌଣସି ମତେ କୃତକାର୍ଯ୍ୟ ହେବ, ଏଥିରେ ସନ୍ଦେହର ଅବକାଶ ନାହିଁ, ତାକୁ ଏଇଠୁ ଗୋଟାଏ ବାଟ ଦିଶିଲା, ସଂସାରେ ଲୋକ ମୂର୍ଖ ହୋଇ କୌଣସି କାର୍ଯ୍ୟରେ ହାତ ଦେଇ ପାରେନା । ଲୋସର କାଦୁଅରେ ମୂର୍ତ୍ତି ଗଢ଼ିଲା ଭଳି ସେ ଯେଉଁଥିରେ ହସ୍ତକ୍ଷେପ କରେ, ତାହା କାର୍ଯ୍ୟରେ ସଫଳ ହୁଏନା । ବିଶେଷତଃ ନସ୍ତ ଜୀବନରେ ।

ଯେଉଁମାନଙ୍କ ଜୀବନରେ ଐଶ୍ୱର୍ଯ୍ୟ ସ୍ୱପ୍ନ, ସେମାନଙ୍କ ଆଶା ନିରାଶାରେ ମରିଯାଏ, ମରୁ ବାଲିରେ ଘାସ ନ ଉଧେଇଲା ଭଳି ଦାରିଦ୍ର୍ୟ ଜୀବନରେ କୌଣସି ଉଚ୍ଚ ଆଶା ମଧ୍ୟ ଉଧାଏନା, ସବୁ ବିଫଳ, ସବୁ ନିଷ୍ଫଳ ହୁଏ ।

କିନ୍ତୁ ଅଜ୍ଞାନ, ଅନ୍ଧକାର ଭିତରେ ଜ୍ଞାନର ବିଦ୍ୟୁତାଲୋକ ପରି ନଗେନକୁ ଗୋଟାଏ ବାଟ ଦିଶିଲା । ଏନ୍‌ଟ୍ରାନ୍‌ସ ପାସ ପରେ ସେ ଆଉ ଶିକ୍ଷାର ଦୂରତାକୁ କେଉଁ ଭରସାରେ ଆଗେଇ ଯିବାକୁ ମନ ବଳାଇବ, କୁଳମଣି ବାବୁ ଯେ ଧନ୍ୟ, ତାଙ୍କର କରୁଣା ନ ଜୁଟିଥିଲେ ନଗେନର ଜୀବନଟା ଯେ କି ଦୁଃଖମୟ ହୋଇ ଉଠିଥାନ୍ତା, ତାହା ବର୍ଣ୍ଣନାତୀତ । ତା'ପରେ ସେ ଆଉ ପାଠ ପଢ଼ିବ କ'ଣ ବିଧବା ମା'ଟି ପେ ଆଜି ଶ୍ମଶାନ ପଥର ଯାତ୍ରୀ ବେଶ ଧରି ବୁଢ଼ୀ ହେଲାଣି, ଅନ୍ତତଃ ତା'ର ଶୁଷ୍କ ଜୀବନରେ ଏଇ କେଇଟା ବରଷ ଯେବେ ତା'ର ଦିନଗୁଡ଼ିକ ଏକପ୍ରକାର ଶାନ୍ତିରେ କଟିପାରନ୍ତା, ତା'ହେଲେ ନଗେନ ଟିକିଏ ସୁଖୀ ହୁଅନ୍ତା ।

ଲତାଦେବୀଙ୍କ କଣ୍ଠ ଆର୍ଦ୍ର ହୋଇ ଉଠିଲା । ମୋର ସବୁ ଏଡ଼େ କପାଳ । ସୁରି ବଞ୍ଚିବ, କେଜାଣି ।

ମଙ୍ଗଳାଙ୍କ ସ୍ତମ୍ଭ ତଳେ ମାଉସୀ ମୁଣ୍ଡ ବାଡ଼େଇଲେ । ସ୍ୱରଧନ ହେଲା ଯେ ପିଲାଟା ଥକି ପଡ଼ିଲାଣି । ନନ୍ଦ କୁଆଡ଼େ ଗଲା । ନଅଧନ ହେଲା ନଗେନ ଯେ ରାତିରେ ବିଛଣା ମାଡ଼ିନାହିଁ । ଅନ୍ତତଃ ଏଇତକ ପାଇଁ ଭଗବାନ କ'ଣ ଗୁହିଁବେ ନାହିଁ । ଲତାଦେବୀଙ୍କ ମୁଖରୁ ଏଇ ପଦକ କଥା ନ ସରୁଣୁ ଅଦୂରବର୍ତ୍ତୀ ହଷ୍ଟେଲ ଘଣ୍ଟାରେ ଟଂ ଟଂ କରି ଗୁରଟା ବାଜି ଉଠିଲା ।

ଆଜି ବସନ୍ତର କରାଳ କବଳରୁ ସୁରି ଉଦ୍ଧ୍ୱରିପିବାର କୋଡ଼ିଏ ଦିନ ହୋଇଯାଇଛି । ଫୋଟକାଗୁଡ଼ା ଝଡ଼ିପଡ଼ି ଦେହଟା ବକଲାଙ୍ଗ ଦିଶୁଛି । ମାଆ ସୁରିଠେଇଁ ନମ୍ବହଳଦୀ ମାଲିସ କରୁ କରୁ କହିଲେ—

"ଶୀତଳାଙ୍କ ଦୟା ସତ, କିନ୍ତୁ ନଗେନ ଯେ ସୁରିର ଜୀବନ ପାଇଁ ଷୋଳପଣ ଦାୟୀ । ତା'ର ପାଇଁ ଆଜି ଏ ହାଡ଼ ଗୁରଖଣ୍ଡ ଥିଡ଼ ରହିଲା । ଦିନ ରାତି ଅଣ୍ଟି ନାହିଁ । ତା'ର ଯେଉଁ ସେବା, ଯେଉଁ ଯତ୍ନ—ସେହି ଶୁଶ୍ରୂଷା ଫଳରେ·········।"

ସ୍ତ୍ରୀଙ୍କ ପାଟିରୁ କଥା ଛଡ଼େଇ କୁଳମଣିବାବୁ କହିଲେ, 'ସାନଭାଇ ଠାରେ ବଡ଼ଭାଇର ଯେଉଁ କର୍ତ୍ତବ୍ୟ; ତାହା ସେ ଅକ୍ଷରେ ଅକ୍ଷରେ ପାଳନ କରିଛି । ତାହାରି ପାଇଁ ସେ ଆହାର ନିଦ୍ରା ପର୍ଯ୍ୟନ୍ତ ଭୁଲି ଯାଇଛି । ରାତି ରାତି ଅନିଦ୍ରାରେ ତା' ଦେହକୁ ଆଉ କ'ଣ ଅନେଇ ହେଉଛି ନା । ଏତେ କମ୍ ବୟସରୁ ତା'ର ଧୈର୍ଯ୍ୟ ଅସୀମ । କଥା ଭିତରେ କୁଳମଣିବାବୁ କ'ଣ କେଜାଣି ଭାବ ରହି ରହି କହିଲେ ।

"ହିଁ, ଭଗବାନ ତା'ର ମଙ୍ଗଳ କରନ୍ତୁ । ପିଲାଟି ଦିନରୁ ସେ ଯେମିତି ଦୁଃଖ ହତାଶାକୁ ପିଠେଇ ଆସିଛି । ଈଶ୍ୱର କେମିତି ଖାଲି ତା'ର ଭବିଷ୍ୟତ ମଙ୍ଗଳ କରିବେ । ଏଇ ହେଉଛି ଆମର ଦେଖିବାର କଥା । ପାଟିରୁ କଥା ପଦକ ସରିଛି କି ନାହିଁ, ନଗେନ ବେଗି କୁଡ଼ୁଆଟିଏ ଧରି ପହଞ୍ଚିଲା, ଲତାଦେବୀ କହିଲେ ।

"ହାତରେ କ'ଣ ହୋଉ", "ଏଇ ?"

ନଗେନ ଉଦ୍ୱ ଉଦ୍ୱ କହିଲା, ଭୋଗ ଫଳ । ସ୍କୁଲର ଭୋଗଶଯ୍ୟା ପାଖରେ ଯେଉଁ ଭୋଗପାଇଁ ଶୀତଳାଙ୍କଠାରେ ମନାସିଥିଲା, ସେହି ।

କୁଳମଣିବାବୁଙ୍କ ତୁଣ୍ଡରୁ ଆନନ୍ଦରେ ବାକ୍ୟ ଫୁଟିଲା ନାହିଁ । ଲତାଦେବୀ ଭୋଗ ରଖୁ ରଖୁ କହିଲେ—

"ତତେ ଆଉ ପାରିହବ ନାହିଁ ଦେଖୁଛୁ ।"

ଭଲ ହେଉ, ମନ୍ଦ ହେଉ, ଏନ୍‌ଟ୍ରାନ୍‌ସ ପରୀକ୍ଷାଟା ମୁଣ୍ଡ ଉପରୁ ଉତ୍ତୁରି ଯାଉଛି । ନଗେନ ଗୋଟାଏ ସ୍ୱସ୍ତିର ଦୀର୍ଘଶ୍ୱାସ ମାରିଲା—ପରୀକ୍ଷାରେ ସେ'ତ ଯେ କୌଣସି ମତେ କୃତକାର୍ଯ୍ୟ ହେବ, ଏଥିରେ ସନ୍ଦେହର ଅବକାଶ ନାହିଁ, ତାକୁ ଏଇଠୁ ଗୋଟାଏ ବାଟ ଦିଶିଲା, ସଂସାରେ ଲୋକ ମୂର୍ଖ ହୋଇ କୌଣସି କାର୍ଯ୍ୟରେ ହାତ ଦେଇ ପାରେନା । ଲୋସବୁ କାଦୁଅରେ ମୂର୍ତ୍ତି ଗଢ଼ିଲା ଭଳି ସେ ଯେଉଁଥିରେ ହସ୍ତକ୍ଷେପ କରେ, ତାହା କାର୍ଯ୍ୟରେ ସଫଳ ହୁଏନା । ବିଶେଷତଃ ନିସ୍ୱ ଜୀବନରେ ।

ଯେଉଁମାନଙ୍କ ଜୀବନରେ ଐଶ୍ୱର୍ଯ୍ୟ ସ୍ୱପ୍ନ, ସେମାନଙ୍କ ଆଶା ନିରାଶାରେ ମରିଯାଏ, ମରୁ ବାଲିରେ ଘାସ ନ ଉଠେଇଲା ଭଳି ଦାରିଦ୍ର୍ୟ ଜୀବନରେ କୌଣସି ଉଚ୍ଚ ଆଶା ମଧ୍ୟ ଉଧାଏନା, ସବୁ ବିଫଳ, ସବୁ ନିଷ୍ଫଳ ହୁଏ ।

କିନ୍ତୁ ଅଜ୍ଞାନ, ଅନ୍ଧକାର ଭିତରେ ଜ୍ଞାନର ବିଦ୍ୟୁତାଲୋକ ପରି ନଗେନକୁ ଗୋଟାଏ ବାଟ ଦିଶିଲା । ଏନ୍‌ଟ୍ରାନ୍‌ସ ପାସ ପରେ ସେ ଆଉ ଶିକ୍ଷାର ଦୂରତାକୁ କେଉଁ ଭରସାରେ ଆଗେଇ ଯିବାକୁ ମନ ବଳାଇବ, କୁଳମଣି ବାବୁ ଯେ ଧନ୍ୟ, ତାଙ୍କର କରୁଣା ନ ଜୁଟିଥିଲେ ନଗେନର ଜୀବନଟା ଯେ କ ଦୁଃଖମୟ ହୋଇ ଉଠିଥାନ୍ତା, ତାହା ବର୍ଣ୍ଣନାତୀତ । ତା'ପରେ ସେ ଆଉ ପାଠ ପଢ଼ିବ କ'ଣ ବିଧବା ମା'ଟି ତ ଆଜି ଶ୍ମଶାନ ପଥର ଯାତ୍ରୀ ବେଶ ଧରି ବୁଢ଼ୀ ହେଲାଣି, ଅନ୍ତତଃ ତା'ର ବୃଦ୍ଧକାଳୀ ଜୀବନରେ ଏଇ କେଇଟା ବରଷ ଯେବେ ତା'ର ଦିନଗୁଡ଼ିକ ଏକପ୍ରକାର ଶାନ୍ତିରେ କଟିପାରନ୍ତା, ତା'ହେଲେ ନଗେନ ଟିକିଏ ଖୁସୀ ହୁଅନ୍ତା ।

ତା’ପରେ ନିଜର ସଂସାର କରିବା ନଗେନ ହାତରେ ନୁହେଁ, କେବେ ନୁହେଁ, ତା’ କ’ଣ କୁଳମଣିବାବୁ ବୁଝିବେ ନାହିଁ । ନିଶ୍ଚୟ ବୁଝିବେ, ପିଲାଟି ଦିନରୁ ସେମାନେ ତାକୁ ପୁତ୍ର ନିର୍ବିଶେଷରେ ଦେଖି ଆସିଛନ୍ତି । ନଗେନ ଆଉ ସୁର ଭିତରେ ସେମାନେ ମୁହୂର୍ତ୍ତକ ପାଇଁ ଯେ କୌଣସି ପାର୍ଥକ୍ୟ କରି ନାହାନ୍ତି ।

**University** ରୁ **certificate** ଧରି ନଗେନ ଯେଉଁଦିନ ପିତୃମାତୃ ତୁଲ୍ୟ ଦମ୍ପତିଙ୍କ ପଦତଳେ ମୁଣ୍ଡ ନୁଆଁଇଲା—ବେଦମନ୍ତ୍ର ପରି ଉଭୟଙ୍କ ମୁଖରୁ ଆଶୀର୍ବାଦର ଅନନ୍ତ ଝରଣା ମୁକୁଳିଗଲା ।

“ବାପ, ଏଥର ମୋର କର୍ତ୍ତବ୍ୟ ସରିଛି । ଇପ୍‌ସିତ ଆକାଂକ୍ଷା ମୋର ଜୀବନ ପାଇଛି, ଏଣିକି କର୍ମକ୍ଷେତ୍ରରେ ହାତ ଦିଅ । କହୁ କହୁ କୁଳମଣି ବାବୁ ନଗେନକୁ ନିଜ କୋଳ ଭିତରକୁ ଟାଣି ନେଲେ । ଏଣିକି ତୁମକୁ ସୁଖୀ ହେବାର ଦେଖି ପାରିଲେ ମୋର ଜୀବନକୁ କୃତକୃତ୍ୟ ମନେ କରିବି । ସ୍ତ୍ରୀ ଆନନ୍ଦ ଗଦ୍‌ଗଦ ସ୍ୱରରେ କହିଲେ— “ଏଇଠୁ କ’ଣ କର୍ତ୍ତବ୍ୟ ସରିଗଲା, ତା’ର ବିବାହ କାର୍ଯ୍ୟ କ’ଣ ତମରି ଉପରେ ନୁହେଁ, ନଗେନ ଯେ ଆମର ବଡ଼ ପୁଅ, ତା’ର ବିଭାଘର ଆଗ ହେଲେ ପରେ ସୁର ଏବଂ ମନୋରମାର, ମୁଁ କେମିତି ଏଇ ତିନିଜଣଙ୍କର ସୁଖ ଦେଖି ମରିବି । ଏତିକି ମୋର ପ୍ରଭୁଙ୍କ ନିକଟରେ ଶେଷ ମିନତି ।

ମନୋରମା ସେତିକିବେଳେ ଜଳଖିଆ ଧରି ଛିଡ଼ା ହେଲା, କହିଲା—

“ନଗେନ ଭାଇ, ତମର ପାସ ହେଲା—ଆମର ଭୋଜ କାହିଁ ?

“ପିଲାଟା ଯେ କ ଭୋଜ ଦବ, ତା’ର ରୁଜଗାର ପର୍ଯ୍ୟନ୍ତ ତମେମାନେ ଟିକେ ଅପେକ୍ଷା କର, ତାକୁ ସମୟ ଦିଅ ।” କୁଳମଣି ବାବୁ ରୁମାଲରେ ମୁହଁ ପୋଛୁ ପୋଛୁ କହିଲେ । ଶରତ ଆରଘରୁ ଦଉଡ଼ି ଆସିଲା, କହିଲା—ନାହିଁ ନଗେନ ଭାଇ, ଆମେ ଆଉ ଏତେଦିନ ଅପେକ୍ଷା କରି ପାରିବୁ ନାହିଁ । ବାହା ବେଳେ ବାଜା ସୁନ୍ଦର, ଆମର ପ୍ରାପ୍ୟଟା ଏତିକି

ବେଳକୁ ଦବାକୁ ପଡ଼ିବ, ଲତାଦେବୀ ସମସ୍ତଙ୍କ କଥାକୁ ଚପେଇ ଦେଇ କହିଲେ—'ସେ ଆଗ ମଣିଷ ହୋଇ ଘର କରୁ, ଗ୍ରେଜୁଏଟା କ'ଣ ଏତେବଡ଼ କଥା୪ା—' ନଗେନ କ'ଣ ଠିକେ ଭାବି କହିଲା—"କାହିଁକି, ମାଉସୀ ମୋ' ପାଇଁ ଦେବେନାହିଁ" କହି ଶରତ ପିଠିରେ ଭଦ୍ରତା ସହିତ ଗୋଟିଏ ଗୁପୁଡ଼ା ଥୋଇଲା । ମନୋରମା ଯାଉଁ ଯାଉଁ କହିଲା—"ଭାଇ ତ ଖାଲି ଏମିତି ଭୁଲେଇବେ ।"

ସନ୍ଧ୍ୟାବେଳେ ବସୁ ବସୁ ମା' ପୁଅଙ୍କ ଭିତରେ କେତେ କଥା ପଡ଼ିଲା । ମାଳି ଭଜୁ ଭଜୁ ନିତ୍ୟାନନ୍ଦ ବାବୁଙ୍କ ସ୍ତ୍ରୀ କହିଲେ—

"ବାପ, ତୋ'ର ପାସ ହୋଇଯାଇଛି, ବାପା ତୋର ଆଜି ଥିଲେ କି ଆନନ୍ଦ ଅନୁଭବ କରି ନଥାନ୍ତେ । କେବଳ ତୋ' ପାଇଁ ସେ ହରିପୁରକୁ ଚିରଦିନ ପାଇଁ ଡାକେରି ଦେଇଥିଲେ । ତୋ'ର ସୁଖ ଦେଖିବା ତାଙ୍କ ଜୀବନରେ ଜୁଟିଲା ନାହିଁ—ମୋର ବା ସଂସାରେ ଆଉ କେଇ୪ା ଦିନ, ପାଚିଲା ତାଳ ପରି ଅନୋଉ ଅନୋଉ ଝଡ଼ି ପଡ଼ିବ— ଏଣିକୁ ତତେ ଠିକେ ସୁଖୀ ହେବାର ଦେଖି ପାରିଲେ ମୋର ଏ ଅସାର ଜୀବନରେ ପୂର୍ଣ୍ଣଚ୍ଛେଦ ପଡ଼ିବ । କୁଳମଣି ବାବୁ ପୂର୍ବ ଜନ୍ମରେ ପିତା ଥିଲେ ତୋର, ସେ ଯଥେଷ୍ଟ କରିଛନ୍ତି । ଜନ୍ମେ ଜନ୍ମେ ତାଙ୍କର ଅଯାଚିତ କରୁଣା ଭୁଲି ହବନାହିଁ, ସଂସାର ଆଖିକୁ ସେମାନେ ଜନ୍ମ ଦେଇ ନାହାନ୍ତି ଯାହା, କିନ୍ତୁ ନିଜ ପେ୪ର ପିଲା ପରି ସ୍ନେହ କରିବା ଜଗତରେ କେଇ୪ା ଲୋକ ଜାଣନ୍ତି । ମାଆଙ୍କ କଥାକୁ ଅସମ୍ପୂର୍ଣ୍ଣ ରଖି ନଗେନ କହିଲା—"ମାଆ, ତାଙ୍କର ସ୍ୱର୍ଗୀୟ ମମତା ଆଜକାଲି ଜଗତରେ ଦୁର୍ଲ୍ଲଭ, ସେ ମୋ ପାଇଁ ଯାହା କରିଛନ୍ତି ବା କରୁଛନ୍ତି, ଏ ଜନ୍ମ କ'ଣ ସାତ ଜନ୍ମଗଲେ ସୁଦ୍ଧା ମୁଁ ସୁଝି ପାରିବି ନାହିଁ । ଏଇତ ଆଠଦିନ ହେଲା; ମଉସା ମୋର ଚାକିରୀ ପାଇଁ ବରାବର ଲାଗି ପଡ଼ିଛନ୍ତି—ମୋର ଚାକିରୀ ପରେ ବିବାହ ଦେଇ ସେ ନିଶ୍ଚିନ୍ତ ହେବେ ବୋଲି ସେଦିନ ମାଉସୀଙ୍କ ସମ୍ମୁଖରେ ପରିଷ୍କାର କହୁଥିଲେ ।"

"ହଁ—ଜଗନ୍ନାଥ ତାଙ୍କର ମଙ୍ଗଳ କରନ୍ତୁ ।" ବୃଦ୍ଧା ସନ୍ଧ୍ୟା ସ୍ତୋତ୍ରରୁ ଉଠୁ ଉଠୁ କହିଲେ । ନଗେନ ସେତେବେଳେ ଅନ୍ୟମନସ୍କ

ଘବରେ ସନ୍ଧ୍ୟାର ସେହ୍ୱ ତାରକାଖଚତ ଊଆଁସୀ ଆକାଶ ଆଡ଼େ ଅନେଇ ରହ୍ୱଥିଲ, ଏଇ ଅଗଣିତ ତାସ୍ର ପର ତା' ମନ-ମୁକୁରରେ ଦୁଃଖସୁଖର କେତେଗୁଡ଼ଏ ସ୍ମୃତି ରହ୍ୱ ରହ୍ୱ ଫୁଟି ଉଠୁଥିଲ ।

ଯୋଗକୁ ସେଦ୍ଦନ ଅମର ବାବୁଙ୍କ ସ୍ତ୍ରୀ ଶ୍ରୀମଖ ଶୁଭ୍ରାଙ୍ଗୀ ଦେବୀ ଦ୍ଦନ ଦୁଇଟାରେ କୁଳମଣି ବାବୁଙ୍କ ଘରକୁ ବୁଲ ଆସିଲେ, ସାଙ୍ଗରେ ତାଙ୍କର ଶାନ୍ତ । ଅମରବାବୁ କୁଳମଣି ବାବୁଙ୍କ ସ୍ୱଜାଣ । ସେ ଦୀର୍ଘ ଆଠବର୍ଷ ଧର ସ୍କୁଲ ଇନ୍‌ସପେକ୍ଟର ସ୍ବକସରେ ବାଲେଶ୍ୱର ବଦଳ ହୋଇ ଯାଇଥିଲେ । କଲେଜରେ ପଢ଼ିଲବେଳୁ ଦୁଇଜଣଙ୍କ ଭତରେ ଯଥେଷ୍ଟ ସୌହାର୍ଦ୍ଦ୍ୟ ଥିଲ । ତାଙ୍କ ସ୍ତ୍ରୀ ଶୁଭ୍ରାଙ୍ଗୀ ଦେବୀ "ବନଫୁଲ" ପତ୍ରିକାର ସମ୍ପାଦକା । ଶାନ୍ତ ତାଙ୍କ ଭାଇର ଝିଅ ।

ଲତା ଶୁଭ୍ରାଙ୍ଗୀ ଦେବୀଙ୍କୁ ଦେଖୁ ଦେଖୁ କହ୍ୱଲେ, "କହ୍ରେ କବ, ତମେ କୁଆଡ଼େ ! କେବେ ଆସିଲ ମ ! ଆମେମାନେ ତମର ସ୍ମୃତିରେ ଅଛୁଟି ।"

"କଏ କହୁଛୁ ତମେ ସ୍ମୃତିରେ ଅଛ ! କେବଳ ସେଇ ସ୍ମୃତିରେ ନ ଥିବାରୁ ତ ଆଗକର ତମ ଘରେ କୁଣିଆଁ ହୋଇଛୁ । ସାମ୍ନାରେ ଥିବା ଚେୟାରଟା ଉପରେ ବସିପଡ଼ ଶୁଭ୍ରାଙ୍ଗୀ ଠୋ କର ହସି ଉଠଲେ ।

ଲତାଦେବୀ କହ୍ୱଲେ ବୁଝିନାଅଁ କ, ସେମିତ କର କହ୍ୱବାର ଆମ ନାରୀ ଜାତର ଗୋଟାଏ ରକମ ଗ୍ରୁଣ୍ଡିସ୍ ।

ଶବ୍ଦଟା କେମିତ ଅଡୁଆ ହୋଇ କାନକୁ ଶୁଭଲ । ଶୁଭ୍ରାଙ୍ଗୀ ଦେବୀ କହ୍ୱଲେ ଗ୍ରୁଣ୍ଡିସ୍ ମାନେ ?

ଲତା କମିତ ପ୍ରକାର ଗୋଟାଏ ମୁରୁକହସା ମାର କହ୍ୱଲେ, "କେଜାଣି ! ତମ ମୁହଁ ତ ଅଭିଧାନ, ଖୋଜ ବସିଲେ କ'ଣ ଅର୍ଥଟା ମିଳବ ନାହିଁ ।"

ପୁଣି କହିଲେ, ଆଚ୍ଛା ସେ ସବୁ ରହିଲା, ତମେ ଆସିଲ କେଉଁଦିନ । ନା, ଏଇତ ପଅରିଦିନ ଗତ ଏଗାରଟାରେ ପୁରୀ ଷ୍ଟେସନ ଧରିଲୁ । ଅମରବାବୁ କହିଲେ ଯେ, "ତମ ଲତା ଦେବୀଙ୍କ ଘରେ କେବେ ପୁରୀ ଅତିଥି ହେଉଛ ?"

ଉତ୍ତରରେ କହିଲି "କାହିଁକି ?"

"କାହିଁକି ! ଦୁଇଜଣଙ୍କ ଭିତରେ ଏତେଦୂର ପ୍ରିତିତା ଯେ ବାଲେଶ୍ୱର ଷ୍ଟେସନରେ ଟ୍ରେନ ଚଢ଼ୁ ଚଢ଼ୁ ଲତା ଦେବୀଙ୍କ କଥା ତୁମ ମନରେ ଆଗକରି ଚେଇଁ ଉଠିଥିଲା କି ନା, ସେଇଥିପାଇଁ କହିଲି ।"

ଲତାଦେବୀ ପାନରେ ଲବଙ୍ଗ ସଂଯୋଗ କରୁ କରୁ କହିଲେ, "ଆଉ ଏକାଟିଆ ହୋଇ ଆସିଲ ଯେ ।"

"ଏକାଟିଆ ମାନେ ?"

କବି ଓଠ ଦୁଇଟାରେ ମୃଦୁ-ହାସର ଏକ ବଙ୍କା ରେଖା ଟାଣି କହିଲେ ।

"ଅମରବାବୁ ଯେ ସାଙ୍ଗରେ ନାହାନ୍ତି ?" କାହିଁକି ! ତମେ କ'ଣ ସେଉଁଠିକି ଯାଅ ସସ୍ତ୍ରୀକ ? × × ×

ଲ :—ଓହୋ ! ଆମ କଥା କ'ଣ ତମଠି, ତମେ ଯେ କବି ପ୍ରାଣ । ଗୃହେଟି ପାଦ ଏକା ପଥରେ ଗତି କଲେ କେଜାଣି କବିତାର ଝରଣା ତା'ର ଶାଖା ପ୍ରଶାଖା ମେଲିପାରେ । ସେ କଥା ଥାଉ । ହଁ, ପତ୍ରିକାଟା ବନ୍ଦେଇ ରଖିଛନ୍ତି, ଲତାଦେବୀ କହିଲେ ।

"କେଉଁଟା—ବନଫୁଲ ?"

"ହିଁ—ବନଫୁଲ ।" ନା ! 'ବନଫୁଲ' ପତ୍ରିକାଟା ଦୁଇବର୍ଷ ହେଲା ବନ୍ଦ ହୋଇଯାଇଛି । କିନ୍ତୁ ତା'ଠାରୁ ଆହୁରି ସୁନ୍ଦର ଗୋଟାଏ ପତ୍ରିକା ବାହାରୁଛି "ଗୋଧୂଳି" ।

ଆଜ ତମର ସେ ଉପନ୍ୟାସ ଦୁଇଟା ଜୀବନ୍ତ ହେଲଣି ?

ଶୁଭ୍ରାଙ୍ଗୀ ଦେବୀ କହିଲେ "କେଉଁଟା, ସ୍ୱର୍ଣ୍ଣ ପ୍ରଦୀପ ।" "ହିଁ, ସ୍ୱର୍ଣ୍ଣ ପ୍ରଦୀପ ।" 'ସ୍ୱର୍ଣ୍ଣ ପ୍ରଦୀପ'ଟ ଏଠାରୁ ଯିବା ପରେ ପରେ ଛପା ହୋଇଥିଲା । ତା'ପରେ କବିତା ବହି ତିନିଖଣ୍ଡ ଏଇ ଦୁଇବର୍ଷ ତଳେ ବାହାରିଛି । 'ତରଙ୍ଗିଣୀ', 'ସୌଦାମିନୀ', 'ନିର୍ଝରିଣୀ' । ଆଉ ଯେଉଁ ସୁନ୍ଦର ଉପନ୍ୟାସଟା, ପାଣ୍ଡୁଲିପି ଅବସ୍ଥାରେ ତମକୁ ଦେଖାଇ ଯାଇଥିଲି 'ଝଡ଼ର ଡ଼ାକ', ସେଇ ଖଣ୍ଡିକ ଏଇମାସ ଦୁଇଦିନ ତଳେ ବାହାରିଛି ।

"ଆଉ ଲେଖାଲେଖି ଚାଲୁଛି ନା ।" କଥାକୁ ଅସଂପୂର୍ଣ୍ଣ ରଖି ଶୁଭ୍ରାଙ୍ଗୀ କହିଲେ "ହିଁ, ଚାଲୁନାହିଁ କଅଣ । ଲେଖାଲେଖିଟା ତ ମୋ ଜୀବନରେ ଏକ ପ୍ରବଳ ନିଶା । ବର୍ତ୍ତମାନ ଆଉ ଉପନ୍ୟାସ କିମ୍ବା କବିତା ନୁହେଁ, ଗୋଟାଏ ପ୍ରବନ୍ଧରେ ହାତ ଦେଇଛି ।"

"ହିଁ' ମିଲୁ ବର୍ତ୍ତମାନ କେଉଁଠି ? ଲତାଦେବୀ କହିଲେ । ( ମିଲୁ ଅମର ବାବୁଙ୍କ ପୁଅ ଏବଂ ଝିଅ ରେଣୁ )

ଓଃ ମିଲୁ, ମିଲୁ ବର୍ତ୍ତମାନ କଲିକତା କଲେଜରେ ବି· ଏ· ପଢ଼ୁଛି । ଆଉ ରେଣୁର ବିଭାଘର ଗଲା ଫଗୁଣରେ ସେହି ବାଲେଶ୍ୱରରେ ହେଲା । ଉପଯୁକ୍ତ ପିଲାଟିଏ ଦେଖି ତାକୁ ସଂପ୍ରଦାନ କରିଛି, ତେଣିକି ତା'ର ଭାଗ୍ୟ । କଥା ଛଡ଼େଇ ଲତାଦେବୀ କହିଲେ—"ଆଉ ଶାନ୍ତି, ତା'ର ବିବାହ କେବେ ଦଉଛ ।"

ଓଃ ଶାନ୍ତି, ସେଇଟ ମୋର ବର୍ତ୍ତମାନ ଏକ ଚିନ୍ତାର ବିଷୟ ହୋଇପଡ଼ିଛି । ତା' ପାଇଁ ମୁଁ ମହା ଅଡୁଆରେ ଧନ୍ଦ ହେଉଛି ଲତା । ମାନେ କଥା ଭିତରେ ହେଉଛି, ତମେତ ବହୁତ ଆଗରୁ ଜାଣିଛ ଶାନ୍ତିର ଜୀବନ ଇତିହାସ । ଭାଉଜ ମୃତ୍ୟୁଶଯ୍ୟା ପାଖରେ ତାଙ୍କର ହାତ ଉପରେ ମୋର ଏଇ ହାତ ରଖି ଶପଥ କରି ଯାଇଛନ୍ତି ।

ଶାନ୍ତ ପାଇଁ ମୁଁ ସଂପୂର୍ଣ୍ଣ ଦାୟୀ । ଆଜ ପର୍ଯ୍ୟନ୍ତ ଗୋଟିଏ ହେଲେ ଉପଯୁକ୍ତ ପାତ୍ର ମୋ ଆଖିରେ ପଡ଼ିଲା ନାହିଁ । ସେଥିପାଇଁ ଅଶେଷ ଚେଷ୍ଟା କଲିଣି । ଶାନ୍ତ ତାଙ୍କର ଘରେ ରହିବ । ବଡ଼ଭାଇ ତା' ନାଁ'ରେ ଦଶ ଏକର ଜମି ଉଇଲ କରି ଯାଇଛନ୍ତି । କୌଣସି ବରପାତ୍ର ଏଭଳି ଘରଜ୍ୱାଇଁଆ ହବାକୁ ପସନ୍ଦ କରୁନାହାନ୍ତି । ଆଉ ତମେ ତ ଶାନ୍ତର ବ୍ୟବହାର ବୁଝିଛ । ତା' ଭଳ ସୁଗୁଣବତୀ ପିଲାଟିକୁ କେମିତି ଗୋଟିଏ ସତ୍ପାତ୍ରରେ ଦେଲେ, ମୋର ସଂସାରରୁ ସବୁ କାମରେ ପୂର୍ଣ୍ଣଚ୍ଛେଦ ପଡ଼ିବ ।

ପୁଣି ଶୁଭ୍ରାଙ୍ଗୀ ଟିକେ ରହି ଆରମ୍ଭ କଲେ । ତା'ଛଡ଼ା ସମୁଦ୍ର କୂଳେ ଯେଉଁ ଷ୍ଟେଟ କୋଠାଖଣ୍ଡ ଦେଖିନା, ସେଇଟା ମଧ୍ୟ ଶାନ୍ତ ନାମରେ । ଏଇସବୁ କେତେଟା ଅଡ଼ୁଆ ନେଇ ତା'ର ବିବାହ କାର୍ଯ୍ୟରେ ମୁଁ ହଠାତ୍ ହାତ ଦେଇ ପାରୁନାହିଁ । ଯାହା ଯେତେ ବେଳକୁ ବିଘଦ ଥିବ ହୋଇଯିବ । କଥା ପାଟିରୁ ନ ସରୁଣୁ ଶରତ ଆସି ପହଞ୍ଚିଲା ।

ଏ' କିଏ ମାଉସୀ, କେଉଁଦିନୁ ଆସିଲେଣି ? ଟେବୁଲ ଉପରେ ଶରତ ବହି ରଖୁ ରଖୁ କହିଲା ।

ଶରତ ନମସ୍କାର କଲା । ହଠାତ ଚେୟାର ଉପରୁ ଉଠି ଶୁଭ୍ରାଙ୍ଗୀ ଶରତକୁ କୋଳ ଭିତରକୁ ଆଉଜାଇ ନେଲେ । ଆରେ; ମନୋରମା କାହିଁ······ମୋର ଯେ ଏପର୍ଯ୍ୟନ୍ତ ଖିଆଲ ନାହିଁ । କଥା ପ୍ରସଙ୍ଗରେ ଭୁଲିଯାଇଛି । ତମେ କହୁ ଏପାଇଁ ଭାବିଥିବ ଲତା ।

'ନା, ଭାବିବ କ'ଣ । ମନା ଦୁଇମାସ ହେଲା ମାମୁଁଘରେ । ଏତିକ କହି ଲତାଦେବୀ କ'ଣ ଭାବି କେଜାଣି ମୁହଁରେ ଏକ ଆଶାର ରେଖା ଫୁଟାଇ ବସିପଡ଼ିଲେ ।'

"କ'ଣ ଏତେ ଭାବୁଛ ଲତାଦେବୀ—ନୀରବ ଯେ ରହିଲ—"
ଶୁଭ୍ରାଙ୍ଗୀ ଦେବୀ କହିଲେ—

"ନା ଭାବିବ କଣ, ତମେ ସିନା କବିପ୍ରାଣ—ଭାବନା-

କୁଞ୍ଜରେ ସବୁବେଳେ ବସି କବିତା ଡୋଳୁଛ । ତମର ଭାବନାଟା ଯେ ଏକ ଉଚ୍ଚ ଆଦର୍ଶ । ଜ୍ଞାନର ଆଲୋକ ବର୍ତ୍ତିକା । ସେ ଭାବନା ଦେଶପାଇଁ, ଜାତିପାଇଁ, ସମାଜ ପାଇଁ, ପ୍ରକୃତି ପାଇଁ । ଆଜି ଆମର ଭାବନା ହୋଇଛିଆ ଏଇ ପାରିବାରିକ ଜୀବନ ଭିତରେ ଆବଦ୍ଧ । ବାହାରର ମୁକ୍ତ ଆଲୋକ, ମୁକ୍ତ ପବନ; ପ୍ରକୃତିର ସବୁଜ ସମ୍ପଦ କମ୍ପା ଆକାଶର ଜୋଛନା ପରଦା ଭିତରେ ତ ନୁହେଁ । ଶୁଭ୍ରାଙ୍ଗୀ ଶୁଶୁଶୁ ଖୁବ ଜୋରରେ ହସି ଉଠିଲେ ।

କହିଲେ, 'ହଁ, ସେଇ ପାରିବାରିକ ଜୀବନର ଭାବନାଟା ମୁଁ ଶୁଣିବାକୁ ଚାହୁଁଛି । କଳ୍ପନାଠାରୁ ବାସ୍ତବର ଘଟଣାଟା ଶୁଣିବାକୁ ଯେ ବେଶୀ ପ୍ରାଣପୂର୍ଣ୍ଣ । କହନ୍ତୁ ଲତାଦେବୀ, ଏଇ ଘଟଣାଟା ଶୁଣିସାରି ମୁଁ ଯିବି ।'

ଲତାଦେବୀ କହିଲେ, "ଯେଉଁ ବିଷୟ ଉତ୍ଥାପନ କରିବାକୁ ଖୁବ୍ ଆଶାର ସହିତ ଯାଉଛି, ତାହା ତୁମେ ରଖିବ ତ ?"

"ହଁ, ରଖିବାର କଥା ହେଲେ ନ ରଖିବ କାହିଁକି । ନିଶ୍ଚୟ ରଖିବ ।"

ଲତାଦେବୀ ଆରମ୍ଭ କଲେ, "ଏ ବର୍ଷ ଶାନ୍ତିର ତମେ ବିବାହ ଦବାର ସ୍ଥିରତା ଯେବେ, ମୁଁ ଗୋଟିଏ ବରପାତ୍ର ଦଉଛି, ସମ୍ପର୍କ ବାନ୍ଧବ ।"

"ହଁ, ସ୍ଥିର କରିଦେଲେ ନ କରିବ କାହିଁକି ।" ଶୁଭ୍ରାଙ୍ଗୀ ଉତ୍ଫୁଲ୍ଲ ହୃଦୟରେ ଏକ ଜବାବ ଦେଲେ ।

"ଏଇ ପୁରୀରେ ଗୋଟିଏ ପିଲା ଅଛି । ମାଟ୍ରିକୁଲେଟ୍ ଏବଂ ପିତୃହୀନ । ମୋର ଯେତେଦୂର ବିଶ୍ୱାସ, ଏ ପ୍ରସ୍ତାବରେ ସେ ସମ୍ମତି ଦେବ । ସମସ୍ତ ଘଟଣା ବର୍ଣ୍ଣନା କରି କହିବାର ବର୍ତ୍ତମାନ ସମୟ ନୁହେଁ । ତେବେ ମୋଟ ଉପରେ ଏତିକି କହିଲି ।"

× × × ×

କୁଳମଣିବାବୁଙ୍କ ଘରୁ ଶୁଭ୍ରାଙ୍ଗୀ ଦେବୀ ସେଦିନ ବିଦାୟ ନେଇ ନେଇ ରାତି ନଅଟାରୁ ବେଶୀ ହୋଇ ଯାଇଥିଲା । ଶାନ୍ତି ଦେବୀଙ୍କଠାରୁ ନଗେନର ଇତିହାସ ବିଶଦ ଭାବରେ ଶୁଣି ଶୁଭ୍ରାଂଗୀ ଦେବୀ ବିବାହ ପ୍ରସ୍ତାବଟାକୁ ସମ୍ପୂର୍ଣ୍ଣ ମନୋନୀତକୁ ଆଣିଲେ । କହିଲେ, 'ଲତା, ମୁଁ ଜାଣେ; ମଣିଷର ଜୀବନରେ ଯଦି କେବେ ଦୁଃଖ ହତାଶାର ଝଡ଼ ଝାଞ୍ଜି ବହିଥାଏ; ଶୁଖିଲା ଶ୍ମଶାନ ପରି ହୃଦୟ ଯଦି କାହାର କାନ୍ଦି ଉଠିଥାଏ; ମୋ ମତରେ ସେଇମାନେ ହିଁ ଭବିଷ୍ୟତରେ ଯଥେଷ୍ଟ ଉନ୍ନତି କରି-ଥାଆନ୍ତି । ଅନ୍ଧାର ନ ଦେଖିଲେ ଆଲୋକର ମାହାତ୍ମ୍ୟ ଅନୁଭବ କରିହୁଏନା । ମୋ ବୁଝିବାରେ ଶାନ୍ତି ଆଉ ନଗେନର ଜୀବନ ଭିତରେ ବିଶେଷ କିଛି ପାର୍ଥକ୍ୟ ନାହିଁ । ଶୈଶବରୁ ପିତାମାତାଙ୍କୁ ହରାଇ ତା'ର ଛନଛନିଆ କୈଶୋର ଜୀବନ ମରୁପରି ଯେମିତି ଧୂ ଧୂ କରିଉଠିଛି, ନଗେନର ଜୀବନ ମଧ୍ୟ ସେହି ଆଦର୍ଶରେ ଜଳି ଉଠିଛି । ସେ ଯେପରି ପର ମନ କିଣିବାକୁ ଯାଇ ନିଜ ଜୀବନକୁ ସୁନ୍ଦର ଚରିତ୍ର ଛାଞ୍ଚରେ ଗଢ଼ି ନେଇଛି, ନଗେନର ଜୀବନରେ ମଧ୍ୟ ତାହା ସତ୍ୟ ହୋଇଛି । ବିଧି ଏଇ ଦୁଇଜଣଙ୍କ ପାଇଁ ସତରେ ବାସ୍ତବ ରୂପେ ଏଇଠି ଧରା ଦେଇଛି । ଜୀବନରେ ମୋର ଶେଷ ଅଭିଳାଷ ଯାହା ଥିଲା, ବର୍ତ୍ତମାନ ଭାବୁଛି ନଗେନ ଆଉ ଶାନ୍ତିକୁ ଏକାଠି ହେବାର ଦେଖିପାରିଲେ ସଂସାରରୁ ମୋର ସମସ୍ତ କର୍ତ୍ତବ୍ୟରେ ଗୋଟାଏ ଶେଷ ସମାଧାନ ହେବ ।

ଏହି ପ୍ରସ୍ତାବ ଆଲୋଚନା ଭିତରେ କୁଳମଣିବାବୁ କେତେ-ବେଳେ କଚେରୀରୁ ଫେରିଲେ; ଶୁଭ୍ରାଙ୍ଗୀଦେବୀଙ୍କୁ ଜଣା ନାହିଁ । ରାତି ନଅଟାରୁ ବେଶୀ ହୋଇଯାଇଛି । ସିନେମା ଦେଖିସାରି ନଗେନ ମଧ୍ୟ ଶରତ ସହ ପହଞ୍ଚିଲା । କଥା ମଝିରୁ ଲତାଦେବୀ କହିଲେ—

ଦେଖିବାକୁ କହୁଥିଲନା, ଏଇଯେ ନଗେନ ଆସିଗଲାଣି ।

ଲତାଦେବୀଙ୍କ କହିବାନୁଯାୟୀ ନଗେନ ଶୁଭ୍ରାଙ୍ଗୀଦେବୀଙ୍କୁ ନମସ୍କାର କଲା । ପରିଚୟ ଭିତରେ ବେଶୀ ସେ ପାଇନାହିଁ । ନଗେନ ଏତିକିମାତ୍ର ଜାଣିଲା କବି ହିସାବରେ ଶୁଭ୍ରାଙ୍ଗୀଦେବୀ ନିଖିଳ ଓଡ଼ିଶା ଭିତରେ ସୁପରିଚିତା । ତାଙ୍କର ଉପନ୍ୟାସ ସେ ପଢ଼ିଛି । ତା'ର

କଚ୍ଛୁଘଣ୍ଟା ପରେ ନଗେନ ଶରତଠାରୁ ବୁଝିଲା, ସେଇ ସ୍କୁଲ ଇନସ୍-ପେକ୍ଟର ଅମରବାବୁଙ୍କ ସ୍ତ୍ରୀ ।

ଆଠଦନ ଭିତରେ କୁଳମଣିବାବୁ ଅମରବାବୁଙ୍କ ସାଥିରେ ପ୍ରସ୍ତାବଟା ପକ୍କା କରିଦେଲେ । ଆଉ ଡେ଼ରି ନାହିଁ । "ଶୁଭସ୍ୟ ଶୀଘ୍ରଂ", ନଗେନଠାରୁ ମଧ୍ୟ କେହି ମତ ପୁଛିଲେ ନାହିଁ । ଧର୍ମପିତାତୁଲ୍ୟ କୁଳମଣିବାବୁଙ୍କ ଆଦେଶରେ ନଗେନ ଯେଉଁଦିନ ବିନା ଅଭିଯୋଗରେ ମଙ୍ଗଳବେଦୀ ଉପରେ ବର ବେଶରେ ଦେଖାଦେଲା, ଲତାଦେବୀଙ୍କ ପ୍ରାଣରେ ଆଜ ଆନନ୍ଦର ସୀମା ରହିଲା ନାହିଁ । ପ୍ରଜାପତିଙ୍କ ପବିତ୍ରସୂତ୍ରରେ ନଗେନ ସହିତ ଶାନ୍ତିର ଯେତେବେଳେ ହାତ ଯୋଡ଼ି ହୋଇଗଲା; ଆନନ୍ଦର ବିଜୟ ଦୁନ୍ଦୁଭି ସେତେବେଳେ ଉଭୟଙ୍କ ପ୍ରାଣ-ମନ୍ଦିରରେ ବାଜି ଉଠିଲା ।

ନବ ବର୍ଣ୍ଣିମାସ୍ନ ନାୟକ ନାୟିକା କନକଲତାରେ ହୀରକ ପୁଷ୍ପପରି ଯୌବନର ପ୍ରଣୟ କୁଞ୍ଜରେ ଶୋଭା ପାଇଲେ ।

ହସ୍ତଗ୍ରନ୍ଥି ପରେ ପରେ କୁଳମଣି ଆଉ ଅମରବାବୁ 'ସମୁଦ୍ର' ଡାକର ରସାସ୍ୱାଦନ ଗ୍ରହଣ କଲେ । ଯଥାସମୟରେ ବିବାହ କାର୍ଯ୍ୟଟି ସମ୍ପନ୍ନ ହେଲା ।

ସମୁଦ୍ର କୂଳସ୍ଥିତ ନୀରବ କୋଠରୀଟି ନବ ଦମ୍ପତିଙ୍କର ହାସ୍ୟ ରବରେ ଦିନେ ମୁଖରି ଉଠିଲା । ନିତ୍ୟାନନ୍ଦବାବୁଙ୍କ ସ୍ତ୍ରୀ ଯେତେବେଳେ ଶାନ୍ତିକୁ ନିଜର କୋଳ ଭିତରକୁ ଆଉଜାଇ ଆଣିଲେ; ତାଙ୍କର ଆନନ୍ଦର ସୀମା ରହିଲା ନାହିଁ ।

"ସତେ, ସତେ କ'ଣ ମୁଁ ଏଇଥି ଆଶା କରିଥିଲି ମା, ତମ ଦୁଇଜଣଙ୍କର ଲୀଳା ଦେଖି ପାରିବି ବୋଲି । ହଉ, ଜଗନ୍ନାଥଙ୍କ ଇଚ୍ଛା ଯାହା ଥିଲା ତାହା ହୋଇଯାଇଛି । ଖାଲି ଏତିକ, ଏଇ ସମୁଦ୍ର ବାଲି ଭିତରେ ମୋର ଅନ୍ତିମ ସମାଧିଟି ତମେ ଦୁଇଜଣ ଦେଲେ ମୋର ଶେଷ ମନସ୍କାମନା ପୂର୍ଣ୍ଣହେବ । ଏତିକ କହୁ କହୁ ଆନନ୍ଦାଶ୍ରୁର ଦୁଇଟି ଧାର ବୁଢ଼ୀଙ୍କର ଶୁଷ୍କଚର୍ମ ପରିପୁଷ୍ଟ ବକ୍ଷ ଉପରେ ଝରି ପଡ଼ିଲା । ଏତେଦିନ

ପରେ ବୃଦ୍ଧାଙ୍କ ଠାରୁ ଏଇ ଆଶ୍ୱାସ ବାଣୀ ପଦକ ଶୁଣି ଶ ନ୍ତର ଅଶାନ୍ତ ଜୀବନଟା କଇଁ କଇଁ ହୋଇ କାନ୍ଦଉଠିଲା । ଶାନ୍ତ ତା'ର ମୃତା ବୋଉକୁ ଆଜି ଫେର ପାଇଛୁ । ମାତୃସ୍ନେହ ଯାହା ସେ ଦିନେ ଅନୁଭବ କରି ପାରି ନ ଥିଲା, ଅନେକ ଦିନ ପରେ; ତାହା ପକ୍ଷରେ ଆଜି ଏ ଗୋଟାଏ ପ୍ରକାର ନୂଆ ସ୍ୱପ୍ନ ଭଳି, ଲୋତକ ସମ୍ବରଣ କରି ବୃଦ୍ଧା ଯେତେବେଳେ କହିଲେ— "ଛି, ମା', ତୁ ଗୋଟାଏ କାନ୍ଦୁଛୁ କାହିଁକି ? ଜଗନ୍ନାଥ ତୋ'ର କ'ଣ ଭଣା କରିଛନ୍ତି ।" କହୁ କହୁ ବୃଦ୍ଧା ଆସନରୁ ଉଠିଲେ ।

× × ×

ସେଦିନ ଘରଟାବେଳେ ନଗେନ ଅଫିସରୁ ଫେରୁ ଫେରୁ ଦୈବାତ ସୀତାନାଥବାବୁଙ୍କ ସାଥିରେ ଦେଖାହେଲା । ସୀତାନାଥବାବୁ ଦୁଇ ଚାରିପଦ କଥା ପରେ କହିଲେ—

"ହଁ-ହଁ, ତମର ଗୋଟାଏ ଚିଠି ମୋ' ପାଖରେ ଦୁଇଦିନ ହେଲା ପଡ଼ି ରହିଛି" କହି ପକେଟରେ ହାତଟା ମାରୁ ମାରୁ ନଗେନ ଆଶ୍ଚର୍ଯ୍ୟ ହେଲା । କହିଲା—"ମୋର ଚିଠି, ମୋର ଏମିତ ସଂସାରରେ କିଏ ଅଛି ଯେ ଚିଠି ଦବ ।"

ଚିଠିଟା ଅବଶ୍ୟ ତୁମ ନାଁରେ ନୁହେଁ । ନିତ୍ୟାନନ୍ଦବାବୁଙ୍କ ନାଁରେ, କିନ୍ତୁ C/o ଟା ମୋର —"

"ବାପା ଯେ ଚାରିବର୍ଷ ହେଲା···କଥା ନ ସରୁଣୁ ସୀତାନାଥବାବୁ ଚିଠି ଖୋଲିଲେ । ହଠାତ୍ ଉପସଂହାରରେ ଆଖି ପକେଇ ସୀତାନାଥବାବୁ କହିଲେ—ହରି ବଶ୍ୱାଳ—"

"ଓ, ହରି ବଶ୍ୱାଳେ; ବୁଝିଲି, ବୁଝିଲି, ଆମ ଗାଁ ପାଖରେ ତାଙ୍କ ଘର ।" ନଗେନ ଚିଠି ଖଣ୍ଡିକ ଆଖି ସାମ୍ନାକୁ ନେଲା, ବଶ୍ୱାଳେ ଲେଖିଛନ୍ତି—

ଟଁପୁର
ମଙ୍ଗଳବାର

ପ୍ରିୟ ନିତ୍ୟାନନ୍ଦବାବୁ,

ତମ ପାଖକୁ ମୋର ଆଜି ଏ ଚିଠି ଖଣ୍ଡ ଦବାରେ ବିଶେଷ ପ୍ରୟୋଜନ ନ ପଡ଼ିଥିଲେ ସୁଦ୍ଧା, ଏ ବିଷୟରେ ବିବେକ ମତେ ଲେଖିବାକୁ ବାଧ୍ୟ କରାଉଅଛି । ଆଜି ମନେ ପଡ଼ୁଛି ଦୀର୍ଘ ଗ୍ୟାରବର୍ଷ ତଳେ ସମୁଦ୍ରକୂଳେ ଯେଉଁଦିନ ତୁମ ସାଙ୍ଗରେ ମୋର ଭେଟ ହୋଇଥିଲା, କଥା ପ୍ରସଙ୍ଗରେ ମୁଁ ସେଦିନ ବୁଝି ନେଇଥିଲି । ଅଭାବର ତୀବ୍ର କଷାଘାତରେ ତମେ ଯେମିତି ସତେ କି ଦିନକୁ ଦିନ ମ୍ରିୟମାଣ ହୋଇ ପଡ଼ୁଛ—ତମ ପାଇଁ ମୋର ହୃଦୟ ଆଜି ନୁହେଁ, ବହୁ ଦିନରୁ ତୁମ ପ୍ରତି ଗୋଟାଏ ଆନ୍ତରିକ ଶ୍ରଦ୍ଧା ମୋର ହୃଦୟ କ୍ଷେତ୍ରରେ ତା'ର ମୂଳତୁଆ ଗଡ଼ି ବସିଛି । ଆଜି ନୁହେଁ, ହରିହରଭାଇଙ୍କ ଅମଳରୁ । ତା' ଛଡ଼ା ତମର ଯେଉଁ ସୁମିଷ୍ଟ ବ୍ୟବହାର ଆଉ ଭଦ୍ରୋଚିତ ଆଚରଣ; ସେ ତ ପ୍ରତ୍ୟେକଙ୍କଠାରେ ତୁମକୁ ସ୍ନେହର ପାତ୍ର କରିବ—ଏକା ମୋ'ଠାରେ କାହିଁକି ?

କ'ଣ ଲେଖିବି ନିତ୍ୟାନନ୍ଦବାବୁ, କଲମ ମୂନ ମୋର ଥରି ଉଠୁଛି । ତମର ଘରଡ଼ିହ ଆଜି ମଶାଣିର ନଗ୍ନ ବିଭୀଷିକା ଧରି ଛିଡ଼ା ହୋଇଛି । ଉଃ, ଦଶଟା ବର୍ଷ ଭିତରେ କି ପରିବର୍ତ୍ତନ । ଯେଉଁ ସ୍ଥାନ ଦିନେ ପୁରାଣର ବଜ୍ରଗମ୍ଭୀର ନିର୍ଘୋଷରେ ପ୍ରକମ୍ପିତ କରି ଉଠୁଥିଲା, ସେ ସ୍ଥାନ ଆଜି ରାତି ଅଧରେ ବିଲୁଆ ଡାକ ଶୁଣିବାକୁ କାନ ଡେରି ରହିଲାଣି । ଯା'ଠାରୁ ସଂସାରେ ଆଉ କି ଗଭୀର ଦୁଃଖର ବିଷୟ ଶୁଣିବାକୁ ଥାଇପାରେ —

ତା'ପରେ ହଁ, ଅଦ୍ୱୈତ ସ୍ତ୍ରୀ ମାସେ ହବ ବାୟାଣୀ ହୋଇ ଏ ଗାଆଁ ଛାଡ଼ି କେଉଁଆଡ଼େ ଅନ୍ତର୍ଦ୍ଧାନ ହୋଇଛି । ଘରେ ବର୍ତ୍ତମାନ ଏକା ହୋଇ ଅଦ୍ୱୈତ, ସେ ଆଜି ଚଳନ୍ତ ଶକ୍ତି ହରେଇ ବସିଛି । ସେ ସ୍ପଷ୍ଟତଃ ଜ୍ଞାନହୀନ ଭାବରେ ଆକ୍ରାନ୍ତ ହୋଇ ମ୍ରିୟମାଣ ସଦୃଶ ଗୋଟିଏ ସ୍ଥାନରେ ପଡ଼ି ରହିଛି । ଯେଉଁମାନେ ସମ୍ପଦର ସାଥୀ ଥିଲେ ସେମାନଙ୍କର ଦର୍ଶନ ଆଜି ସ୍ୱପ୍ନ ହୋଇ ପଡ଼ିଛି । ରାତି ରାତି ଧରି ଯେଉଁ ନାଟ୍ୟଗୃହ

ବାଦ୍ୟଯନ୍ତ୍ରର ମନମତାଣିଆ ନିସ୍ୱନରେ ସାରା ପଲ୍ଲୀଟିକୁ ମୁଖରିତ କରି ଉଠୁଥିଲା, ସେଠାରେ ଆଜି ବୁଲୁ ଗାଈ ଗୋରୁ, ଛେଳି, କୁକୁରଙ୍କର ଆଡ୍ଡା—ମୋର ମୋଟ ଉପରେ ଲେଖିବାର ଉଦ୍ଦେଶ୍ୟ, ଅଦ୍ୱୈତ ଜୀବନ ସଂସାରରେ ଆଉ ବେଶୀଦିନ ନୁହେଁ । ତା' ଅନ୍ତେ ଚକ୍ରଧର ଯେଉଁ କୋଡ଼ିଏ ଏକର ସମ୍ପତ୍ତି ପାଇଁ ଦାବୀ କରି ବସୁଛନ୍ତି, ତାହା ତୁମେ ଚେଷ୍ଟା କରି ହସ୍ତଗତ କର । ଆସିଲେ ସବୁ କଥାବାର୍ତ୍ତା, ଏ ଚିଠିକୁ ଟେଲିଗ୍ରାମ ମନେ କରି ଶୀଘ୍ର ଆସ । (ଇତି)

ତୁମର ହିତାକାଂକ୍ଷୀ
ହରି ବିଶ୍ୱାଳ

ଚିଠି ଖଣ୍ଡ ଧରି ହତାଶ ହୃଦୟରେ ନଗେନ ଘରେ ପଶିଆସିଲା । ତା'ର ପାଂସୋରି ଅଣଚାଳିଶଟାକୁ ବାଟସାରା ସେ ଯେମିତି ସ୍ୱପ୍ନ ଦେଖି ଦେଖି ଯାଉଛି । ଯେଉଁ ନଈ, ନାଳ, ଟୋକାମାନେ, ବିଲ, ପୋଖରୀ, ଗଛପତ୍ର ଦେଖି ଦେଖି ସେ ଦିନେ ତାହାର ସେହି ଅତି ପୁରୁଣା ଜନ୍ମଭୂଇଁ କୋଳରୁ ଚିରଦିନ ପାଇଁ ବିଦାୟ ନେଇ ଆସିଥିଲା, ସେ ସମସ୍ତ ଦୃଶ୍ୟ ମାନସ ମୁକୁରରେ ଚଳଚ୍ଚିତ୍ର ପରି ଗୋଟି ଗୋଟି ହୋଇ ଫୁଟି ଉଠିଲେ । ଏରୁଣ୍ଡୀ ଉପରେ ଗୋଡ଼ ନ ଦେଉଣୁ ନଗେନର ବକ୍ଷରୁ ଏକ ବ୍ୟଥାର ଦୀର୍ଘଶ୍ୱାସ ଉଠିଲା—ହୃଦୟରେ ପୁଞ୍ଜୀଭୂତ ବେଦନା ଘେନି; ସେଦିନ ଗୋଡ଼ ହାତ ନ ଧୋଇ ନଗେନ ଉଠିଲା ଛାତ ଉପରକୁ । ପରିବର୍ତ୍ତନଶୀଳ ଜଗତର ଅଜ୍ଞାତ ସ୍ୱପ୍ନ ଦେଖୁ ଦେଖୁ ମୁଣ୍ଡ ଉପରେ ତା'ର ଦେଖା ଦେଲା ମେଘମୁକ୍ତ ନିର୍ମଳ ଆକାଶ ମଧ୍ୟାନରେ ଝଲମଲ ତୋଫା ଜହ୍ନ—

ନଗେନ ଆଜି ଏଇ କୌମୁଦୀସ୍ନାତ ଆକାଶ ଆଡ଼େ ଚାହିଁ ରହି ଦୂର ଅତୀତର ସେହି ପଛ କଥାଗୁଡ଼ାକ ଭାବି ଯାଉଛି—ଜୀବନର ଝଡ଼ ଝଞ୍ଜାରେ ଯେଉଁଦିନ ସେ ଇତସ୍ତତଃ କ୍ଷତ ବିକ୍ଷତ ହୋଇ ଦୈବାତ ଦିନେ ସେହି ଦେବୋପମ ଚରିତ୍ର କୁଳମଣି ବାବୁ ଆଉ ମାତୃ ତୁଲ୍ୟା ଲତା ଦେବୀଙ୍କର କୋମଳ କୋଳ ଭିତରେ ବସି ରହି ଜଗତକୁ ବାସ୍ତବ ରୂପରେ ଦେଖିବାକୁ ଇଚ୍ଛା କଲା—ଦେଖିଲା ଠାଏ ଅନ୍ଧାର ଠାଏ ଆଲୁଅ, ଜଗତର ଗୋଟାଏ ପାଖରେ ଯଦି ଅନଶନ, ପ୍ରପୀଡ଼ିତ ଶତ ଶତ କଙ୍କାଳ

ମୁଖରୁ 'ହା ଅନ୍ନ'ର ମର୍ମଭେଦୀ ଚିତ୍କାର ଆକାଶ ଭେଦ କରି ଉଠୁଛି, ଆଉ ପଟରେ ତା'ର ଲଗିଛି ସୁସ୍ୱାଦୁ ମିଷ୍ଟାନ୍ନର ମହା ମହୋତ୍ସବ, ସୁସଜ୍ଜିତ ପ୍ରାସାଦ ଭିତରେ କାହାର ଯନ୍ତ୍ର ସୁକୋମଳ ଚୂଳୀତଳୁ କଣ୍ଠକତ ହୋଇ ଉଠୁଛି ସେତିକବେଳେ କେହି ବା ମୁଣ୍ଡ ଗୁଞ୍ଜିବାକୁ ଟିକେ ମାତ୍ର ସ୍ଥାନ ଖୋଜ ପାଉ ନାହିଁ । ଯେଉଁଦିନ ଆଶାହୀନ, ଲକ୍ଷ୍ୟହୀନ ଜୀବନ ତା'ର କେବଳ ମୁଠିଏ ଭାତ ପାଇଁ କାନ୍ଦି ଉଠିଥିଲା ଆଉ ଦୁନିଆରେ ଏକାଟିଆ ହୋଇ ଗୋଟାଏ ନିଃସଙ୍ଗ ଜୀବନ କାଟିବାକୁ ହୃଦୟ ତା'ର ହାହାକାର କରି ଉଠିଥିଲା, ସେହିଦିନ ସେ ଈଶ୍ୱରଙ୍କର ଅସୀମ କୃପାରୁ ଖୋଜି ପାଇଥିଲା ଆଶ୍ରୟସ୍ଥଳ ।

ଯେଉଁଠି ସ୍ୱର୍ଗର ଦୁର୍ଲ୍ଲଭ ସମ୍ପଦ ସ୍ନେହ, ପ୍ରେମ, ଶ୍ରଦ୍ଧା, ଦୟାର ମର୍ତ୍ତ୍ୟ-ସ୍ୱର୍ଗ ଦେଖିପାରିଥିଲା, ତା'ରି ଭିତରେ ସେ କିଛିଦିନ ସମ୍ପୃକ୍ତ ରହି, ପୂର୍ବର ସେହି ଏକାଟିଆ ଜୀବନକୁ ସମ୍ପୂର୍ଣ୍ଣ ଭୁଲି ପଡ଼ିଥିଲା । ଆଜି ଶରତ; ମନୋରମାଙ୍କ କୋମଳ କଣ୍ଠର ସେହି ନଗେନ ଭାଇ ଡାକ କାନ ପାଖରେ ଗୁଞ୍ଜରି ଉଠି ପୁଣି ଆଜି ରାତିର ଏଇ ନୈଶ ସମୀର ହିଲ୍ଲୋଳରେ ହଜି ଯାଉଛି । ନଗେନର ଆଜି ବିଶେଷ ମନେ ପଡ଼ୁଛି ଯେଉଁଦିନ ଏକ ଆସନ୍ନ ସନ୍ଧ୍ୟାର ଘନ ଅନ୍ଧକାର ଭିତରେ କୁଳମଣି ବାବୁ ପିଠିରେ ତା'ର ହାତ ମାରି କହିଲେ—

"ତୋର ଗୋଟାଏ ଚିନ୍ତା କ'ଣ ନଗେନ, ମୁଁ ଥରେ କହୁଛି । ଶରତ ଏକା ମୋର ନୁହେଁ । ତୁ ଆଗ ହେଲେ ସେ ପଛ, ମୋ ପାଖରେ ତୋର ଆଉ ଅବିଶ୍ୱାସ କରିବାର କିଛି ମାତ୍ର ନାହିଁ । ମୁଁ ଜାଣିଛି ଦୁନିଆ ଭିତରେ ଏକମାତ୍ର ତୋର ପିତାର ଅଭାବରେ ପ୍ରାଣ ତୋର ଯେପରି ଦାରିଦ୍ର୍ୟର କଷାଘାତରେ ତିକ୍ତ ଆଉ ବିକ୍ଷୁବ୍ଧ ହୋଇ ଉଠିଥିବ, ମୋ ପକ୍ଷରେ ଏହା ଅନୁଭବ କରିବାର କିଛି କଷ୍ଟ କଳ୍ପନା ବିରହ ନୁହେଁ । ମୋର ଏଇ ଜୀବନରେ ଦିନେ ତୋରି ପରି ଗୃହହରା, ସାଥୀହରା ଜୀବନ ଦେଖା ଦେଇଥିଲା । ମୁଁ ସେଇଦିନ ମୋର ଏଇ ଶିରା ପ୍ରଶିରାରେ ଅନୁଭବ କରିଛି; ଦୁନିଆରେ ଦରିଦ୍ରର ସ୍ଥାନ କେଉଁଠି ମାତରେ ଆଉ ଜନ୍ମରେ—"ଆଉ ଲତାଦେବୀ, ତାଙ୍କର ସେହି ମାତୃସୁଲଭ ବାତ୍ସଲ୍ୟ, ଅମୃତଝରା କଥାଗୁଡ଼ିକ, ଆଃ—ସତେ କେଉଁ ସ୍ୱର୍ଗୀୟ

ଉପାଦାନରେ ତାଙ୍କର ସେହି ହୃଦୟଟି ଗଢ଼ା ସତେ ? ଯେଉଁଦିନ ସେ ମତେ ଆଜି ଶାନ୍ତିକୁ ନିଜ କୋଳ ଉପରେ ଏକାଠି କରି ଅକଥନୀୟ ଆନନ୍ଦ ଉପଭୋଗ କରୁଥିଲେ, ସେତେବେଳେ ତାଙ୍କର ଗୃହିଣୀ ବାସ୍ତବିକ କି ସୁନ୍ଦର ।

ଭାବନାର ଖିଅ ଛିଣ୍ଡିଗଲା ।

ନଗେନର ପୁଣି ମନେ ପଡ଼ିଲା, ପିତା ତା'ର ଯେଉଁଦିନ ବିରାଟ ଦୁନିଆ ମଧ୍ୟରେ ନିଜର ଏକମାତ୍ର ପୁତ୍ରଟିକୁ ବିଧବା ସ୍ତ୍ରୀ ପାଖରେ ଏକାକୀ ଛାଡ଼ିଗଲେ—ସେ ଦିନର ସେହି ମେଘ ଅନ୍ଧାର କଳାରାତି—ବତାସର ସନସନ ବାଦ୍ୟନା—ବଜ୍ରର ବୁକୁଫଟା ଚିତ୍କାର, ବିଜୁଳିର ଝଲମଲ ନାଚ ଆଉ ପିତାର ଆକସ୍ମିକ ବିୟୋଗ—ସବୁ ମିଶି ତା'ର ଏଇ ଦୁର୍ବଳ ହୃଦୟରେ ସତେ ଯେମିତି ଧକ୍କା ଦେଇଥିଲେ ଆଉ ଅନ୍ତିମ ଶଯ୍ୟା ତଳେ ପିତାଙ୍କର ସେହି ଶେଷକଥା କେଇପଦ "ବାପ, ଅଧା ବାଟରୁ ରହିଗଲୁ, ତତେ ମଣିଷ କରି ଦେଖିବାର ସୌଭାଗ୍ୟ ଏ କପାଳରେ ଆଉ ଜୁଟିଲା ନାହିଁ"—ଭାବୁ ଭାବୁ ନଗେନର ଆଖି ଦୁଇଟି ଲୁହ ବୋଝରେ ଓଦା ହୋଇ ଉଠିଲା । ସେ ଏକଦୃଷ୍ଟିରେ ଅନେଇ ରହିଲା ସମ୍ମୁଖରେ ଯେଉଁ ସାଗରର ବିସ୍ତୀର୍ଣ୍ଣ ସିକତା ଶଯ୍ୟା—ସେ ଯେଉଁଦିନ ଏଇଠାକୁ ଆସି ପିତାର ଅନ୍ତିମ ସମାଧି ଏଇ ହାତରେ ଦେଇଯାଇଛି । ନଗେନ ଚାରିଆଡ଼େ ଥରେ ଆଖି ବୁଲେଇ ଆଣିଲା । ଦେଖିଲା ଯେଉଁ ଝାଉଁଗଛ ଆଜି ରାତିର ଏଇ ସମୀର ପରଶରେ ମର୍ମରି ଉଠୁଛି ଆଉ ସାଗରର ଏଇ ବିସ୍ତୀର୍ଣ୍ଣ ନୀଳ ଜଳରାଶି ତା'ର ଜ୍ୱଳନ୍ତ ସାକ୍ଷୀ ।

ଆଷାଢ଼ର ବଢ଼ିପାଣି ପରି ନଗେନର ଭାବନା ମାଡ଼ି ଚାଲିଛି ଆଗକୁ ଆଗକୁ । ଯେଉଁଦିନ ସେ ବୈବାହିକ ଜୀବନ ପାହାଚରେ ପ୍ରଥମ କରି ଗୋଡ଼ ପକାଇଲା; ତାର ଭାବନା ଯେବେ ସୁରୁଚିଣୀ, ସୁଶିକ୍ଷିତା ସ୍ତ୍ରୀଟିଏ ଭାଗ୍ୟ ସମ୍ମୁଖରେ ମସ୍ତକ ଟେକି ଠିଆ ହେଲା ଶାନ୍ତି—ଶାନ୍ତି ଭଳି କୌଣସି ଝିଅକୁ ସ୍ତ୍ରୀ ରୂପରେ ପାଇବାକୁ ତା'ର ତରୁଣ ହୃଦୟ ଯେମିତି ଅଧୀର ହୋଇ ଉଠିଥିଲା । ତାହା ଜୀବନରେ ଆଜି ମିଛ ହୋଇନାହିଁ; ଅବଶ୍ୟ ଆଜି ମନେ ପଡ଼ୁଛି ଯେଉଁଦିନ କଥା ପ୍ରସଙ୍ଗରେ ଲତା ଦେବୀ ଅତି

ଆବେଗରେ କହି ପକାଇଥିଲେ 'ନଗେନକୁ ଅନେଇଲା ଭଳି ବୋହୂଟାଏ କ'ଣ ସତେ ମୋ ଭାଗ୍ୟରେ ଅଛି କେଜାଣି ?' କୁଳମଣିବାବୁ ସେତେବେଳେ ବାଧା ଦେଇ କହିଥିଲେ "ତୁମେ ଯାହା ନଗେନଠାରୁ ପାଉଛ ଆଜିକାଲି ଜଗତରେ ତାହା କୌଣସି ବୋହୂଠାରୁ ଆଶା କରୁଛ ଲତା ।

ତା' ନୁହେଁ, ତା ନୁହେଁ, ମୋର ଇଚ୍ଛା ଆଖି ଆଗରେ ଗୋଟିଏ ସୁନ୍ଦରୀ ଆଉ ଶିକ୍ଷିତା ପାତ୍ରୀ ଜୁଟିଲେ – ତାହା ନିଜେ ମୁଁ ନିର୍ବାଚନ କରି ନଗେନ ଠାରେ ସମର୍ପଣ କରିବି । କିନ୍ତୁ ଯା ବୋଲି ଯେ ମୁଁ ତା'ଠାରୁ ବିବାହ ବିଷୟରେ ମତ ଗୁହିଁବି ତା' ନୁହେଁ । ମୁଁ ଧନ ଗୁହେଁ ନାହିଁ । ଗୁହେଁ ଗୋଟିଏ ଉତ୍ତମ ବୋହୂ ଯେ' କି କଥାରେ ତୁମର କଦାପି ଅବାଧ୍ୟ ହବନାହିଁ । ଭାବନାର ଅବାରିତ ସୂଅରେ ବାଧା ପଡ଼ିଲା । ଶାନ୍ତି ଯେତେବେଳେ ପଛପଟରୁ ନଗେନର ଆଖି ଦୁଇଟି ହସ୍ତାବୃତ କରି ଛିଡ଼ା ହୋଇ ପଡ଼ିଲା । ନଗେନ ତା'ର ହାତ ଦୁଇଟା ଛଡ଼ୋଉ ଛଡ଼ୋଉ କହିଲା—

ଜାଣେ **Mrs mohanty**, ଆଉ ଲୁଚାଇବାର କିଛି ନାହିଁ । ଶାନ୍ତି ହସିଲା—କହିଲା –

"କହେ ଆଜିଠୁ କ'ଣ ଏତେ ଭାବନା ତୁମର ।" ନଗେନ ତା'ର ପଣତକୁ ଧରି ପାଖରେ ବସୋଉ ବସୋଉ କହିଲା, "ନା—ଭାବନା ଭିତରେ କିଛି ନାହିଁ । କେବଳ ତୁମରି କଥା ।"

"ମୋର କଥା', ମାନେ ?"

ଶାନ୍ତି ପ୍ରେମ ବିଗଳିତ କଣ୍ଠରେ ଏଇ ଗ୍ଲୋଟ ପ୍ରଶ୍ନଟି କରି ନଗେନ ଆଡ଼େ ଅନେଇ ରହିଲା । ନଗେନ କହିଲା—

ନାଇଁ, ଆଜ ଅନେକ ଦିନ ପରେ ଅତୀତର ସେହି ପଛକଥା ଗୁଡ଼ାକୁ ଭାବୁଥିଲି ବସି ବସି—ସମସ୍ତ ଭାବନାର ପୂର୍ଣ୍ଣଚ୍ଛେଦ ପରେ ତୁମରି କଥାରେ ପୃଷ୍ଠାଟି ଏଇତ ଲେଉଟାଇଛି କି ନାହିଁ—ତୁମେ ପହଞ୍ଚିଗଲଣି କେତେବେଳୁ—

ଶାନ୍ତ କହିଲା—'ଆଚ୍ଛା ପତ୍ରରେ କେଉଁଥିପାଇଁ କାନ୍ଦୁଥିଲ ତୁମେ ? କ'ଣ ମୋର ପାଇଁ, ଏଇତକ କହି ସାରିଲା ପରେ କଣ୍ଠ ତା'ର ଯେମିତି ଥରି ଉଠୁଥିଲା ।'

"କଏ କହୁଛି ତୁମ ପାଇଁ ମୁଁ ପୁଣି କାନ୍ଦୁଛି । ତୁମେ ନୁହଁ, ମୁଁ ନିଜେ ମୋର ଏଇ ନିଜର ଇତିହାସ, ତୁମେ ମୋର ଏଇ ହାହାକାରମୟ ଜୀବନକୁ ବୁଝି ପାରିବ ନାହିଁ ଶାନ୍ତ । ମୋ ଜୀବନଟା ଦାରିଦ୍ର୍ୟ ଆଉ ହତାଶର ଏକ ଜ୍ୱଳନ୍ତ ଅନୁଭୂତି ।

ଦୁନିଆରେ ଏମିତି କାହା ଜୀବନରେ ଦୁଃଖ ଆଉ ଦାରିଦ୍ର୍ୟ ସମ୍ଭବ ହେଉ ତ ନ ହେଉ—ମୋ ଜୀବନରେ ତା' ଏକ ବିଶେଷତ୍ୱ । ଏହି ଯେ ଚିଠିଟା ଧରି, ଏହି ଚିଠିଟାରେ ମୋ ହତାଶମୟ ଜୀବନର କାହାଣୀ ମୋର ଏଇ ଦୁଃଖର ହିମାଳୟରେ ତୁମ ପରି ଗୋଟିଏ ସୁଖର ଝରଣା ବହିବ ବୋଲି ମୁଁ ଆଶା କରିପାରି ନ ଥିଲି ଶାନ୍ତ । ଯେଉଁ କୁଳମଣି ବାବୁଙ୍କୁ ମୁଁ ହୃଦୟରେ ପିତାଠାରୁ ଅଧିକ ମାନ ନେଇଛି, ସେଇ ଏକା ମୋର ଏଇ କ୍ଷୁଦ୍ର ଜୀବନରେ ଭବିଷ୍ୟତ ଉନ୍ନତିର ପଥ ପ୍ରଦର୍ଶକ ।"

ଶାନ୍ତ ତା'ର ଆଖି ଦୁଇଟିକୁ ଛଳ ଛଳ କରି କହିଲା—

"ତୁମେ ଏକା ନୁହଁ ନଗେନ ବାବୁ, ତୁମରି ଆମରି ପରି ଲକ୍ଷ ଲକ୍ଷ ଗରିବଙ୍କୁ ନେଇ ଈଶ୍ୱର ସୃଷ୍ଟି ଏଇ ଏତେବଡ଼ ଜଗତଟା—"

ତା'ପରେ କେଜାଣି କ'ଣ ଭାବି ଉଭୟେ ଉଭୟଙ୍କ ମୁହଁକୁ ଅନେଇ ରହିଲେ । ସେତେବେଳକୁ ପୂର୍ଣ୍ଣିମା ସାଗରର ତର୍ଙ୍ଗିନଶୀଳ ଜଳରାଶି ଉପରେ ନଅଁମୀ ଚନ୍ଦ୍ର ତା'ର ଶୀତଳ ଚୁମ୍ବନ ଆଙ୍କି ଦେଇଥିଲା ।

ନଗେନ ଏଇ ଜ୍ୟୋସ୍ନାକାଶ ଆଡ଼େ ଚାହିଁ ପୁଣି ଟିକେ କ'ଣ ଭାବି କହିଲା—

"ବାସ୍ତବିକ ଶାନ୍ତ—ଏଇଟା ନସ୍ୱର ଜଗତ ।"



ଭୂମିକାରେ :—

ନେତ୍ରବୋଉ

ହଶ୍ରବୋଉ

ବୋହ୍ମ

ହଶ୍ର

ନେତ୍ର

ବୈସ୍ନାଳର୍ଣ ମୌଜା, ଅଗରପଡ଼ା, ଭବାନୀପାଟଣା ଶ୍ରୀ ଅରବିନ୍ଦ ଯୁବଚ୍ଛାତ୍ର ଶିବିରରେ ବାଳକ, ବାଳିକାମାନଙ୍କ ଦ୍ୱାରା ଅଭିନୀତ ।

## ୧ମ ଦୃଶ୍ୟ

( କକ୍ଷ )

ନେଡବୋଉ—ହଇଲୋ ହଣବୋଉ ? ହଣବୋଉ, ଘରେ ନାହୁଁ କଲୋ ?

( ନେପଥ୍ୟେ ହଣବୋଉ )

ହଣବୋଉ—କିଏ ଡାକୁଛୁ, ନେଡବୋଉ କଲୋ !

ନେଡବୋଉ—ଆଲୋ ! ତୋ' ବୋହୂ ଆଇଲାଣି କ ନାହିଁ କଲୋ ?

( ହଣବୋଉ ପ୍ରବେଶ )

ହଣବୋଉ—ଆଉ ସେ ବୋହୂ କଥା ମତେ କୁହନା ଲୋ ନେଡବୋଉ ! ସେ କ'ଣ ଆଉ ମଣିଷ ମାନୁଛି ? କ ଚକର ସେ ଗଡ଼ୁଛନ୍ତି କେ···ଜାଣି ଲୋ ମା ।

ନେଡବୋଉ—କହନା ଲୋ କହନା । ସେଇ କ ଅପା ସେଇଟା ନାଁମ-ଏ ପୋଡ଼ପୋଡ଼ା ଗୁଣ୍ଡିକୁ କ'ଣ ସେଇଟା ଆସୁଛି । ସେଇ ଫଗ୍ ଓଡ଼ଶାଯାକ ବୁଲି ସବୁ ଝିଅ ବୋହୂଙ୍କୁ ମନ୍ତ୍ର ଧୂଳି ପକାଇ ଘରୁ ପଦାକୁ କାଢ଼ି ନେଉଛି ।

ହଣବୋଉ—ହଇଲୋ ମାନ୍ ନାହିଁ, ମହତ୍ତ୍ୱ ନାହିଁ, ଘରର ଝିଅ ବୋହୂ ଗୁଡ଼ାକ ଲୁକାଳେ ଏମିତି ଚକର କରୁଥିଲେ ମ ?

ନେଡବୋଉ—ଆଲୋ କାହାକୁ ଆଉ କହିବ ଲୋ ହଣବୋହୂ ! ଅଣ୍ଟି ସୁନାତ ଭେଣ୍ଡି । ମୋ ଝିଅ ନେଡିତ ଚକରକୁ ଫକର ଫକର ଧାଇଁ ପଳାଉଅଛି । ଭୁଆଣୁଣି ଝିଅ, ବାହା ହୋଇଥିଲେ ହେଁସେ ପୁଅଝିଅ ହୁଅନ୍ତେଣି । ସେ କ'ଣ ମୋ' କଥାକୁ ତିଳେ ପ୍ରମାଣେ ଖାତିର କରୁଛି ?

ହରବୋଉ—ଛି, ଛି, ଛି, ଛି ! କେତେ ବଦନାମିଆଁ କଥାଗୁଡ଼ାକ ?

ନେଡବୋଉ—ସେଇକଥା ପରା । ଅଣ୍ଡିଗ୍ରି ମେଳରେ ଅଲଜୁକା ଗୁଡ଼ାକ କସର ବସୁଛନ୍ତି କେଜାଣି ଲୋ ମା, ଏଇକଥା ଆମ ନେଡକ କହିବାରୁ ସେ ଚଣ୍ଡୀ ମୋତେ ଫେରେ କ'ଣ କହୁଛି ଜାଣିଛୁ ହରବୋଉ ?

ହରବୋଉ—ମଲ ! ମୁଁ କେମିତି ଜାଣିବି ମ ?

ନେଡବୋଉ—କହୁଛି, ସ୍ତ୍ରୀ ଲୋକମାନେ ୧୦ବର୍ଷରୁ ବାହା ହୋଇ ବର୍ଷକୁ ବର୍ଷ ଛୁଆ ଜନ୍ମ କରିବା ଲାଗି ନୁହେଁ, ଭାଗବତ କର୍ମ କରିବା ଲାଗି ସେମାନଙ୍କର ଜନ୍ମ—ଇଏ କେଉଁ ପ୍ରକାର କଥା ଲୋ ମା !

ହରବୋଉ—ଆଲୋ ନେଡବୋଉ, ମୁଁ ହୋଇଥିଲେ ଏମିତି ଝିଅର ଶଂଖି ମୋଡ଼ି ଦଅନ୍ତିଣି, ହଇଲୋ ! ତାକୁ ବାହା ନକରି କାହିଁକି ଦାଣ୍ଡରେ ବୁଲାଉଛୁ ?

ନେଡବୋଉ—ଆଲୋ କ'ଣ କହିବି ? ନେଡତ କଲେଜରେ ପଢ଼ୁଛି । ଗୋଟିଏ ଇଞ୍ଜିନିଅର ଜୋଇଁଟିଏ ଖୋଜିଥିଲି ଯେ, ସେ କହୁଛି, ଘଣ୍ଟା, ରେଡ଼ିଓ, ମଟର ସାଇକେଲ, ଆଉ କ'ଣ ଆଉ କ'ଣ, ସବୁ କ'ଣ ମୋର ଏବେ ମନେ ପଡ଼ୁଛି କଲୋ, କୋଡ଼ିଏ ଭରି ସୁନା ଗହଣା ଆଉ ନଗଦ ପାଞ୍ଚହଜାର ଟଙ୍କା । ନେଡ ବାପ ଏକଥା ଶୁଣି ମୁଣ୍ଡକୁ ତଳକୁ ପୋତି ବସିଲା । ଆଉ ନେଡ ହସିକରି କହିଲା ଇଞ୍ଜିନିଅର ସାହିବକୁ ମଟର ସାଇକେଲ ସଙ୍ଗେ ବାହା କରିଦିଅ ।

ହରବୋଉ—(ଗାଲରେ ହାତ ଦେଇ) ଏମିତି କଥା କହିଲା ? ଛୁଆ, ଛୁଆ, ଏଇ ତକରକୁ ଯାଇ ଏମାନଙ୍କ ମୁହଁ ବଢ଼ିଯାଇଛି । ଆଲୋ ନେଡବୋଉ ! ଆଜକାଲି ଝିଅବୋହୂମାନଙ୍କୁ ଆଉ କଛି କହି ହେବନି ।

( ଏହି ସମୟରେ ନେପଥ୍ୟେ ମହିଳାମାନଙ୍କର ଉଦ୍‌ବୋଧନ ସଙ୍ଗୀତ )

—ସଙ୍ଗୀତ—

ଆମେରେ·········ଆମେରେ·········
ଆଗାମୀ ଯୁଗର ବୀର ଜାତି
ଆମେ ଭବିଷ୍ୟର ବୀର ସନ୍ତାନ
ପୂର୍ଣ୍ଣ ପଥର ଯାତ୍ରୀ ॥ ୦ ॥
ନବଯୁଗ ଆମେ ଗଢ଼ିବୁ
ଦେବ ଯାନେ ଆମେ ଚଢ଼ିବୁ
ଆମେ ସତ୍ୟ ପଥର ପଥିକ
ଆମେ ଦେବ ମାନବର ପ୍ରତୀକ
ନୋହୁ ସୁପ୍ତ, ଆମେ ମୁକ୍ତ
ଆମେ ସିଂହ ଶାବକ ଉଠୁ ମାତି ॥ ୧ ॥
ଏ ମହାଯୁଦ୍ଧେ ମାଆ ଆମର ସେନାପତି
ନାହିଁ ଭେଦରେ ସର୍ବେ ତାହାର ନାହିଁ ଖ୍ୟାତି
ସର୍ବ ଅଜ୍ଞାନତା ଦୂର କରିବୁ
ମିଥ୍ୟା ବିରୁଦ୍ଧେ ଖଡ୍‌ଗ ଧରିବୁ
ମହାଭାରତର ଆମେ ଫାଲ୍‌ଗୁନୀ
ହରି ବରି ଅନ୍ଧକାର ଦୂରିବୁ
ଆମ ଶପଥରେ ଆମେ ଧୃଷ୍ଟ
ଆମ ରଥେ ସାରଥି କୃଷ୍ଣ
ଆମେ କାଟିବୁ ଏ ଅମାରାତ୍ରୀ (୨)
( ହରିବୋଉ ଓ ନେଡିବୋଉ ଝରକା ବାଟେ ଚାହିଁ )

ନେଡିବୋଉ— ଦେଖେଲୋ ହରିବୋଉ ! ଟିକର ମାଇପେ ଗୀତ ବୋଲି ବୋଲି ଆସୁଛନ୍ତି । ଆଲୋ ! ଆଗରେ ତ କ'ଣ ଟୋ'ର ବୋହୂ ହାତ ହଲେଇ ପାଟି କରୁଛି । କ କାଳ ଲୋ ସତେ ? ଲାଜନାହିଁ, ସରମ ନାହିଁ, ଶାଶୁଘର ଗାଁରେ···ଛି···ଛି···(ଚାହିଁ) ଆଲୋ ! ଚାହାଁଲୋ ହରିବୋଉ, କୁନ୍ଦିଆ ମାଇପ, ନଦୋଳିଆ ସେଠି ଭାରିଜା, ହରିମିଶ୍ର ସ୍ତ୍ରୀ···ଆଲୋ···ଆଲୋ···ଆଲୋ ଇଏତ କ'ଣ ଗାଁଟାଯାକର ଅଧିକାଂଶ ବୋହୂ ଝିଅ ଲାଇନ ବାନ୍ଧିଛନ୍ତି ।

ହରବୋଉ—ଆଲୋ ! ହଁଲୋ ! ମରବେ ବୋଲ ସବୁ ଉତ୍ପାତ ହେଉଛନ୍ତ । ମରଣ ହେଉନ ଯାହା ଏଗୁଡ଼ାକୁ । ଆଜ ଆସୁ ସେ ବୋହୂ, ତା'ର ହନେକୁ ମୋର ହନେ ।

ନେଉବୋଉ—ମୁଁ ଯାଉଛି, ନେଉ ଉପରେ ହ'ଟା ଦୁମ୍‌ଦାମ୍ କର ନ ଥୋଇଲେ ମନରେ ଶାନ୍ତ ନାହିଁ ।

(ନେଉବୋଉର ଚମ ଚମ ହୋଇ ପ୍ରସ୍ଥାନ—ହରବୋଉ ବୋହୂର ଆଗମନ ପଥକୁ ଗୃହିଁ ବସିବା, ବୋହୂର ପ୍ରବେଶ ମାତ୍ରକେ)

ହରବୋଉ—( ଚାପ୍ରଲ୍ୟରେ ) କ'ଣ ଚକର ସଇଲ ବୋହୂ ରାଣୀ । ଆହାଃ···ହାଃ···ହାଃ । ଏଣେ ଘର ଗୋଟାକର ପାଇଟି ପଡ଼ଛି, ଏଣେ ସାନ ପୁଅଟା ରଡ଼ ଛୁଡ଼ୁଛି ଯେ, କହିଲେ ନ ସରେ, ଏଯାଏ ଚୁଲି ଲଗିନ, ବୋହୂରାଣୀ ତେଣେ ଭ୍ରମଣ ଦେଉଚନ୍ତ । ଭଲ ପାଠ ଚକର ହେଲ ଯେ, ଏ ମାଇପି ଗୁଡ଼ାକ ପ୍ରଥମେ ସତ୍ୟାନାଶ ହେଲେ ।

ବୋହୂ—ବୋଉ !

ହରବୋଉ—ଆଲୋ ଯାମ ବୋଉ ।

ଲାଜଗଲା, ସରମ ଗଲା, ପୁରୁଷଙ୍କ ମେଳରେ ଚକାମେଲି ପକାଇ ଏକାଠି ବସି ମୁହଁକୁ ମୁହଁ ଅନାଇଁ କଥାବାର୍ତ୍ତା ହୋଇ, ଛି···ଛି···।

ବୋହୂ—ବୋଉ ! ଭଗବାନଙ୍କ କାର୍ଯ୍ୟକୁ ଏପର ଘୃଣା କରୁଛନ୍ତ ?

ହରବୋଉ—ଆଲୋ ଯା···ଯା···ଆମେ ଆଉ ବୋହୂ ହୋଇ ନଥିଲୁ ପର ? ଆମ ସମୟରେ ଗୁରୁଜନମାନଙ୍କୁ ଡର, ଶାଶୁ ଶ୍ୱଶୁରଙ୍କୁ ଡର ଏମିତକ ଗାଁ ଗୋହ୍ୱରର ସାଇପଡ଼ଶାଙ୍କୁ ଡର ଡର ଆମ ଜୀବନ ଯାଉଥିଲା । ଯେତେ ଯିଏ ଗାଳ ଦେଲେ ବ ଜାଡ଼ୀ ଡୁଣ୍ଡୀ ପର ସବୁ ସହି ଯାଟିରେ ତୁଣ୍ଡି ବାନ୍ଧ ଦେଇଥିଲୁ । ଆଉ ଆଜକାଲକା ଯୁଗର ବୋହୂମାନେ ସାଙ୍ଗେ ସାଙ୍ଗେ ଜବାବ ।

ବୋହୂ—ବୋଉ ! କାହିଁକ ସଦାବେଳେ ଆପଣ ଏପର ବ୍ୟସ୍ତ ହେଉଛନ୍ତ ? ଯେତକ ସମୟ ମୋ' ସଙ୍ଗେ ଅପଥା ବାକ୍ୟାଳାପ କରୁଛନ୍ତ, ସେଇ ସମୟତକ ଯଦ ଭଗବାନଙ୍କ ନାମ ସ୍ମରଣ

କରନ୍ତେ ସେଥିରେ ଅଶେଷ ଫଳ ମିଳନ୍ତା । ଆପଣ ଜାଣିଛନ୍ତି ? ଶ୍ରୀ ଅରବିନ୍ଦଙ୍କ ପାଠଚକ୍ରରେ ଯେଉଁ ଅମୃତ ବୃଷ୍ଟି ହୁଏ କେବଳ ତାହା କାର୍ଯ୍ୟ କରୁଥିବା ବ୍ୟକ୍ତି ହିଁ ବୁଝିପାରନ୍ତି ।

ହରିବୋଉ—ହଇଲେ ! ହଇଲେ ! ତୋ'ର ଏଡ଼େ ବଡ଼ପ ହୋଇଗଲାଣି ! ମୋ' ମୁହଁ ଉପରେ ମାଡ଼ ମାରିଲା ପରି ଏଡ଼େ ଏଡ଼େ କଥା କହି ଯାଉଛୁ ? ହଁ ! ଆମେ ତ ବୁଢ଼ା ବୁଢ଼ୀ ହେଲୁ, ଆଉ କାହିଁକି ଆମକୁ ଖାତିର କରିବ ।

( ବୁଢ଼ୀ ବାହୁନି କାନ୍ଦିବା )

—କାନ୍ଦ—

ଏଡ଼େ ହୀନମାନ ଜନମ ମୋରିଲେ

ନେଣ୍ଡିବୋଉ

ସଭିଙ୍କର ହେଲି ମୁଁ ଚକ୍ଷୁଶୂଳଲେ

ଘୋଡ଼ାମୁହାଁ ମୋତେ ଜବାବ ଦେଲାଲେ

ନେଣ୍ଡିବୋଉ

ହେଁ.........ହେଁ.........ହେଁ.........ହେଁ.........

ମୋତେ ଯାହା ମରଣ ନ ହେଉଛି ।

( ଏ ସମୟରେ ହରି କଚେରୀରୁ ଫେରି ପ୍ରବେଶ )

ହରି—ଆରେ ! କ'ଣ ହେଲା ବୋଉ !
କାନ୍ଦୁଛୁ କାହିଁକି ? ( ବସିପଡ଼ି ବୋଉକୁ ଆଉଁସି ଦେଲା, କ'ଣ ବୋଉ !

ହରିବୋଉ—ମୁଁ ଆଉ ଏ ଘରେ ରହିବି ନାହିଁ । କାହିଁକମ, ମୁଁ ଯୋଇଲାଙ୍କ ପରି ପଡ଼ିଥିବି ? ଏ ଘରେ ଯଦି ପଦେ କହିବାର କାହାକୁ ଅଧିକାର ମୋର ନାହିଁ, ତେବେ ପଡିରହିଥିବି କାହିଁକି ? ହରିରେ, ମୋତେ ସିହାସ ବିହାରୀ ମଠରେ ଛାଡ଼ି ଦେଇ ଆ । ମୋର କଏ ଏତେ ଦହଗଞ୍ଜ ସହିବ ଲୋ ମା' ।

ହରି—ଆଲେ କ'ଣ ହେଲା କହୁନୁ କାହିଁକି ?

ହରିବୋଉ—କାଇଁ ତୋର ଗୁଣମଣି ଘରଜାକୁ ପଚାରୁନୁ । ପାଠଚକ୍ରରୁ ଗାଁ ମଝିରେ, ଗୀତ ବୋଲି ବୋଲି ପର ପୁଅ ସଙ୍ଗେ ହାତକୁ

ହାତ ମିଳେଇ ହସି ହସି ଆସି ଏବେ ଘରେ ପଶୁଅଛନ୍ତି । ଏ ପର୍ଯ୍ୟନ୍ତ ଚୂଲ୍ଲୀ ଜଳାନ, ପଦେ କହିବାରୁ ମୋ' ଉପରେ ଖାଙ୍କି କରି ମିଶିଗଲ୍‍ ଯେ, ମୋ' ଦେହଟା ଏ ପର୍ଯ୍ୟନ୍ତ କ'ଣ କ'ଣ ହୋଇ ଯାଉଛି ।

ବୋହୂ—ବୋଉ ! ଆପଣ ଏତକ କଥା ଲଗେଇ ଜୁଟାଇ କହୁଛନ୍ତି କାହିଁକି ? ଭଗବାନଙ୍କର କାର୍ଯ୍ୟ କରିବାରେ କି ଅପରାଧ ମୁଁ ତ ବୁଝିପାରୁ ନାହିଁ···କେତେଦିନ ଆମେ ଏ ଅଜ୍ଞାନତା ଭିତରେ ବୁଡ଼ି ରହିବା ?

ହରି—ଥାଉ ଥାଉ ସେ ସାହିତ୍ୟିକ ଛଟାର ଭାଷଣ । ବାରମ୍ବାର ତୁମକୁ ବାରଣ କରି ହେଲଣି । ତୁମେ ସେ ଭଣ୍ଡ ତାମସାରେ ଯୋଗ ଦିଅନାହିଁ । ଆମର ଘରେ ରାଧାକୃଷ୍ଣ ମୂର୍ତ୍ତି ଥାଉଁ ଥାଉଁ ଗୋଟିଏ ବିଦେଶୀ ମହିଳା ପାଖରେ ଭଗବାନ ଭଗବାନ କହି ନିଜକୁ ବନ୍ଦୀ କରି ସାରିଲଣି । ଘରେ ସେଥିପାଇଁ ବାପା ବିରକ୍ତ, ବୋଉ ବ୍ୟସ୍ତ, ଆଉ ମୋ କଥା ଛାଡ଼, ମୋତେ ତ ସଦାବେଳେ ବେଖାତିର ଭାବ ।

ବୋହୂ—ତୁମେ ବ୍ୟସ୍ତ ହୁଅନାହିଁ । ମୁଁ ଅଧଘଣ୍ଟାକ ମଧ୍ୟରେ ରୋଷାଇ କାର୍ଯ୍ୟ ସାରି ଦେଉଛି ।

( ସ୍ତ୍ରୀ ଚୂଲ୍ଲି ଲଗାଇବାକୁ ଉଦ୍ୟତ ହେଲି )

ହରି—ଥାଉ ଥାଉ ସେ ଚକଣିଆ କଥା । ଭୋକରେ ଖଟି ଖଟି ହାଲିଆ ହୋଇ ଘରକୁ ଆସିଲି ବେଳକୁ କାଠ ଚୂଲ୍ଲୀକୁ ଯାଉଛି । ଏବେ ତୁମର ମା' ଶ୍ରୀ ଅରବିନ୍ଦଙ୍କୁ ଛାଡ଼ିବ କି ନାହିଁ ? ମୋତେ ପ୍ରଥମେ ଜବାବ ଦିଅ । ତାହା'ଲେ ମୁଁ ଯାଇ ଘରେ ପାଣି ଛୁଇଁବି । (ବୋଉ ପ୍ରତି) ତୁ ଯା ବୋଉ, ଟିକିଏ କ୍ଷୀର ଫିର ପିଇ ଶୋଇପିବୁ ଯା ।

ହରିବୋଉ—(କୁନ୍ଥେଇ କରି ଉଠି) ହଁରେ ପୁଅ ମୁଁ ଆଉ ବସିପାରିବି ନାହିଁ···ଯାଉଛି ଶୋଇବି । ବୋହୂର ଅମୃତ ବଚନରେ ତ ପେଟ ପୂରି ଯାଇଛି । ଆଉ ଖାଇବି କଣ ?

( ହରିବୋଉର ପ୍ରସ୍ଥାନ )

ହରି—ତୁମେ କାହିଁକି ଏ ଭଣ୍ଡାମୀ କରୁଛ ମୋତେ କହିଲ ? ଘର ଦାମ ଦାମ ଫୋପାଡ଼ି ପାଠଚକ୍ରରେ ଆଖି ବୁଜିଲେ କ'ଣ ଭଗବାନ ମିଳିଯିବେ ?

ବୋହୂ—ତୁମେ ମତେ ଯେତେ ଗାଳିଦିଅ ପଛେ ପାଠଚକ୍ର ଯିବାକୁ ନିଷେଧ କଲେ ମୁଁ ବନ୍ଦ୍ରପାରିବ ନାହିଁ, କାରଣ ମଣିଷ ଏ ପୃଥିବୀରେ ଜୀବନଧାରଣ କରିଛି କାହାପାଇଁ, ଯେ ପର୍ଯ୍ୟନ୍ତ ଏ ଜୀବନର ଲକ୍ଷ୍ୟ ପ୍ରତି ଆମ୍ଭେମାନେ ଅଚେତନ ରହିଛୁଁ, ଏ ଘର ସଂସାର, ପରିବାରର ମୂଲ୍ୟ କ'ଣ ?

ହରି—ଫେରେ ସେହି ବଡ଼ ବଡ଼ ସାହିତ୍ୟକ କଥା ? ମନେ ମନେ ଗୋଟିେ ବଡ଼ ପଣ୍ଡିତ ବୋଲାଇଲଣି ?
ଜୀବନର ଲକ୍ଷ୍ୟ ! ଜୀବନର ଲକ୍ଷ୍ୟ !!
ଘରେ ସବୁ ଭାତ, ଲୁଣ, ଟଙ୍କା, ପଇସା ପ୍ରସ୍ତୁତ ହୋଇ ରହିଛି ବୋଲି ମନଇଚ୍ଛା ଖୁସିରେ ଖାଇପିଇ ପାଠଚକ୍ରରେ ଯାଇ ଝିଙ୍କେଇ ହେଉଛ ।

ବୋହୂ—ଓଃ··· । କ'ଣ ତୁମେ କହି ଯାଉଛ ?

ହରି—ଆମ ତିନିପୁରୁଷ ବାପ ଗୋସାଇଁବାପ ଠାରୁ ଆରମ୍ଭ କରି ଜୀବନର ଲକ୍ଷ୍ୟ ବିଷୟରେ ସଚେତନ ହୋଇ କାହାର କଣ ଗଳା ବାହାରି ଯାଇଛି । ଆଜି···ତୁମେ ଆସି ନୂଆକରି ଶୁଣାଉଛ ଜୀବନର ଲକ୍ଷ୍ୟ । ମଣିଷ ସଂସାରକୁ ଆସିଛି ତାରି ସଂସାର କରିବା, ଖାଇବା, ପିଇବା ମଉଜ୍ ମଜ୍‌ଲିସ୍ କରିବା ଶେଷରେ ଦିନେ ବିଦାୟ ନେବା । ଲକ୍ଷ ପକ୍ଷ ଆଜି ଦିନେ ଉଚ୍ଚାରଣ କରିବ ତ ଫେରେ ଦେଖିବ ।

ବୋହୂ—ବୁଝିଲ, ଯେଉଁ ଯୁଗକଥା ତୁମେ ମୋତେ କହୁଛ, ଯେଉଁ ଲୋକମାନଙ୍କ କଥା ତୁମେ ଶୁଣାଉଛ, ସେ ଦିନ ବହୁତ ପଛରେ ପଡ଼ି ରହିଲଣି । ଆଧୁନିକ ଯୁଗରେ ଶ୍ରୀମା, ଶ୍ରୀଅରବିନ୍ଦ ଯେଉଁ ନୂତନ ଅତିମାନସ ଆଲୋକ ଏ ପୃଥିବୀ ପୃଷ୍ଠରେ ଉଦ୍‌ଭାସିତ କରିଛନ୍ତି, ଯେ ଅନ୍ଧାରିଆ ଘରେ କବାଟ କିଳି ନିଘୋଡ଼ ନିଦରେ ଶୋଇଛି, ତା ପାଖରେ ସେ ଆଲୁଅ ପହଞ୍ଚିବ କିପରି ?

ହରି—(ଗୋଡ଼ରୁ ଯୋତା ଉଠାଇ) ଚୁପ୍‌କର, ଚୁପ୍‌କର କହୁଛି । ଆଉ ସେ ବଡ଼ ବଡ଼ କଥା କୁହନା, ପାଟି ଫିଟାଇଲେ ଏ ଯୋତାରେ ତୁମ ଗାଲ ସେକିଦେବି ।

ବୋହୂ—ଏଇ ତୁମର ଶିକ୍ଷା ? ଏଇ ତୁମର ଜ୍ଞାନ ? ମଣିଷ ପ୍ରତି କପରି ବ୍ୟବହାର କରିବାକୁ ହୁଏ ତୁମେ ଜାଣନା । ଯେଉଁ ଶିକ୍ଷାର ଆଦର୍ଶରେ ତୁମେ ଗଢ଼ି ହୋଇନାହିଁ, ସେପରି ଡ଼ିଗ୍ରିଧାରୀ ଜଣେ ଆଧୁନିକ ଯୁବକ ହୋଇ ଚାକିରୀ କରି ଖାଲି ପଶୁପରି ଖାଇପିଇ ବଞ୍ଚିବା ପାଇଁ ଯେଉଁ ଆଦର୍ଶ ଦେଖାଉଛ, କ୍ଷୁଦ୍ର ଅହଂର ଗଣ୍ଡି ଭିତରେ ଯେଉଁ ସଂସାର ଆବଦ୍ଧ, ସେଥିରେ ମୁଁ କାମ କରିବାକୁ ଚାହେଁନା, ଚେତନାର ସଂପ୍ରସାରଣ ନହେଲେ ଓ ତାହା ବିଶ୍ୱ-ଚେତନା ସହ ଏକାକାର ନହେଲେ ସଂସାରରେ ଏ ଜୀବନ ରଖିବାର କି ଅର୍ଥ ଅଛି ଯେ ? ସେ ଜୀବନ ମୁଁ ଚାହେଁନା । ବଣ ଜଙ୍ଗଲରେ ପଶୁ ପକ୍ଷୀଙ୍କର ଘର ନାହିଁ, ଚାକିରୀ ନାହିଁ, ବଞ୍ଚିବାର ପ୍ରଣାଳୀ ସେମାନଙ୍କୁ ଅଜଣା, ସେମାନେ ବି ଜୀବନ ଧାରଣ କରିଛନ୍ତି । ମଣିଷ ଚାରିଟି କାନ୍ଥ ଘେରରେ କେହି ଇଟାର, କେହି ମାଟିର, ଅବା କେହି ପଥରର, କେହି ଚାଳଘରେ, କେହି କୋଠାଘରେ, ଅବା କେହି ପ୍ରାସାଦରେ, କେହି ଶାଗଭାତ, ଅବା କେହି ରାଜକୀୟ ଖାଦ୍ୟ ଖାଇ, କେହି ସାଧାରଣ ବସ୍ତ୍ର, ଅବା କେହି ମହାର୍ଘ ପୋଷାକ ପରିଚ୍ଛଦ ପରିଧାନ କରି ଜୀବନ ଧାରଣ କରିଛନ୍ତି । ଏଇ ଜୀବନ ଧାରଣର ପ୍ରଣାଳୀ ମଣିଷ ଓ ପଶୁ ପାଇଁ ସମାନ ।

ହରି— ରଖ, ରଖ ତୁମର ପାଠ, ମଣିଷ ପଶୁ ସମସ୍ତେ ଏକ ?

ବୋହୂ—ହଁ ସେଇଆ, ଏ ମଣିଷ ଜାତି ପଶୁଠାରୁ କେଉଁ ଗୁଣରେ ଶ୍ରେଷ୍ଠ ? ଯେ ପର୍ଯ୍ୟନ୍ତ ଏ ମାନବ ସମାଜ ଟିକିଏ ବୁଝିବାକୁ ଇଚ୍ଛା କରିନାହିଁ ସେତେଦିନଯାଏଁ ଖାଲି ଏଇ ଘର ନୁହେଁ, ସମଗ୍ର ପୃଥିବୀରେ ଅଶାନ୍ତିର ଦାବାନଳ ଜଳିବ ହିଁ ଜଳିବ— ଏଥିରେ ସନ୍ଦେହ ନାହିଁ । ଜଙ୍ଗଲରେ ଗଛର ପତ୍ରରେ ଫୁଲର ପାଖୁଡ଼ାରେ ବିଷ ନାହିଁ । ସାପ ଦାନ୍ତରେ ବିଷ ଥିଲେ ମଧ୍ୟ ସେ

ବିନା କାରଣରେ ତା'ର ଜୀବନ ବିପନ୍ନ ନହେବା ପର୍ଯ୍ୟନ୍ତ ତାହାକୁ ଆକ୍ରମଣ କରେନାହିଁ; କିନ୍ତୁ ବହୁ ଦୁର୍ଲ୍ଲଭ ଜନ୍ମ ପାଇଥିବା ମଣିଷ ଜାତି ବିନା କାରଣରେ ଆଜି ପରସ୍ପର ଭିତରେ ବାଦାନୁବାଦ, କଳହ, ଅଶାନ୍ତି, ବିକ୍ଷୋଭ ସବୁକିଛୁ ସୃଷ୍ଟି କରି ଚାଲିଛି । ପୃଥିବୀ ଆଜି ହାହାକାରମୟ ମରୁଭୂମିରେ ପରିଣତ ହୋଇଛି । ମଣିଷ ଭିତରେ ଯେଉଁ ଉତ୍କଟ ବିଷ, ସେହି ବିଷକୁ ଅମୃତରେ ପରିଣତ କରିବା ପାଇଁ ଶ୍ରୀମା, ଶ୍ରୀଅରବିନ୍ଦ ଆଜି ପୃଥିବୀ ପୃଷ୍ଠରେ ଛିଡ଼ାହୋଇ ଏକ ନୂତନ ଯୁଗର ଆଗମନୀ ଘୋଷଣା କରି ପୃଥିବୀର ପ୍ରତ୍ୟେକଟି ମାନବିକୁ ହାତଠାରି ଡାକୁଛନ୍ତି । ପରିବାର ଭିତରେ ଯେଉଁ ଅଶାନ୍ତି, ପୃଥିବୀରେ ଯେତେ ରକମର ଅଶାନ୍ତି, ଦୁଃଖ, କଳହ, ବିବାଦ ମନୁଷ୍ୟ ଜୀବନରେ ଯେତେ କିଛି ଅସୁବିଧା, ଯେତେ ଦୁଃସହ ଦୁଃଖର ବୋଝ ମଣିଷ ଜାତି ଯୁଗ ଯୁଗ ଧରି ବୋହି ବୋହି ଚାଲିଛି କାହିଁକି ?

ଏ ପ୍ରଶ୍ନ ଯେ ପର୍ଯ୍ୟନ୍ତ ତା ଭିତରେ ଫୁଟିନାହିଁ ସେ ନିଶ୍ଚିତ ଭାବରେ ଶ୍ରୀମା, ଶ୍ରୀଅରବିନ୍ଦଙ୍କୁ ସମାଲୋଚନା କରିବ ହିଁ କରିବ । ଦୁଃଖ କି ଉପାୟରେ ସୁଖରେ ପରିଣତ ହୋଇପାରେ, ନୈରାଶ୍ୟ ଆଶାରେ, ଅଭାବ ପ୍ରାଚୁର୍ଯ୍ୟରେ, ରୋଗ-ଆରୋଗ୍ୟରେ, ନିରାନନ୍ଦ ଆନନ୍ଦରେ, ମିଥ୍ୟା ସତ୍ୟରେ, ଅନ୍ଧକାର ଆଲୋକରେ ତଥା ମୃତ୍ୟୁ ଅମୃତରେ ପରିଣତ ହୋଇପାରେ—ତାର ନିଗୂଢ଼ ସନ୍ଧାନ ଦେଇଛନ୍ତି ଏକମାତ୍ର ମହାଯୋଗୀ ଶ୍ରୀଅରବିନ୍ଦ ।

( ଏ ସମୟେ ନେତାର ପ୍ରବେଶ )

ନେତା—ହଁ...ହଁ...ମହାଯୋଗୀ ଶ୍ରୀ ଅରବିନ୍ଦ ।

ହରି—କିଏ ନେତା ! ତୁ ପୁଣି ଆସି ହାଜର ।

ନେତା—ତୁମେ ନୂଆବୋଉଙ୍କୁ ଏପରି କ'ଣ କହିଯାଉଛ ହରିଭାଇ ! ସେ କ'ଣ ଭୁଲ୍ କାମ କରିଛନ୍ତି ? ଶ୍ରୀ ଅରବିନ୍ଦଙ୍କୁ ତୁମେ ବୁଝିନାହଁ ଭାଇ । ଏ ପୃଥିବୀରେ ଏକ ନୂତନ ଯୋଗ ସୃଷ୍ଟି କରିବା ପାଇଁ ଶ୍ରୀ ଅରବିନ୍ଦଙ୍କର ଜନ୍ମ । ସେ କହନ୍ତି—ମଣିଷ

ଭଗବାନଙ୍କର ସନ୍ତାନ । ଭଗବାନଙ୍କର ସନ୍ତାନ ଯେପର୍ଯ୍ୟନ୍ତ ଭଗବାନ ନ ହୋଇଛି, ସେ ପର୍ଯ୍ୟନ୍ତ ଦୁଃଖର ସକଳ ବୋଝ ଜନ୍ମ ଜନ୍ମ ଧରି ବୋହି ଚାଲିବ ହିଁ ଚାଲିବ । ବହୁତ ମଠ ମନ୍ଦିର ଏ ପୃଥିବୀରେ ପ୍ରତିଷ୍ଠିତ ହୋଇଛି । ବେଦ, ଉପନିଷଦ, ପୁରାଣ, ଗୀତା, ଭାଗବତ ମହା ମହା ଗ୍ରନ୍ଥମାନ ରଚନା କରାଯାଇଛି । ବହୁ ଅବତାର ସାଧୁ ସନ୍ଥ, ମୁନି ଋଷି, ପୃଥିବୀ ପୃଷ୍ଠକୁ ଆସିଛନ୍ତି, କିନ୍ତୁ ଆଜି ଏ ପୃଥିବୀର ଅବସ୍ଥାକୁ ଚାହିଁଲେ ସହଜରେ ଅନୁମିତ ହେଉଛି, ପ୍ରକୃତରେ ମଣିଷ ଜାତିର ହୋଇଛି କ'ଣ ?

( ହରି ଉତ୍ତ୍ୟକ୍ତ ଅବସ୍ଥାରେ ନିଜେ ଯାଇ ଚୂଲି ଉପରେ ହାଣ୍ଡି ରଖି ପାଣି ଢାଳିବାକୁ ଉଦ୍ୟତ )

ହରି—ନେତି ! ତୋ ନୂଆବୋଉର ଶୁଖିଲା ଭାଷଣରେ ମୋର ଅଫିସ୍‌ର କ୍ଲାନ୍ତି ମେଣ୍ଟିବ ନାହିଁ କି ଭୋକ ମଧ୍ୟ କମିଯିବ ନାହିଁ । ତୋ ନୂଆବୋଉକୁ ବୁଝାଇଦେ ନାରୀ ଜାତିର ଜନ୍ମ ଖାଲି ଚୂଲିହାଣ୍ଡି ପାଇଁ । ଜଗତ, ଜୀବନ, ଦୁଃଖ, ଭଗବାନ ଏସବୁ ଶୁଖିଲା କଥାରେ କ'ଣ ପେଟ ପୂରିବ ?

ଏ ପ୍ରକାର ଏକଜିଦିଆ ମନୋଭାବକୁ ଆଜିଠାରୁ ଛାଡ଼ିବାକୁ ହେବ ।

ନେତି ଭାଇ ! ନାରୀ ଜାତିକୁ ଆପଣ ଅପମାନ ଦେଉଛନ୍ତି କାହିଁକି ? କିଏ ନାରୀ, କିଏ ପୁରୁଷ, ଭଗବାନଙ୍କର ଦୁଇଆରି ଉଭୟେ ହୋଇଛନ୍ତି ବ୍ୟକ୍ତିସତ୍ତା ବିଶେଷ । ପୁରୁଷମାନଙ୍କର ଔଦ୍ଧତ୍ୟ, ଅବିଚାର ଏକତରଫା ମିଛ ନାରୀ ଯେତେଦିନ ସହି ଆସିଥିଲା—ଆସିଥିଲା । ଆଉ ଏଣିକି ହୋଇ ପାରିବ ନାହିଁ । ମା'ଙ୍କର ପଥ ହେଉଛି ଆଲୋକର ପଥ, ଏଥିରେ ଅନ୍ଧକାରର ସ୍ଥାନ ନାହିଁ ।

( ପ୍ରକୋଷ୍ଠରେ କାନ୍ଥରେ ଥିବା ଶ୍ରୀମା, ଶ୍ରୀ ଅରବିନ୍ଦଙ୍କ ପ୍ରତିକୃତି ପାଖରେ ବୋହୂ ଧ୍ୟାନସ୍ଥ ହୋଇ ଛିଡ଼ା ହୋଇଛି, ଆଖିରୁ ତା'ର ଲୁହ ବୋହି ଯାଉଛି । )

ହରି—ନେତି ! କ'ଣ ନିନ୍ଦ ଭାଉଜ ମୋତେ ମିଳିତ ଆକ୍ରମଣ କରିବ ନା କ'ଣ ?

ନେତ—କେବଳ ଆମେ ନୁହେଁ···ସମଗ୍ର ନାରୀଜାତି ବର୍ତ୍ତମାନର ଅନ୍ୟାୟ ବିରୁଦ୍ଧରେ ମସ୍ତକ ଉତ୍ତୋଳନ କରିବେ । ନାରୀ କାହିଁକି ପୁରୁଷର ଅଧୀନତା ସ୍ୱୀକାର କରିବ ?

ଯେଉଁ ଯୌତୁକ-ଲୋଭୀ ପୁରୁଷ ସମାଜରେ ନାରୀକୁ କ୍ରୀତ-ଦାସୀ ପରି ଖଟାଇବାକୁ ଚାହେଁ, ସେ ପ୍ରକାର ପୁରୁଷମାନଙ୍କୁ ମୁଁ ପଶୁତୁଲ୍ୟ ଜ୍ଞାନ କରେ ।

ହରି—ହଉ ଦେଖିବା, ବିବାହ ପରେ ତୋର ଏ ଆଣ୍ଠ ରହିଲେ ହେଲା ।

ନେତ –ବିବାହ ! ଧିକ୍ ଏହି ପଶୁ ବିବାହକୁ । ଶତଧିକ୍ ଏଇ ମାଙ୍କଡ଼ ଖେଳକୁ । ଆମେ ମାତ୍ର ସନ୍ତାନମାନେ ସମାଜକୁ ଦେଖାଇ ଦେବାକୁ ଚାହୁଁ—ବିବାହର ତାତ୍ତ୍ୱିକ ଅର୍ଥ କ'ଣ ଏବଂ ତାହା ଖାଲି ବିନା ଯୌତୁକରେ, ବିନା ଖର୍ଚ୍ଚରେ, ବିନା ଭୋଜଭାତ, ବିନା ସାମାଜିକ ରୀତିରେ, ଏକମାତ୍ର ଆଧ୍ୟାତ୍ମିକ ଭିତ୍ତିରେ ସମ୍ପାଦିତ ହୋଇପାରେ ।

ହରି—ଆଲୋ ରଖେ ସେ ଝେଙ୍ଗର ଗୁଡ଼ାକ । ତୋ ନୂଆବୋଉ ପରି ଶାଶୁଘରର ଚୁଲି ମୁଣ୍ଡରେ ଝେଙ୍ଗର କାଢ଼ିବୁ । ଝିଅ ଜନମ ତ ପର ଘରକୁ । ପିଲା କାଖେଇବା, ସେବେଇ କରିବା ପାଇଁକି ତୁମର ଜନ୍ମ ।

ନେତ—ଛାଇ ! ଏତେ ନୀଚ, ଏତେ ହୀନ ତୁମେ ! ଯେ ଅନ୍ୟକୁ ସ୍ୱାଧୀନତା ଦେଇ ନ ଜାଣେ, ସେ ଜାଣିଶୁଣି ନିଜର ସ୍ୱାଧୀନତାକୁ ବିପନ୍ନ କରେ । ନାରୀ ଯୁଗେ ଯୁଗେ ପୁରୁଷକୁ ସାହାଯ୍ୟ କରି ଆସିଛି ଆଧ୍ୟାତ୍ମିକ ଜୀବନର ବିକାଶ ଦିଗରେ । ବେଦ ଯୁଗରୁ ପୁରାଣ ଯୁଗ ପର୍ଯ୍ୟନ୍ତ ସବୁ ଯୁଗରେ ନାରୀର ଆଦର୍ଶ, ନାରୀର କର୍ମତତ୍ପରତା ବନ୍ଦନୀୟ ହୋଇଛି ।

ବୋହୂ—(ସ୍ୱଗତ) ହାୟ ମାତୃ ଜାତି ! ଚିରଦିନ ଅନ୍ଧକାର ଭିତରେ ଘର କରି ନିଜେ ଆଜି ସତେ ଯେମିତି ଅନ୍ଧାର ହୋଇ ଉଠିଛି । ସେ ଅନ୍ଧକାର ଭିତରେ ରହିବା ଯୋଗେ ସମଗ୍ର ପୃଥିବୀ ଯେ ମହା ଅନ୍ଧକାର ଭିତରେ ବୁଡ଼ୁଛି ଏ କଥା ବୋଧହୁଏ ମୁଷ୍ଟିମେୟ ଲୋକ ଜାଣନ୍ତି । ଯେଉଁ ପରିବାରରେ ମାତା-ଭଗିନୀ ବା ବଧୂ,

ଭୂଳର ସମ୍ମାନ ନଥାଏ ସେ ଗୃହ, ପରିବାର, ସମାଜ ଚିରଦିନ ନରକରେ ଅବହେଳିତ ଅବସ୍ଥାରେ ପଡ଼ିଥାଏ ।

ହରି—ଯେଉଁ ଭୂତ, କାଳେସୀ ତୁମକୁ ଲଗିଛନ୍ତି, ତାହା କେବେ ଛାଡ଼ିବ କେବଳ ଭଗବାନ ହିଁ ଜାଣନ୍ତି । ଏ ଘରେ ଆଜି ତୁମେ ଯେଉଁ ତାଣ୍ଡବ ଲୀଳା ସୃଷ୍ଟି କଲଣି ହିନେନା ଦିନେ ଏହାର ଅବସାନ ଘଟିବ ହିଁ ଘଟିବ ।

ବୋହୂ—ଭୂତ କାଳସୀ ମୋ ଭିତରେ ନା ତୁମ ଭିତରେ, ଶ୍ରୀ ଅରବିନ୍ଦଙ୍କର ଯଦି ଖଣ୍ଡିଏ ପୁସ୍ତକ ତୁମେ ଅଧ୍ୟୟନ କରନ୍ତନା ତା'ହେଲେ ପରିଷ୍କାର ବୁଝି ପାରନ୍ତା । ଇଏ ଘରଛଡ଼ା ଯୋଗ ନୁହେଁ । ଇଏ ଘରକରା ଯୋଗ । ସମଗ୍ର ପୃଥିବୀ ସମ୍ମୁଖରେ ପଣ୍ଡିଚେରୀର ଶ୍ରୀ ଅରବିନ୍ଦ ଆଶ୍ରମ ଆଜି ଯେଉଁ ଆଦର୍ଶ ଉପସ୍ଥାପିତ କରୁଛି, ସେଥିରୁ ସ୍ପଷ୍ଟ ବୁଝାପଡ଼ୁଛି ଯେ ତାଙ୍କର ଯୋଗ ଘର ଭାଙ୍ଗିବା ନୁହେଁ, ଘର ଗଢ଼ିବା ।

ନେତି—ସେ ଘର ଅନ୍ତର ଘର, ପୃଥିବୀରେ ବାହ୍ୟ-ଜଗତରେ ବହୁ ସ୍ଥାପତ୍ୟମଣ୍ଡିତ ବିରାଟ ବିରାଟ ପ୍ରାସାଦ ନିର୍ମିତ ହେଲାଣି; କିନ୍ତୁ, ସେଥିରେ ହୋଇଛି କ'ଣ ? ଆଜି ମା' ଆସିଛନ୍ତି ଭିତର ଜଗତରେ ଭିତର ଘର ତୋଳିବାକୁ । ଯେ ପର୍ଯ୍ୟନ୍ତ ଆମର ଭିତର ଘର ତୋଳା ନ ହୋଇଛି, ଯେ ପର୍ଯ୍ୟନ୍ତ ଆମର ଭିତର ରହସ୍ୟ ବୁଝା ନ ଯାଇଛି, ସେ ପର୍ଯ୍ୟନ୍ତ ଏ ଘର ସଂସାର କରିବାର ମୂଲ୍ୟ କ'ଣ ?

ବୋହୂ—ବହୁ ଭାଗବତ, ଗୀତା, ପୋଥି ପୁରାଣ ପଢ଼ା ସରିଲାଣି । ବହୁ ତୀର୍ଥ, ମନ୍ଦିର, ମସଜିଦ ବୁଲା ସରିଲାଣି । କିନ୍ତୁ ମଣିଷ ଜାତିର ହୋଇଛି କ'ଣ ?

ନେତି—ଭାଇ ଭାଇକୁ ହିଂସା କରୁଛି, ପଡ଼ୋଶୀ ପଡ଼ୋଶୀକୁ ହତାଦର କରୁଛି, ବନ୍ଧୁ ବନ୍ଧୁ ଭିତରେ ମନୋମାଳିନ୍ୟ, ନାରୀ ଜାତି ପ୍ରତି ଘୋର ଅସମ୍ମାନ, ଏ ସବୁ କାହିଁକି ଦେଖା ଦେଇଛି ।

ବୋହୂ—ଏ ପୃଥିବୀରେ ଖୁବ୍ ଦୁରୂହ ସମସ୍ୟା ଠାରୁ କ୍ଷୁଦ୍ର ସମସ୍ୟା ପର୍ଯ୍ୟନ୍ତ ଯେତେ ଯେତେ ସମସ୍ୟା ପୂରି ରହିଛି, ଯେତେ ଯେତେ

ନୂଆ ନୂଆ ସମସ୍ୟା ମୁଣ୍ଡ ଟେକୁଛି ତା'ର ସମାଧାନ ଦେଇଛନ୍ତି ଏକମାତ୍ର ମହାଯୋଗୀ ଶ୍ରୀ ଅରବିନ୍ଦ ।

ନେତି—ଠିକ୍ ଦ୍ୱିପ୍ରହର ମଧ୍ୟାହ୍ନ ସୂର୍ଯ୍ୟ କିରଣରେ କିରୋସିନ୍ ବତି ଜାଳିବା ଯେପରି ହାସ୍ୟାସ୍ପଦ, ଆମ ହରିଭାଇ ନୂଆବୋଉଙ୍କୁ ନେଇ ରାଧାକୃଷ୍ଣଙ୍କର ମୂର୍ତ୍ତି ସାମନାରେ ଛିଡ଼ା କରାଇ ଗୀତା, ଭାଗବତ ବୁଝେଇବା ସେହିପରି ହାସ୍ୟାସ୍ପଦ ।

ହରି—କେମିତି ?

ନେତି—ଯଦି ଯୌତୁକ ଲୋଭରେ ତୁମେ ନୂଆବୋଉଙ୍କୁ ଏ ଘରକୁ ଚିର ସଙ୍ଗିନୀ ରୂପେ ବରଣ କରି ଆଣିଛ ବୋଲି ଭାବୁଥାଅ ତାହାହେଲେ ଘୋର ଭୁଲ କରିଛ । ସହଧର୍ମିଣୀ ନ ଭାବି ତାଙ୍କୁ ଯଦି ସହକର୍ମିଣୀ ଭାବରେ ଗ୍ରହଣ କରିବାକୁ ଏବେ ଇଚ୍ଛା ପୋଷଣ କର, ତା'ହେଲେ ଶ୍ରୀ ଅରବିନ୍ଦଙ୍କୁ ଗ୍ରହଣ କଲେ ନୂଆବୋଉ ତୁମର ପ୍ରକୃତ ଆତ୍ମାର ସାଥି ହୋଇ ପାରିବେ ।

ବୋହୂ—ଆମର ବିବାହକୁ ଆମର ସମାଜ ଏବଂ ମଣିଷ ଯେଉଁ ଦୃଷ୍ଟିରେ ଦେଖେ, ଯେଉଁ ଦୃଷ୍ଟିରେ ବିଚାର କରେ, ମା'ଙ୍କର ଗୋଟିଏ ଲେଖାରୁ ଆମେ ସବୁ ବୁଝି ପାରିବା ।

( ଏଇ ସମୟରେ ନେପଥ୍ୟ ମା'ଙ୍କ ମୁଖନିଃସୃତ ବାଣୀ ଭାସି ଆସିଲା ।)

ବାଣୀ—"ତୁମର ମାନସିକ ସ୍ତରକୁ ଏକୀଭୂତ କରିବା, ତୁମ ଚିନ୍ତାଗୁଡ଼ିକୁ ସଙ୍ଗଠିତ କରି ପରସ୍ପର ପ୍ରତି ଅନୁପୂରକ ଭାବ ପୋଷଣ କରିବା, ତୁମର ବୌଦ୍ଧିକ ପ୍ରାକ୍ ସ୍ତର ଓ ଆବିଷ୍କାର ତୁମ ମଧ୍ୟରେ ଭାଗ ଭାଗ କରି ଦେବା । ଗୋଟିଏ ଶବ୍ଦରେ କହିଲେ ତୁମର ମାନସିକ କ୍ରିୟାବଳୀରେ ପିଣ୍ଡକୁ ଏକପ୍ରକାର ବିସ୍ତାରିତ କରିବା ମଧ୍ୟରେ ଏବଂ ସମାନ ଅବସ୍ଥା ଲାଭ କରିବା ଏବଂ ଦୁହେଁ ଏକ ସମୟରେ ଏକପ୍ରକାର ସମ୍ପୂର୍ଣ୍ଣତାରେ ପରିପୁଷ୍ଟ ହୋଇଯିବା ଏହା ଉତ୍ତମ, ଏହା ସମ୍ପୂର୍ଣ୍ଣ ଆବଶ୍ୟକ କିନ୍ତୁ ଏହା ବିଶେଷ କିଛି ନୁହେଁ ।

ଏ ସବୁର ପରିଶେଷରେ ସମ୍ପୂର୍ଣ୍ଣ ନମ୍ରରେ କେନ୍ଦ୍ରୀଭୂତ ଭାବରେ ପ୍ରାରମ୍ଭର ଚରମ ସୀମାରେ ସବୁରେ ଏକ ଦିବ୍ୟ ସତ୍ୟ ବିଦ୍ୟମାନ । ଯାହା ହେଉଛି ଗୋଟିଏ ଶାଶ୍ୱତ ଆଲୋକ, ଜନ୍ମଗତ ସମସ୍ତ ଧାରଣା ମୁକ୍ତ, ଦେଶ, ପରିପାର୍ଶ୍ୱ, ଶିକ୍ଷା, ମୂଳସତ୍ୟ ତଥ୍ୟ ସମସ୍ତ ହେତୁ ଏବଂ ଆମ୍ଭମାନଙ୍କର ଆଧ୍ୟାତ୍ମିକ ଅଗ୍ରଗତିର ଗୁରୁ—ଏଇ ହେଉଛି ଆମ୍ଭମାନଙ୍କ ଜୀବନରେ ଏକ ନିର୍ଦ୍ଦିଷ୍ଟ ଆଲୋଡ଼ନ ଆଣନ୍ତି । ଏଇ ହେଉଛି ସେହି ଯେ ଆମର ଭାଗ୍ୟନିୟନ୍ତା, ଏହା ସେହି ଚେତନା ମଧ୍ୟରେ ରହିଛନ୍ତି ଯେଉଁଥିରେ ତୁମେ ଏକୀଭୂତ ହେବା ଉଚିତ । ଅନ୍ତଃପ୍ରସାରେ ଏକୀଭୂତ ହେବା ଏବଂ ଉପାସ୍ୟମାନ ହେବା, ସମାନ ପଦକ୍ଷେପରେ ଆଧ୍ୟାତ୍ମିକ ପଥରେ ଅଗ୍ରସର ହେବା, ଏହା ହିଁ ହେଉଛି ସୁଦୃଢ଼ ଏକତାର ଗୋଟିଏ ରହସ୍ୟ ।

ନେତ—ଏଥିପାଇଁ ଆମକୁ ଆଜୀବନ ସଂଗ୍ରାମ କରିବାକୁ ପଡ଼ିବ । ସେ ମହା ସଂଗ୍ରାମରେ ଯେଉଁଦିନ ଆମେ ଜୟଯୁକ୍ତ ହେବା ସେଦିନ ବିବାହ ହେବ ଧନ୍ୟ ଏବଂ ପୃଥିବୀ ହେବ ଧନ୍ୟା ।

ବୋଧୂ—ଖାଲି ପଲ୍ଲୀ ବା ସହର ନୁହେଁ, ମାତୃ ଜାତିର କାନେ କାନେ ଶ୍ରୀ ଅରବିନ୍ଦଙ୍କର ବାଣୀ ଯେଉଁଦିନ ପହଞ୍ଚିପାରିବ ଏବଂ ଯେଉଁ-ଦିନ ପ୍ରତ୍ୟେକ ଏ ବୈବାହିକ ଜୀବନର ପ୍ରକୃତ ସାର୍ଥକତା ଉପଲବ୍ଧି କରିପାରିବେ, ସେଦିନ କେବଳ ଏ ଘରଟି ନୁହେଁ, ସମଗ୍ର ପୃଥିବୀ ହସିବ, ପୃଥିବୀ ହେବ ସ୍ୱର୍ଗ, ମାନବ ହେବ ଦେବତା, ଯାହାର ରହସ୍ୟର ଚାବିକାଠି ରହିଛି ସ୍ୱୟଂ ଦିବ୍ୟ-ଜନନୀ ମା'ଙ୍କ ହାତରେ ।

ହରି—(ଆଶ୍ଚର୍ଯ୍ୟ ହୋଇ) ମା'ଙ୍କ ହାତରେ !

ନେତ—ହିଁ ହିଁ ମା'ଙ୍କ ହାତରେ । ମା'ଙ୍କୁ ଅନ୍ତର ଖୋଲି ମା' ବୋଲି ଡାକି ପାରିଲେ, ପରିବର୍ତ୍ତନ ପାଇଁ ତାଙ୍କ ପଦତଳେ ଟିକେ ଲୋଟି ପଡ଼ିଲେ, ସେ ପରିବାରକୁ ଅମୃତମୟ ଦିବ୍ୟ ବୈକୁଣ୍ଠରେ ପରିଣତ କରି ପାରିବେ ।

ବୋହୂ—ସେଦିନର ବିବାହରେ ଯୌତୁକ ମାନଦଣ୍ଡ ନ ହୋଇ ପ୍ରକୃତ
ମାନଦଣ୍ଡ ହେବ ଆଧ୍ୟାତ୍ମିକତା, ସେ ଦିନ ଏ ବିବାହର ନାମ-
କରଣ ହେବ ସାର୍ଥକ ବା ନୂତନ ସୃଷ୍ଟି ।

ନେତ—ଯେ ପର୍ଯ୍ୟନ୍ତ ପାରିବାରିକ ଜୀବନ ଆଧ୍ୟାତ୍ମିକ ନ ହୋଇଛି,
ସେ ପର୍ଯ୍ୟନ୍ତ ଏ ପୃଥିବୀରେ ପରିପୂର୍ଣ୍ଣ ଚିରନ୍ତନ ସୁଖ, ଶାନ୍ତି,
ଆନନ୍ଦ ସଂପୂର୍ଣ୍ଣ ଅସମ୍ଭବ ।

ବୋହୂ—ମଣିଷ ଯେତେବେଳେ ଲକ୍ଷ୍ୟ ପ୍ରତି ସଚେତନ ହେବ, ସଜ୍ଞାନ
ହେବ ଏବଂ ତା'ର କେନ୍ଦ୍ରୀୟ ସତ୍ତା ଆତ୍ମାର ଆବିଷ୍କାର କରିବାକୁ
ଠିକ୍‌ଏ ଇଚ୍ଛା କରିବ, ସେତେବେଳେ ଖାଲି ଏ ପରିବାର ନୁହେଁ,
ସମଗ୍ର ପୃଥିବୀର କୋଟି କୋଟି ଗୃହ ହେବ ଏକ ବିରାଟ
ପରିବାର ।

ନେତି – ଭଗବାନଙ୍କ ଜୀବନରେ ପ୍ରକାଶ କରିବାର ଉଦ୍ଦେଶ୍ୟରେ ହେବ
ଆମ୍ଭମାନଙ୍କର ଆଧ୍ୟାତ୍ମିକ ବିବାହ ।

ହରି—ମୋର ଭୁଲ ଆଜ ମୁଁ ବୁଝି ପାରିଛି । ( ବୋହୂର ହାତ ଧରି
ପକାଇ ) ମୋତେ କ୍ଷମା ଦେବ ନି······?
ମୁଁ ଅଜ୍ଞାନତାରେ ବୁଢ଼ି ତୁମ ନିକଟରେ ଗୁରୁତର ଅପରାଧ
କରିଛି ।

ବୋହୂ—( ସ୍ୱାମୀର ହାତ ଧରି ପକାଇ ) ସତେ ! ତୁମେ ମୋତେ ବୁଝି-
ପାରିଛ ? ତୁମେ ସତ କହିଲ, ତୁମ ମା'ଙ୍କୁ ଚିହ୍ନି ପାରିଛ ?

ହରି—ଏଇ ନବଯୁଗକୁ ଚାଲ ସମସ୍ତେ ସ୍ୱାଗତ ଜଣାଇବା, ତୁ ଯା ନେତି,
ତୁମର ମହିଳା ପାଠଚକ୍ରରେ ଜଣାଇଦେ, ଏଣିକି ଝିଅ
ବୋହୂମାନେ ସଂପୂର୍ଣ୍ଣ ମୁକ୍ତ ଭାବରେ ମାତୃ କାର୍ଯ୍ୟ କରିବା ପାଇଁ
ପ୍ରସ୍ତୁତ ହୁଅନ୍ତୁ ।

( ଏହି ସମୟରେ ଟିଫିନ କ୍ୟାରିଅରରେ ରୁଟି ତର୍କାରି ଆଦି
ଧରି ନେତିବୋଉର ପ୍ରବେଶ )

ନେତିବୋଉ—ଆରେ, ତୁମେମାନେ ନ ଖାଇ ନ ପିଇ କ'ଣ ଏତେବେଳ
ଯେ ଗପ ଜମାଇଛ । ଏଇ ନିଅ ତୁମ ପାଇଁ ରୁଟି ତର୍କାରି କରି
ଆଣିଛି ଖାଇନିଅ ।

( ହରିବୋଉ ହସି ହସି ପ୍ରବେଶ )

ହରବୋଉ—ଆଉ ମୁଁ କାହିଁକ ରହାସ ବଦାଶ ମଠକୁ ଯିବାନ ? ମହାମିଳନରେ କ'ଣ ମୋର ଭାଗ ନାହିଁ କ ?

ହର—ତୁ ଶୋଇନଥିଲୁ କଲେ ବୋଉ ?

ହରବୋଉ—ସିନ୍ଦୁର ଫାଟି ଗୃହଆଡ଼େ ଖବର ପଡ଼ଲାଣି; ଆଉ ଶୋଇବା କ'ଣ, ଏଣିକ ପର ଉଠିବା ।

( ସମସ୍ତେ ହସି ହସି ଗାଇ ଉଠିଲେ )

ପରମୋ ପ୍ରବ୍ରେ ସତ୍ୟ, ନତ୍ୟ ତ୍ୱମେବ
କେବଳମ୍

ଅନୁବର୍ତ୍ତାମହେ ସତ୍ୟମ୍ ଅନୁଜବାମ
କେବଳମ୍

( ପରଦା ପତନ )



# ଜୀବନ-ଝଡ଼

ଝଡ଼ର ତରଣୀ ମୁହିଁ
ଝଡ଼େ ମୋ ଜୀବନ ବାହେ
ଆହ୍ଲାଦି ଗଲେ ଭସି
ମନେ ତ ଦକା ନ ଥାଏ ।

ଝଡ଼ ପରେ ସବୁ ଝଡ଼
ଘୁଞ୍ଚ ହୋଇଲାଣି ଦଡ଼
ନୂଆରଆ ସୁଏ ପଡ଼
ପାହାଡ଼େ ସେ ଧକ୍କା ଖାଏ
ଝଡ଼ର ତରଣୀ ମୁହିଁ
ଝଡ଼େ ମୋ ଜୀବନ ବାହେ ।

ଅନ୍ଧକାର ଶେଷ ନାଶି
ଅନ୍ଧକାର ଦଶ ଦିଶି
ଆଲୋକେ ପିବାକୁ ମିଶି
ଅନ୍ଧାର ସେ ପଥେ ଧାଏଁ
ଝଡ଼ର ତରଣୀ ମୁହିଁ
ଝଡ଼େ ମୋ ଜୀବନ ବାହେ ।

ଲୁହା ଭୁହା ତୋଫାନରେ
ଛିଡ଼ା ସବୁ ପାଲ ଥରେ
ଅଥଳକୁ କାତ ଡରେ
ନ ସରେ ତ ପଥ ହାସ୍ନେ !
ଝଡ଼ର ତରଣୀ ମୁହିଁ
ଝଡ଼େ ମୋ ଜୀବନ ବାହେ ।

ଦରିଆରେ ଅଣଲୃଣ
ଏ ଝଡ଼େ କେ ଯିବ ଆସ
ଧର ଝଡ଼ର ସାହସ
କାଳଜୟୀ ବୀର ପ୍ରାପ୍ୟେ
ଝଡ଼ର ଚରଣୀ ମୁଁ ଗୋ
ଝଡ଼େ ମୋ ଜୀବନ ବାନ୍ଧେ ।

ଅନ୍ଧାର ମୁଁ-କେଉଁ ସାନ
ଦେଇ ପ୍ରଭୁ ଦିବ୍ୟ ଜ୍ଞାନ
ପ୍ରେମେ କର ବଳୀୟାନ
ମହାନନ୍ଦେ ଆଗେ ଧାଏଁ
ଆଲୋକ ପିଆସୀ ମୁହିଁ
ଆଲୋକ ଜୀବନ ବୃନ୍ଦେଁ
ଝଡ଼ର ଚରଣୀ ମୁଁ ଗୋ
ଝଡ଼େ ମୋ ଜୀବନ ବାନ୍ଧେ ।



## ସଂକଳ୍ପ

ଆମେ, ଶପଥ କଲୁ ।
ମାଆ ନାମେ ଫୁଲବୁ
ମାଆକୁ ନ ଭୁଲିବୁ
ମାଆ ପଥେ ଚାଲିବୁ
ଶପଥ କଲୁ ।

ଆମେ, ଶପଥ କଲୁ ।...

ଦୈବ୍ୟ ଯା ତାରେ ସବୁ ବରିବୁ
ମୃତ୍ୟୁରେ ଅମୃତ କରିବୁ,
ଆଲୋକର ପଥେ ଆମେ ଯାତ୍ରୀ
ଅନ୍ଧାରେ କେବେ ନାହିଁ ଡରିବୁ ।

ଆମେ, ଶପଥ କଲୁ ।...

ନବଯୁଗେ ନବ ପୋଥି ଖୋଲିବୁ
ନବତାନେ ନବଗୀତ ବୋଲିବୁ
ଆସୁ ଯେତେ ଝଡ ଝଞ୍ଜା ଜୀବନେ
ଏକ ମନେ ଏକ ଲକ୍ଷ୍ୟେ ଚାଲିବୁ ।

ଆମେ, ଶପଥ କଲୁ ।...

ସୁନ୍ଦର ମହା ସତ୍ୟର ମନ୍ତ୍ର
ଅଭିଯାନେ ହେବୁ ଆମେ ବିଜୟୀ
ଯନ୍ତ୍ରୀ ସେ ଆମେ ସବୁ ଯନ୍ତ୍ର
ଆମର ନିୟନ୍ତା ଆମେ ନିଜେ ହିଁ ।

ଆମେ, ଶପଥ କଲୁ ।...

(ନବପ୍ରକାଶ)

# ଶତବାର୍ଷିକୀ

ଆଜ

କଥାର କବିତା    ଶେଷ କର ମତେ
କାମର କବିତା କର
ଶତ ବାରଷିକୀ    ଭୂମିକାରେ ନଏ
କଥାରୁ ମୁଁ ଅବସର ।

ମୁହେଁ ମିଠା କଥା    ହୃଦୟେ ଠକାଇ
ଆଜ ତ ନ ପାରେ ଚଳି
ଅନ୍ତର ମୋର    ଆଶ୍ରମ କର
ଏତିକି ଡାକଇ ଖାଲି ।

ଚିତ୍ତ ଯଉବନ    ବସନ୍ତ ସ୍ନେହେ
ଜଗତର ଜବା ଦ୍ୱର
ଆଜ
କଥାର କବିତା    ଶେଷ କର ମତେ
କାମର କବିତା କର ।

ତୁମ ଆଦରଣେ    ଚଢ଼ ତୁମେ ମତେ
ଗଢ଼ ମୋର ଦେଶ ଗାଆଁ
ସମ ତାଳ ଦେଇ    ଦୁର୍ଗତି ଡାକଇ
ଡାକଇ ପର୍ବତୀ ମାଆ ।

ଆଲୋକ ଶିଶୁରେ    ଆଲୋକେ ମିଶାଇ
ଦିଅ ଆଲୋକର ଭାଷା
ଅନ୍ଧ ମାନସର    କଠୋର ତପର
ତୁମେ ଚିରଲୋକ ଆଶା ।

ପଲ୍ଲବ ଉଠୁ        ଚେତନା ମଳୟେ
ନରସ ଏ ଚରାଚର
ଆଜି
କଥାର କବତା        ଶେଷ କରି ମତେ
କାମର କବତା କର ।

କଲମ କବତା        କାମେ ପରକାଶି
ପରକାଶ କରି ଦେବେ
ଏଇ ଅଗଷ୍ଟ        ପନ୍ଦରେ ଆଜି
ତୋଳନଅ ପ୍ରଭୁ ସ୍ନେହେ ।

ଏ ଶୁଭ ପ୍ରଭାତେ        ଗାଅ ହେ ସରବେ
ଉର୍ଦ୍ଧ୍ୱେ ନବେଶି ଲୟ
ଅମର ଭୂମିର        ନର ଅବତାର
ଶ୍ରୀ ଅରବନ୍ଦ ଜୟ
ଶ୍ରୀ ଅରବନ୍ଦ ଜୟ
ଶ୍ରୀ ଅରବନ୍ଦ ଜୟ !

ଶରୀର ଲଫାପା        ଭତରେ ଲପିକା
ଦେଖେଁ ନାରାୟଣ ନର
ଆଜି
କଥାର କବତା        ଶେଷ କରି ମତେ
କାମର କବତା କର ।

(ନବପ୍ରକାଶ)



# ନାରୀ ସମସ୍ୟା

ଶକ୍ତି ସ୍ୱରୂପା ନାରୀ, ଆଦ୍ୟାଶକ୍ତିଙ୍କ ଅଂଶଭୂତା, ମା । ନାରୀ ବିନା ନର ଶକ୍ତିହୀନ । ନରନାରୀଙ୍କ ମଧୁର ମିଳନରେ ହୁଏ ସଂସାରର ସୁନ୍ଦର ବିକାଶ । ପୁରୁଷ ଓ ପ୍ରକୃତିର ଅଂଶ ନର ଏବଂ ନାରୀ । ନାରୀମାନଙ୍କ ତପଃଶକ୍ତି, ଉତ୍ତମ ଚରିତ, ସଦାଗ୍ରହ ହିଁ ସଂସାରର ଉନ୍ନତିର କାରଣ, ସତୀତ୍ୱର ଗୌରବ, ଚରିତ୍ରର ସୌରଭ ଏବଂ ମାତୃତ୍ୱର ବୈଭବ ହିଁ ନାରୀର ସର୍ବୋତ୍ତମ ଭୂଷଣ—କିନ୍ତୁ ଏବର ସାମାଜିକ ସ୍ଥିତିରେ ପୁରୁଷ ଓ ସ୍ତ୍ରୀ ମଧ୍ୟରେ ଏକ ଅହେତୁକୀ ପ୍ରତିଯୋଗିତା ପରିଲକ୍ଷିତ ହେଉଛି । ଏ ବିଷୟ ଚିନ୍ତା କଲେ ଗୋଟିଏ ସୁନ୍ଦର କ୍ଷୁଦ୍ର ଉପାଖ୍ୟାନ ମନେପଡ଼େ । ଏକଦା ଗୋଟିଏ ସିଂହ ଓ ସିଂହୀ କୌଣସି ଏକ ନଗରୀ ଅତିକ୍ରମ କରି ଯାଉ ଯାଉ ନଗରୀର କୌଣସି ପ୍ରାଚୀରରେ ଏକ ଚିତ୍ର ଦେଖିଲେ – ଯହିଁରେ ସିଂହ ଉପରେ ଗୋଟିଏ ମନୁଷ୍ୟ ବସିଥିଲା । ସିଂହୀ ଏ ବିଷୟରେ ପ୍ରଶ୍ନ କରିବାରୁ ସିଂହ ଉତ୍ତର ଦେଲା, ସେ ଯଦି ଏହି ଚିତ୍ରଟି ଆଙ୍କିଥାନ୍ତା, ତେବେ ମନୁଷ୍ୟ ଉପରେ ସିଂହଟିଏ ବସେଇଥାନ୍ତା । ବହୁ କାଳରୁ ସମାଜରେ ପ୍ରଭୁତ୍ୱ ବିସ୍ତାର କରି ପୁରୁଷ ନାରୀମାନଙ୍କ ଉପରେ ନିଜର ପ୍ରାଧାନ୍ୟ ଜାହିର କରି ଆସିଛି । ଏହା ଉପରିଲିଖିତ ଗଳ୍ପପରି ତାର ନିଜ ମନଗଢ଼ା ବ୍ୟବସ୍ଥା । ତନ୍ତ୍ର ମତରେ ସୃଷ୍ଟି କର୍ତ୍ତା ବା ସର୍ବୋତ୍ତମ କୌଣସି ଲିଙ୍ଗ ପର୍ଯ୍ୟ ସୂଚକ ନୁହନ୍ତି । ତାଙ୍କୁ ପରାସମ୍ବିତ୍ ବା ସର୍ବୋତ୍ତମ ଚେତନା କୁହାଯାଏ । ଏହି ଚେତନା ଲୀଳା ନିମିତ୍ତ ଶିବ ଓ ଶକ୍ତି ତଥା ପୁରୁଷ ଓ ପ୍ରକୃତି ରୂପରେ ପ୍ରକାଶିତ ହୁଅନ୍ତି । ସ୍ତ୍ରୀ ବା ପୁରୁଷର କେବଳ ବାହ୍ୟ ଗଠନ ଉପରେ ଦୃଷ୍ଟି ନ ଦେଇ ଟିକେ ତଳେଇ ବିଚାର କଲେ ବୁଝିବା ଯେ, ଉଭୟ ମୂଳ ଚେତନାରୁ ସମାନ ସମ୍ଭାବନା ନେଇ ସୃଷ୍ଟିର ଲୀଳା ନିମନ୍ତେ ପ୍ରକାଶିତ ହୋଇଛନ୍ତି । ଏ ବିଷୟରେ ସଚେତନ ହେଲେ ଦ୍ୱନ୍ଦ୍ୱର ହ୍ରାସ ହେବ । କିନ୍ତୁ ଯେତେବେଳେ ପୁରୁଷ ଓ ନାରୀ ପରସ୍ପରଠାରୁ ନିର୍ଭରତା ଓ ଦାସତ୍ୱରୁ ମୁକ୍ତ ହେବେ, ସେତେବେଳେ ଉଭୟ ସ୍ୱାଧୀନ ହେବେ । କାମନା ଓ ବାସନାର ରଜ୍ଜୁରୁ ଦୁହେଁ ଯେ ପର୍ଯ୍ୟନ୍ତ ମୁକ୍ତ ନୁହନ୍ତି ସେ ପର୍ଯ୍ୟନ୍ତ ପରସ୍ପର ପରସ୍ପରର ଦାସ ହୋଇ ରହିବେ । ଏ

ପରିସ୍ଥିତିରେ ନାରୀ ପୁରୁଷ ଉପରେ ବା ପୁରୁଷ ନାରୀ ଉପରେ ପ୍ରାଧାନ୍ୟ ବିସ୍ତାର କରିବାର ପ୍ରଶ୍ନ ଉଠୁଛି କେଉଁଠି ?

ଏ ସମ୍ପର୍କରେ ଶ୍ରୀମା କହିଛନ୍ତି,

"କୌଣସି ନିୟମ କାନୁନ୍ ଜରିଆରେ ନାରୀଜାତି ଶୃଙ୍ଖଳାମୁକ୍ତ ତଥା ସ୍ୱତନ୍ତ୍ର ହୋଇପାରିବେ ନାହିଁ, ନିମ୍ନଲିଖିତ ତିନୋଟି କାରଣରୁ ସେମାନେ ଦାସତ୍ୱ ପାଶରେ ଆବଦ୍ଧ ।

(୧) ପୁରୁଷ ଓ ତାର ସାମର୍ଥ୍ୟ ପ୍ରତି ଆକର୍ଷଣ ।

(୨) ଘରୋଇ ଜୀବନ ଯାପନ ଓ ତାହାର ନିରାପତ୍ତା ।

(୩) ମାତୃତ୍ୱର ଆସକ୍ତି ।

ଏହି ତିନିପ୍ରକାର ଦାସତ୍ୱରୁ ମୁକ୍ତ ହେଲେ ନାରୀମାନେ ପୁରୁଷ-ମାନଙ୍କର ସମକକ୍ଷ ହୋଇପାରିବେ ।"

ସେଦିନ ବହୁତ ପଛରେ ପଡ଼ିରହିଛି । ଯେଉଁ ସ୍ନେହଶୀଳା ମା ଭଉଣୀମାନେ ଅସୀମ ଧୈର୍ଯ୍ୟ ସହିତ ସାଧାରଣ ସଂସାରୀ ଜୀବନରେ ମଧ ପ୍ରେମର ମନ୍ଦାକିନୀ ଧାରା ବୁହାଇ ଦେଉଥିଲେ । ପ୍ରାଚୀନ ଭାରତର ପୁରାଣ ଇତିହାସ ଅଧ୍ୟୟନ କଲେ ଆମ୍ଭେମାନେ ବହୁ ମହୀୟସୀ ନାରୀ ଚରିତ୍ରର ନିବିଡ଼ ସମ୍ପର୍କରେ ଆସୁ । ମାତୃଜାତିର ବିଶ୍ୱାସ, ନିଷ୍ଠା ଓ ଧର୍ମଭାବର ପ୍ରଭାବ ସରଳ, ସ୍ୱଚ୍ଛ, ନିଷ୍କପଟ ଓ ପବିତ୍ର ହୃଦୟା ବାଳିକାମାନଙ୍କର ରକ୍ତ ସହିତ ମିଶି ସଂସ୍କାରରେ ପରିଣତ ହୋଇଯାଉଥିଲା । ସଚ୍ଚରିତ୍ରା ଗୋଟିଏ କନ୍ୟା ଯେଉଁ ପରିବାରକୁ ଯାଉଥିଲା, ସେ ଘରର ପରିସ୍ଥିତି ବଦଳି ଯାଉଥିଲା । ସେ କାଳର ଧାର୍ମିକତା ପ୍ରତିଷ୍ଠିତ ଥିଲା, ଶ୍ରେଷ୍ଠ ବ୍ୟକ୍ତିଙ୍କର ସଦାଚରଣର ଅନୁକରଣ ଓ ନୈତିକତା ଉପରେ । ବୁଦ୍ଧିର ବିକାଶ ସଙ୍ଗେ ସଙ୍ଗେ, ଯୁକ୍ତିତର୍କର ତୋଫାନରେ ଦୁର୍ବଳ ଭିତ୍ତି ଉପରେ ପ୍ରତିଷ୍ଠିତ ଧର୍ମ ଧରାଶାୟୀ ହେଲା । ନାରୀଜାତିର ଏହି ଧର୍ମଭାବ ହ୍ରାସ ହୋଇଥିବାରୁ ଭୌତିକ ଉନ୍ନତି ହେବା ସତ୍ତ୍ୱେ, ସମାଜରେ ଦୁଃଖଦୈନ୍ୟ ଦିନକୁଦିନ ବଢ଼ି ଚାଲିଛି । ବୈଜ୍ଞାନିକ ତଥା ଭୌତିକ ଉନ୍ନତିରେ

ମନୁଷ୍ୟ ସୁଖୀ ହୋଇପାରୁ ନାହିଁ । ଦୁଃଖ, ଅଶାନ୍ତି, ଭୟ, ଅବିଶ୍ୱାସ, ଅସତ୍ୟ, ଅତ୍ୟାଚାର ଓ ହିଂସା ତାର ରାଜତ୍ୱ ବିସ୍ତାର କରିବାରେ ଲାଗିଛି ।

"ନାରୀ" ଏଇ ଶବ୍ଦଟି ଆଜି ଉଚ୍ଚାରଣ କଲାମାତ୍ରେ ଗୋଟିଏ ପଟରେ ଦେଖାଯାଏ, ନଗର ଜୀବନରେ ପୁରୁଷର ସମକକ୍ଷ ଆଧୁନିକ ସଭ୍ୟତାର ସୁଶିକ୍ଷିତା ନାରୀ—ଠିକ୍ ସେତିକିବେଳେ ଆଉ ଗୋଟିଏ ପାଖରେ ଦିଶିଯାଏ ଅବହେଳିତା, ନଗଣ୍ୟା, ଅଲୋଡ଼ା, ଜୀର୍ଣ୍ଣ ଗ୍ରାମ୍ୟ ନାରୀ ଭଳି, ହାହୁତାଶରେ ନିଷ୍ପେଷିତ ଏକ କରୁଣ ଜୀବନ । ଏ ଦୁଇଟି ଧାରାକୁ ତଉଲିଲା ବେଳେ ମନେହୁଏ, ସତେ କି ବିଧାତାଙ୍କ ସୃଷ୍ଟିରେ ନାରୀ ଜନ୍ମର ଯେପରି କୌଣସି ବିଶେଷ ଅର୍ଥ ନାହିଁ । ଶ୍ରୀରାମଚନ୍ଦ୍ର ସୀତାଙ୍କର ମହିମାକୁ ପାଞ୍ଚଲୋକଙ୍କର କଥା ଶୁଣି ରାଷ୍ଟ୍ରନୀତିର ଆଶୁ ପ୍ରୟୋଜନ ପାଇଁ ଏକ ମୂହୂର୍ତ୍ତରେ ପରୀକ୍ଷା କରାଇବାକୁ ଚାହିଁଲେ । ଏକ ମୁହୂର୍ତ୍ତକାଳ ମଧ୍ୟରେ କୁହୁକ ଦେଖାଇ ସତ୍ୟର ପରୀକ୍ଷା ହୁଏ ନାହିଁ । ବରଂ ତାର ଅବମାନନା ଘଟେ । ଦଶଜଣଙ୍କର ମାନସିକ ବିକୃତି ଯୋଗୁଁ ସତ୍ୟକୁ ଅସମ୍ମାନ କରାଯାଏ । ଫଳରେ ଶ୍ରୀ ରାମଚନ୍ଦ୍ରଙ୍କୁ ସତୀ ଶିରୋମଣି ସୀତାଙ୍କୁ ହରାଇବାକୁ ପଡ଼ିଲା—ଏ ଯୁଗରେ ଚାଲିଛି ସେହି ପାଲି । ଅନ୍ୟମାନଙ୍କ ଦୃଷ୍ଟିରେ ଯାହା ଭଲ, ନିଜର ବ୍ୟକ୍ତିତ୍ୱ ବା ସ୍ୱଧର୍ମକୁ ଲୋପ କରି ସେହି ସବୁ କାର୍ଯ୍ୟ ହିଁ କରାଯାଉଛି—ପୃଥିବୀର କ୍ରମବିକାଶରେ ନାରୀ ଆଜି ବହୁତ ଆଗେଇ ଆସିଛି ସତ୍ୟ, କିନ୍ତୁ ଶିକ୍ଷା ପରିବର୍ତ୍ତେ ଅଶିକ୍ଷା, ସ୍ୱାଧୀନତା ନାମରେ ସ୍ୱେଚ୍ଛାଚାରିତା ଆମ ସାମାଜିକ ଜୀବନର ଶ୍ରେଷ୍ଠ ଭୂଷଣ ହୋଇ ଉଠିଛି, କେବଳ ଚୁଲିହାଣ୍ଡି ସର୍ବସ୍ୱ ଜନନକ୍ରିୟାର ଯନ୍ତ୍ର ହୋଇ ଆନନ୍ଦମୟ ସଂସାର ଜୀବନକୁ ଆଜିର ନାରୀ କେତେ ଯେ ନିରାନନ୍ଦ କରି ନିଜକୁ ଅଭିଶପ୍ତ ମଣୁଛି—ଏଥିରେ ଆଉ ଦ୍ୱିଧାର ପ୍ରଶ୍ନ ନାହିଁ । ଏପରି ଅଧର୍ମ ଓ ଅସାମାଜିକତାର ଏ ଯେଉଁ ପ୍ରବାହ ଚାଲିଛି, ତାକୁ ପ୍ରତିରୋଧ କରିବାର କ୍ଷମତା ରହିଛି, କେବଳ ମାତୃଜାତି ଉପରେ । ଗୃହର ପ୍ରତିଚ୍ଛବି ହିଁ ନାରୀ—ଗୃହ ହିଁ ପ୍ରକୃତ ଶିକ୍ଷା, ସ୍ୱାସ୍ଥ୍ୟ ଓ ଚରିତ୍ର ଗଠନର ଶ୍ରେଷ୍ଠ ଶିକ୍ଷାଳୟ ।

ଏହି ଜୀବନ ବିଦ୍ୟାଳୟରେ ବରେଣ୍ୟ ଶିକ୍ଷୟିତ୍ରୀ, ଜନନୀ, ଭଗିନୀ, କନ୍ୟା ଓ ବଧୂରୂପେ ସେ ଆଜିର ମାନବ ସମାଜକୁ କିଛି ନୂତନ ଆଲୋକ ଦେବ ବୋଲି ଭବିଷ୍ୟତ ପୃଥିବୀ ତା ଉପରେ ସମ୍ପୂର୍ଣ୍ଣ ନିର୍ଭରଶୀଳ ହୋଇଉଠିଛି । ଯେଉଁ ନାରୀ ସାହସୀ ଓ ଶକ୍ତିମୟୀ, ସେ ସେହି ଶକ୍ତିର ପୂଜାରିଣୀ ହେଲେ ଏହି ଦୁଃଖାନ୍ଦୋଳିତ ବିକ୍ଷୁବ୍ଧ ଜଗତ ଶାନ୍ତିର ଅମୃତ ପାନ କରି ଚିରଶାନ୍ତିମୟ ଧାମରେ ପରିଣତ ହେବ । ଅନ୍ତର୍ଚେତନାରେ ସତ୍ୟର ଶାଶ୍ୱତ ଆଦର୍ଶ ଫୁଟି ଉଠିଲେ, କେବଳ ନାରୀ ସମସ୍ୟା ନୁହେଁ, ସମଗ୍ର ପୃଥିବୀର ସକଳ ସମସ୍ୟାର ସମାଧାନ ହୋଇଯିବ । ସେହି କାର୍ଯ୍ୟରେ ଦୃଢ଼ ସାହସର ଏକ ନୂତନ ପଦକ୍ଷେପ ନେବାକୁ ବର୍ତ୍ତମାନ ସମୟ ଉପସ୍ଥିତ ।

ଯେଉଁ ସୃଷ୍ଟିକାରିଣୀ ମହାଶକ୍ତିର ସୁକୋମଳ ହସ୍ତସ୍ପର୍ଶରେ ପ୍ରକୃତି ମଧୁମୟ ପରିବେଶ ସୃଷ୍ଟି କରେ—ବୃକ୍ଷରେ ପଲ୍ଲବ, ବୃନ୍ତରେ କୁସୁମ, ସମୁଦ୍ରରେ ତରଙ୍ଗ ଓ ଝରଣାର ସୁମଧୁର କଳନାଦ ହୃଦୟକୁ ମୁଗ୍ଧ ଓ ପ୍ଲାବିତ କରେ—ନାରୀଜାତି ନିଜର ସଙ୍କୀର୍ଣ୍ଣ ସ୍ୱାର୍ଥ, ଅହଂକାର ଓ ଦାସତ୍ୱର ଊର୍ଦ୍ଧ୍ୱକୁ ଉଠି ସୃଷ୍ଟିଦେବୀ ସେହି ଅଦୃଶ୍ୟ ମହାଶକ୍ତି ସାବିତ୍ରୀଙ୍କ ଅଂଶ ବିଶେଷ ବୋଲି ନିଜେ ପ୍ରତିନିୟତ ସଚେତନ ହେଲେ କୁଟୁମ୍ବ, ଦେଶ, ସମାଜ ସବୁ କ୍ଷେତ୍ରରେ ଆପେ ଆପେ ମଧୁମୟ ପ୍ରଗତିର ପରିବେଶ ସୃଷ୍ଟି ହୋଇ ପାରିବ ।

ଆକାଶବାଣୀ, କଟକଙ୍କ
ସୌଜନ୍ୟରୁ (୯-୧-୭୬ ନାରୀମହଲରେ ପଠିତ)



# ସ୍ମରଣୀୟାସ୍ତୁ

୧୯୪୯ ମସିହା ଜୁଲାଇ ମାସ ୪ ତାରିଖକୁ ମୋର ବିବାହ ସ୍ଥିର ହୋଇଥାଏ, ତେଣୁ ମୁଁ ଛୁଟି ନେଇ ସମ୍ବଲପୁରରୁ ଗାଁକୁ ଯାଇଥାଏଁ । ସେତେବେଳେ ମୁଁ କଟକଠାରେ ଥିବା ସେକ୍ରେଟେରିଏଟ୍‌ର ସପ୍ଲାଇ ବିଭାଗରେ କାର୍ଯ୍ୟ କରୁଥାଏଁ ଓ କଟକ ସହରର ଚୌଧୁରୀବଜାର ଧର୍ମଶାଳା ପାଖ "ବିମଳା" ମେସ୍‌ରେ ରହୁଥାଏଁ । ସ୍ୱର୍ଗୀୟ ଯଦୁମଣି ନରେନ୍ଦ୍ର ସେତେବେଳେ ଅର୍ଥ ବିଭାଗରେ ହେଡ଼ ଆସିଷ୍ଟାଣ୍ଟ ଭାବେ କାର୍ଯ୍ୟ କରୁଥାନ୍ତି ଓ ସେହି ମେସ୍‌ରେ ରହୁଥାନ୍ତି । ସେ ଥିଲେ ଡେଲଙ୍ଗ ଅଞ୍ଚଳର ଲୋକ । ମୋ ଶ୍ୱଶୁର ପିଲାବେଳେ ଡେଲଙ୍ଗ ଓ ସାକ୍ଷୀଗୋପାଳଠାରେ ରହି ପଢ଼ୁଥିଲେ, ତେଣୁ ତାଙ୍କ ସହିତ ପିଲାଦିନୁ ବନ୍ଧୁତା ଥିଲା । ଯଦୁବାବୁଙ୍କ ମଧ୍ୟସ୍ଥତାରେ ମୋର ବିବାହ ସ୍ଥିର ହୋଇଥିଲା । ମୋର ସେତେବେଳେ ୨୪।୨୫ ବର୍ଷ ହୋଇଥିଲେ ମଧ୍ୟ ବିବାହର ମାଦକତା କ'ଣ ତାହା ମୁଁ ଅନୁଭବ କରି ନଥିଲି । ପିଲାଦିନୁ ବାପା ଗୃହଛଡ଼ାଯାଇଥିଲେ । ବଡ଼ଭାଇ ଭାବରେ ଘରର ବୋଝ ମୋ ଉପରେ ପଡ଼ିଥିଲା । ମୋତେ ଲୁହାଚାଲା—ବୋଉ ବୁଢ଼ୀ ହେଲାଣି—ଘର କାମରେ ସାହାଯ୍ୟ କରିବା ପାଇଁ ବୋହୂଟିଏ ଘରକୁ ଆସିବା ଦରକାର । ତେଣୁ ଭାବୁଥିଲି ଗାଁ ଅଞ୍ଚଳର ଅଳ୍ପ ପାଠ ପଢ଼ିଥିବା ଝିଅଟିଏ ଯଦି ଆସେ, ତେବେ ବୋଉକୁ ସାହାଯ୍ୟ କରିପାରିବ । ସେହିପରି କେତୋଟି ସ୍ଥାନରୁ ପ୍ରସ୍ତାବ ଆସିଥିଲା—କିନ୍ତୁ କିଛି ଠିକ୍ ହୋଇ ନ ଥିଲା । କଟକରେ ଏଥର ପ୍ରସ୍ତାବ ପଡ଼ିଲା ପରେ ଶ୍ୱଶୁର ଓ ଯଦୁମଣି ନରେନ୍ଦ୍ରଙ୍କ ଚେଷ୍ଟା ଫଳରେ ମୋ ଉପରେ ସେପରି କଥାଟିକୁ ଲଦି ଦିଆହେଲା । କନ୍ୟାଦେଖା ପ୍ରସ୍ତାବରେ ମୁଁ ରାଜି ନଥିଲି । ସେହି ଭାର ନେଇଥିଲେ ମୋର ଜଣେ ବଡ଼ଭାଇ ସ୍ୱର୍ଗତ ଗଗନ ବିହାରୀ ମହାନ୍ତି ଓ ସାନଭାଇ ସନାତନ । ସେ ଭାଇ ଜଣେ ଅଧ୍ୟାପକ ଓ କବି ଥିଲେ । ସେମାନେ ରଜପର୍ବର ପୂର୍ବଦିନ କନ୍ୟା ଦେଖିବାକୁ ଯାଇଥିଲେ । ସେହିଦିନ ଗଗନଭାଇ ତାଙ୍କ ନବପ୍ରକାଶିତ କବିତା ବହି "ପଥପୁଷ୍ପ"ରୁ ଖଣ୍ଡିଏ ବିଦ୍ୟୁତ୍‌ପ୍ରଭାଙ୍କୁ ଉପହାର

ଦେଇଥିଲେ । ସେ ଦିନଟି ଥିଲା ୨୧. ୭. ୫୯ । ଏବେ ମଧ୍ୟ ସେ ବହିଟି ଆମ ଘରେ ଅଛି । ବହିଟିର ପ୍ରକାଶନରେ ମୁଁ ପରିଶ୍ରମ କରିଥିଲି । ତେଣୁ ପ୍ରଥମ ପୃଷ୍ଠାରେ କୃତଜ୍ଞତା ଦବାକୁ ଯାଇ କବି ମୋ ନାମ ଉଲ୍ଲେଖ କରିଥିଲେ । ଶୁଣିଛି ସେଦିନ ବହିଟିରେ ମୋ ନାମ ଥିବାର ଦେଖି ବିଦ୍ୟୁତ୍‌ପ୍ରଭା ଖୁବ୍ ଖୁସୀ ହୋଇଥିଲେ ଓ କବିତା ପ୍ରତି ମୋର ଯେ ଆଦର ଅଛି ଓ ଛପା କାର୍ଯ୍ୟ ମୁଁ କରିପାରେ ଏହା ଜାଣି ତାଙ୍କର ଭବିଷ୍ୟତ ସ୍ୱପ୍ନ ବିଷୟରେ ସେ ଖୁବ୍ ଆଶାୟୀ ହୋଇ ଉଠିଥିଲେ । ମୋର ଭାବୀ ସ୍ତ୍ରୀ ଜଣେ ଲେଖିକା ବୋଲି ଶୁଣିଥିଲି । ଭାଇ ଲେଖାପଢ଼ା ଦେଖି ସନ୍ତୁଷ୍ଟ ହେଲେ । ସାନଭାଇ ଭାବୀ ନୂଆବୋଉର ସ୍ୱାସ୍ଥ୍ୟ ଦେଖି ଖୁସୀ ଯେ, ଘରକାମ ଭୁଲିଯାଇ ପାରିବ । ସେମାନଙ୍କ ମତକୁ ମୋତେ ଗ୍ରହଣ କରିବାକୁ ହୋଇଥିଲା । ତେବେ ସହରର ଲୋକ, କବି ଓ ଲେଖିକା—ଆମ ମଫସଲ ଗାଁରେ ସେ ନିଜକୁ କିପରି ଚଳାଇ ପାରିବେ, ସେ ବିଷୟ ନେଇ ମୁଁ ବେଳେ ବେଳେ ଚିନ୍ତା କରୁଥାଏଁ । କିନ୍ତୁ ଯନ୍ତ୍ର ପରି ବିବାହ କାର୍ଯ୍ୟରେ ଆଗେଇ ଯାଉଥାଏଁ ।

ବିବାହ ଦିନ ଗାଁରୁ ସଦଳବଳେ କଟକ ଆସି ଶୋଭାଯାତ୍ରା କରି ଶଶୁରଙ୍କର ବାମ୍ପା ସାହି ଘରଠାକୁ ଯାଇଥିଲୁଁ । ବିବାହ କାର୍ଯ୍ୟ ଆରମ୍ଭ ହେଲା । ପ୍ରଚଳିତ ପଦ୍ଧତି ଅନୁସାରେ ପ୍ରଥମ ବରଣି, ଦ୍ୱିତୀୟ ବରଣି ଇତ୍ୟାଦି କରାଗଲା । ଏପରେ ବର ଓ କନ୍ୟା ଉଭୟଙ୍କୁ ବେଦୀକୁ ଅଣାଗଲା । ଲୁଗାପଟ ରେ ଘୋଡ଼ି ହୋଇଥିବା ଲୋକଟିକୁ ଦୁଇଜଣ ସ୍ତ୍ରୀ ଲୋକ ଓ ବାରିକ ଧରିଧରି ଆଣିଲେ । ଦୁଇଟି ପାଦରେ ମୋର ଦୃଷ୍ଟି ପଡ଼ିଗଲା । ପାଦ ଦୁଇଟି ଲକ୍ଷ୍ମୀ ପାଦ ପରି ସୁନ୍ଦର ଦିଶିଲା—ବଡ଼ ନୁହେଁ କି ସାନ ନୁହେଁ, ଧଳା ନୁହେଁ କି କଳା ନୁହେଁ—ସବୁ ଅଳତାଗାର ଦିଆଯାଇଥିବାରୁ ବିଜୁଳି ଆଲୁଅରେ ଭୂଇଁଠାରୁ ବାରିହୋଇ ପାଦ ଦୁଇଟି ହଳଦୀ ରଙ୍ଗରେ ଚକ୍ ଚକ୍ କରୁଥିଲା । ମୋ ମନର ସମସ୍ତ ଚଞ୍ଚଳତା ଯେପରି କ୍ଷଣକ ପାଇଁ ସେହି ପାଦଯୋଡ଼ିକଠାରେ ଅଟକି ଗଲା । ସମସ୍ତ ସନ୍ଦେହ, କଳ୍ପନା-ଜଳ୍ପନା ଯେମିତି ହଠାତ୍ ଉଭେଇଗଲା । ଅତଳ ଦରିଆରେ କିଛି ଗୋଟେ ଭରସା ମିଳିଗଲା ଅବା ! ହାତଗଣ୍ଠି ପଡ଼ିଲା । ମୋ ହାତ ଯନ୍ତ୍ର ପରି ବାରିକ ଓ ବ୍ରାହ୍ମଣଙ୍କ ନିର୍ଦ୍ଦେଶକୁ

ମାନୁଥିଲ । ବିବାହ କାର୍ଯ୍ୟ ଶେଷ ହେଲା । ଏବେ ବିଦାୟ ପର୍ବ । ହଁ, ସଂସାର କଲେ ଏପରି ହୁଏ । ପୁଅଟିଏ ସହିତ ଝିଅଟିର ବିବାହ ହୁଏ । ବରପକ୍ଷ ଓ କନ୍ୟାପକ୍ଷ ଖୁସି ହୁଅନ୍ତି । ଖିଆପିଆ ହୁଏ—ଜନିଷପତ୍ର ଡାଲିକା ହୁଏ—ବର ସହିତ କନ୍ୟାକୁ ବିଦାୟ ଦିଆଯାଏ । ଯେଉଁମାନେ କାର୍ଯ୍ୟର ଦାୟିତ୍ୱରେ ଥାନ୍ତି, ସେମାନେ ଆଶ୍ୱସ୍ତ ହୁଅନ୍ତି ଯେ କାର୍ଯ୍ୟଟି ଭଲରେ ହୋଇଗଲା । କାହାରି ଯେ କିଛି ଦୃଷ୍ଟବୋଧ ଜାତ ହୁଏ, ଏକଥା ମୋର ମନେ ହେଉ ନାହିଁ । ଜୀବନରେ ସେହି ଦିନଟି ଯେ କେଡ଼େ ମହତ୍ତ୍ୱପୂର୍ଣ୍ଣ, ସେକଥା କେହି କଣ ଚିନ୍ତା କରେ କି ? ଜୀବନର ଗତି ଗୋଟିଏ ଭିନ୍ନ ମୋଡ଼ ନେବାକୁ ଯାଉଛି, ବାପା ଓ ମାଆଙ୍କଠାରୁ ଭିନ୍ନ ଅନ୍ୟ ଏକ ନୂଆ ସଂସାର ଗଢ଼ାଯିବାର ଆୟୋଜନ ଶୁଭାରମ୍ଭ—ପରସ୍ପର ଅଜଣା—ଦିନେ ହେଲେ ଦେଖା ବା କଥାବାର୍ତ୍ତା ନାହିଁ । ଜନ୍ମସ୍ଥାନର ଦୂରତା ବର୍ଣ୍ଣନାତୀତ । ତେବେ, କିପରି ଏ ଦୁଇଟି ଅପରିଚିତ ପ୍ରାଣୀ ଏକାଠି ହୋଇ ନୂଆ ସଂସାର ଗଢ଼ିବେ ? ପ୍ରେମ ତାଙ୍କୁ ଏକାଠି ବାନ୍ଧି ରଖିବ । ପ୍ରେମର ସମ୍ବଳ ଧନ ନୁହେଁ—ବିଦ୍ୟା ନୁହେଁ ଓ ସମ୍ପତ୍ତି ମଧ୍ୟ ନୁହେଁ । ତା'ର ସମ୍ବଳ ଗଣ୍ଠିକ ଡୋର । ସେଥିରେ ଦୁନିଆର ସବୁକିଛିକୁ ସେ ବାନ୍ଧି ରଖିପାରେ । ସେହି ପ୍ରେମଡୋରି ହୁଏ ନବଦମ୍ପତିଙ୍କର ବନ୍ଧନ । ପୁଅଟିଏ ଓ ଝିଅଟିଏ ଅଣ୍ଟାରେ ଲୁଗା ଭିଡ଼ି ପୂର୍ବ ଆକାଶରେ ସୂର୍ଯ୍ୟ ଉଠୁ ନଉଠୁ କାମକୁ ବାହାରି ପଡ଼ନ୍ତି—ନୂଆ ମନ, ନୂଆ ବଳ, ନୂଆ ଆଶା ଓ ନୂଆ ଲକ୍ଷ୍ୟ ନେଇ—ସବୁ ନୂଆ, ସୁନ୍ଦର ଓ ମଧୁର ।

ବିଦାୟ ନେଇ ଟ୍ରେନ୍‌କୁ ଆସିଲୁଁ । ଏକ ୨ୟ ଶ୍ରେଣୀ ପ୍ରକୋଷ୍ଠରେ ମୁଁ, ବିଦ୍ୟୁତ୍‌ପ୍ରଭା ଓ ତାଙ୍କ ସାନ ଭଉଣୀ ପୁଣ୍ୟପ୍ରଭା ଏକାଠି ଯାଉଥିଲୁଁ । ଭଦ୍ରକରେ ପହଞ୍ଚି ସେଦିନ ରହିବାକୁ ହେଲା । କାରଣ, ବର୍ଷା ଯୋଗୁଁ ରାସ୍ତା ଖରାପ ହୋଇଥାଏ । ପରଦିନ ଶଗଡ଼ରେ ଯିବାର ବ୍ୟବସ୍ଥା କରାଗଲା । ଭଦ୍ରକରେ ପୂର୍ବୋକ୍ତ ଅଧ୍ୟାପକ ଭାଇଙ୍କ ଘରେ ରହିଥିଲୁଁ । ନୂଆ ବୋହୂଟିଏ ଆସିଛି ଜାଣି ପାଖପଡ଼ିଶାରୁ କେତେକ ସ୍ତ୍ରୀଲୋକ ସେଠାକୁ ଆସିଥିଲେ । ସେମାନଙ୍କୁ ଦେଖି ବିଦ୍ୟୁତ୍‌ପ୍ରଭା ପ୍ରଥମେ ତାଙ୍କ ନିଜ ପାଇଁ ଖାଇବାର ବ୍ୟବସ୍ଥା କରିବାକୁ ଓ ସେଥିପାଇଁ କିଛି ପଖାଳ ଆଣିଦେବାକୁ ଅନୁରୋଧ କରିଥିଲେ । ମୁଁ ଶୁଣିଲି ଆଗନ୍ତୁକା ସ୍ତ୍ରୀଲୋକ

ମାନଙ୍କ ମଧ୍ୟରୁ କଏ ଜଣେ କହିଲେ, "ବାହାରେ କଟକ୍କା ବୋହୁ, ଘର ନ ଧରୁଣୁ ଅଧାବାଟରେ ଟକୋଳ ଖୋଜୁଛି।" କିନ୍ତୁ ଦେଖିଲି ସେମାନେ ବେଶ୍ ଆଗ୍ରହରେ ତାଙ୍କର ଖାଇବାର ସମସ୍ତ ବ୍ୟବସ୍ଥା କରିଦେଲେ।

ପରଦିନ ଖୁବ୍ ସକାଳୁ ଦୁଇଖଣ୍ଡ ଶଗଡ଼ରେ ଯାତ୍ରା ଆରମ୍ଭ କଲୁ। ବର୍ଷାଦିନ, ମଝେ ମଝେ ବର୍ଷା ହେଉଥାଏ। ପାଖେ ପାଖେ ଗାଁସବୁ ଥିଲେ ମଧ୍ୟ କେତେକ ସ୍ଥାନରେ ସେତେବେଳେ ଘୋଟ ଜଙ୍ଗଲ ଥିଲା। ପାଖ ଗଛରୁ ଜାମୁକୋଳି ତୋଳିଆଣି ମୁଁ ସମସ୍ତଙ୍କୁ ଦେଉଥିଲି। ପ୍ରାୟ ସନ୍ଧ୍ୟା ବେଳକୁ ଗାଁରେ ପହଞ୍ଚିଲୁ। ବହୁ ଲୋକ ରୁଣ୍ଡ ହୋଇଥିଲେ, ବର ଓ କନ୍ୟାଙ୍କୁ ପାଛୋଟି ନେବା ପାଇଁ। ସେ ଦିନର ଦୃଶ୍ୟ ବାଦୁ୍ୟଲ୍ଲଭଙ୍କ ନିଜ କବିତାରେ ବର୍ଣ୍ଣନା କରିଛନ୍ତି—

ବକ୍ଷେ ଜାକି ଶିଶୁ କେହୁ
କେବା ପୁଣି ଧରି ସଞ୍ଜକନା
କେ ଅବା କଳସୀ କାଖେ
ଆସିଅଛି ଦେଖି ବନ୍ଦାପନା।

×   ×   ×

ହ୍ରିତସ୍ରୋତା ନଦୀ ସମ
ବଧୂ ଏବେ ଦ୍ୱାର ପାଶେ ଠିଆ
ଚରଣେ ବେପଥୁ ଲାଗେ—
ଦୁମୁ ଦୁମୁ ପଡ଼େ ଉଠେ ହିଆ।
ଦିସୁଁ ବସୁଁ ଧୀରେ ବଧୂ
ମାତୃ କୋଳେ ଦୟିତର ପାଶେ
ସବୁରି ଉଜ୍ଜ୍ୱଳ ମୁଖ
ହସି ଉଠେ ଅମିତ ଉଲ୍ଲାସେ।
ସିଆଣୀ ଘଉଜ ଏଣେ
ଖେଳାଉଛି ବେକରେ କଉଡ଼ି
ଝମ ଝମ ବାଜେ ତାର
କୋଟି କମ ସୁନା ଚୂଡ଼ି।

[ ସ୍ୱପ୍ନଦୀପ - ପୃ ୧୮ ]

ସେଦିନ ବାସର ରାତି—ଘରେ ପ୍ରବେଶ କଲାବେଳେ ମୋ ମନରେ କୌଣସି ଚଞ୍ଚଳତା ନ ଥିଲା । ପିଲାଦିନରୁ ଦୁଃଖ ଓ ଦୈନ୍ୟ ମଧ୍ୟରେ ସଂଗ୍ରାମ କରି ଏକୁଟିଆ ଅନୁଭବ କରୁଥିବା ମନ ଯେପରି ଗୋଟିଏ ଆଶ୍ରା ପାଇବାକୁ ଯାଉଛି—ଆଜି ସେଥିପାଇଁ ବ୍ୟଗ୍ର । କିନ୍ତୁ ପଶ୍ଚାତରେ ଥାଏ ସଂକୋଚ, ଲଜ୍ଜା ଓ ଖାରୁ ଭାବ । ଭାବୁଥିଲି, ଏକ ବିରାଟ ବ୍ୟକ୍ତିତ୍ୱର ସମ୍ମୁଖୀନ ହେବାକୁ ଯାଉଛି । ସେଦିନ ରାତିରେ ତାଙ୍କ ସହିତ ପ୍ରଥମ ଦେଖା — ନିମାନ୍ତ୍ରଣରେ ପରବର୍ତ୍ତୀ ତିନୋଟି ଦିନ ଖାଲି ଗଲୁ ଆଉ ଗଲୁ । ଦୁଇଜଣ ଅପରିଚିତ ଲୋକଙ୍କର ହଠାତ୍ ଭେଟ ହେଲା ପରେ ସାମାନ୍ୟ ପରିଚୟ ପରେ ନିଜକୁ ପରସ୍ପରଠାରେ ପ୍ରକାଶ କରୁଛନ୍ତି । ନିଜ ନିଜର ଜୀବନର ବିଗତ ଅନୁଭୂତି ଓ ନିଜର ସମସ୍ୟା ବିଷୟରେ ସବିଶେଷ ତାତ୍ତ୍ୱିକ ଆଲୋଚନା । କଥା କଥାକେ ନିର୍ଭର ପ୍ରତିଶ୍ରୁତି ଦିଆଯାଉଥାଏ-- ଚଲା ପଥରେ ଉଭୟଙ୍କର ଅଗ୍ରଗତିରେ ଉଭୟେ ପ୍ରାଣ ଦେଇ ସାହାଯ୍ୟ କରିବେ । ବିଦ୍ୟୁତ୍‌ପ୍ରଭା ସହଜେ କଥା କହନ୍ତି ନାହିଁ—ଥରେ କିନ୍ତୁ ଆରମ୍ଭ ହେଲେ ସୁଅ ଛୁଟେ— ଅନ୍ୟକୁ ସେ କଥା କୁହାଇ ଦିଅନ୍ତି ନାହିଁ । ତାଙ୍କର ଏକ ବିଶେଷ ବ୍ୟକ୍ତିତ୍ୱ ଓ ପ୍ରତିଭା ତାଙ୍କ କଥା ଓ ଆଖିର ଚାହାଣିରୁ ପରିସ୍ଫୁଟ ହୁଏ । ଚତୁର୍ଥୀଦିନର ଆନୁଷ୍ଠାନିକ କାର୍ଯ୍ୟ ସରିଲା ପରେ ପୁଣି ଦୁହେଁ ଏକାଠି ହେଲୁଁ— ସେଦିନ ଦୁଇ ଜଣଙ୍କର ଦିଗ୍‌ବିଜୟୀର ଭାବ—ଭବିଷ୍ୟତର ଚିନ୍ତା ନ ଥିଲା—ଅତୀତ କଥାବାର୍ତ୍ତା ମଧ୍ୟରେ ହଜି ଯାଇଥିଲା—ଖାଲି ଥିଲା ବର୍ତ୍ତମାନ—ଖୁବ୍ ଆନନ୍ଦମୟ—ଅମୃତମୟ ଓ ଉପଭୋଗ୍ୟ । କବିଙ୍କ ନିଜ କବିତାରେ—

ଚିରନ୍ତନ ପ୍ରଣୟର ଏ ଶୁଭ ସ୍ମରଣୀ
କୁସୁମିତ କରୁ ଆମ ଜୀବନ-ସରଣୀ
ନୀରବ ଏ ନିଶାନ୍ତର ଅଶେଷ ଗୌରବ
ଖେଳାଉ ହୃଦୟ-କୁଞ୍ଜେ ଆଶାର ସୌରଭ ।

× × ×

ନ ମାରୁ ବିଜୁଳି ପଛେ ନ ବହୁ ବତାସ
ଏ ତୂଳୀ ତଳପେ ଖେଳୁ ପରିପୂର୍ଣ୍ଣ ହାସ ।
ସ୍ୱେଦ ଜରଜର ପଛେ ହୋଇଉଠୁ ଗାତ୍ର
ନ ପାହୁ ଏ ଆଷାଢ଼ର ବିଳସିତ ରାତ୍ର ।

[ ସ୍ୱପ୍ନଦୀପ ]

ଦିନ ପରେ ଦିନ ଗଡ଼ି ଚାଲିଲା । ପ୍ରଥମେ କେଇଦିନ ତାଙ୍କର ଶାରୀରିକ ଅସୁସ୍ଥତା ଅନୁଭବ କଲି ଓ ସ୍ୱାଭାବିକ ଭାବରେ ପ୍ରତିକାର କରିବା ପାଇଁ ବ୍ୟସ୍ତ ହୋଇଉଠିଥିଲି । ସେ ସୁଯୋଗ ସେ ମୋତେ ଦେଇ ନଥିଲେ । ୧୦।୧୫ ଦିନର ଆଳାପ ଆଲୋଚନା ପରେ ସେ ବେଶ୍ ସୁସ୍ଥ ଅନୁଭବ କଲେ । ମନେହେଲା ତାଙ୍କର ମନରେ ଅନେକ କିଛି ଅନେକ ଦିନ ହେଲା ରୁଦ୍ଧ ହୋଇ ରହିଥିଲା—ସେଥିପାଇଁ ସେ ଭୀଷଣ ଯନ୍ତ୍ରଣା ଭୋଗୁଥିଲେ । ହଠାତ୍ ମୋ ଆଗରେ ସବୁ ଫିଟାଇ ଦେଇଥିଲେ ଓ ବେଶ୍ ଆଶ୍ୱସ୍ତ ଅନୁଭବ କରିପାରିଥିଲେ । ଆଜ ଭାବୁଛି ପ୍ରେମ ଓ ସ୍ନେହ କିପରି ସବୁ କିଛିକୁ ବାନ୍ଧି ରଖେ । ବନ୍ଧ୍ୟୋପାଧ୍ୟାୟ ଓ ମୁଁ ଏକ ସଙ୍ଗରେ ଏ ସଂସାରକୁ ଆସି ନଥିଲୁଁ—ଏକ ମା ପେଟରୁ ଜନ୍ମି ନଥିଲୁଁ—ଏକ ଗାଁରେ ବଢ଼ି ନଥିଲୁଁ । ମୁଁ ୨୫ ବର୍ଷ ବାଟ ଚାଲିଲା ପରେ ବାଟରେ ତାଙ୍କ ସହିତ ଭେଟ ହୋଇଥିଲା । ପୁଣି ୨୮ବର୍ଷ କାଳ ଉଭୟେଁ ସାଙ୍ଗ ହୋଇ ବାଟ ଚାଲିଲୁଁ—ଆଉ କେତେ ସାଙ୍ଗମାଥୀ ସୃଷ୍ଟି କଲୁଁ—ଦୁନିଆକୁ ଟିକେ ସୁନ୍ଦର ଓ ସତେଜ କରିବାକୁ ଚେଷ୍ଟା କଲୁଁ । ସେ ଥିଲେ ସ୍ୱର୍ଗର ଅଭିଶପ୍ତ କିନ୍ନର—ଅଭିଶାପ ବିଷୟରେ ସବୁବେଳେ ସଚେତନ ଥିଲେ । ସାଙ୍ଗ ହେଲା ଦିନଠାରୁ ମୋତେ ଶିଖାଇଥିଲେ କିପରି ଏକୁଟିଆ ବାଟ ଚାଲିବାକୁ ହୁଏ—ଏକୁଟିଆ ରହିବାକୁ ହୁଏ—ଏକୁଟିଆ ରାନ୍ଧିବାଢ଼ି ଖାଇବାକୁ ହୁଏ ଓ ଏକୁଟିଆ ପିଲାଙ୍କୁ ଲାଳନ ପାଳନ କରିବାକୁ ହୁଏ । ମୋର ସାଂସାରିକ ଆସକ୍ତିକୁ ତାଙ୍କ ଆଡ଼କୁ ମୁହାଁଇ ଥିବାର ଲକ୍ଷ୍ୟ କରି ସେ ମୋତେ ଟାଣି ନେଇଥିଲେ ଅନ୍ୟ ଏକ ଆଧ୍ୟାତ୍ମିକ ଲକ୍ଷ୍ୟକୁ—ଜଣେ ସଦ୍‌ବନ୍ଧୁ ଭାବରେ । ତାଙ୍କର ଅଭିଶାପର ଦିନ ସରିଗଲା । ସେ ବାଟ ଭାଙ୍ଗି ଚାଲିଗଲେ । ସମ୍ପୂର୍ଣ୍ଣ ନିର୍ଲିପ୍ତ—ମହାନ୍ ଆତ୍ମା—ସଂସାରର କିଛି ତାଙ୍କୁ ବାନ୍ଧିରଖି ପାରିଲା ନାହିଁ । କେଇ ବର୍ଷର ସାଙ୍ଗ ବାଟୋଇ ହିସାବରେ ଯାହାକିଛି ଜାଣିଛି, ଶୁଣିଛି ଓ ଅନୁଭବ କରିଛି ତାହା ପ୍ରକାଶ କରୁଛି । ସେଥିରୁ କବିଙ୍କ ଜୀବନ ଓ ବ୍ୟକ୍ତିତ୍ୱ ବିଷୟରେ ସମ୍ୟକ୍ ଧାରଣା କରିପାରିବେ ।

ସେ ଥିଲେ ଅତ୍ୟଧିକ ସମ୍ବେଦନଶୀଳ ତଥା ଅଭିମାନୀ—ଟିକିଏ ଚିନ୍ତା କରିବା ଥିଲା ତାଙ୍କର ବିଶେଷତ୍ୱ । କୌଣସି ବିଷୟରେ ବାଧାପ୍ରାପ୍ତ

ହେଲେ ବା କୌଣସି ଜଟିଳ ସମସ୍ୟାର ସମ୍ମୁଖୀନ ହେଲେ ସେ ଖିଆ ପିଆ ଛାଡ଼ି ଦେଉଥିଲେ ଓ ଗଭୀର ଚିନ୍ତାରେ ବୁଡ଼ି ଯାଉଥିଲେ । ପରିସ୍ଥିତି ସ୍ୱାଭାବିକ ହେଲେ ସେ ଧୀରେ ଧୀରେ ଆପଣା ଛାଏଁ ସ୍ୱାଭାବିକ ଜୀବନକୁ ଫେରି ଆସୁଥିଲେ । ଦୈନନ୍ଦିନ ବ୍ୟାପାରରେ ଏପରି ହୁଏ ନାହିଁ । ବିଗତ ୨୮ ବର୍ଷ ଜୀବନ ମଧ୍ୟରେ ଆଙ୍ଗୁଠିରେ ଗଣିଲା ପରି ସେପରି କେତୋଟି ଘଟଣା ଘଟିଥିବ । ତାଙ୍କ ମୁଖରୁ ଶୁଣିଛୁ ବିବାହର ବର୍ଷକ ଆଗରୁ ସେ ସେହିଭଳି ଏକ ପରିସ୍ଥିତିରେ ପଡ଼ିଥିଲେ ଓ ଅଶାନ୍ତିରେ କାଳ କାଟୁଥିଲେ । ସେତେବେଳର ସମାଜରେ ତାଙ୍କର ବୟସ ଦୃଷ୍ଟିରୁ ବିବାହ ବିଳମ୍ବ ହୋଇଯାଇଥିଲା । କରଣ ଘରର ଯୌତୁକ ଦାବୀ ଏକ ବିରାଟ ବାଧା ସୃଷ୍ଟି କରିଥିଲା । ଜଣେ କବି ଭାବରେ ତାଙ୍କର ସେତେବେଳେ କିଛି ସୁନାମ ହୋଇସାରିଥିଲା । ସେତେବେଳକୁ ୫ ଖଣ୍ଡି ପୁସ୍ତକ ପ୍ରକାଶିତ ହୋଇସାରିଥାଏ—ସବିତା (୧୯୪୪), ଉତ୍କଳ-ସାରସ୍ୱତ ପ୍ରତିଭା (୧୯୪୭), କନକାଞ୍ଜଳି (୧୯୪୮), ମଞ୍ଜରିକା (୧୯୪୮) ଓ ବିହ୍ୱାପୁରୀ (୧୯୪୯) ପିତାମାତାଙ୍କର ଦୁଇଗୋଟି କନ୍ୟାଙ୍କ ମଧ୍ୟରୁ ବଡ଼ ଭଉଣୀ କେବଳ ବିବାହ କରିଥିଲେ । ଶଶୁରେ ବହୁ ଦିନରୁ ସରକାରୀ ଚାକିରି ଛାଡ଼ି ନିଜ ଚେଷ୍ଟାରେ ବହି ଲେଖି ସ୍କୁଲମାନଙ୍କୁ ନେଇ ବିକି କରି କିଛି ଅର୍ଥ ଉପାର୍ଜନ କରୁଥିଲେ । ଗ୍ରାମରେ ସମ୍ପତ୍ତିବାଡ଼ି ଥିଲେ ମଧ୍ୟ ଭ୍ରାତୃବିବାଦ ଓ ଅନ୍ୟମାନଙ୍କର ଅସହଯୋଗ ଯୋଗୁଁ ସେଥିରୁ ବିଶେଷ କିଛି ପାଉ ନ ଥିଲେ । କୁଟୁମ୍ବର ଏପରି ଅବସ୍ଥା—ଋଣଭାର ଓ କନ୍ୟାଦାୟ ବୃଦ୍ଧ ପିତାଙ୍କ ମୁଣ୍ଡ ତଳକୁ ଚାପି ଦେଇଥିଲା । କବିକନ୍ୟା ପିତାଙ୍କର ଅତ୍ୟନ୍ତ ପ୍ରିୟ ଥିଲେ । ସବୁ ପିଲାଙ୍କଠାରୁ ସେ ତାଙ୍କୁ ଅଧିକ ସ୍ନେହ କରୁଥିଲେ । ନିଜ ଜୀବନର ଗୋପନ କଥା ତାଙ୍କଠାରେ ପ୍ରକାଶ କରୁଥିଲେ । ତେଣୁ ବିଦ୍ୟୁତ୍‌ପ୍ରଭା ପରିସ୍ଥିତି ବେଶ୍ ହୃଦୟଙ୍ଗମ କରି ପାରିଥିଲେ । ପିତାମାତା ଅତ୍ୟନ୍ତ ରକ୍ଷଣଶୀଳ—ପ୍ରାପ୍ତ ବୟସ ହେଲା ପରେ ସେମାନେ କନ୍ୟାକୁ ବାହାରକୁ ଛାଡ଼ୁ ନ ଥିଲେ । ସେଥିପାଇଁ ନବମ ଶ୍ରେଣୀରୁ ବିଦ୍ୟୁତ୍‌ପ୍ରଭାଙ୍କର ଶିକ୍ଷାର ଡୋରି ବନ୍ଧାଯାଇଥିଲା ଓ ସେ ପ୍ରାୟ କାରାଗାରରେ ରୁଦ୍ଧ ହେଲା ପରି ରହୁଥିଲେ । ସେ ଥିଲେ କବି, ତାଙ୍କର ଥିଲା ସ୍ୱପ୍ନ, ତାଙ୍କର ଥିଲା ଆଦର୍ଶ, ତାଙ୍କ ହୃଦୟରେ ଥିଲା ଦ୍ୱନ୍ଦ୍ୱ, ପ୍ରଶ୍ନ ଓ ସମାଧାନର ଚିନ୍ତା ମଧ୍ୟ । ସେ ଓଡ଼ିଶା ତଳେ ବିଦ୍ରୋହୀ ହୋଇ

ଉଠିଥିଲେ । ତାଙ୍କ ପ୍ରାଣରେ ଆଘାତ ଲାଗିଥିଲା ସେ ଅଧିକ ଶିକ୍ଷାଲାଭରୁ ବଞ୍ଚିତା ହେବାରୁ; ଦୁଃଖ ଆସିଥିଲା ଯୌତୁକ ପ୍ରଥା ଯୋଗୁଁ ବିବାହରେ ବାଧା ଆସିଥିବାରୁ ଓ ବାଧା ଆସିଥିଲା ସମାଜ ଗୁଣର ଆଦର ନ କରି ବାହାରର ରୂପ ଓ ରଙ୍ଗରେ ମାତି ଥିବାରୁ । ପିତା ଓ କନ୍ୟା ସବୁକଥା ଗୋପନରେ ଆଲୋଚନା କରୁଥିଲେ ଯାହାକି ଅନ୍ୟମାନେ ପସନ୍ଦ କରିପାରୁ ନ ଥିଲେ । ଆଲୋଚନାବେଳେ ବୈବାହିକ ଜୀବନରେ କବିଙ୍କର ସାହିତ୍ୟ ସାଧନା କରିବାର ସୁଯୋଗ ମିଳିବ କି ନାହିଁ ତାହା ଥିଲା ପ୍ରଧାନ ଆଲୋଚ୍ୟ ବିଷୟ । ସେ ଥିଲେ କବି—କଳ୍ପନାବିଳାସୀ । କଳ୍ପନାରେ କେତେ ବିଚିତ୍ର ପ୍ରେମିକଙ୍କର ସ୍ୱପ୍ନ ଦେଖିଥିବେ । କିନ୍ତୁ ପରିସ୍ଥିତିକୁ ହୃଦୟଙ୍ଗମ କରି ସେ ଠିକ୍ କରିଥିଲେ ଯେ ବିବାହ କରିବେ ନାହିଁ । ସ୍ୱାଧୀନ ଜୀବନ ଯାପନ କରି ସାହିତ୍ୟ ଚର୍ଚ୍ଚା ଓ ସାଧନା କରିବେ । କିନ୍ତୁ ପିତା ତାଙ୍କର ଏ ପ୍ରସ୍ତାବରେ ରାଜି ନ ଥିଲେ । ତାଙ୍କର ଶକ୍ତି ନ ଥିଲା ବିଦ୍ୟୁତ୍‌ପ୍ରଭାଙ୍କର ହୃଦୟକୁ ବୁଝିବାକୁ । ସମାଜ ଏକ ସଙ୍ଗଠନ—ଗୋଟିଏ ଗୁଚ୍ଛରେ ବାନ୍ଧିଥାଏ । ସେଥିରୁ ସାମାନ୍ୟ ବ୍ୟତିକ୍ରମ ଲୋକକୁ ହାସ୍ୟାସ୍ପଦ କରାଏ—ପାଗଳ ବୋଲି ପ୍ରତିପାଦନ କରେ । ବିଚିତ୍ରତାରେ ଯେ ମାଧୁର୍ଯ୍ୟ ଅଛି ଓ ବିଚିତ୍ରତା ବା **diversity** ଯେ ସୃଷ୍ଟିର ନିୟମ ଓ ସ୍ରଷ୍ଟାଙ୍କର ଲକ୍ଷ୍ୟ ଏହା ଆମେ ବୁଝୁ ନାହିଁ । ପିତାଙ୍କର ଯୁକ୍ତି ଥିଲା – ଆମ ସମାଜରେ କନ୍ୟା ଏପରି ରହିପାରିବେ ନାହିଁ । ବିଶେଷତଃ କୌଣସି ପ୍ରକାରେ ତାଙ୍କୁ କନ୍ୟାଦାୟରୁ ପାର ହେବାକୁ ହେବ । ବିଦ୍ୟୁତ୍‌ପ୍ରଭା ପିତାଙ୍କ ସହିତ ଏକମତ ହୋଇ ନ ଥିଲେ ମଧ୍ୟ ପିତାଙ୍କୁ ଅଧିକ ମନସ୍ତାପରେ ନ ପକାଇବା ପାଇଁ ସ୍ଥିର କରି ବିବାହ ପାଇଁ ସମ୍ମତି ଦେଇଥିଲେ । ନିଜକୁ ଭଗବାନଙ୍କଠାରେ ସମର୍ପଣ କରି-ଦେଇଥିଲେ । ସେ ଯେତେବେଳେ ଏପରି ଏକ ମାନସିକ ସଂଘର୍ଷ ମଧ୍ୟରେ କାଳ କାଟୁଥିଲେ ଠିକ୍ ସେତିକିବେଳେ ଅପ୍ରତ୍ୟାଶିତ ଭାବରେ ତାଙ୍କ ସହିତ ମୋର ବିବାହ ଠିକ୍ ହୋଇଥିଲା । ଏହିସବୁ କାରଣରୁ ବିଦ୍ୟୁତ୍-ପ୍ରଭାଙ୍କର ଜୀବନରେ ସେହି ସମୟଟି ଥିଲା ଅତ୍ୟନ୍ତ ଅଶାନ୍ତିର କାଳ । ମାନସିକ ଅଶାନ୍ତିର ପ୍ରଭାବ ଶରୀର ଉପରେ ପଡ଼ିଥିଲା ମଧ୍ୟ ।

ବିଧାତାଙ୍କର ବିଧାନ ଭିନ୍ନ । ଆମ ଦୁହିଁଙ୍କର ମିଳନ ତାଙ୍କ ଶୁଷ୍କ ଜୀବନ-ନଦୀରେ ଜଳର ପ୍ରବାହ ସୃଷ୍ଟି କରିଥିଲା । ତାଙ୍କର ଏକା ନୁହେଁ.

ମୁଁ ମଧ୍ୟ ସରସ ହୋଇ ଉଠିଲି । ସେ ଓ ମୁଁ ଆନନ୍ଦରେ ନୂଆ ନୀଡ଼ ରଚନା କରିବାକୁ ଆରମ୍ଭ କଲୁଁ । ଉଭୟେ ଶିକ୍ଷା, ଦୀକ୍ଷା, ମାନ, ସମ୍ମାନ, ଧନ-ସମ୍ପଦର ଆଭିଜାତ୍ୟ ସବୁ ଭୁଲିଗଲୁଁ । ଦୁହେଁ ଦୁହିଁଙ୍କୁ ଦେଖି କୋଟିନିଧି ମଣିଲୁ । ଆଜି ଭାବୁଛି ସେଦିନ ସେ ମୋତେ ପାଇ ତାଙ୍କ ଜୀବନରେ ଏକ ବିରାଟ ସଂଘର୍ଷରୁ ରକ୍ଷା ପାଇଥିଲେ ।

ବିବାହ ପରେ ଆମ ଗାଁରେ ତାଙ୍କୁ ରହିବାକୁ ହୋଇଥିଲା । ଗାଁ ନାମ କୁଆଁଶମଡ଼ିଆ (ଆଗରପଡ଼ା) । ବାଲେଶ୍ୱର ଜିଲ୍ଲାର ଭଦ୍ରଖ ସହରଠାରୁ ୧୪ ମାଇଲ୍ ଦୂର—ଏକ ପଲ୍ଲୀ ଗାଆଁ । ପିତାଙ୍କର ସାରା ଜୀବନ କଟିଛି ପ୍ରବାସରେ । ସେ କଲିକତାରେ ପୋର୍ଟ କମିଶନରଙ୍କ ଟ୍ରାଫିକ୍ ଡିପାର୍ଟମେଣ୍ଟରେ ଦୀର୍ଘ ଦିନ ଚାକିରି କରିଥିଲେ ଓ ଜୀବନର ଶେଷ ତିନଟି ବର୍ଷ ମାତ୍ର ଆମ୍ଭମାନଙ୍କୁ ଆଣି ଗାଁରେ ରହିଥିଲେ । ଏକାଦିନରେ ସକାଳେ ମୋର ସାନ ଭାଇଟିର ମୃତ୍ୟୁ ହୋଇଥିଲା ଓ ରାତିରେ ବାପା ଇହଧାମ ତ୍ୟାଗ କରିଥିଲେ । କେତେ ବର୍ଷ ଆଗରୁ ଏକମାତ୍ର ସାନ ଭଉଣୀ ମଧ୍ୟ ଚାଲିଯାଇଥିଲା । ଏବେ ସଂସାରରେ ମୁଁ, ମୋର ସାନଭାଇ ଓ ମୋର ବୋଉ । ଦୀର୍ଘ ଦିନ ଧରି ପ୍ରବାସରେ ରହିଥିବାରୁ ଘରଦ୍ୱାର ଓ ଜମିବାଡ଼ି ପ୍ରତି ଦୃଷ୍ଟି ଦିଆଯାଇ ନ ଥିଲା । ମାଟିଘର—ସହରର ବିଜୁଳି ଆଲୁଅ ଓ ପାଣିର ବ୍ୟବସ୍ଥା ସେଠାରେ ସେତେବେଳେ ସ୍ୱପ୍ନ । ବିଦ୍ୟୁତ୍‌ପ୍ରଭା କିନ୍ତୁ ପରିସ୍ଥିତି ସହିତ ନିଜକୁ ମିଶାଇ ଦେଲେ । ସେ ଥିଲେ ଆଜନ୍ମ ସାଧିକା । ଦାମ୍ପତ୍ୟ ଜୀବନର ସାଧନା ଥିଲା ତାଙ୍କ ଜୀବନର ତପସ୍ୟା ପର୍ଯ୍ୟାୟର ସାଧନା । ତେଣୁ ସେ ଏ ଜୀବନରେ ସାଫଲ୍ୟ ଲାଗି ଅଣ୍ଟା ଭିଡ଼ି ଲାଗିପଡ଼ିଲେ । ସେ ଥିଲେ ସାଧିକା ଓ କବି । ଗାଆଁ ମାଟି, ପାଣି, ପବନ ଓ ଗଛଲତାର ଖୁବ୍ ପାଖକୁ ଆସି ସେ ଏକ ନୂତନ ଚେତନା ଲାଭ କଲେ । ତାଙ୍କ ମତରେ ସେ ସେଥିରୁ ଏକ ନୂତନ ବାସନାର ଆଘ୍ରାଣ ପାଉଥିଲେ । କବିର ଚିନ୍ତା ଓ ଧାରଣା ସ୍ୱତନ୍ତ୍ର । ଆମେ ଯାହା ଦେଖୁ ତାକୁ ପ୍ରକୃତରେ ଦେଖୁ ନାହିଁ । ଦେଖୁଥିବା ବସ୍ତୁ ସହିତ ଆମର ଏକାତ୍ମତା ହୋଇ ନ ଥାଏ । ତେଣୁ ପ୍ରତିଦିନ ଏ ପ୍ରକୃତିର ଅପରୂପ ସମ୍ଭାର ସବୁକୁ ପ୍ରତିନିୟତ ଦେଖୁଥିଲେ ମଧ୍ୟ ଗୋଟିଏ ହେଲେ ପରିବେଶ, ଘଟଣା ବା ଦୃଶ୍ୟ ଆମ ପ୍ରାଣରେ ରୋମାଞ୍ଚ ସୃଷ୍ଟି କରିପାରେ

ନାହିଁ । ଅତେ ହେଲେ ଆମେ ନିଜକୁ ଭୁଲିଯାଇ ପ୍ରକୃତି ସହିତ ନିଜକୁ ମିଶାଇ ଦେଇ ପାରୁ ନାହିଁ । ମହାନତା ମଧ୍ୟରେ ହଜିଗଲେ ଯେଉଁ ଆନନ୍ଦ ମିଳେ ତାହା ପାଇ ପାରୁନାହିଁ । ବଦ୍ଧ୍ୟନ୍ତ୍ରପ୍ରଭ କବି—ଚେଷ୍ଟ ତନ୍ମୟ ହୋଇ ଉଠିଥିଲେ ପଲ୍ଲୀ ପ୍ରକୃତିକୁ ଦେଖି । ଗମ୍ଭୀର ଗର୍ଜିରେ ଦୁହେଁ ପାଳନ୍ଦୀ ନଦୀକୁ ଗୁହିଁ ଠିଆ ହୋଇଥିଲୁ । ତାଙ୍କ ସାନ୍ନିଧ୍ୟରେ ମୁଁ ବଙ୍ଗେର । ସେ କିନ୍ତୁ ଉପଦେଶ କରୁଥିଲେ ଦୁଇଟି ଛନ୍ଦରେ--ଫସାଗାର ଛନ୍ଦ ଓ ଫସାର ଆରପାଶର ଛନ୍ଦ ଯାହାର ଝଙ୍କାର କେବଳ କବିର କାନକୁ ଶୁଭେ । ଚକ୍ଷୁ ତାଙ୍କର ମୁଦ୍ରିତ ବା ବେଳେ ବେଳେ ଅର୍ଦ୍ଧ ମୁଦ୍ରିତ ଥାଏ । ସେ ଏକ ଭାବାବେଶର ଅବସ୍ଥା--ଧ୍ୟାନର ଅବସ୍ଥା । ମୋର ସ୍ପର୍ଶରେ ତାଙ୍କର ତନ୍ଦ୍ରା ଭାଙ୍ଗିଯାଏ । ସେ ପୁଣି ଫେରି ଆସନ୍ତି ଫସାଗାର ଛନ୍ଦକୁ । ପ୍ରଥମ ଦର୍ଶନରୁ ତାଙ୍କର ମୋ ପ୍ରତି କରୁଣା ଓ ବାତ୍ସଲ୍ୟର ଭାବ ଆସିଥିଲା । ସହଯାତ୍ରୀ ଭାବରେ ରଙ୍ଗମଞ୍ଚରେ ସେ ପ୍ରାୟ ଯଶୋଦାଙ୍କ ଭୂମିକା ଗ୍ରହଣ କରି ଆସିଛନ୍ତି । ବେଳେ ବେଳେ ରାଣୀ ଓ ରାଧାଙ୍କ ଭୂମିକାରେ ଅଭିନୟ କରନ୍ତି । କିନ୍ତୁ ବୈଶିଷ୍ଟ୍ୟ ଏହି ଯେ ଯେତେବେଳେ ଯେଉଁ ଅଭିନୟ କରନ୍ତି, ସେଥିରେ ଥାଏ ଆନ୍ତରିକତା ଓ ସ୍ୱାଭାବିକତା । ପଲ୍ଲୀପ୍ରେମ କବିତାରେ ସେ ଲେଖିଛନ୍ତି -

ଧନ୍ୟ ଧାନ ନିର୍ବିଶେଷେ ଯେଉଁ ସ୍ନେହସୁଧା
ଦେଇଛୁ ସକଳେ ବାଣ୍ଟି ଜନନୀ ବସୁଧା—
ସେ ଅମୃତଧାର ସଙ୍ଗେ ଥାଏ ନିତ୍ୟ ଭରି
ମଧୁରତା ଯା'ର ପ୍ରାଣ କରେ ଆତ୍ମହରି ।

[ସ୍ୱପ୍ନଦୀପ]

କବିଙ୍କ ଜୀବନକୁ ପ୍ରଧାନତଃ ତିନୋଟି ପର୍ଯ୍ୟାୟରେ ବିଭକ୍ତ କରି ଆଲୋଚନା କରାଯାଇ ପାରେ—ବାଲ୍ୟ, କୈଶୋର ଓ ଦାମ୍ପତ୍ୟ । ତାଙ୍କର ଦାମ୍ପତ୍ୟ ଜୀବନର ଶେଷ ଛଅଟି ବର୍ଷ ଏକ ବାନପ୍ରସ୍ଥର ଜୀବନ । କବିଙ୍କର ବାଲ୍ୟ ଓ କିଶୋର ଜୀବନ ବିଷୟରେ ମୋର ଧାରଣା ସୀମିତ । ତାଙ୍କଠାରୁ ବେଳେ ବେଳେ ଯାହା ଶୁଣିଛି, ତାଙ୍କ ଚିଠିପତ୍ର ଓ ଲେଖା ଖାତା ଇତ୍ୟାଦିରୁ ଯାହା ପାଇଛି ସେଥିରୁ ମୋଟାମୋଟି ଗୋଟେ ଧାରଣା କରି ଲିପିବଦ୍ଧ କଲି । ଦାମ୍ପତ୍ୟ ଜୀବନ କେତେଗୁଡ଼ିଏ ଘଟଣାର ସମଷ୍ଟି

ମାତ୍ର (A packet of incidents) କିନ୍ତୁ ବ୍ୟକ୍ତିଜୀବନର ପ୍ରକୃତ ବୈଶିଷ୍ଟ୍ୟ ଲକ୍ଷ୍ୟ କରିବୁଏ ତାଙ୍କର ବାଲ୍ୟ ଓ କିଶୋର ଜୀବନକୁ ପର୍ଯ୍ୟାଲୋଚନା କଲେ । ସେତେବେଳେ ଥାଏ ତ ଙ୍କର ନିର୍ମଳ ଅବିମିଶ୍ର ଜୀବନ । ସଂସାରର ନକଲି କାରବାର ତାଙ୍କ ଜୀବନରେ ମିଶି ନ ଥାଏ । ଜୀବନର ମୂଳଦୁଆ ପଡ଼େ ଏହି ଦୁଇଟି ପର୍ଯ୍ୟାୟରେ । ଜନ୍ମଜନ୍ମାନ୍ତରର ସଂସ୍କାର (heredity), ପାରିପାର୍ଶ୍ୱିକ ପରିସ୍ଥିତି (envirnment) ଓ ଶିକ୍ଷକ ବା ଗୁରୁ (teacher and guide) ବ୍ୟକ୍ତିର ଜୀବନ-ଗଠନରେ ସହାୟତା କରନ୍ତି । ସବୁ କିଛି ବିଧିନିର୍ଦ୍ଦିଷ୍ଟ । ଶ୍ରୀମା କହିଛନ୍ତି ସୃଷ୍ଟି କରିବା ଏକ ଖେଳଘର ବ୍ୟାପାର ନୁହେଁ । ଯାହାଙ୍କ ଉପରେ ଏ ଦାୟିତ୍ୱ ପଡ଼େ ସେ ସଚେତନ ହୋଇ କୌଣସି ମହାନ୍ ଆତ୍ମାକୁ ଆବାହନ କରିପାରନ୍ତି । ଜୀବ ସୃଷ୍ଟିରେ ମାତା ହୁଏ ଆଧାର । ଆଧାରର ଆସ୍ପୃହା, ସଂଯମ, ସ୍ନେହ ଓ ନିଷ୍ଠା ଉପରେ ସୃଷ୍ଟି ବହୁ ପରିମାଣରେ ନିର୍ଭର କରେ । ଦେହାନ୍ତର ପରେ ଆତ୍ମା ଚୈତ୍ୟରାଜ୍ୟରେ ବିଚରଣ କରୁଥାଏ ଓ ସେଠାରୁ ଆଇ ଉପଯୁକ୍ତ କ୍ଷେତ୍ରର ଅନ୍ୱେଷଣରେ ଲିପ୍ତ ଥାଏ । ଯେତେବେଳେ ନିମ୍ନର ଆବାହନ ବା ଆସ୍ପୃହା ସହିତ ଉପରିସ୍ଥ ଆତ୍ମାର ଯୋଗାଯୋଗ ହୋଇଯାଏ—ସେହି ମୁହୂର୍ତ୍ତରେ ଯେଉଁ ସୃଷ୍ଟି ହୁଏ ସେଥିରେ ମହାନ୍ ଆତ୍ମା ଲୀଳା ନିମିତ୍ତ ଜୀବନ ମଧ୍ୟକୁ ପ୍ରବେଶ କରେ । ବାବୁଙ୍କର ପିତା ସ୍ୱର୍ଗତ ନିମାଇଁ ଚରଣ ଦାସ ଜଣେ ବିଶିଷ୍ଟ ଲେଖକ ଥିଲେ । ସାହିତ୍ୟ ସାଧନା ପ୍ରତି ତାଙ୍କର ବିଶେଷ ଅନୁରାଗ ଥିଲା । ଜୀବନର ଅଧିକାଂଶ ଭାଗ ସେ ଏହି କାର୍ଯ୍ୟରେ ନିଜକୁ ନିୟୋଜିତ କରିଥିଲେ । ଛାତ୍ରଛାତ୍ରୀ ତଥା କିଶୋରମାନଙ୍କର ଶିକ୍ଷା ଓ ଚରିତ୍ରଗଠନରେ ସହାୟକ ହେଲାଭଳି ଅନେକ ପୁସ୍ତକ ସେ ରଚନା କରି ଯାଇଛନ୍ତି । କର୍ତ୍ତବ୍ୟନିଷ୍ଠା ଓ ସତ୍ୟ ପ୍ରତି ଆଦର ଥିଲା ତାଙ୍କ ଚରିତ୍ରର ବିଶିଷ୍ଟ ଧାରା ଓ ସେ ସତ୍ୟକୁ ନିର୍ଭୀକ ଭାବରେ ବ୍ୟକ୍ତ ତଥା ଆଚରଣ କରିପାରୁ-ଥିଲେ—କୌଣସି ଭୟ ବା ସଂକୋଚ ତାଙ୍କର ନଥିଲା । ପ୍ରାର୍ଥନା ବେଳେ ସେ ଦେବତାଙ୍କ ସହିତ ନିଜକୁ ମିଶାଇ ଦେଉଥିଲେ ଓ ଏକ ନିଷ୍ଠାପର ଜୀବନ ପ୍ରତି ତାଙ୍କର ଆଦର ଥିଲା । ମାତା ଶ୍ରୀମତୀ ରେଖା ଦେବୀ ମୋ ବିଷୟରେ ଚରିତ୍ର ଗଠନ ପାଇଁ ଜଣେ କୃତୀ ଶିକ୍ଷୟିତ୍ରୀ ।

ଦୃଢ଼ତା ତାଙ୍କ ଚରିତ୍ରର ବିଶେଷତ୍ୱ । ସେ ଏକ ଲୁହାର ମଣିଷ—ବାଙ୍କିଯିବା ତାଙ୍କ ସ୍ୱଭାବ ବିରୋଧୀ । ଏହିପରି ପିତାମାତାଙ୍କର କୌଣସି ସଚେତନ ମୁହୂର୍ତ୍ତରେ ତୃତୀୟ ସନ୍ତାନଭାବେ କବିଙ୍କର ଜନ୍ମ ହୋଇଥିଲା । କଟକ ଜିଲ୍ଲାର ଆଳି ଥାନାର ନାଟରୀ ଗ୍ରାମରେ ତାଙ୍କର ପୈତୃକ ଗୃହ । ସେ କିନ୍ତୁ ଜନ୍ମ ଗ୍ରହଣ କରିଥିଲେ ମାତୁଳାଳୟରେ । ସେଦିନ ଥିଲା ଶ୍ରୀଗୁଣ୍ଡିଚାର ପରଦିନ । ପ୍ରଭୁଙ୍କର ରଥ ତେବେ ବି ଲକ୍ଷ୍ୟସ୍ଥଳରେ ପହଞ୍ଚି ନଥାଏ । ଏକେ ଝଡ଼ ଓ ବର୍ଷାର ଦିନ—ଘରୁ ବାହାରି ହେଉ ନଥାଏ । ଏହିପରି ଗୋଟିଏ ଦିନର ସକାଳ ପ୍ରାୟ ୯ଟା ସମୟରେ କବିଙ୍କର ଜନ୍ମ ହୋଇଥିଲା ମାମୁଁଙ୍କ ଘରେ । ସେ ଦିନଟି ଜୁଲାଇ ୧୨ ତାରିଖ ୧୯୨୭ ମସିହା । କବିଙ୍କର ଜନ୍ମ ଝଡ଼ ମଧ୍ୟରେ । ଝଡ଼ ଓ ବର୍ଷାକୁ ସେ ଖୁବ୍ ଭଲ ପାଉଥିଲେ । ଖୋଲା ଦେହରେ ଝଡ଼ ବର୍ଷା ମଧ୍ୟରେ ଘଣ୍ଟା ଘଣ୍ଟା ନିର୍ଭୟରେ ବୁଲି ପାରୁଥିଲେ । ଝଡ଼ ତାଙ୍କ ଜୀବନର ସହଚର । ଝଡ଼ରେ ସୃଷ୍ଟି ପୁଣି ଝଡ଼ ପରି ତାଙ୍କର ବିଦାୟ ।

ପିତା ଓ ମାତା କଟକ ସହରରେ ରହୁଥିଲେ । ତେଣୁ ତାଙ୍କୁ ମଧ୍ୟ ବାଲ୍ୟଜୀବନ ସେହିଠାରେ କଟାଇବାକୁ ହୋଇଥିଲା । ସେ ମଝେ ମଝେ ପିତାମାତାଙ୍କ ସହିତ ଗ୍ରାମକୁ ଯାଉଥିଲେ । ଶୁଣିଛୁ ପିଲାଦିନେ ସେ ଥିଲେ ସ୍ୱଭାବଚଞ୍ଚଳ, ଅତ୍ୟନ୍ତ କ୍ରୀଡ଼ାପ୍ରିୟ ଓ ସାଥୀପ୍ରିୟ । କାହୁଁ କାହୁଁ ସାଙ୍ଗସାଥୀ ଆଣି ଘରେ ପୂରାଉଥିଲେ । ମାତାଙ୍କର ସମସ୍ତଙ୍କୁ ଆଦର ତାଙ୍କର ବିଶେଷ ସହାୟକ ହୋଇଥିଲା । ଭୟ ବା ସଙ୍କୋଚ ତାଙ୍କ ସ୍ୱଭାବରେ ନଥିଲା । ଝିଅ ଓ ପୁଅ ଭେଦ ବିଚାର ତାଙ୍କର କଳ୍ପନାରେ ଆସି ନଥିଲା । ପିଲାଦିନେ ସେ ଓ ତାଙ୍କ ଭଉଣୀମାନେ ଫ୍ରକ୍ ଓ ପେଣ୍ଟ ପିନ୍ଧି ନଥିଲେ । ପ୍ଲେଟ ଶାଢ଼ୀ ଓ ବ୍ଲାଉଜ ପିନ୍ଧୁଥିଲେ—ଲୁଗାପିନ୍ଧା କୁଞ୍ଚକରି ନୁହେଁ—ସାଧାରଣ ମଫସଲି ପିନ୍ଧା । ଏହି ଲୁଗାପିନ୍ଧା ତାଙ୍କର ଶେଷ ଜୀବନ ପର୍ଯ୍ୟନ୍ତ ରହିଥିଲା । ୮।୯ ବର୍ଷ ବେଳେ ସେ କଟକର ଖୋଲାସାହି ବାଳିକା ବିଦ୍ୟାଳୟରେ ପଢ଼ୁଥିଲେ । ସେତେବେଳେ ସେ ସାଙ୍ଗସାଥୀ ମେଳରେ କଟକର ବିଭିନ୍ନ ଅଞ୍ଚଳରେ ବୁଲୁଥିଲେ । ସେତେବେଳେ ସହରରେ ଘୋଡ଼ାଗାଡ଼ିର ପ୍ରଚଳନ ଥିଲା । ସେ ଘୋଡ଼ାଗାଡ଼ି ପଛରେ ଲମ୍ପଟି ପଡ଼ି ବହୁବାଟ ଚାଲି ଯାଉଥିଲେ । ବେଳେବେଳେ କୋର୍ଟ୍‌ର୍‌ଟ୍ରାମ୍‌ର

ସ୍ୱଭୁକ୍ ତାଙ୍କ ଦେହରେ ବାଜଥାଏ ମଧ୍ୟ । ସନ୍ଧ୍ୟା ପରେ ବୁଲି ବୁଲି ଘରକୁ ଫେରୁଥିଲେ ଓ କିଛିକ୍ଷଣ ପରେ ଘରର ଯେକୌଣସି ସ୍ଥାନରେ ବସୁ ବସୁ ଶୋଇପଡୁଥିଲେ । ପ୍ରାୟ ପ୍ରତିଦିନ ତାଙ୍କର ମା ତାଙ୍କୁ ଉଠାଇ ଖୁଆଉଥିଲେ ଓ ସେ ଆଖିବୁଜି ଖାଉଥିଲେ । ପିଲାଦିନୁଁ ତାଙ୍କର ପୋଷାକ ପରିଚ୍ଛଦ ଓ କେଶବିନ୍ୟାସ ପ୍ରତି ବିଶେଷ ନଜର ନଥିଲା । ସାଧାସିଧା ଚଳଣି ତାଙ୍କର ପ୍ରିୟ ଥିଲା । କଟକର ରେଭେନ୍‌ସା ବାଳିକା ବିଦ୍ୟାଳୟରେ ସେ ଦଶମ ଶ୍ରେଣୀ ପର୍ଯ୍ୟନ୍ତ ପଢିଥିଲେ । ତାଙ୍କର ସହପାଠୀମାନଙ୍କ ବିଷୟରେ କହିବାକୁ ଯାଇ ସେ "ଅମଡ଼ାବାଟ" ଉପନ୍ୟାସର ଲେଖିକା ବସନ୍ତ ପଟ୍ଟନାୟକ ଓ ଡାକ୍ତର ଅହଲ୍ୟା ଦେଵୀଙ୍କ ବିଷୟ କହନ୍ତି । ବିବାହଯୋଗ୍ୟ ବୟସ ହେଲାମାତ୍ରେ ତାଙ୍କୁ ପାଠପଢ଼ା ଛାଡ଼ିବାକୁ ହୋଇଥିଲା । ପିଲାଦିନେ ସେ ଖୁବ୍ ଚଞ୍ଚଳ ଥିଲେ ମଧ୍ୟ ପାଠରେ ଖୁବ୍ ମନୋଯୋଗୀ ଥିଲେ । ପାଠ ଉପକରଣ ଯଥା—ବହି, ଖାତା, ପେନ୍‌ସିଲ୍ ଓ କଲମ ଇତ୍ୟାଦିକୁ ସେ ଖୁବ୍ ଯତ୍ନରେ ରଖୁଥିଲେ । ଗୋଟିଏ କଲମ ଓ ପେନ୍‌ସିଲ୍‌କୁ ସେ ବର୍ଷ ବର୍ଷ ଖୁବ୍ ଯତ୍ନରେ ରଖୁଥିଲେ । ପିଲାଦିନୁ ଗୋଟିଏ ଗୋଟିଏ କରି ପଇସା ସଂଗ୍ରହ କରି ବହି କିଣିବା ତାଙ୍କର ସ୍ୱଭାବ ଥିଲା । ବଡ଼କାଳରେ ଏହିପରି ଗୋଟିଏ ଗୋଟିଏ ପଇସା ଘଡ଼ିରେ ସଞ୍ଚୟ କରି ସେ ବହି ଛାପିବା, ଜମି କିଣିବା ଓ ଘର କରିବା କାର୍ଯ୍ୟରେ ମୋଟେ ସାହାଯ୍ୟ କରି ପାରିଥିଲେ । ପାଠପଢ଼ାରେ ଅଦମ୍ୟ ଇଚ୍ଛା ଥିଲେ ମଧ୍ୟ ପାରିବାରିକ ପରମ୍ପରା ଅନୁସାରେ ପିତାମାତାଙ୍କ ନିର୍ଦ୍ଦେଶକ୍ରମେ ପାଠପଢ଼ା ଛାଡ଼ି ଘରେ ରହିବାକୁ ବାଧ୍ୟ ହୋଇଥିଲେ । ଘରେ ରହି ସବୁ ପ୍ରକାର ବହି ପଢ଼ିବାର ସୁଯୋଗ ତାଙ୍କୁ ମିଳିଥିଲା, ଭାଇ ଓ ପିତା ତାଙ୍କୁ ବହିପତ୍ର ଆଣି ଯୋଗାଇଥିଲେ । ଘରେ ଘରେ ପଢି ମେଟ୍ରିକ୍ ପରୀକ୍ଷା ଦେବାର ବୋଧହୁଏ ସେମାନଙ୍କର ଯୋଜନା ଥିଲା । ଅନେକ ସମୟ ସେ ପିତାଙ୍କ ସାନ୍ନିଧ୍ୟରେ କଟାଉଥିଲେ । ଅନ୍ୟମାନଙ୍କଠାରୁ ପିତା ତାଙ୍କୁ ଅଧିକ ଆଦର କରୁଥିଲେ । ବାହାରକୁ ଗଲେ ତାଙ୍କୁ ସାଙ୍ଗରେ ନେଉଥିଲେ । ବହୁ ବିଶିଷ୍ଟ ଲୋକଙ୍କ ସହିତ ତାଙ୍କୁ ପରିଚିତ କରାଉଥିଲେ । ଏ ହେଲା ତାଙ୍କର ପ୍ରଥମ ପର୍ଯ୍ୟାୟ ଜୀବନର କଥା ।

ଦୈବ ଦୋଷକୁ କୌଣସି ପାରିବାରିକ କାରଣରୁ ତାଙ୍କୁ ସେହି ସମୟରେ କେତେବର୍ଷ ଗାଁରେ କଟାଇବାକୁ ହୋଇଥିଲା । ପାଠପଢ଼ା ବା ପରୀକ୍ଷା ଦେବାର ସ୍ୱପ୍ନ ବାସ୍ତବରେ ପରିଣତ ହୋଇପାରିଲା ନାହିଁ । ତାଙ୍କ ଜୀବନର ବିକ୍ଷିପ୍ତ ପର୍ଯ୍ୟାୟ ହେଲା ବଢିଲା ଝିଅ ଭାବରେ ପିତୃଗୃହରେ । ଗାଁଟି ଧୋଇଆ ଅଞ୍ଚଳରେ । ବ୍ରାହ୍ମଣୀ, ଖରସ୍ରୋତା ଓ ଅନ୍ୟାନ୍ୟ ଶ୍ରେଷ୍ଠ ବଡ଼ ନଦୀ ସେ ଅଞ୍ଚଳରେ ପ୍ରବାହିତ । ସମୁଦ୍ରଠାରୁ ଦୂରତା କମ୍ । ନଦୀକୁ ଜୁଆର ଆସେ । ତଳମାଳ ଅଞ୍ଚଳ—ଜମି ଖୁବ୍ ଉର୍ବର । ବଢ଼ି ଓ ଧୋଇ ଯୋଗୁଁ ବେଳେ ବେଳେ ଧାନ ଫସଲ ନଷ୍ଟ ହେଲେ ମଧ୍ୟ ବିରି, ମୁଗ, ଯଅ, ଧନିଆ, ସୋରିଷ, ମାଣ୍ଡିଆ ଓ ଗହମ ଇତ୍ୟାଦି ଫସଲ ପ୍ରଚୁର ହୁଏ । ଦୁଧ, ଦହି, ଛେନା, ଘିଅ ଓ ମାଛ ମଧ୍ୟ ଭଲ ମିଳେ । ତାଙ୍କଠାରୁ ଶୁଣିଛି ତାଙ୍କ ଅଞ୍ଚଳ ପ୍ରାଚୁର୍ଯ୍ୟର ଲକ୍ଷ୍ମୀଭଣ୍ଡାର ସଦୃଶ ଥିଲା । ସେ ଗାଁ ପରିବେଶରେ ନିଜକୁ ମିଶାଇ ଦେଇ ଫସଲ ଅମଳରେ ଲାଗିଯାଇଥିଲେ । ନିଜର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ସେ ସବୁ କରାଉଥିଲେ କାରଣ ମାତା ସେତେବେଳେ ସହରରେ ରହୁଥିଲେ । ମୁଁ ସେ ଗାଁ ଦେଖି ନାହିଁ । କଟକ ସହରରେ ମୋର ବିବାହ ହୋଇଥିଲା । କିନ୍ତୁ ବଦ୍ୟୁତ୍‌ପ୍ରଭାଙ୍କଠାରୁ ଶୁଣି ମୋ ମନରେ ସେ ଗାଁର ଏକ ନିଖୁଣ ଛବି ଆଙ୍କି ହୋଇଯାଇଛି । ତାଙ୍କ ଘରଟି ଗାଁର ଅନ୍ୟମାନଙ୍କ ଘରଠାରୁ ଟିକେ ଛଡ଼ାରେ । ପିତା ଧୋଇଆ ଅଞ୍ଚଳ ଯୋଗୁଁ ସେଠାରେ ଉଚ୍ଚକରି ଉହ ବାନ୍ଧିଥିଲେ ଓ ନଡ଼ିଆ ଗଛ ଲଗାଇ ଥିଲେ । ଏବେ ଆମେ ବେଳେ ବେଳେ ସେ ଗଛର ଫଳ ଖାଉଛୁ । ସେ ସମୟର କେତେ ଗଳ୍ପ ତାଙ୍କଠାରୁ ଶୁଣିଛି । ତାଙ୍କ ଗାଁର ପାଚଁଆଳ ପବନ କୁଆଡ଼େ ଶୁଖିଲା ଦେହରେ ରସର ସଞ୍ଚାର କରେ । ତାଙ୍କ ଗାଁର ବଢ଼ି ପାଣି ବନ, ତାଙ୍କ ଗାଁର ଭାଲୁକୁଣି ମେଳନ, ତାଙ୍କ ଗାଁର ରଜକମେଇ ଓ ତାଙ୍କ ଗାଁର ନହି ନାଳ କଥା ସେ ମତେ କେତେଥର କହିଛନ୍ତି, ମୁଁ ଶୁଣେ, ଅନୁଭବ କରେ ଯେତେ ଯେପରି ମୁଁ ସେହି ଗାଁର ଜଣେ ଲୋକ !

ଆଷାଢ଼ ମାସ ସାଥେ ସାଥେ ବର୍ଷାଦିନ ଆସେ, ଆକାଶରେ ଝଡ଼ ବର୍ଷାର ସଞ୍ଚାର ହୁଏ । ଫେଣ ସହିତ ବଢ଼ିପାଣି ନଈ, ନାଳ, ବିଲ ଓ ପାଟରୁ ଉଛୁଳି ଗାଁ ଭିତରକୁ ମାଡ଼ିଆସେ । ବୁରିଆଡ଼େ ଜଳାର୍ଣ୍ଣବ । ମଝିରେ

ଖଣ୍ଡେ ଖଣ୍ଡେ ଟାପୁ ଗାଁ । ଗମନାଗମନ ହୁଏ ଡଙ୍ଗାରେ । ବଢ଼ିପାଣି ବଦ୍ୟୁତ୍‌ପ୍ରଭାଙ୍କ ଦାଣ୍ଡ ପିଣ୍ଡାକୁ ଛୁଇଁଯାଏ । ବାଡ଼ପଟକୁ ମଧ୍ୟ ପାଣି ଉହଳୁ ଲଗି ମାଡ଼ଯାଏ । ଗୃହଆଡ଼େ ପାଣି ସୁଅର ଶବ୍ଦ ଗମ୍ଭୀର ସଙ୍ଗୀତରେ ଉପୁର ସଞ୍ଚାର କରେ । ପାଣି ସୁଅରେ ସାପ, କୁମ୍ଭୀର ଆଦି ଜଳଚର ପ୍ରାଣୀମାନେ ଗାଁ ଭିତରକୁ ପଶି ଆସନ୍ତି । ଘରର ଲୋକେ ପ୍ରାୟ ୨।୩ ଦିନ, ବେଳେ ବେଳେ ଅଧିକ ଦିନ ପର୍ଯ୍ୟନ୍ତ ଘରେ ବନ୍ଦୀ ଭାବରେ ଜୀବନ ଯାପନ କରନ୍ତି । ସେମାନେ ସେଥିରେ ଅଭ୍ୟସ୍ତ ଓ ସେଥିପାଇଁ ମଧ୍ୟ ପ୍ରସ୍ତୁତ ଥା'ନ୍ତି । ବଦ୍ୟୁତ୍‌ପ୍ରଭା ସେହି ପରିବେଶର ଖୁବ୍ ଉପଭୋଗ କରନ୍ତି । ଘଣ୍ଟା ଘଣ୍ଟା ଦାଣ୍ଡ ପିଣ୍ଡାରେ ବସି ପ୍ରକୃତିକୁ ଦେଖନ୍ତି— ବାହାରର ପାଣି ଓ ପବନର ଛିଟା ବାଜିଲେ ତାଙ୍କ ଦେହରେ କୁଆଡ଼େ ରୋମାଞ୍ଚ ହୁଏ ଓ ସେ ସ୍ୱର୍ଗୀୟ ଆନନ୍ଦ ଲଭ କରନ୍ତି ।

ଏହି ସମୟରେ ଖୁଦୁକୁଣୀ ଓଷା ପାଳନ କରାଯାଏ । ମାସେ ବ୍ରତ ପାଳନ କଲା ପରେ ମେଳନ ହୁଏ । ଗୃହଆଡ଼େ ପାଣି—ଚେଣ୍ଟୁ ଗାଁ ସାରା ଝିଅମାନେ ଓ ନବବିବାହିତା ବଧୂମାନେ ଡଙ୍ଗାରେ ଏକତ୍ରିତ ହୋଇ ସାଗରବନ୍ତ କ୍ରୀଡ଼ା କରନ୍ତି । ଗୀତ, ବାଦ୍ୟ ଓ ହୋଷଣୀ ହୁଏ । ଶଙ୍ଖ ଓ ହୁଳହୁଳୀରେ ଗଗନମଣ୍ଡଳ କମ୍ପେ । ୨।୩ଟି ଡଙ୍ଗା ଏକତ୍ର ଗୃପ ହୁଏ । ଚେଣ୍ଟୁ ଝିଅମାନେ ତାସ୍ ଖେଳନ୍ତି, ଗଳ୍ପ କରନ୍ତି ଓ ଗୀତ ଗାଆନ୍ତି । ପରଦିନ ସକାଳେ ଓଷା ଉଦ୍‌ଯାପନ କରାହୁଏ । ସମସ୍ତେ ଏକାଠି ବସି ଖାଆନ୍ତି । ଏହି ହେଲା ମୈତ୍ରୀ ଓ ଭ୍ରାତୃତ୍ୱର ପରମ୍ପରା ଯାହା କଣୋଇ ଅନୂଢ଼ା ତରୁଣୀଟିଏ ସେ ବୟସରୁ ଶିଖେ । କବିଙ୍କ ଭାଷାରେ—

"ଦୂର ଅତୀତରେ ଥିଲେ ପୂଜାରିଣୀ
ଏ ଗାଁର ଯେତେ ଝିଅ
କାଳ-ଘୂର୍ଣ୍ଣିରେ କିଏ କାହିଁ ପଡ଼ି
ବିଦେଶେ ଜୀବନ ନିଏ ।
ଗାଏଁ ଗାଏଁ ଝିଅ ପୂଜି ଆସିଲେଣି
ପୂଜିବେ ଭବିଷେ ପୁଣି
ସାଧବ ଯୁଗର ସ୍ମୃତି ରଖିଥିବ
ଏଇ ଓଷା ଖୁଦୁକୁଣି ।"

(ସଞ୍ଚୟନ—ପୃ-୧୦୩)

ରଜକମେଇ ମଧ୍ୟ ବିଦ୍ୟୁତ୍‌ପ୍ରଭାଙ୍କ ଗ୍ରାମର ଆଉ ଗୋଟିଏ ପ୍ରଧାନ ପର୍ବ । ଓଡ଼ିଶାର ଅନ୍ୟାନ୍ୟ ସ୍ଥାନ ପରି ଏ ପର୍ବ ମଧ୍ୟ ସେ ଅଞ୍ଚଳରେ ତିନଦିନ ଧରି ପାଳିତ ହୁଏ । ଏହା ମଧ୍ୟ ଅବିବାହିତା ଝିଅ ଓ ନୂଆ ବୋହୂମାନଙ୍କର ପର୍ବ । ପ୍ରତ୍ୟେକ ଘରର ମା ଓ ବୋହୂମାନେ ତାଙ୍କ କୁଟୁମ୍ବରେ ଥିବା ଝିଅମାନଙ୍କର ଆମୋଦ ପ୍ରମୋଦ ପାଇଁ ସବୁ ବ୍ୟବସ୍ଥା କରିଥାନ୍ତି । ତାଙ୍କ ପାଇଁ ନୂଆ କାଚ, ନୂଆ ଲୁଗା ଓ ଅନ୍ୟାନ୍ୟ ଭୂଷଣ ଅଣାଯାଏ । ଝିଅ ଜୀବନରେ କେତେଟା ବର୍ଷ ଏହିପରି ଉତ୍ସବକୁ ଉପଭୋଗ କରିବାର ସୌଭାଗ୍ୟ ତାଙ୍କର ହୋଇଥିଲା । ବିବାହିତ ଜୀବନରେ ସେ ସୁଖ ଆଉ ମିଳେନି ନାହିଁ । ସ୍ନେହ ଓ ପ୍ରେମ ଆମ ସମାଜକୁ ବାନ୍ଧି ରଖିଛି । ଝିଅଟି ସ୍ନେହ ଓ ଆଦରର କେନ୍ଦ୍ର । ଯାହା ଘରେ ଝିଅ ନାହିଁ ତା' ଘର ଶୂନ୍ୟ ଓ ଅଚଞ୍ଚଳ ମନେହୁଏ । ଗାଁରୁ ମା ଭଉଣୀଠାରୁ ଆରମ୍ଭ କରି ସାଇର ଲୋକମାନେ ଝିଅମାନଙ୍କୁ ପ୍ରାଣଭରି ଭଲ ପାଆନ୍ତି, ଖୁଆନ୍ତି ଓ ନାନା ଭାବରେ ଖୁସୀ କରାନ୍ତି । ଝିଅ ଜନମ ପର ଘରକୁ । ଏହି ସ୍ନେହ ଓ ପ୍ରେମକୁ ସେ ପୁଣି ଆଗେଇ ନବ ସେ ଯେବେ ନବ ଘର ସଂସାରର ଦାୟିତ୍ୱ ଓ ହବ ଦିନେ ମାଆ । ସେ ଗାଁର ପଦ୍ଧତି ଅନୁସାରେ ଝିଅମାନେ ୩ ଦିନ କାଳ ଗୋଟିଏ ନିର୍ଦ୍ଦିଷ୍ଟ ଘରେ ରହି ମଉଜ କରନ୍ତି । ନିଜ ଘରକୁ ଫେରନ୍ତି ନାହିଁ । ତାକୁ କହନ୍ତି "ରଜଘର" । ସମସ୍ତଙ୍କ ଘରୁ ମା'ମାନେ ନାନା ପ୍ରକାର ଖାଦ୍ୟସାମଗ୍ରୀ ଆଣି ସେଠାରେ ପହଞ୍ଚାନ୍ତି । ବିଦ୍ୟୁତ୍‌ପ୍ରଭା ଦେବୀ ଗାଁରେ ଥିଲାବେଳେ ଏ ପର୍ବର ମଧ୍ୟ ଉପଭୋଗ କରିଥିଲେ । ସେ ଲେଖିଛନ୍ତି—

"ଚପଳା ନଣନ୍ଦେ  
ରଙ୍ଗ ଚୋପାଟା  
ଆଗତ ଏ ସନେ  
ସାନ ନୂଆବୋହୂ  
ଆଜି ଅଛ ଝିଅ,  
ତୁମ ହାତେ ଗୃହଁ  
×

କହଇ ବଧୂ—  
ମଥାରେ ତୁମ  
ଭାବିବ କେଉଁ  
ଆଜି ତ ଆଉ  
କାଲିକ ହେଲେ  
ରହିବେ କେତେ  
×

'ରୁହ ଟିକଏ  
ମାରି ମୁଁ ଦିଏଁ,  
ରାଇଜେ ଥାଇ  
ପାଖରେ ନାଇଁ !  
ଆମରି ପରି  
ଝିଅ ଝିଆରୀ ।'  
×

ଚଳଲେ ବାଳୀଏ    ଫୁଟାଇ ପଥେ    କମଳ-କଳ
'ରଜଘରେ' ଆଜ    ଖେଳବେ ବୋଲ    ହରଷେ ଦୋଳ ।"
('ରଜକମେଇ', ସଞ୍ଚୟନ—ପୃ-୧୦୯)

ସେ ଗାଁର ବୈଶାଖ ସନ୍ଧ୍ୟା—ଗାଁଟି ଛଳ ଅଞ୍ଚଳରେ ହୋଇଥିଲେ ମଧ୍ୟ ନଦୀଟି ଗ୍ରାମଠାରୁ ଟିକଏ ଦୂରରେ । ଖରସୁଆ ନଦୀର ଗୋଟିଏ ଶାଖା—ସେ ଅଞ୍ଚଳରେ ତାକୁ କାଣୀ ନଦୀ ବୋଲି କହନ୍ତି । କବିଙ୍କଠାରୁ ଶୁଣିଛୁ ଖରାଦିନେ ସେ ନଦୀରୁ ଜଳ ଆଣିବା ପାଇଁ ତାଙ୍କୁ କଳସୀ ଧରି ଏକୁଟିଆ ଯିବାକୁ ପଡ଼ୁଥିଲା । ସେତେବେଳେ ସେ ପ୍ରାପ୍ତବୟସ୍କା—ଯୌବନର ଚଞ୍ଚଳତା ତାଙ୍କ ଅଙ୍ଗ ପ୍ରତ୍ୟଙ୍ଗରେ ପ୍ରବେଶ କରୁଥିଲା । ଦେହ ଭାରି ଭାରି ଲାଗୁଥିଲା—ମନ ମଧ୍ୟ । ଦିନେ ଦିନେ କଳସୀ କାଖରେ ଫେରୁ ଫେରୁ କଳା ମେଘ ଛଳ କାଟି ଗର୍ଜିଉଠେ । ସାଇଁ ସାଇଁ ପବନ ଧୂଳି ଝଡ଼ର ସୃଷ୍ଟି କରେ । ଗଛ ପତ୍ର କମ୍ପି ଉଠେ । ମୁଁ କବିଙ୍କଠାରୁ ଶୁଣିଛି ଶୁଣ୍ଡ ମଧ୍ୟ କମ୍ପି ଉଠେ । ବାଟରେ ତାଳବଣ, ବାଲି, ପାଟ ଓ ପ୍ରାନ୍ତର । ଖୁବ୍ ଚଞ୍ଚଳ ପାଦ ପକାଇ ସେ ଗାଁ ଆଡ଼କୁ ଆସନ୍ତି । ଭୟ ବୋଲି କିଛି ପିଲାଦିନୁଁ ତାଙ୍କର ନଥିଲା । କାର୍ଯ୍ୟରେ ତାଙ୍କର ଲକ୍ଷ୍ୟ ନିର୍ଦ୍ଦିଷ୍ଟ—ଆଉ କିଛିକୁ ସେ ଭ୍ରୂକ୍ଷେପ କରନ୍ତି ନାହିଁ । ସେଥିପାଇଁ ସେ କାହାରିଠାରେ ବା କେଉଁ ପରିସ୍ଥିତି ଆଗରେ ନଇଁ ଯାଆନ୍ତି ନାହିଁ । ସେ ସମୟରେ ତାଙ୍କର ଭୟ ନଥିଲା କିନ୍ତୁ ଥିଲା ଆଉ ଗୋଟିଏ ଭାବ ଯାହାକି ସେ ମୋତେ ଥରେ କହିଥିଲେ । ବୋଧହୁଏ ଜୀବନରେ ମୋ ଛଡ଼ା ଦ୍ୱିତୀୟ ବ୍ୟକ୍ତିଙ୍କୁ ସେ ଏକଥା କହି ନଥିବେ । କଳସୀ କାଖରେ ନେଇ ସେ ନଦୀରୁ ଫେରନ୍ତି—ବର୍ଷା ଉଠେ—ଝଡ଼ ଆସେ—ଗଛଆଡ଼େ ସାଇଁ ସାଇଁ ଶବ୍ଦ । ସେ ଏକୁଟିଆ । ହଠାତ୍ ତାଙ୍କ ମନକୁ ଆସେ ତାଙ୍କ ପ୍ରାଣପ୍ରିୟ ସୌମ୍ୟ ଯୁବା ଗଛ ଉଢ଼ାଳରୁ ତାଙ୍କ ଆଗରେ ଛିଡ଼ା ହୋଇଯାଉଛନ୍ତି । ପାଦ ତାଙ୍କର ଅଟକି ଯାଉଛି । ଗଛ ଆଖି ଏକ ହୋଇ ଯାଉଛି । ସେ ପୁଣି କହନ୍ତି—ସତେ ଅବା ମୁଁ ସେତେବେଳେ ତାଙ୍କର ମାନସ ପଟରେ ଉଠିଆସି ଏପରି ସ୍ୱପ୍ନ ରଚନା କରିଥିଲି । ଭୁହାଏ ପବନରେ ସ୍ୱପ୍ନ ଭାଙ୍ଗିଯାଏ । କିନ୍ତୁ ଦମ୍ ଦମ୍ ଛାତି ନେଇ ସେ ଗାଁ ଭିତରକୁ କଳସୀ କାଖରେ ପ୍ରବେଶ କରନ୍ତି ।

ହେ କବି ! ଏବେ ମୁଁ ବୁଝି ପାରୁଛି ନିର୍ଜନତା ବେଳେ ବେଳେ ଏହିପରି ଭାବର ସୃଷ୍ଟି କରେ । ପରିବେଶ, ପରିସ୍ଥିତି ଓ ବୟସକୁ ଗୃହିଁ ତା'ର ରୂପ ହୁଏ ଭିନ୍ନ । ପିଲା ବେଳର ସ୍ୱପ୍ନ, ଯୁବା ବେଳର ସ୍ୱପ୍ନ ଓ ବାର୍ଦ୍ଧକ୍ୟର ସ୍ୱପ୍ନ ସମାନ ହୁଏ ନାହିଁ—ହୋଇପାରେନା ମଧ୍ୟ । ସେ ଯେଉଁ ଅବସ୍ଥାର ସ୍ୱପ୍ନ ହେଉନା କାହିଁକି ତା'ର ଉତ୍ସ ଅପାର୍ଥିବ ପ୍ରେମରେ ନିହିତ ଥାଏ । ସେ ସ୍ୱପ୍ନରେ ସିଏ ନାୟକ ସିଏ ପୁଣି ନାୟିକା—ଏକ ଓ ଅଭିନ୍ନ । ନିର୍ଜନରେ ସେ ଏକୁଟିଆ ଥାଏ । ନିଜ ଅନ୍ତରର ଗଭୀରତମ ପ୍ରଦେଶରେ ସେ ବୁଡ଼ିଯାଏ । ନିଜ ମଧ୍ୟରୁ ଆଉ ଜଣକୁ ସୃଷ୍ଟି କରେ କ୍ଷଣକ ପାଇଁ କେବଳ ନିଜକୁ ପ୍ରକାଶ କରିବା ପାଇଁ ଓ ନିଜର ସ୍ନେହ ଓ ପ୍ରେମକୁ ସଚଳ କରିବା ପାଇଁ । ସେ 'ମାନସୀ' ଓ ତାଙ୍କ କଳ୍ପନାର 'ମାନସ-ପୁରୁଷ'—ଉଭୟେ ଏକ ଓ ଅଭିନ୍ନ । ଆଧ୍ୟାତ୍ମିକତାର ଏ ଅବସ୍ଥା ହେଉଛି ଏକ ନିଚନ ଏକକ ଉପଲବ୍ଧି । ସେ ବୟସରୁ ବିଦ୍ୟୁତ୍‌ପ୍ରଭା ତାହା ପ୍ରାପ୍ତ କରିଥିଲେ ।

ଏହି ଦ୍ୱିତୀୟ ପର୍ଯ୍ୟାୟର ଜୀବନ ବିଦ୍ୟୁତ୍‌ପ୍ରଭାଙ୍କର ବଡ଼ ତାତ୍ପର୍ଯ୍ୟପୂର୍ଣ୍ଣ । ଜନ୍ମ ଜନ୍ମାନ୍ତରର ଉପଲବ୍ଧି ତାଙ୍କ ମଧ୍ୟରେ ସୁପ୍ତ ହୋଇ ରହିଥିଲା । ଏଇ ଜୀବନରେ ତାହା ଚେଇଁ ଉଠିବାକୁ ଉପକ୍ରମ କଲା । ଭାବାବେଶରେ ସେ ଆତ୍ମାର ସନ୍ଧାନ କରିବାକୁ ଯାଇ ପାଇ ଯାଉଥିଲେ ମାନସ-ପୁରୁଷ । ସେ ଥିଲେ ପ୍ରାପ୍ତବୟସ୍କା କନ୍ୟା । ତେଣୁ ତାଙ୍କର ମାନସ ଦେବତା ପ୍ରେମିକ ଯୁବକର ରୂପ ନେବା ସ୍ୱାଭାବିକ । ଭଗବାନ ଆମ ମଣିଷର ବିଗ୍ରହରେ ହାତ, ଗୋଡ଼ ଓ ମୁହଁ ଥିବା ମଣିଷଟିଏ । ଆମେ ସେହି ଭାବରେ ତାଙ୍କୁ ଦେବାଳୟରେ ପୂଜା କରି ଆସିଛୁଁ । କିନ୍ତୁ ଆମେ ସେହିପରି ଗୋଟିଏ ରୂପରେ ନିଜକୁ ଆବଦ୍ଧ କରି ରଖୁଁ । ସ୍ରଷ୍ଟାଙ୍କର ଲୀଳାରେ ବ୍ୟାଘାତ ସୃଷ୍ଟି କରୁଁ । ବିଦ୍ୟୁତ୍‌ପ୍ରଭା କେବଳ ସ୍ୱପ୍ନରେ ସନ୍ତୁଷ୍ଟ ନଥିଲେ । ତାଙ୍କ ମଧ୍ୟରେ ଥିବା ସୁପ୍ତ କବିଚେତନା କିଛି ସୃଷ୍ଟି କରିବାକୁ ଗୃହିଁଲା । ସ୍ୱପ୍ନ ଛନ୍ଦୋମୟୀ କବିତାର ରୂପ ନେଲା । ସେ ହେଲା ତାଙ୍କର ଗୋଟିଏ ନିଶା । ତାଙ୍କର ସ୍ୱଭାବ ସେହିପରି ଥିଲା । ଯେତେବେଳେ ସେ ଯେଉଁ କାର୍ଯ୍ୟ କରିବାର ପ୍ରେରଣା ପାଉଥିଲେ ତାହାକୁ ତତ୍‌କ୍ଷଣାତ୍ କରୁଥିଲେ । ଆଜ କାମ

କାଳକୁ ସେ ପ୍ରାପ୍ୟ ରଖନ୍ତି ନାହିଁ । ଏକାଗ୍ରତା ଥିଲା ତାଙ୍କର ଏକ ବିଶିଷ୍ଟ ଗୁଣ । ମୁଁ ସବୁବେଳେ ଦେଖିଛି ଓ ଯେଉଁମାନେ ତାଙ୍କ ସଂପର୍କରେ ଆସିଛନ୍ତି ସେମାନେ ମଧ୍ୟ ଜାଣିଥିବେ ଯେ ସେ ଯେତେବେଳେ କୌଣସି କାର୍ଯ୍ୟରେ ଲିପ୍ତ ଥାଆନ୍ତି ସେତେବେଳେ ପାଖରେ ଅନ୍ୟ କ'ଣ ଘଟୁଛି ତାହା ଜାଣି ପାରନ୍ତି ନାହିଁ । କାର୍ଯ୍ୟରେ କେହି ବାଧା ଦେଲେ ସେ ବ୍ୟସ୍ତ ହୋଇ ଉଠନ୍ତି । ଏହିପରି ଭାବରେ ଗାଁରେ ଥିଲା ବେଳେ ତାଙ୍କର କବିତା ଲେଖା ଆରମ୍ଭ ହୋଇଥିଲା ।

କବିତା ଲେଖା ଏକ ନିଶା । ଗାଁରେ ପଢ଼ାପଢ଼ିର ସୁବିଧା ନଥିଲା । ବାପା ଓ ଭାଇ ପ୍ରେରଣା ଯୋଗାଇଲେ । ନାନା ପ୍ରକାର ପୁସ୍ତକ ଆଣି ଦେଲେ । ବାପା କବିତା ସବୁ ଆଣି ସହରରେ ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶ କରିବାର ଚେଷ୍ଟା କଲେ । ପ୍ରଥମେ ପ୍ରଥମେ କେତୋଟି କବିତା ପ୍ରକାଶିତ ହେବାରୁ ସ୍ୱାଭାବିକ ଭାବେ ବିଦ୍ୟୁତ୍‌ପ୍ରଭା ଆହୁରି ଉତ୍ସାହିତ ହେଲେ । ଘରର କେତୋଟି ଭଲ କାମ ଛଡ଼ା ତାଙ୍କୁ ଅନ୍ୟ କିଛି କରିବାକୁ ପଡ଼ୁ ନଥିଲା । ସେ ଥିଲେ ସ୍ୱାସ୍ଥ୍ୟବତୀ । ସାଧାରଣତଃ ସ୍ତ୍ରୀ ଲୋକମାନେ ରନ୍ଧାବଢ଼ା ଆଦି ଛୋଟ ଛୋଟ କାମରେ ଯେପରି ଲିପ୍ତ ରହନ୍ତି ତାହା ତାଙ୍କର ବିଶେଷ ପସନ୍ଦ ନଥିଲା । ନଦୀରୁ ପାଣି ଆଣିବା, ବିରି ବାଟିବା, ଢିଙ୍କିରେ ଅଟା ପେଷିବା ଓ କୁଲାରେ ଧାନ, ବିରି ଓ ଧଣିଆ ଆଦି ପାଛୁଡ଼ିବାକୁ ସେ ଭଲ ପାଉଥିଲେ । ସେତକ କାମ ଶେଷ କଲାପରେ ପଢ଼ା ଓ ଲେଖାରେ ଲାଗି ଯାଉଥିଲେ । ଖାଦ୍ୟରେ ତାଙ୍କର କୌଣସି ବାରଣ ନଥିଲା । ସ୍ୱାସ୍ଥ୍ୟ ଦୃଷ୍ଟିରୁ ସେ ବେଶ୍ ଖାଇପାରୁଥିଲେ ।

ଯେଉଁ କେତେ ଖଣ୍ଡି ଖାତା ଓ କାଗଜ ଏବେ ମୋ ପାଖରେ ରହି ଯାଇଛି ଯାହାକି ମୁଁ ତାଙ୍କର କାଗଜପତ୍ର ଓ ଚିଠି ଇତ୍ୟାଦିରୁ ପାଇଛି ସେଥିରୁ ଜାଣିପାରୁଛି ଯେ ସେତେବେଳେ ସେ ଗାଁରେ କଠିନ ପରିଶ୍ରମ କରୁଥିଲେ । ଶିକ୍ଷାଗତ ଯୋଗ୍ୟତା ତାଙ୍କର ବିଶେଷ ନଥିଲା । ଶବ୍ଦଯୋଜନା ଓ ଛନ୍ଦ ବିଷୟରେ ତାଙ୍କର ଜ୍ଞାନ ନଥିଲା । ତେଣୁ ସେ ନାନା ପ୍ରକାର ଗ୍ରନ୍ଥ ପାଠ କରି ଛୋଟ ଛୋଟ ଖାତାରେ ଶବ୍ଦ ଓ ଅର୍ଥ

ଲେଖି ରଖିଥିଲେ । ଏହାପରେ କେତେଗୁଡ଼ିଏ ଗ୍ରେଟ ଗ୍ରେଟ ଖାତା ଅଛି । କେଉଁଥିରେ ଲିଙ୍ଗ ପରିବର୍ତ୍ତିତ ଶବ୍ଦାବଳୀ କେଉଁଥିରେ ବିପରୀତାର୍ଥକ ଶବ୍ଦସବୁ, କେଉଁଥିରେ ବିଶେଷ୍ୟ ଓ ବିଶେଷଣରେ ଶବ୍ଦର ଭିନ୍ନ ରୂପ ଓ କେଉଁଥିରେ ବିଭିନ୍ନାର୍ଥକ ଶବ୍ଦ ଗୁଡ଼ିଏ ଟିପା ହୋଇ ରହିଛି । ପୁଣି କେଉଁଥିରେ ବାକ୍ୟଗୁଡ଼ିକର ସଂକୋଚନ ଅଭ୍ୟାସ କରାଯାଇଛି । ଯଥା— ଯେଉଁମାନେ ଜଳରେ ବିଚରଣ କରନ୍ତି -ଜଳଚର, ଯେ ପଶୁକୁ ପାଳନ କରନ୍ତି—ପଶୁପାଳକ, ଇତ୍ୟାଦି । କେତେକ ସାଧାରଣ ଲିଙ୍ଗଘଟିତ ଅଶୁଦ୍ଧି ଗୋଟିଏ ଖାତାରେ ଟିପା ହୋଇ ରହିଛି । ଆଉ କେତୋଟି ଖାତାରେ ସଂସ୍କୃତ ଶ୍ଳୋକ ଓ ଅର୍ଥ ଲେଖା ହୋଇଛି । କବିରାଜୀ ଔଷଧ ଓ ବିଭିନ୍ନ ରୋଗରେ ତା'ର ବ୍ୟବହାର ବିଷୟରେ କେତୋଟି ଖାତାରେ ଉଲ୍ଲେଖ ଅଛି । କେତେଗୁଡ଼ିଏ ଗ୍ରେଟ ସ୍ତବ ଖାତା ମଧ୍ୟ ଅଛି । ଗ୍ରେଟ ପକେଟ୍ ବୁକ୍ ମାପର ଖାତାସବୁ ସେ ନିଜ ହାତରେ ସିଲାଇ କରି ତା ଉପରେ ନିଜ ହାତରେ ଇଂରାଜୀ ଓ ଓଡ଼ିଆରେ ଖାତାନାମ, ନିଜ ନାମ, ଗ୍ରାମ ନାମ, ପୋଷ୍ଟ ଅଫିସ ଓ ଜିଲ୍ଲା ନାମ ଲେଖିଛନ୍ତି । ଧାଡ଼ି ସିଧା ହେବା ପାଇଁ ପ୍ରାୟ ପ୍ରତ୍ୟେକ ଖାତା ଉପରେ ସରୁ ପେନ୍‌ସିଲ୍ ଗାର ଉପରେ ଏହିସବୁ ନାମ ଇତ୍ୟାଦି ଲେଖା ଯାଇଛି । ପ୍ରତ୍ୟେକ ଖାତା ଉପରେ ତାରିଖ ଓ ମସିହା ଲେଖା ରହିଛି । କାଗଜର ସାଧାରଣ ରଙ୍ଗ ବଦଳିବା ଛଡ଼ା ଅନ୍ୟ କିଛି ପରିବର୍ତ୍ତନ ହୋଇ ନାହିଁ । ଖାତାଗୁଡ଼ିକ ୧୯୪୪ ଓ ୧୯୪୫ ମସିହାରେ ଲେଖାଯାଇଥିଲା । ଏହାପରେ ଆଉ କେତୋଟି ଖାତାରୁ ଜଣାଯାଏ ଯେ ୧୯୪୬ ବେଳକୁ ସେ କଟକ ଆସି ଯାଇଥିଲେ, କାରଣ ଖାତା ଉପରେ କଟକ ଠିକଣା ସହିତ ୧୯୪୭, ୧୯୪୭ ଓ ୧୯୪୮ ମସିହାର ଉଲ୍ଲେଖ ଅଛି । ଏହାପରେ କେତେକ ଖାତାରେ ବ୍ୟାକରଣ, ଛନ୍ଦ, ଉପମା, ଅଳଙ୍କାର, ଯତି, ରସ, ଭାବ ଓ କବିତାର ଶୈଳୀ ବିଷୟରେ କେତେକ ଆବଶ୍ୟକ ନିୟମ ଟିପା ଯାଇଛି । କୌଣସି ଶିକ୍ଷାନୁଷ୍ଠାନରେ ପଢ଼ିଲେ ଶିକ୍ଷକ ଯେପରି ନୋଟ ଡାକି ଦିଅନ୍ତି ଠିକ୍ ସେହିପରି ନୋଟ୍‌ସବୁ ଟିପା ଯାଇଛି । ମନେହୁଏ ନିଜେ ବହିପତ୍ରିକୁ ପଢ଼ି ଅନ୍ୟଠାରୁ ପଚାରି ବୁଝି ନୋଟ୍‌ସବୁ ସେ ନିଜେ ଲେଖିଥିଲେ । କେତେକ ଖାତାରେ ବିଶିଷ୍ଟ ବଙ୍ଗୀୟ କବିମାନଙ୍କର ଲେଖା ଓଡ଼ିଆ ଅକ୍ଷରରେ ଲେଖାଯାଇଛି ଓ ବିଶିଷ୍ଟ ଓଡ଼ିଆ କବି ଓ ଲେଖକଙ୍କର

## ବାକ୍ୟର ସଂଶୋଧନ -

ଦଶରଥଙ୍କର ପୁତ୍ର - ଦାଶରଥି

ଗର୍ଗଙ୍କର ପୁତ୍ର - ଗାର୍ଗ୍ୟ

ବିନତାର ପୁତ୍ର - ବୈନତେୟ

ପାଣ୍ଡୁଙ୍କର ପୁତ୍ର - ପାଣ୍ଡବ

ଯେ ଭିକ୍ଷାଦ୍ୱାରା ଜୀବନ ଧାରଣ କରେ - ଭିକ୍ଷାଜୀବୀ

ଯେ ମାଂସ ଭକ୍ଷଣ କରେ - ମାଂସାଶୀ

## କେତେକ ବିପରୀତାର୍ଥବୋଧକ ଶବ୍ଦ ।

ଅତିବୃଷ୍ଟି - ଅନାବୃଷ୍ଟି

ଅନୁରକ୍ତି - ବିରକ୍ତି

ଆଗମ - ନିର୍ଗମ

ଅଧଃପତନ - ଅଭ୍ୟୁତ୍ଥାନ

ଅର୍ପଣ - ପ୍ରତ୍ୟର୍ପଣ

ଅପେକ୍ଷା - ଉପେକ୍ଷା

## ଲିଙ୍ଗଘଟିତ ଅଶୁଦ୍ଧି

ଅନାଥିନୀ - ଅନାଥା

ଅଧିନୀ - ଅଧୀନା

ଅପ୍ସରା - ଅପ୍ସର

ଅର୍ଦ୍ଧାଙ୍ଗିନୀ - ଅର୍ଦ୍ଧାଙ୍ଗ

ଧାର୍ମିକା - ଧାର୍ମିକୀ

ତ୍ରିନୟନୀ - ତ୍ରିନୟନା

ନିରପରାଧିନୀ - ନିରପରାଧା

ପଣ୍ଡିତାଣୀ - ପଣ୍ଡିତା

ବିଶେଷ୍ୟ - ବିଶେଷଣ

ଅଧଃପତନ - ଅଧଃପତିତ

ଅବସାଦ - ଅବସନ୍ନ

ଅନ୍ତର୍ଦ୍ଧାନ - ଅନ୍ତର୍ହିତ

[illegible] - [illegible]

ଚିନ୍ତା - ଚିନ୍ତିତ

ଶାନ୍ତି - ଶାନ୍ତ

କୁଳ - କୁଳୀନ

କଟକ ଆସିଲା ପରେ ଲେଖା ଓ ପଢ଼ାର ବିଶେଷ ସୁବିଧା ହୋଇଥିବ । ଶୁଣିଛୁ ତାଙ୍କର ଭାଇ ଲେଖା ଓ ପଢ଼ା ଦିଗରେ ତାଙ୍କୁ ଖୁବ୍ ଉତ୍ସାହିତ କରିଥିଲେ । ରାମଚନ୍ଦ୍ର ଭବନ ଓ ଟାଉନ୍ ହଲ ପାଠାଗାରରୁ ନାନା ପ୍ରକାର କାବ୍ୟ ଓ କବିତା ବହି ତାଙ୍କୁ ଆଣି ଯୋଗାଇ ଦେଇଥିଲେ । ସେହି ସମୟରେ ସେ ବହୁ ବଙ୍ଗଳା ଆଉ ଓଡ଼ିଆ ବହି ପଢ଼ିବାର ସୁଯୋଗ ପାଇଥିଲେ । ହିନ୍ଦୀ ଭାଷାରେ କେତେକ ଲେଖକଙ୍କର ଲେଖା ପଢ଼ି ବୁଝାଇଦେବା ପାଇଁ ତାଙ୍କର ପିତା କେତେଦିନ ପାଇଁ କୌଣସି ଜଣେ ହିନ୍ଦୀ ଭାଷାର ପଣ୍ଡିତଙ୍କୁ ନିଯୁକ୍ତ କରିଥିଲେ । ତାଙ୍କ ଲେଖା ଉପରେ ଆଲୋଚନା ଓ ଠାଏ ଠାଏ ସଂଶୋଧନ କରିବା ପାଇଁ ତାଙ୍କ ପିତାଙ୍କର ଜଣେ ବନ୍ଧୁ ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର କର ସେ ସମୟରେ ବହୁ ପରିଶ୍ରମ କରିଥିଲେ । ବିଦ୍ୟୁତ୍‌ପ୍ରଭା ଦେବୀ ନିଜେ ସ୍ୱୀକାର କରିଥିଲେ ଯେ ଶ୍ରୀଯୁକ୍ତ କରଙ୍କର ଅକୁଣ୍ଠ ସ୍ନେହ ଓ ସାହାଯ୍ୟ ଯୋଗୁଁ ସେ କବିତା ରଚନା କରିବାରେ ବିଶେଷ ଅଗ୍ରଗତି କରିପାରିଥିଲେ ।

ଯୌବନର ସ୍ପର୍ଶ ଲାଭ କଲା ପରେ ସେ ଯେଉଁ ସ୍ୱପ୍ନ ଦେଖୁଥିଲେ, ସେ ସ୍ୱପ୍ନ ଏବେ ଭିନ୍ନ ରୂପ ନେଇଛି । ସ୍ୱପ୍ନରେ ସେ ମାନସପୁରୁଷଙ୍କୁ ବାନ୍ଧି ରଖିବାକୁ ଖୋଜୁଥିଲେ କିନ୍ତୁ ବାସ୍ତବରେ ସେ ପ୍ରେମ ଡୋରିରେ ବାନ୍ଧି ରଖିଲେ କବିତାକୁ । କବିତା ସହିତ ତାଙ୍କର ପ୍ରଣୟ ହେଲା ଓ ସେ କବିତା ମଧ୍ୟରେ ନିଜକୁ ହଜାଇ ଦେଲେ । ଆଗରୁ କହିଛୁ ସେ ପିତାଙ୍କର ଅତି ଆଦରଣୀୟା କନ୍ୟା ଥିଲେ । ପିତା କନ୍ୟାର ସୁନାମରେ ଆନନ୍ଦ ଲାଭ କରୁଥିଲେ ଓ ସେ ସମୟରେ ଖ୍ୟାତି ଲାଭ କରିଥିବା ବହୁ କବି, ଲେଖକମାନଙ୍କୁ ନିଜ ଘରକୁ ଡାକି ତାଙ୍କ ସହିତ ପରିଚିତ କରାଇ ଦେଇଥିଲେ । ତାଙ୍କର ଉଦ୍ୟମରେ ବିଦ୍ୟୁତ୍‌ପ୍ରଭାଙ୍କର କେତେ ଖଣ୍ଡି କବିତା ପୁସ୍ତକ ପ୍ରକାଶିତ ହୋଇଥିଲା । ପ୍ରଥମ ପୁସ୍ତକ ପ୍ରକାଶିତ ହୋଇଥିଲା ୧୯୪୪ରେ । ସେଥିରେ ବିଦ୍ୟୁତ୍‌ପ୍ରଭା ଓ ତାଙ୍କ ବଡ଼ ଭଉଣୀ ବାସନ୍ତୀ ଦେବୀଙ୍କର କେତେଗୁଡ଼ିଏ କବିତା ସନ୍ନିବେଶିତ ହୋଇଥିଲା । ବହିଟିର ନାମ "ସବିତା" । ତା ୨୨।୮।୪୪ ଗଣେଶ ଚତୁର୍ଥୀ ଦିନ ବିଶିଷ୍ଟ ସାହିତ୍ୟିକ ସ୍ୱର୍ଗୀୟ ଶଶୀଭୂଷଣ ରାୟ ସେ ବହିର ମୁଖବନ୍ଧ ଲେଖିଥିଲେ । "ଉତ୍କଳ-ସାରସ୍ୱତ-ପ୍ରତିଭା" ପ୍ରକାଶିତ ହୋଇଥିଲା ୧୯୪୭ରେ ଓ

ଏଥିରେ ଅଭିମତ ଲେଖିଥିଲେ ଶ୍ରୀଯୁକ୍ତ କାଳିନ୍ଦୀଚରଣ ପାଣିଗ୍ରାହୀ, ପରେ ୧୯୪୮ରେ 'କନକାଞ୍ଜଳି' ଓ 'ମଶାଣିଚମ୍ପା' ପ୍ରକାଶିତ ହୋଇଥିଲା । 'କନକାଞ୍ଜଳି'ର ମୁଖବନ୍ଧ ଲେଖିଥିଲେ ସ୍ୱର୍ଗୀୟ କବି ଡକ୍ଟର ମାୟାଧର ମାନସିଂ ଓ ବହିଟିର ପ୍ରକାଶନ ପାଇଁ ଆର୍ଥିକ ସାହାଯ୍ୟ ଦେଇଥିଲେ ତତ୍କାଳୀନ ଆଠମଲ୍ଲିକ ଷ୍ଟେଟ୍‌ର ରାଜା କିଶୋରଚନ୍ଦ୍ର ଦେଓ । ସେ ଏଥିପାଇଁ ଟ୧୭୫ଙ୍କା ଦେଇଥିଲେ । ସେ ସମୟରେ ୪ ଫର୍ମାର କବିତା ବହି ୧୦୦୦ ଖଣ୍ଡ ଛାପିବାକୁ କାଗଜ, କଭର ଓ ପ୍ରେସ ଖର୍ଚ୍ଚ ବାବଦକୁ ମୋଟ ଟ୧୭୫.୦୦ ଖର୍ଚ୍ଚ ପଡ଼ିଥିଲା । (କାଗଜ ୪ ରିମ୍‌କୁ ଟ୬୦ଙ୍କା, କଭର ଟ୧୫ଙ୍କା ଓ ଛାପା ଖର୍ଚ୍ଚ ଫର୍ମା ଟ୨୫ଙ୍କା ଦରରେ ଟ୧୦୦ଙ୍କା) । ଏହି ପୁସ୍ତିକାଟିରେ ଲେଖାଅଛି "ସବିତା, ଉତ୍କଳ-ସାରସ୍ୱତ-ପ୍ରତିଭା, ମଶାଣିଚମ୍ପା, କାକଳି, ବିହାପୁସୀ ପ୍ରଭୃତିର ରଚୟିତ୍ରୀ କୁମାରୀ ବିଦ୍ୟୁତ୍‌ପ୍ରଭା ଦେବୀ ।" ମୁଁ କିନ୍ତୁ ଏବେ ସୁଦ୍ଧା 'କାକଳି' ପୁସ୍ତକର ସନ୍ଧାନ ପାଇପାରି ନାହିଁ । କବିଙ୍କର ପରବର୍ତ୍ତୀ ପୁସ୍ତକ ହେଲା 'ମଶାଣିଚମ୍ପା' । ଏଥିରେ ମୁଖବନ୍ଧ ଲେଖିଛନ୍ତି ବିଶିଷ୍ଟ କବି ଶ୍ରୀଯୁକ୍ତ ରାଧାମୋହନ ଗଡ଼ନାୟକ । ବିବାହର ଠିକ୍ ପୂର୍ବରୁ ଆଉ ଖଣ୍ଡିଏ ପୁସ୍ତକ ପ୍ରକାଶିତ ହୋଇଥିଲା ୧୯୪୮ ମସିହାର ଆଦ୍ୟ ଭାଗରେ । ବହିଟିର ନାମ ଥିଲା "ବିହାପୁସୀ" । ବହିଟିର ମୁଖବନ୍ଧ ଲେଖିଥିଲେ ବିଶିଷ୍ଟ ସାହିତ୍ୟିକ ଶ୍ରୀଯୁକ୍ତ କାଳିନ୍ଦୀ ଚରଣ ପାଣିଗ୍ରାହୀ ଓ କବିତା ଆକାରରେ ଅଭିମତ ଲେଖିଥିଲେ ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର କର । ସବୁଗୁଡ଼ିକ ବହି ପିତାଙ୍କର 'ରେଖା ପବ୍ଲିଶିଂ' ପ୍ରକାଶନ ସଂସ୍ଥା ଜରିଆରେ ପ୍ରକାଶିତ ହୋଇଥିଲା ।

ଏହାପରେ ଭାବରେ କବି କ୍ରମଶଃ କବିତା ରଚନା କରିବାରେ ଅଧିକରୁ ଅଧିକ ସମୟ ନିୟୋଜିତ କରିଥିଲେ ଓ ଯୌବନର ଗତାନୁଗତିକ ଅନୁଭବ ସେ ହୃଦୟଙ୍ଗମ କରିବାକୁ ପାସୋରି ଯାଇଥିଲେ । କାରଣ ତାଙ୍କର ପ୍ରଣୟ ହୋଇସାରିଥିଲା କବିତା ସହିତ । ତାଙ୍କ ମନ, ପ୍ରାଣ ଓ ଶରୀରରେ କବିତାର ନିନାଦ ଝଙ୍କାରିତ ହୋଇ ଉଠିଥିଲା ଓ ବିବାହ କଥା ତାଙ୍କ ମନରୁ ପ୍ରାୟ ପୋଛି ହୋଇଯାଇଥିଲା । ସମାଜ ବାଧା ସୃଷ୍ଟି କଲା—ପିତାମାତା ବିବାହ ପାଇଁ ବ୍ୟବସ୍ଥା କଲେ—ସେ ଦିଗରୁ ବହୁ ବାଧାବିଘ୍ନର ସମ୍ମୁଖୀନ ହେବାକୁ ହୋଇଥିଲା । ସେ ଯାହାହେଉ,

ଦୈବକ୍ରମେ ଅପ୍ରତ୍ୟାଶିତ ଭାବରେ ମୋ ସହିତ ତାଙ୍କର ବିବାହ ପ୍ରସ୍ତାବ ଠିକ୍ ହେଲା ଓ ମୋତେ ନେଇ ସେ ଦାମ୍ପତ୍ୟ ଜୀବନ ମଧ୍ୟକୁ ପ୍ରବେଶ କଲେ ୧୯୪୯ ମସିହାରେ । ସେ ବିଷୟରେ ପ୍ରଥମରୁ ଲେଖିଛି ।

ଅଷ୍ଟମଙ୍ଗଳା ପରେ ପରେ ବିଦ୍ୟୁତ୍‌ପ୍ରଭା ଦେବୀ ଆମ ଘରର ସମସ୍ତ ଦାୟିତ୍ୱ ନିଜ ଉପରକୁ ନେଇଯାଇଥିଲେ । ସଂସାରଟି ଏତେ ବଡ଼ ନଥିଲା ତଥାପି ଟିକି ନିକି ସବୁ ସମସ୍ୟା ମଧ୍ୟକୁ ପ୍ରବେଶ କରି ଗାଁ ଲୋକଙ୍କ ମନୋଭାବ ଜାଣି ସେ ସବୁ କାର୍ଯ୍ୟ ସମ୍ପାଦନ କରୁଥିଲେ । ପିଲାଙ୍କୁ ନାନା ପ୍ରକାର ଭୁଟ୍‌କା ଔଷଧ ବିଷୟରେ ତାଙ୍କର ଜ୍ଞାନ ଥିଲା । ଗାଁର ହରିଜନ ସାଇରୁ ଓ ଅନ୍ୟ ସାଇରୁ ଲୋକମାନେ ଆସି ତାଙ୍କଠାରୁ ରୋଗ ବିଷୟରେ ପରାମର୍ଶ କରୁଥିଲେ । ସେ ଘରେ ଅଦା, ମହୁ, ମିଶ୍ରି, ଲେମ୍ବୁ ଜୁଆଣୀ ଅର୍କ ଓ କର୍ପୂରାରିଷ୍ଟ ଇତ୍ୟାଦି ରଖୁଥିଲେ । ଆବଶ୍ୟକ ବେଳେ ଲୋକଙ୍କୁ ଦେଉଥିଲେ । ଗାଁର ଲୋକେ ତାଙ୍କ ବ୍ୟବହାରରେ ଖୁବ୍ ସନ୍ତୁଷ୍ଟ ହୋଇଥିଲେ । ତା'ଛଡ଼ା ଘରେ ଦିନ ସାରା ପରିଶ୍ରମ କରି ମଧ୍ୟାହ୍ନରେ ସାମାନ୍ୟ ବିଶ୍ରାମ ନେଇ ପଢ଼ାପଢ଼ି କରୁଥିଲେ । ସମୟର କିପରି ପୂର୍ଣ୍ଣ ବ୍ୟବହାର କରାଯିବ ସେଥିପାଇଁ ସେ ସବୁବେଳେ ସଚେତନ ଥିଲେ । ଆମ ଘରେ ପ୍ରବେଶ କରିବାର ୧୫ଦିନ ମଧ୍ୟରେ ଘରେ ଥିବା ଗୁଡ଼ ଓ ଘିଅକୁ ବୋତଲରେ କଛି କଛି ରଖି ଜଉ ଦେଇ ସିଲ୍ କରି ଦେଇଥିଲେ । ପୁରୁଣା ଗୁଡ଼ ଓ ପୁରୁଣା ଘିଅ ଔଷଧରେ ବ୍ୟବହାର ହୁଏ ବୋଲି ସେ କହନ୍ତି । ଏବେ ସେପରି ଗୋଟିଏ ଗୁଡ ବୋତଲ ମୋ ଠାରେ ରହିଛି । ସେହି ୧୫ଦିନ ମଧ୍ୟରେ ମଧ୍ୟ ତାଙ୍କ ଲେଖାପଢ଼ାର ଆୟୋଜନ କିପରି କରିହେବ, ତା'ର ବ୍ୟବସ୍ଥା କରିଥିଲେ । ମୋ ବୋଉ ଅଲେଖ ଧର୍ମ ଗ୍ରହଣ କରିଥିଲା । ସନ୍ଧ୍ୟା ଆଗରୁ ତାର ଖିଆପିଆ ସରିଯାଏ । ବୋହୂ ଏ ସୁବିଧାର ସଦ୍‌ବ୍ୟବହାର କରି ସନ୍ଧ୍ୟା ପୂର୍ବରୁ ସବୁ କାମ ଶେଷ କରି ଶାଶୁ ବିଶ୍ରାମ ନେଲା ପରେ ଲେଖାପଢ଼ାରେ ଲାଗି ଯାଉଥିଲେ । ଗାଁରେ ବିଜୁଳି ଆଲୁଅ ନଥାଏ । ଡେଣ୍ଟ ଲଣ୍ଠନ ସାହାଯ୍ୟରେ ପଢ଼ିବାକୁ ହୁଏ । ମାଟିରେ ଘଣ୍ଟା ଘଣ୍ଟା ଧରି ସେ ପରିଶ୍ରମ କରି ପାରନ୍ତି । ସେ ସମୟରେ ପ୍ରାୟ ପ୍ରତି ମାସ ତାଙ୍କର ୩/୪ଟି କବିତା ଓଡ଼ିଶାର ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ହେଉଥିଲା । ସେସବୁ ଥିଲା ପ୍ରେମ, ରୋମାଞ୍ଚ ଓ ଅନୁଭବର ବାର୍ତ୍ତାବାହୀ

କବିତା । ସେ ଲେଖାସବୁ ଓଡ଼ିଆ ସାହିତ୍ୟରେ ଏକ ନୂତନ ସଜୀବତା ଆଣି ଦେଇଥିଲା । ମାନସିଂଙ୍କ ପରେ ଆଜି କେହି, ବିଶେଷତଃ ଆଜି କୌଣସି ଲେଖିକା ସାହସର ସହିତ ପ୍ରେମ ଅନୁଭବର କଥା କବିତା ମାଧ୍ୟମରେ ଏତେ ପ୍ରାଞ୍ଜଳ ଭାବରେ, ଏତେ ଆନ୍ତରିକତା ସହକାରେ ପ୍ରକାଶ କରି ନଥିଲେ । ପ୍ରାୟ ୭।୮ ମାସ ଗାଁରେ ରହିଥିଲା ବେଳେ ସେ ଯେଉଁସବୁ କବିତା ରଚନା କରିଥିଲେ—ପରେ ସେଗୁଡ଼ିକ ବହି ଆକାରରେ ପ୍ରକାଶିତ ହୋଇଥିଲା ୧୯୫୦ ଓ ୧୯୫୧ ମସିହାରେ ।

ତରୁଣ ବୟସରେ ପୁଅ ଓ ଝିଅ ନାନା ସ୍ୱପ୍ନ ଦେଖନ୍ତି—ସବୁ ପ୍ରାଚୁର୍ଯ୍ୟର ସ୍ୱପ୍ନ, ପ୍ରେମର ସ୍ୱପ୍ନ । କବିଙ୍କ ଭାଷାରେ—

"ସେ ଅନେକ ଦିନର ପୁରୁଣା
ଦୂର ଶାଗୁଆ ଜୀବନ ସ୍ମୃତି
ଯେଉଁ ବୟସର ମଧୁ ମଦିରା
ଭରେ ତରୁଣ ପରାଣେ ପୂରନ୍ତି ।
× ×
ଦିନେ ସପନେ ମୋହନ ମୂରତି
ଲଭି ସଙ୍ଗବିହୀନ ଭବନେ
ଲାଜେ ଉଠିଥିଲି ମୁଁ ଯେ ପୁଲକି
ରହିଁ ମୁକୁଳା ଚଇତି ଗଗନେ ।"

[ ଝରା ଶିଉଳି—ପୃ ୩ ]

କିନ୍ତୁ ସ୍ୱପ୍ନ ଓ ବାସ୍ତବତା ମଧ୍ୟରେ ଯେ ଆକାଶ ଓ ପାତାଳ ପ୍ରଭେଦ ଏକଥା ବୋଧହୁଏ ତରୁଣ ବୟସରେ ଜାଣିହୁଏ ନାହିଁ । ଜାଣି ହେଉଥିଲେ ମଧ୍ୟ ଜାଣିଶୁଣି ବାସ୍ତବତାର କଠିନତାକୁ ବୋଧହୁଏ ଉପେକ୍ଷା କରାହୁଏ ସେ ବୟସରେ ।

କବି ସଂସାର ପରି ଚଳେ କିନ୍ତୁ ସେ ଥାଏ ଏକ ଭିନ୍ନ ରାଜ୍ୟରେ । ଗୁହ୍ୟ ସାଧନା କଲାବେଳେ ସାଧକ ନିଜ ଶରୀରକୁ ସ୍ଥୂଳ ବାହାରେ ବିଚରଣ କରୁଥାଏ । କେତେକ ଅନୁଭୂତି ନେଇ ସେ ସ୍ଥୂଳ ଶରୀରକୁ

ଫେରେ—ସ୍କୁଲକୁ ଆହୁରି ସୁନ୍ଦର କରେ । ବେଳେ ବେଳେ ଫେରିବା ଓ ନ ଫେରିବା ଭିତରର ଦୂରତା ଖୁବ୍ କମ୍ ଥାଏ । ସେ ଆରପାରିରେ ହଜି ଯାଇ ଗାଇଉଠେ –

"ତୁମ ଆମ ପରି କୋଟି ବୁଦ୍‌ବୁଦ
ନିତ ଏ ଧରଣୀ ତଳେ
କ୍ଷଣେ ଫୁଟି କ୍ଷଣେ ମଉଳୁଛନ୍ତି
ଫେନିଳ ସିନ୍ଧୁ ଜଳେ ।

ଏ ସୁଖ ଜୀବନ ହୋଇଯିବ ଯେବେ
ଶକ୍ତି ବରହେ କ୍ଷୟ
ପଶ୍ଚିମେ ନବ ଶେଷ ନିଶ୍ୱାସ
ମଧୁର ଏ ପରିଚୟ !

କହିକ ପାରିବ ବନ୍ଧୁ ମୋହର
କହିକ ପାରିବ ତୁମେ
ଘୁଡ଼ ବାଡ଼ ହୋଇ ବୁଲିଯିବା ଆମେ
ସେ କେଉଁ ଅଜଣା ଭୂମେ !

ସୁନ୍ଦର ଏଇ ସୁଖର ମର୍ତ୍ତେ
ନାଇଁ ତ କା' ଚିର ଦାବି
ଏଇ ତଥ୍ୟ କି ବସିଛ ଖେଦେ
ହୋଇଅଛ କେବେ ଭାବି ?

କାଳ ଆହ୍ୱାନେ କେ କା' ଅଶ୍ରୁ
ପୋଛିବାକୁ ଥିବା ନାଇଁ
ଚୁମ୍ବନ ଖାଲି ରହିବ ବାକି
ସୀମାହୀନ ଯୁଗ ପାଇଁ ।

ତୁମ ଆମ ପରି କୋଟି ନର ନାରୀ
ଗଲେଣି ତ କାଳବଳେ
ଆଶ୍ଳେଷେ ଦେଇ ଅମୃତାସନ୍
ପୀରତି କୁଞ୍ଜ ତଳେ ।

ପ୍ରଶସ୍ତିର କାନ୍ଧେଁ ନିର୍ବାଣ ସଖା
ଚିର ଯେ ଦୀପ୍ୟମାନ
ନିଜ ଅନ୍ତରୁ ଶୁଣ ଶାଶ୍ୱତ
ଭାରତୀ' ଆହ୍ୱାନ ।"

[ ୧୯୫୦ ଦଶହରା ]

କବି ଥିଲେ ଜଣେ ସ୍ରଷ୍ଟା । ତାଙ୍କର ସ୍ୱପ୍ନ ର ଫଲ୍‌ଗୁ ନଦୀ ବାସ୍ତବ ଜୀବନର କଙ୍କରିଳ ପଥ ମଧ୍ୟ ଦେଇ ବହି ଚାଲିଲା କେତେ ଦିନ ପାଇଁ । ଧୂସର ପ୍ରାନ୍ତର ସବୁଜିମାର ଶୋଭା ଧାରଣ କଲା । ମରୁରେ ଜଳର ସ୍ୱରୂପ ଦେଖି ବନ୍ଧୁବାନ୍ଧବଙ୍କର ଭିଡ଼ ଜମିଲା । ମୋଟାମୋଟି ନାଟକଟି ବେଶ୍ ଜମି ଉଠିଲା । ଅଳ୍ପଦିନ ମଧ୍ୟରେ ଘରର ଅଭାବ ଅସୁବିଧା ଯାହା ଥିଲା ସବୁ ତାଙ୍କର ଦୃଷ୍ଟିରେ ପଡ଼ିଲା ଓ ସବୁର ସମାଧାନ ପାଇଁ ସେ ସେହିଦିନଠାରୁ ଲାଗିଗଲେ । ତାଙ୍କର ପ୍ରେରଣା ଓ ପ୍ରତ୍ୟକ୍ଷ ଚେଷ୍ଟାରେ ପରେ ପରେ ଆମର ଚାଷଜମି କିଛି କିଣା ଯାଇଥିଲା ଓ ଗାଁରେ ଚାଷର ବ୍ୟବସ୍ଥା କରାଯାଇଥିଲା । ପୁରୁଣା ଘରର କେତେକ ପରିବର୍ତ୍ତନ ମଧ୍ୟ କରାଯାଇଥିଲା । ଏ ସବୁ କାର୍ଯ୍ୟରେ ସେ ପ୍ରତ୍ୟକ୍ଷ ଭାବରେ ଅଂଶଗ୍ରହଣ କରୁଥିଲେ । ସେହି ସମୟରୁ ତାଙ୍କର ସଂଗଠନର ଦକ୍ଷତା ଆମେ ଲକ୍ଷ୍ୟ କରି ଆସୁଥିଲୁଁ ।

ବିବାହ ଆଗରୁ ଛପା ସରି ଅପ୍ରକାଶିତ ଥିବା 'ବନ୍ଦନିକା' ପୁସ୍ତିକା ପ୍ରକାଶିତ ହେଲା ୧୯୪୯ ଅକ୍ଟୋବର ମାସରେ । ବହିଟିର ପ୍ରଚ୍ଛଦପଟ ଚିତ୍ର ଆଙ୍କି ଦେଇଥିଲେ ପ୍ରଖ୍ୟାତ ଶିଳ୍ପୀ ସ୍ୱର୍ଗୀୟ ବଂଶୀଧର ବର୍ମା । ୧୯୫୦ ମସିହାରେ ବିଦ୍ୟୁତ୍‌ପ୍ରଭାଙ୍କ ଲିଖିତ ପୁସ୍ତକ "ଉତ୍କଳ ସାରସ୍ୱତ-ପ୍ରତିଭା" ପଦ୍ୟ ସାହିତ୍ୟ ଭାବରେ ମେଟ୍ରିକ୍ କ୍ଲାସ ପାଇଁ ଉତ୍କଳ ବିଶ୍ୱବିଦ୍ୟାଳୟ ଦ୍ୱାରା ଅନୁମୋଦିତ ହୋଇଥିଲା । ୧୯୫୧ ମସିହାରେ ତାଙ୍କର 'ମରୀଚିକା' ବହି ଅଷ୍ଟମ ଶ୍ରେଣୀର ପଦ୍ୟ ସାହିତ୍ୟ ଭାବରେ ସ୍ୱୀକୃତି ଲାଭ କରିଥିଲା । ବହିଟିର ବହୁଳ ପ୍ରସାର ପାଇଁ ଆମ୍ଭେମାନେ ସେତେବେଳେ କଟକର ପୁସ୍ତକ ପ୍ରତିଷ୍ଠାନ 'ନିଉ ଷ୍ଟୁଡେଣ୍ଟସ ଷ୍ଟୋର'ର ମ୍ୟାନେଜିଂ ଡିରେକ୍ଟର ଶ୍ରୀଯୁକ୍ତ ଶ୍ରୀଧର ମହାପାତ୍ରଙ୍କ ସହାୟତା ଲାଭ କରିଥିଲୁଁ ।

ଉପରୋକ୍ତ ଦୁଇଖଣ୍ଡ ବହିର ପୁନର୍ମୁଦ୍ରଣ କାର୍ଯ୍ୟ ପାଇଁ ବିଦ୍ୟୁତ୍‌ପ୍ରଭା ମଝେ ମଝେ କଟକ ଆସୁଥିଲେ । ସେଠାରେ ମଧ୍ୟ ତାଙ୍କର ସମୟ ନଥାଏ । ସେ ବିବାହ ପରେ ଲିଖିତ କବିତାଗୁଡ଼ିକୁ ସଂଶୋଧନ ଓ ପରିବର୍ତ୍ତନ କରି ବହି ଆକାରରେ ଛପାଇବା ପାଇଁ ପାଣ୍ଡୁଲିପି ପ୍ରସ୍ତୁତ କରୁଥିଲେ । ୧୯୫୧ରେ ତାଙ୍କର 'ସ୍ୱପ୍ନଦୀପ' ପୁସ୍ତିକା ପ୍ରକାଶିତ ହେଲା ।

୧୯୫୨ ମସିହାର ମାର୍ଚ୍ଚ ମାସରେ କବିତା ଆବୃତ୍ତି କରିବା ପାଇଁ **All India Radio, Cuttack** ଷ୍ଟେସନରୁ ଗୋଟିଏ ପ୍ରୋଗ୍ରାମ୍ ବିଦ୍ୟୁତ୍‌ପ୍ରଭାଙ୍କ ପାଖକୁ ଆସିଥିଲା । ଶ୍ୱଶୁର ମହାଶୟ ରେଡ଼ିଓ ଷ୍ଟେସନକୁ ତାଙ୍କୁ ଯିବାକୁ ଅନୁମତି ଦେଇ ନଥିଲେ । ମୋର ମତ ମଧ୍ୟ ଉପେକ୍ଷିତ ହୋଇଥିଲା ।

୧୯୫୨ ଜୁଲାଇ ମାସରେ ଆଉ ଖଣ୍ଡିଏ ବହି ପ୍ରକାଶିତ ହେଲା । ବହିଟିର ନାମ ରଖା ଯାଇଥିଲା 'ଝରା ଶିଉଳି' । ବହିର ବିଷୟବସ୍ତୁ ପ୍ରେମ, ଜୀବନ, ସେ ଓ ମୁଁ । ବହିଟିର ବିଶେଷତ୍ୱ ଏହି ଯେ କବି ନିଜେ ଗଦ୍ୟ ଆକାରରେ ତାର ମୁଖବନ୍ଧ ଲେଖିଛନ୍ତି ।

× × ×

"ପ୍ରଥମ ଯୌବନର ଶ୍ରେଷ୍ଠ ମଳୟରେ ମନର ନିଭୃତ ଉଦ୍ୟାନରେ ଯେଉଁ କଳିଗୁଡ଼ିକ ଦିନେ ହସିବାର ଆକାଂକ୍ଷା ଦେଇ କଳକଣ୍ଠ ମୁଖରିତ ବସନ୍ତର ସ୍ୱପ୍ନ ଦେଖୁଥିଲା—ସେ ସ୍ୱପ୍ନ ଆଜିର ଏଇ ପ୍ରଣୟଭୀରୁ ଜୀବନରେ ସତ୍ୟ ହୋଇଛି । କାଳର ଧର୍ମାନୁଯାୟୀ ଏଗୁଡ଼ିକ ଯେ ଦିନେ ନିର୍ମମ ବୈଶାଖର ଆଗ୍ନେୟ ନିଶ୍ୱାସରେ ବୃନ୍ତ ବିଲୁଣ୍ଠିତ ହୋଇ ଧରଣୀର ଏଇ ରୁକ୍ଷ ଧୂଳି ଶେଯରେ ଝରି ପଡ଼ିବେ, ଏହାର ସତ୍ୟତା ଯେ ନିତାନ୍ତ ଅଳ୍ପ ଏପରି ନୁହେଁ ।

ହିତଶିକ୍ଷା ବିଶଭୂଇଁ ପଛେ ଦାବଦଗ୍ଧ ହେଉ କ୍ଳାନ୍ତକଣ୍ଠ କୋକିଳ ଦକ୍ଷିଣର ଲଳିତ କାକଳି ଚିରଦିନ ପାଇଁ ନିସ୍ପନ୍ଦ ନୀରବତା ଭିତରେ ହଜିଯାଉ, ଶୋଚନା ନାହିଁ—ମଧୁକ୍ଷରା ସୁରଭିତ ପୁଷ୍ପସ୍ତବକରାଜି ବରଂ ସବୁଦିନ ପାଇଁ ଝରିଯାଉ, ଦୁଃଖ ନାହିଁ—

ମାଝ ରହୁ ତାର ଉଜ୍ଜ୍ୱଳ ସ୍ମୃତି, ତା'ର କାନ୍ତ କୋମଳ ଆଲେଖ୍ୟରାଜି ଏଇ ମନ ଭିତରେ—ଅନ୍ତରର ନିଭୃତତମ ପ୍ରଦେଶରେ । ହୃଦୟର ପୂଜାବେଦୀ ଉପରେ ଯୌବନର ସେହି ପ୍ରେମ-ଚନ୍ଦନାକ୍ତ ସ୍ମୃତି ସମୃଦ୍ଧ ବସନ୍ତର ଶୁଭ୍ର ପଦ୍ମ ପରି ଆଜୀବନ ଯେ ଅମ୍ଳାନ ରହିବ—ଏହା ମୋର ବିଶ୍ୱାସ ।"

୧୯୫୨ ଅଗଷ୍ଟ ୨୨ ତାରିଖରେ ପ୍ରଥମ କନ୍ୟା ଜନ୍ମ । କବି ନିଜେ ନାମ ରଖିଥିଲେ "ମିନତି" । ଜୀବନର ସବୁକିଛୁ ଶ୍ରେଷ୍ଠ ବଡ଼ ସମସ୍ୟାକୁ କବି ସାଧନା ଭାବରେ ଗ୍ରହଣ କରୁଥିଲେ । ଶିଶୁ ଗର୍ଭସ୍ଥ ହେବାର ଜାଣିଲା ପରଠାରୁ ସେ କଠୋର ସଂଯମ ଆଚରଣ କରିଥିଲେ । ଖାଦ୍ୟରେ ନିୟମାନୁବର୍ତ୍ତିତା, ଶୟନ ଓ ବିଶ୍ରାମରେ ନିୟମାନୁବର୍ତ୍ତିତା ତାଙ୍କ ସ୍ୱଭାବର ଅଂଶ ଥିଲା । କିନ୍ତୁ ସେ ସମୟରେ ସେ ଆହୁରି କଠୋରଭାବେ ଶୃଙ୍ଖଳା ପାଳନ କରୁଥିଲେ । ଧାରାବାହିକ ଭାବରେ ଶ୍ରୀରାମକୃଷ୍ଣ ପରମହଂସଙ୍କ ଜୀବନୀ ପଢ଼ୁଥିଲେ । ତାଙ୍କର ବିଶ୍ୱାସ ଥିଲା ଯେ ସେ ଯେପରି ଆଚରଣ କରିବେ ପିଲାର ଚରିତ୍ର ଠିକ୍ ସେହିପରି ହେବ ।

କନ୍ୟା ଜନ୍ମ ପରେ ଶିଶୁର ଯାବତୀୟ କାର୍ଯ୍ୟ ନିଜେ କରୁଥିଲେ । ଅନ୍ୟ କେହି ସେ କାର୍ଯ୍ୟ କଲେ ସେ ସନ୍ତୁଷ୍ଟ ହେଉ ନଥିଲେ । ପିଲାର ଶେଯ, ପିଲାର ଖାଦ୍ୟ ପାତ୍ର ଓ ଦୁମଚ ଇତ୍ୟାଦିକୁ ଖୁବ୍ ଯତ୍ନରେ ରଖୁଥିଲେ । ପାଖରେ ଘଣ୍ଟା ରଖି ନିୟମିତ ଭାବରେ ପିଲାର ଖାଦ୍ୟପେୟର ବ୍ୟବସ୍ଥା କରୁଥିଲେ । କୃତ୍ରିମ ଖାଦ୍ୟ ଦେବାକୁ ସେ ଆଦୌ ପସନ୍ଦ କରୁ ନଥିଲେ । କନ୍ୟା ଜନ୍ମ ପରେ କେତେଗୁଡ଼ିଏ କବିତା ମଧ୍ୟ ରଚନା କରିଥିଲେ । ସେଥିମଧ୍ୟରୁ ଗୋଟିକରେ ସେ ଲେଖିଚନ୍ତି—

"ଝୁଲଉଁ ଝୁଲଉଁ     କୋଳେ ଜାକତାରେ
ଗାଇ ମୁଁ ଗୀତି
କହିଲେ ପଡ଼ୋଶୀ     'ଲେଖା ପଢ଼ା ଏବେ
ହୋଇଲା ଇତି !'

× × ×

ଉଦାସେ ଅନାଇ କହିଲ ମୁଁ ହସି
ମାମୁଲି ହସ—
'ଛୁଆ ବୋଲି ଖଣ୍ଡେ, ନୁହଇ 'ଟି ଆଜ
ଆଠ କି ଦଶ !'

× × ×

ଫଳହୀନ ତରୁ ସବୁଜ ଆଖିକି
ଦିଶଇ ବିଷ
ଲୁଚି ଝିଅଟି ମୋ କୋଟି ମିନତିରେ
ଦେବଟାଶିଷ ।"

(ସଞ୍ଚୟନ—ପୃ-୩୮)

୧୯୫୩ ମସିହା ଜାନୁଆରୀ ମାସରେ ଆମର ପ୍ରିୟ ଭାଇ ଅଧ୍ୟାପକ ଗଗନବିହାରୀ ମହାନ୍ତିଙ୍କର ଅକାଳରେ ବିୟୋଗ ହେଲା । ଏ ଘଟଣା ବିଦ୍ୟୁତ୍‌ପ୍ରଭାଙ୍କ ପ୍ରାଣରେ ଭୀଷଣ ଆଘାତ ଦେଲା । ବିଧବା ଭାଉଜଙ୍କର ଅବସ୍ଥା ଦେଖି ସେ ବିଚଳିତ ହୋଇ ପଡ଼ିଥିଲେ । ଅନୁଭବ କଲି ସେହି ଘଟଣାଠାରୁ ମୋ ସ୍ୱାସ୍ଥ୍ୟ ଓ ଜୀବନ ବିଷୟରେ ସେ ସବୁବେଳେ ଆତଙ୍କିତ ହେବାକୁ ଲାଗିଲେ । ମୋର ସାମାନ୍ୟ ଅସୁସ୍ଥତାରେ ହେ ଚଞ୍ଚଳ ହୋଇ ଉଠୁଥିଲେ ।

୧୯୫୩ ଡିସେମ୍ବର ମାସରେ ପୁଅଟିଏ ଜନ୍ମ ହେଲା । ବିଦ୍ୟୁତ୍‌ପ୍ରଭା ତାର ନାମ ରଖିଲେ ସଚ୍ଚିଦାନନ୍ଦ । ପିଲାଟି ଅନେକ ଦିନ ପର୍ଯ୍ୟନ୍ତ ରୋଗକଷ୍ଟ ଭୋଗୁଥିଲା—ତେଣୁ ତାକୁ ନେଇ ଆମ ଦୁଇଜଣଙ୍କୁ ବହୁ କଷ୍ଟ ସହିବାକୁ ହୋଇଥିଲା । ବିଦ୍ୟୁତପ୍ରଭାଙ୍କର ମଧ୍ୟ ସେତେବେଳକୁ ସ୍ୱାସ୍ଥ୍ୟହାନି ଆରମ୍ଭ ହେଲା । ୧୯୫୪ ମସିହା ସାରା ବର୍ଷଟି ଆମେ ସଚ୍ଚିର ସ୍ୱାସ୍ଥ୍ୟ ପାଇଁ ନାନା ଅସୁବିଧାର ସମ୍ମୁଖୀନ ହୋଇଥିଲୁ ।

୧୯୫୫ ମସିହାର ପ୍ରଥମ ଭାଗରେ କବିଙ୍କର ପ୍ରଥମ ଶିଶୁ ସାହିତ୍ୟ ପୁସ୍ତିକା "ଯାହାକୁ ଯିଏ" ପ୍ରକାଶିତ ହୋଇଥିଲା । ସେହି ବର୍ଷ ମୁଁ ଓ ବିଦ୍ୟୁତ୍‌ପ୍ରଭା ଦେଖି ପିଲା ଦୁହିଁଙ୍କ ସହିତ ଶ୍ୱଶୁରଙ୍କ ଘରେ ରହୁଥିଲୁଁ ।

କୌଣସି କାରଣରୁ ପିତା ଓ କନ୍ୟା କଟକରେ ଖଣ୍ଡେ ଘର ତିଆରି କରିବାକୁ ନିଷ୍ପତ୍ତି କରିଥିଲେ । ମୋର ସେଥିରେ ମନ ନଥିଲା । କାରଣ ସେଥିପାଇଁ ମୋର ସମ୍ବଳ ନଥିଲା । ସେ ଯାହାହେଉ ମୋର ମତାମତକୁ ଅପେକ୍ଷା ନକରି ସେମାନେ କଟକ ସହରରେ ଖଣ୍ଡେ ଜାଗା କଣିବା ଚେଷ୍ଟାରେ ଲାଗିଗଲେ ।

୧୯୫୭ ଆଦ୍ୟଭାଗରେ ବିଦ୍ୟୁତ୍‌ପ୍ରଭାଙ୍କର ସବୁ ପ୍ରକାଶିତ ପୁସ୍ତକ ଓ ଅପ୍ରକାଶିତ ଲେଖାକୁ ମିଶାଇ ଖଣ୍ଡିଏ ଗ୍ରନ୍ଥାବଳୀ ଛାପିବାକୁ ଶ୍ୱଶୁରେ ବଡ଼ ବ୍ୟଗ୍ର ହୋଇ ପଡ଼ିଲେ । କବିଙ୍କର ବୟସ ଦୃଷ୍ଟିରୁ ଏପରି ଗ୍ରନ୍ଥାବଳୀ ଛାପିବା ଏକ ହାସ୍ୟାସ୍ପଦ କଥା ବୋଲି କହି କେତେକ ବନ୍ଧୁ ପ୍ରସ୍ତାବକୁ ଅଗ୍ରାହ୍ୟ କରିଦେଇଥିଲେ । ମୋର ମଧ୍ୟ ଏଡ଼େ ବଡ଼ ଯୋଜନା ଆରମ୍ଭ କରିବାର ସାହସ ବା ସମ୍ବଳ ନଥିଲା । ଶ୍ୱଶୁରଙ୍କର ଉକ୍ତି ହେଲା, "ଆମ ଜାତି ସମ୍ମାନ ଦେବ ଅବସ୍ଥାକୁ ଆସି ନାହିଁ । ଯାହା କରିବା କଥା ଏବେଠାରୁ କରିବା ଭଲ ।" ଶ୍ୱଶୁରେ ଗ୍ରନ୍ଥାବଳୀ ଛାପିବାକୁ ଦୃଢ଼ପ୍ରତିଜ୍ଞ—କନ୍ୟା ମଧ୍ୟ ପ୍ରସ୍ତାବରେ ଏକମତ । ତେଣୁ ମୋର ଅସମ୍ମତିର କୌଣସି ଅବକାଶ ନଥିଲା । ବିଦ୍ୟୁତ୍‌ପ୍ରଭା ଓ ମୁଁ ପାଣ୍ଡୁଲିପି ପ୍ରସ୍ତୁତ କରିବାରେ ଶ୍ୱଶୁରଙ୍କୁ ସାହାଯ୍ୟ କଲୁଁ । ସ୍ୱର୍ଗୀୟ ବିଶିଷ୍ଟ କବି ମାୟାଧର ମାନସିଂ ପ୍ରସ୍ତାବିତ ଗ୍ରନ୍ଥଟିର ନାମ ରଖିଲେ "ସଞ୍ଚୟନ" ଓ ତାର ବିଭିନ୍ନ ବିଭାଗ ବିଷୟରେ ସୂଚନା ଦେଲେ । ପାଣ୍ଡୁଲିପି ପ୍ରସ୍ତୁତ କରିବାରେ କବି ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର କର ମଧ୍ୟ ଆମ୍ଭମାନଙ୍କୁ ପରାମର୍ଶ ଦେଇଥିଲେ । ବହି ଛପା କାମ ଆରମ୍ଭ ହୋଇ ପର ବର୍ଷ (୧୯୫୭) ଶେଷ ହେଲା ।

୧୯୫୭ ମସିହା ଅକ୍ଟୋବର ମାସରେ କବିଙ୍କର ପ୍ରଥମ ଶିଶୁ ସାହିତ୍ୟ ବହି "ଯାହାକୁ ଯିଏ" ଭାରତ ସରକାରଙ୍କ ଦ୍ୱାରା ଶ୍ରେଷ୍ଠ ଶିଶୁ ସାହିତ୍ୟ ଭାବରେ ପୁରସ୍କୃତ ହେଲା । ସରକାର ୫୦୦ଙ୍କା ପୁରସ୍କାର ଦେବା ଛଡ଼ା ୨୦୦୦ ଖଣ୍ଡ ବହି ମଧ୍ୟ କିଣି ନେଲେ ।

ସେହିବର୍ଷ ନଭେମ୍ବର ମାସରେ ଶ୍ୱଶୁର ଓ ଶାଶୂଙ୍କ ଯତ୍ନରେ କଟକ ସହରରେ ବିଦ୍ୟୁତ୍‌ପ୍ରଭାଙ୍କ ପାଇଁ ଖଣ୍ଡେ ଘରଡିହ କିଣାଗଲା ଓ

ପୁରସ୍କାର ଲବ୍ଧ ଅର୍ଥର ଉପଯୁକ୍ତ ବିନିଯୋଗ କରିଗଲି । ବିଦ୍ୟୁତ୍‌ପ୍ରଭାଙ୍କ ପାଇଁ ଘର ଓ ଜମି ଇତ୍ୟାଦି ବ୍ୟବସ୍ଥା କରିବା ଦିଗରେ ତାଙ୍କର ପିତା ସବୁବେଳେ ଯତ୍ନ କରୁଥିଲେ । ସେ ଜଣେ ଅନୁଭୂତିସମ୍ପନ୍ନ ଦୃଢ଼ମନା ବ୍ୟକ୍ତି ଥିଲେ । କବିଙ୍କୁ ଅତ୍ୟଧିକ ସ୍ନେହ କରୁଥିବାରୁ ତାଙ୍କ ପାଇଁ ସବୁକିଛି ସୁବିଧା କରିବାକୁ ସେ ପ୍ରଯତ୍ନ କରୁଥିଲେ । ବିଦ୍ୟୁତ୍‌ପ୍ରଭା ମଧ୍ୟ ତାଙ୍କୁ ସ୍ନେହ ଡୋରିରେ ବାନ୍ଧି ରଖିଥିଲେ ।

୧୯୫୭ ମସିହା ମେ ମାସରେ ମୁଁ ସେକ୍ରେଟେରିଏଟ୍ ଛାଡ଼ି ଓଡ଼ିଶା ଫାଇନାନ୍‌ସ ସର୍ଭିସ୍‌ରେ ଯୋଗ ଦେଲି । ଏହା ଏକ ପଦୋନ୍ନତି । ସେହିବର୍ଷ ମୁଁ ଭୁବନେଶ୍ୱରଠାରେ ଟ୍ରେନିଂ ନେଉଥିଲି ବେଳେ କିଛିଦିନ ବିଦ୍ୟୁତ୍‌ପ୍ରଭା ମୋ ସହିତ ପୁରୁଣା ଭୁବନେଶ୍ୱରଠାରେ ରହୁଥିଲେ । ସେତେବେଳେ ଭୁବନେଶ୍ୱରର ଜଳବାୟୁ ଓ ଖୋଲା ସ୍ଥାନ ଦେଖି ସେ ଏ ସ୍ଥାନ ପ୍ରତି ଆକୃଷ୍ଟ ହୋଇ ପଡ଼ିଥିଲେ ।

୧୯୫୮ ମସିହାର ଶେଷଦିନେ ଘର ତିଆରି କାମ ଆରମ୍ଭ କରିବାକୁ ଶଶୁରେ ଜିଦ୍ କଲେ । ସେତେବେଳେ ମୁଁ କଟକଠାରେ ବାଣିଜ୍ୟକର ବିଭାଗରେ କାର୍ଯ୍ୟ କରୁଥିଲି । ଶତ୍ରୁଘ୍ନ ବାବୁ କଣ୍ଟ୍ରାକ୍ଟରି କରୁଥିଲେ । ସେ ଆବଶ୍ୟକୀୟ ସାହାଯ୍ୟ କଲେ । ଘର ତିଆରିର ବ୍ୟବସ୍ଥା ହେଲା । ପାଖରେ ଆଦୌ ଅର୍ଥ ନଥିଲା । 'ସଞ୍ଚୟନ' ବିକି କରି ଶଶୁରେ ପ୍ରଥମେ କିଛି ଟଙ୍କା ଦେଇଥିଲେ । କିନ୍ତୁ ସେ ସମୁଦ୍ରକୁ ଶଙ୍ଖେ ପାଣି ପରି ଉଭେଇଗଲା । ବିଦ୍ୟୁତ୍‌ପ୍ରଭା ଗୋଟି ଗୋଟି କରି ନିଜର ସବୁ ଅଳଙ୍କାର ବିକି କରିଦେଲେ । ନାନା ଆଡ଼ୁ ଟଙ୍କା ଧାର କରି ଆଣିବାକୁ ହେଲା । ଏହି କାର୍ଯ୍ୟଟି ଆରମ୍ଭ ହେଲା ଦିନୁଁ ଆମ୍ଭମାନଙ୍କୁ ନାନା ଅଭାବ ଅସୁବିଧାର ସମ୍ମୁଖୀନ ହେବାକୁ ହେଲା । ବିଦ୍ୟୁତ୍‌ପ୍ରଭା ସାହସର ସହିତ ଅବସ୍ଥାର ସମ୍ମୁଖୀନ ହେଲେ । ଘର ଚଳାଇବାର ସମସ୍ତ ଭାର ସେତେ- ବେଳ ପର୍ଯ୍ୟନ୍ତ ସେ ବହନ କରି ଆସିଥିଲେ । ତେଣୁ ଅସୁବିଧା ବେଳେ ମଧ୍ୟ ପଶ୍ଚାତ୍‌ପଦ ହେଲେ ନାହିଁ । ସବୁ ପରିସ୍ଥିତିରେ ନିଷ୍ଠାର ସହିତ ସତ୍ ମାର୍ଗରେ ଜୀବନ ଯାପନ କରିବା ପାଇଁ ସେ ସବୁବେଳେ ପରାମର୍ଶ ଦେଉଥିଲେ ଓ ସେ ଦିଗରେ ତାଙ୍କଠାରେ କୌଣସି ଦୁର୍ବଳତା କେବେ-

ହେଲେ ମୁଁ ଦେଖି ନାହିଁ । ବରଂ ସେ ଅପ୍ରିୟୃତାର ସହିତ କଠୋର ଆଚରଣ କରିଥାନ୍ତି ।

ସେହିବର୍ଷ ଡିସେମ୍ବର ମାସରେ ଆମର ଚତୁର୍ଥ ସନ୍ତାନ ଭାବରେ ପୁଅଟିଏ ଜନ୍ମ ହେଲା । କବି ତାର ନାମ ରଖିଲେ ବ୍ରହ୍ମାନନ୍ଦ । ଏଥର କବି ପୁରା ସଂସାରୀ ଲୋକ । ହେଲେ ମଧ୍ୟ କବିତା ଲେଖା ବନ୍ଦ ନଥିଲା । ଲେଖାର ମୋଡ଼ ବଦଳି ଯାଇଥିଲା । ଶ୍ରେଷ୍ଠ ପିଲାଙ୍କୁ ନେଇ ନୂଆ ସଂସାର ଆରମ୍ଭ ହୋଇଥିଲା, ତେଣୁ ଏଥର ସେ ପିଲାମାନଙ୍କ ପାଇଁ ଲେଖୁଥିଲେ । ୧୯୫୯ ମସିହାରେ ସେହିପରି ଖଣ୍ଡିଏ ବହିର ପାଣ୍ଡୁଲିପି ପ୍ରସ୍ତୁତ କରି ଓଡ଼ିଶା ସାହିତ୍ୟ ଏକାଡେମୀକୁ ପଠାଇଥିଲେ । ପରେ କଟକର ପୁସ୍ତକ ପ୍ରତିଷ୍ଠାନ "ଫ୍ରେଣ୍ଡ୍ସ୍ ପବ୍ଲିସର"ଙ୍କ ସହଯୋଗରେ ବହିଟି ୧୯୬୦ରେ ପ୍ରକାଶିତ ହୋଇଥିଲା । ବହିଟିର ନାମ ରଖା ଯାଇଥିଲା, "ମୋ ପେଁକାଳି ବଜାଇ ଦେ" । ବହିଟି ପାଠକ ମହଲରେ ବିଶେଷ ଆଦୃତ ହେବା ଫଳରେ ଏହାର ଦ୍ୱିତୀୟ ସଂସ୍କରଣ ମଧ୍ୟ ମୁଦ୍ରିତ ହୋଇଥିଲା ।

ସେହିବର୍ଷ ଥରେ କୌଣସି କାର୍ଯ୍ୟରେ ବିଦ୍ୟୁତ୍‌ପ୍ରଭା ଦେବୀ ତାଙ୍କର ଜଣେ ଆତ୍ମୀୟ ଶ୍ରୀଯୁକ୍ତ ରଘୁନାଥ ମହାନ୍ତିଙ୍କ ଘରକୁ ଯାଇ-ଥିଲେ । ଶ୍ରୀଯୁକ୍ତ ମହାନ୍ତି ସେତେବେଳେ କାଠଯୋଡ଼ୀ କୂଳରେ କୌଣସି ଗୋଟିଏ ଘରେ ରହୁଥିଲେ । ତାଙ୍କର ଘରେ ସର୍ବପ୍ରଥମେ ବିଦ୍ୟୁତ୍‌ପ୍ରଭା ଶ୍ରୀ ଅରବିନ୍ଦ ଆଶ୍ରମ ଓ ଶ୍ରୀମା'ଙ୍କ ବିଷୟରେ ଜାଣିବାକୁ ପାଇଲେ । ସେ ବର୍ଷ ଶ୍ରୀଯୁକ୍ତ ଲଳିତ ମୋହନ ଘୋଷଙ୍କର ଭାଷାକୋଷ ଲେନସ୍ଥ ବାସଭବନକୁ ପୂଜ୍ୟ ବାବାଜି ମହାରାଜ (ଶ୍ରୀଯୁକ୍ତ ରାମକୃଷ୍ଣ ଦାସ) ପଣ୍ଡିଚେରୀ ଆଶ୍ରମରୁ ଆସିଥିଲେ । ବିଦ୍ୟୁତ୍‌ପ୍ରଭା ତାଙ୍କୁ ସେଠାରେ ସାକ୍ଷାତ କରିଥିଲେ ।

୧୯୬୦ ମସିହାର ମଧ୍ୟଭାଗରେ ଆମକୁ ବାଲେଶ୍ୱରକୁ ଯିବାକୁ ହୋଇଥିଲା । କାରଣ ମୋର ଚାକିରିରେ ସ୍ଥାନାନ୍ତର ହୋଇଥିଲା । ବାଲେଶ୍ୱରଠାରେ ରହଣି ସମୟରେ ବିଦ୍ୟୁତ୍‌ପ୍ରଭା ଦେବୀଙ୍କର ତଥା ମୋର କେତେଜଣ କବି, ଲେଖକ ଓ ବିଶିଷ୍ଟ ବ୍ୟକ୍ତିଙ୍କ ସହିତ ସମ୍ପର୍କ ସ୍ଥାପିତ ହୋଇଥିଲା ଯାହା ଫଳରେ କବି ନିଜର ସାହିତ୍ୟ ସାଧନାରେ

ମଧ୍ୟ ସୁଯୋଗ ପାଇଥିଲେ । ଏମାନଙ୍କ ମଧ୍ୟରୁ ଶ୍ରୀଯୁକ୍ତ ଯଦୁନାଥ ଦାଶ ମହାପାତ୍ର, ଶ୍ରୀଯୁକ୍ତ ବ୍ରଜନାଥ ରଥ, ଡାଃ ରାଧାଦେବୀ ଓ ଶ୍ରୀଯୁକ୍ତ ବିହାରୀଲାଲ ପଟ୍ଟନାୟକଙ୍କ ନାମ ଉଲ୍ଲେଖଯୋଗ୍ୟ । ଯଦୁବାବୁଙ୍କ ପ୍ରଯତ୍ନରେ ସେହିବର୍ଷ କବିଙ୍କର "ଗଛ ପତର" ନାମକ ଖଣ୍ଡିଏ ବହି ବାଲେଶ୍ୱରଠାରୁ "ସାହିତ୍ୟ ଜଗତ" ଆନୁକୂଲ୍ୟରେ ପ୍ରକାଶିତ ହୋଇ-ଥିଲା । ବହିଟି ପରେ ଓଡ଼ିଶା ରାଜ୍ୟ ଶିଶୁ ସାହିତ୍ୟ କମିଟି ଦ୍ୱାରା ପୁରସ୍କୃତ ହୋଇଥିଲା । ଡାଃ ରାଧାଦେବୀ ନିଜର ଚିକିତ୍ସାକାର୍ଯ୍ୟ ଛଡ଼ା ନାନାବିଧ ସମାଜ ସେବା, ନାରୀ ଜାଗରଣ, ପତ୍ରିକା ପ୍ରକାଶନ ଇତ୍ୟାଦି ସାହିତ୍ୟ ସେବା କାର୍ଯ୍ୟରେ ଲାଗିଥିଲେ । ବିଦ୍ୟୁତପ୍ରଭା ନିଜର ସୀମିତ ସମୟ ମଧ୍ୟରେ ତାଙ୍କ ସହିତ କେତେକ କାର୍ଯ୍ୟରେ ସହଯୋଗ କରୁଥିଲେ । ବନ୍ଧୁ ବିହାରୀଲାଲବାବୁଙ୍କ ସାନ୍ନିଧ୍ୟ ଲାଭ କଲା ପରେ ଆମ କୁଟୁମ୍ବର ଶ୍ରୀଅରବିନ୍ଦ ଆଶ୍ରମ ସହିତ ସମ୍ପର୍କ ଆହୁରି ନିବିଡ଼ ହୋଇ ଉଠିଥିଲା ।

୧୯୬୧ ମସିହାରେ ବିଦ୍ୟୁତ୍‌ପ୍ରଭା ପିଲାଙ୍କ ପାଇଁ ଉଦ୍ଦିଷ୍ଟ ଆଉ ଖଣ୍ଡିଏ ପୁସ୍ତକ ରଚନା କରିଥିଲେ । ଆମ୍ଭମାନଙ୍କର ବିଶିଷ୍ଟ ବନ୍ଧୁ ଶ୍ରୀଯୁକ୍ତ ଉପେନ୍ଦ୍ର ମିଶ୍ର (ସମ୍ପାଦକ 'ବନଫୁଲ')ଙ୍କ ଅନୁରୋଧକ୍ରମେ ସେହିବର୍ଷ ସେ ବହିଟି "ମୁଁ କେମିତି ପିଲା" ନାମରେ ପ୍ରକାଶିତ ହୋଇଥିଲା । ପ୍ରକାଶ କରିଥିଲେ ଶ୍ରୀଯୁକ୍ତ ମିଶ୍ର ।

ସେହିବର୍ଷ ଅକ୍ଟୋବର ପହିଲା ଦିନ କଟକଠାରେ ତାଙ୍କର ଝିଅଟିଏ ଜନ୍ମ ହୋଇଥିଲା । ଏଇଟି ଆମ୍ଭମାନଙ୍କର ଶେଷ ସନ୍ତାନ । କବି ତାର ନାମ ଦେଇଥିଲେ "ପ୍ରଣତି" । ଯଥାର୍ଥରେ ପ୍ରଣତି ଜନ୍ମ ପରଠାରୁ ତାଙ୍କର ମନୋଭାବରେ ପରିବର୍ତ୍ତନ ଲକ୍ଷ୍ୟ କରିଥିଲି ।

୧୯୬୨ ସେପ୍‌ଟେମ୍ବର ମାସରେ ମୋର ଭୁବନେଶ୍ୱର ବଦଳି ପରେ ସେ ମଧ୍ୟ ଏଠାକୁ ଆସି ୨ ନମ୍ବର ୟୁନିଟରେ ରହୁଥିଲେ । ସେହିବର୍ଷ ସେପ୍‌ଟେମ୍ବର ମାସରେ ଓଡ଼ିଶା ସାହିତ୍ୟ ଏକାଡ଼େମୀର ଏକ ବିଶେଷ ଅଧିବେଶନରେ ବିଦ୍ୟୁତପ୍ରଭା ଦେବୀଙ୍କୁ ତାଙ୍କର କବିତା ପୁସ୍ତକ "ସଞ୍ଚୟନ" ପାଇଁ ପୁରସ୍କୃତ କରାଯାଇଥିଲା ।

୧୯୭୩ ମସିହାରେ ତାଙ୍କର ଆଉ ଖଣ୍ଡିଏ ଶିଶୁ ସାହିତ୍ୟ ପୁସ୍ତକ ପ୍ରକାଶିତ ହୋଇଥିଲା । ସେଇଟି ହେଲା "କାହାଁକି ତୁମେ" ଏ ଖଣ୍ଡିର ପ୍ରକାଶକ ଥିଲେ "ଓଡ଼ିଶା ବୁକ୍ ଏମ୍ପୋରିୟମ, କଟକ" । ବହିଟି ପାଇଁ ଚିତ୍ର ଆଙ୍କି ଦେଇଥିଲେ ବିଶିଷ୍ଟ ଶିଳ୍ପୀ ଅସୀମ ବସୁ ।

ଏହି ସମୟରୁ ବିଦ୍ୟୁତପ୍ରଭାଙ୍କ ଜୀବନରେ ଏକ ନୂତନ ଅଧ୍ୟାୟର ଅଭ୍ୟୁଦୟ ହେଲା । ୨ ନମ୍ବର ଷ୍ଟ୍ରିଟରେ ଥିବା ଶ୍ରୀ ଅରବିନ୍ଦ ପାଠଚକ୍ର ସହିତ ଆମର ସମ୍ପର୍କ ସ୍ଥାପିତ ହେଲା । ସେ ସମୟରେ ପାଠଚକ୍ରଟି ଶ୍ରୀଯୁକ୍ତ ପ୍ରମୋଦଚନ୍ଦ୍ର ପଟ୍ଟନାୟକଙ୍କ ବାସଭବନରେ ଅନୁଷ୍ଠିତ ହେଉଥିଲା ପ୍ରତି ବୁଧବାର ଦିନ । ପାଠଚକ୍ରର କାର୍ଯ୍ୟକ୍ରମରେ ସେ କଠୋର ଭାବେ ନିୟମ ଓ ଶୃଙ୍ଖଳା ପାଳନ କରୁଥିଲେ । ସେଠାରେ ଏକ ମହିଳା ପାଠଚକ୍ର ଆରମ୍ଭ ହେଲା ଓ ତାଙ୍କୁ ସେଥିରେ ସମ୍ପାଦିକା ମନୋନୀତ କରାଗଲା । ସେ ପାଠଚକ୍ରର ଅଧିବେଶନ ହୁଏ ରବିବାର ଦିନ । ସେହିଦିନଠାରୁ ତାଙ୍କର ସଂଗଠନ ଜୀବନର ଆରମ୍ଭ ହେଲା । ୧୯୭୩ ଫେବ୍ରୁୟାରୀ ମାସରେ ସେ ପ୍ରଥମଥର ପାଇଁ ଶ୍ରୀଅରବିନ୍ଦ ଆଶ୍ରମ, ପଣ୍ଡିଚେରୀକୁ ଯାଇ ଶ୍ରୀମା'ଙ୍କ ଦର୍ଶନ ଲାଭ କରିଥିଲେ । ସେଠାରୁ ଫେରିଲା ପରେ କଟକ ଓ ଭୁବନେଶ୍ୱରର ଅଧିକାଂଶ ପାଠଚକ୍ର ଓ ବିଶେଷ କାର୍ଯ୍ୟକ୍ରମରେ ଯୋଗ ଦେଉଥିଲେ । ଆଶ୍ରମ ଜୀବନ ପ୍ରତି ସେ ଖୁବ୍ ଆକୃଷ୍ଟ ହୋଇଥିଲେ । ବିଶେଷତଃ ପିଲାମାନଙ୍କର ପଢ଼ା ଓ ରହିବା ବ୍ୟବସ୍ଥା ଦେଖି ସେ ବିଶେଷ ପ୍ରଭାବିତ ହୋଇଥିଲେ ।

ଜୁନ୍ ୧୯୭୩ରେ ମୋର ପଦୋନ୍ନତି ପରେ ମୁଁ ଖୋର୍ଦ୍ଧାଠାରେ କାର୍ଯ୍ୟରେ ଯୋଗ ଦେଲି । ପରେ ପରେ ବିଦ୍ୟୁତ୍‌ପ୍ରଭା ଦେବୀ ପିଲାମାନଙ୍କ ସହିତ ସେଠାକୁ ଯାଇଥିଲେ । ମୁଁ ସେଠାରେ ବେଶୀ ଦିନ ରହି ନଥିଲି । ନଭେମ୍ବରରେ କଟକ ଆସିବାକୁ ହୋଇଥିଲା । କିନ୍ତୁ ବିଦ୍ୟୁତ୍‌ପ୍ରଭା ୧୯୭୪ ଜୁଲାଇ ପର୍ଯ୍ୟନ୍ତ ପିଲାଙ୍କୁ ନେଇ ସେଠାରେ ଥିଲେ । ସେହିଠାରେ ଶ୍ରୀଅରବିନ୍ଦ ପାଠଚକ୍ର ସର୍ବପ୍ରଥମେ ତାଙ୍କର ପ୍ରେରଣା ଯୋଗୁଁ ସ୍ଥାପିତ ହୋଇଥିଲା । ଏଥିପାଇଁ ସେ ଘର ଘର ବୁଲି ବହୁ ଲୋକଙ୍କ ସହିତ

ମିଶିଥିଲେ । ସେତେବେଳେ ଜଟଣୀଠାରେ ଶ୍ରୀଯୁକ୍ତ ନିମାଇଁ ଚରଣ ମହାପାତ୍ରଙ୍କ ଘରେ ପାଠଚକ୍ର ହେଉଥାଏ । ବିଦ୍ୟୁତ୍ ପ୍ରଭା ଦେବୀଙ୍କର ପ୍ରଥମେ ତାଙ୍କ ସହିତ ସେଇଠାରେ ପରିଚୟ ହୋଇଥିଲା । ଆଉ ଯେଉଁମାନେ ସେତେବେଳେ ଆମ ସଂପର୍କରେ ଆସିଥିଲେ ସେମାନେ ହେଲେ ଶ୍ରୀଯୁକ୍ତ ପୂର୍ଣ୍ଣଚନ୍ଦ୍ର ମହାପାତ୍ର ଓ ଶ୍ରୀଯୁକ୍ତ ନରହରି ରଥ । ଏହିମାନଙ୍କୁ ବାରମ୍ବାର ଖୋର୍ଦ୍ଧା ଡାକି ପାଠଚକ୍ର କରୁଥିଲେ । ବିଦ୍ୟୁତ୍ ପ୍ରଭାଙ୍କ ଚେଷ୍ଟାରେ ଓ ସେଠାକାର ସଭ୍ୟମାନଙ୍କ ସହାୟତାରେ ସେହି ସମୟରେ ଖୋର୍ଦ୍ଧାଠାରେ କେତୋଟି ବିଶେଷ ଅଧିବେଶନ ହୋଇଥିଲା ଓ ସେ ବିଶେଷ ଲୋକପ୍ରିୟ ହୋଇ ଉଠିଥିଲେ । 'ପାଠଚକ୍ର' ପ୍ରତି ତାଙ୍କର ଏକ ବିଶେଷ ଆକର୍ଷଣ ଥିଲା ଓ ତାହାକୁ କେନ୍ଦ୍ର କରି ସେ ଏକୁଟିଆ ପିଲାମାନଙ୍କ ସହିତ ପ୍ରାୟ ଗୋଟିଏ ବର୍ଷ ସେଠାରେ ରହି ପାରିଥିଲେ ।

୧୯୬୪ ଜୁଲାଇ ମାସରେ ଆମେ ବ୍ରହ୍ମପୁର ସହରକୁ ଗଲୁଁ । ସେଠାରେ ଆମକୁ ୪ ୫ ମାସ ରହିବାକୁ ହୋଇଥିଲା । ସେଠାରେ ମିହିଞ୍ଚ ସେ ପ୍ରଥମେ ଗୋଟିଏ ପାଠଚକ୍ର ସ୍ଥାପନ କରିବାକୁ ଚେଷ୍ଟା କରିଥିଲେ । ନିଜେ ସେଠାକାର କଲେଜର ଅଧ୍ୟାପକମାନଙ୍କ ସହିତ ଆଲୋଚନା କରି ସେମାନଙ୍କୁ ଥରେ ପାଠଚକ୍ରକୁ ଡାକିଥିଲେ । ସେ ଅଞ୍ଚଳର ଆଉ କେତେଜଣ ବନ୍ଧୁ ମଧ୍ୟ ଆସିଥିଲେ । କିନ୍ତୁ ଲୋକମାନଙ୍କର ବିଶେଷ ଆଗ୍ରହ ଅନୁଭୂତ ହେଲା ନାହିଁ । ପାଠଚକ୍ର ଆମରି ଘରର ଲୋକଙ୍କ ମଧ୍ୟରେ ସୀମାବଦ୍ଧ ହୋଇ ରହିଲା । ବିଦ୍ୟୁତ୍ ପ୍ରଭା ଦେବୀଙ୍କୁ ସେଠାର ପରିବେଶ ଓ ଚଳଣି ଆଦୌ ଭଲ ଲାଗୁ ନଥିଲା । ତେଣୁ ସେଠାରେ ଅଧିକ ଦିନ ରହିବାକୁ ସେ ଚାହୁଁ ନଥିଲେ । ସେଠାରେ ଥିବା ସମୟରେ ସେ ମୋ ସହିତ କୋରାପୁଟ, ଜୟପୁର, ରାୟଗଡ଼ା ଇତ୍ୟାଦି ସ୍ଥାନକୁ ଯାଇଥିଲେ ଓ ଜୟପୁରଠାରେ ଶ୍ରୀ ଅରବିନ୍ଦ ପାଠଚକ୍ରରେ ଯୋଗ ଦେଇ ଶ୍ରୀଯୁକ୍ତ ରାମନାଥ ପଣ୍ଡା, ଡ଼କ୍ଟର ରଘୁନାଥ ପାଣି ଓ ସେମାନଙ୍କ କୁଟୁମ୍ବ ସହିତ ପରିଚିତ ହୋଇଥିଲେ । ସେଠାକାର ପ୍ରାକୃତିକ ଦୃଶ୍ୟ ଦେଖି ସେ ଚମତ୍କୃତ ହୋଇଥିଲେ । ସେଥର ସେ ବ୍ୟାଘ୍ରା ଓ ଡୁଡୁମା ଇତ୍ୟାଦି ସ୍ଥାନ ପରିଦର୍ଶନ କରିଥିଲେ ।

୧୯୭୪ ନଭେମ୍ବର ମାସରେ ଶେଷ ଥର ପାଇଁ ସେ ଭୁବନେଶ୍ୱରକୁ ଆସିଥିଲେ ଓ ୧୯୭୫ ଫେବୃୟାରୀ ମାସଠାରୁ ଆମେ ବର୍ତ୍ତମାନର ୨ ନମ୍ବର ୟୁନିଟ୍‌ସ୍ଥ ବାସଭବନରେ ରହି ଆସୁଥିଲୁଁ । ଏଥର ଭୁବନେଶ୍ୱର ରହଣି ବେଳେ ସେ ପାଠଚକ୍ର ସହିତ ସମ୍ପର୍କ ପୁନଃ ପ୍ରତିଷ୍ଠା କରିଥିଲେ । କିନ୍ତୁ ତାଙ୍କର ପ୍ରଧାନ ଚିନ୍ତା ହେଲା ପିଲାମାନଙ୍କର ଉତ୍ତମ ଶିକ୍ଷାର ବ୍ୟବସ୍ଥା କରିବା । ଶିକ୍ଷାଠାରୁ ତାଙ୍କର ସ୍ୱାସ୍ଥ୍ୟ ଓ ଚରିତ୍ରଗଠନ ବିଷୟରେ ସେ ବେଶୀ ଭାବୁଥିଲେ । ଆମର ଘରେ ପରିବେଶ ଓ ପରିସ୍ଥିତି ଯେପରି, ପୁଣି ସ୍କୁଲ୍, କଲେଜ ଓ ସାମାଜିକ ପରିସ୍ଥିତି ଯେପରି, ଏଠାରେ ପିଲାମାନଙ୍କୁ ଠିକ୍ ଭାବରେ ଗଢି ହେବ ନାହିଁ ବୋଲି ସେ ଠିକ୍ କରି ନେଇଥିଲେ । ତାଙ୍କର ଆଜୀବନର ଗୁରୁକୁଳ ଶିକ୍ଷା ପ୍ରତି ବିଶେଷ ଆଗ୍ରହ ଥିଲା । ତେଣୁ ସେ ଚାହୁଁଥିଲେ କୌଣସି ବିଶିଷ୍ଟ ବ୍ୟକ୍ତି ବା ଅନୁଷ୍ଠାନର ଦାୟିତ୍ୱରେ ପିଲାଙ୍କୁ ଛାଡିବାକୁ । ସେ ଥରେ ରାମକୃଷ୍ଣ ମଠକୁ ଯାଇ ସେଠାରେ ପିଲାଙ୍କୁ ପଢ଼ାଇବାକୁ ଚେଷ୍ଟା କରିଥିଲେ । ସେଠାରେ ସେପରି ବ୍ୟବସ୍ଥା ନ ଥିବାରୁ ତାହା ସମ୍ଭବ ହେଲା ନାହିଁ । ସେତେବେଳକୁ ଓଡ଼ିଶାର କେତେକ ପିଲା ଶ୍ରୀ ଅରବିନ୍ଦ ଆଶ୍ରମରେ ରହି ପଢୁଥାନ୍ତି । ଜୟପୁରଠାରେ ଶ୍ରୀଯୁକ୍ତ ରାମନାଥ ପଣ୍ଡାଙ୍କଠାରୁ ସେ ବିଷୟରେ ସବିଶେଷ ବିବରଣୀ ସଂଗ୍ରହ କରିଥିଲେ । ୧୯୭୫ ଜାନୁୟାରୀ ମାସରେ ଦିନେ ମୋତେ ହଠାତ୍ କହିଲେ ଯେ ସ୍ୱପ୍ନରେ ତାଙ୍କୁ ନିର୍ଦ୍ଦେଶ ମିଳିଛି ଯେ ବଡ଼ ପିଲା ଦୁହିଁଙ୍କର ପଣ୍ଡିଚେରୀଠାରେ ପଢ଼ାରେ ସୁବିଧା ହେବ । ନଭେମ୍ବରମାସରେ ପିଲାମାନଙ୍କର ସେଠାରେ ଆଡ୍‌ମିଶନ ହୁଏ । ସେଥର ଆମେ ଆବେଦନ କରିଥିଲେ ମଧ୍ୟ ଆଡ୍‌ମିଶନର ସୁଯୋଗ ମିଳି ନଥିଲା କିନ୍ତୁ ବିଦ୍ୟୁତ୍‌ପ୍ରଭା ପିଲାଙ୍କୁ ନେଇ ପଣ୍ଡିଚେରୀ ଯିବାକୁ ସ୍ଥିର କଲେ । ମୋର ତାଙ୍କୁ ନିବର୍ତ୍ତାଇବାର ସମସ୍ତ ଚେଷ୍ଟା ବିଫଳ ହେଲା । ସେ ଅତ୍ୟନ୍ତ ସରଳ ଓ ଓ ଦୃଢ଼ବିଶ୍ୱାସୀ ଥିଲେ । ଅଗତ୍ୟା ମୁଁ ପିଲାଙ୍କୁ ନେଇ ପଣ୍ଡିଚେରୀ ଗଲି— ସେ ମଧ୍ୟ ମୋ ସହିତ ଗଲେ । ଆଶ୍ରମରେ ଶ୍ରୀଯୁକ୍ତ ରାମକୃଷ୍ଣ ଦାସ ଓ ଶ୍ରୀଯୁକ୍ତ ପ୍ରପତ୍ତି (କାଙ୍ଗାଳି ଚରଣ ପତି) ଆମ୍ଭମାନଙ୍କୁ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ଶ୍ରୀମା'ଙ୍କଠାକୁ ଆବେଦନ ପତ୍ର ପଠାଗଲା, କିନ୍ତୁ ସେ ବର୍ଷ ପିଲାଙ୍କର ଆଡ୍‌ମିଶ ହୋଇପାରିଲା ନାହିଁ । ଶ୍ରୀମା ବାର୍ତ୍ତା

ପଠାଇଲେ ଯେ ଆସନ୍ତା ବର୍ଷ ବିଚାର କରାଯିବ । ସେଥର ଆମେ ଫେରି ଆସିଲୁଁ । ପରବର୍ଷ ଅଡ୍‌ମିଶନ୍ ହେବ ଏହି ଆଶାରେ ବିଦ୍ୟୁତପ୍ରଭା ଦିନ ଗଣିବାକୁ ଲାଗିଲେ ।

୧୯୬୭ ମସିହାରେ ବିଦ୍ୟୁତପ୍ରଭା କେତେଗୁଡ଼ିଏ ନୂଆ ଶିଶୁ କବିତା ଲେଖିଥିଲେ । ଖଣ୍ଡେ ବହି ପାଇଁ ପାଣ୍ଡୁଲିପି ପ୍ରସ୍ତୁତ ହୋଇଗଲେ ସେ କାଳ ବିଳମ୍ବ ନକରି ତାହାର ଛପା ଓ ପ୍ରକାଶନ ପାଇଁ ଲାଗି ପଡ଼ନ୍ତି । ଯେକୌଣସି ଉପାୟରେ ବହିଟିକୁ ପ୍ରକାଶ କରିବାକୁ ହେବ— ଏହି ଦୃଢ଼ ବିଶ୍ୱାସ ନେଇ ସେ ଆଗେଇ ଯାଆନ୍ତି । ନାନା ଅସୁବିଧାର ସମ୍ମୁଖୀନ ହେବାକୁ ହୁଏ—କିନ୍ତୁ ବହିଟି ଶେଷରେ ପ୍ରକାଶିତ ହୁଏ । ଦେଖାଯାଇଛି, ତାଙ୍କର ସବୁ ବହି ଲେଖା ପ୍ରାୟ ଏହିପରି ହୋଇଛି, ଯାହା ଫଳରେ ଏବେ ତାଙ୍କର କୌଣସି ଅପ୍ରକାଶିତ ପାଣ୍ଡୁଲିପି ନାହିଁ । ଏଥର ବହିଟିର ନାମ ଥିଲା "ପଢୁଆ ହସି ହସି ଗଢୁଆ" । କଟକର ପୁସ୍ତକ ପ୍ରତିଷ୍ଠାନ 'ୟୁନାଇଟେଡ୍ ବୁକ୍ ହାଉସ୍' ଏଇଟିର ପ୍ରକାଶ କରିଥିଲେ ।

୧୯୬୭ ମସିହା ଡିସେମ୍ବର ମାସରେ ବଡ଼ ପୁଅ ଓ ବଡ଼ ଝିଅ ଦୁହିଁଙ୍କୁ ପଣ୍ଡିଚେରୀ ଆଶ୍ରମ ଶିକ୍ଷାନୁଷ୍ଠାନରେ ପଢିବାର ସୁଯୋଗ ମିଳିଲା । ସେଠାକାର ସବୁ ଖର୍ଚ୍ଚ ତୁଲାଇବା ସେତେବେଳେ ମୋ ପକ୍ଷେ ଅସମ୍ଭବ ମନେ ହେଉଥିଲା । କିନ୍ତୁ ବିଦ୍ୟୁତପ୍ରଭା ସେସବୁ କଥା ଶୁଣିବାକୁ ପ୍ରସ୍ତୁତ ନଥିଲେ—ମା ସବୁକିଛିର ବ୍ୟବସ୍ଥା କରିଦେବେ ଏ ବିଶ୍ୱାସ ତାଙ୍କର ଥିଲା । ସେଥର ପିଲା ଦୁହିଁଙ୍କୁ ଛାଡ଼ିବାକୁ ସେ ମୋ ସହିତ ପଣ୍ଡିଚେରୀ ଯାଇଥିଲେ । ଫେରିଲାବେଳେ ପିଲା ଦୁହେଁ ଖୁସୀ ମନରେ ଆମକୁ ବିଦାୟ ଦେଇ ସେଠାକାର ନୂଆ ଜୀବନ ସହିତ ନିଜକୁ ମିଶାଇ ନେଲେ । ଏକ ଅନାସକ୍ତ ମାତାଙ୍କର ସନ୍ତାନ ସେମାନେ । ଆସକ୍ତି ତାଙ୍କର ରହିଲା କୁଆଡ଼ୁ ?

ସେଠାରୁ ଫେରି ଶ୍ରୀମା ଓ ଶ୍ରୀ ଅରବିନ୍ଦଙ୍କ ପାଇଁ ଉଦ୍ଦିଷ୍ଟ କେତେଗୁଡ଼ିଏ ପ୍ରାର୍ଥନା ସଙ୍ଗୀତ ରଚନା କରିଥିଲେ । ସେତେବେଳକୁ ସେ ସେମାନଙ୍କୁ ଗୁରୁ ଭାବରେ ଗ୍ରହଣ କରି ଭକ୍ତି ଓ ସମ୍ମାନ ଦେଉଥିଲେ । ନିଜକୁ ସମ୍ପୂର୍ଣ୍ଣ ଭାବରେ ସମର୍ପଣ କରି ଦେଇଥିଲେ ।

ଲେଖାଗୁଡ଼ିକ "ପୁଷ୍ପାଞ୍ଜଳୀ" ନାମରେ ଖଣ୍ଡେ ବହି ଆକାରରେ ପ୍ରକାଶିତ ହେଲା ୧୯୬୭ ମସିହା ଜାନୁୟାରୀ ମାସରେ । ପ୍ରକାଶକ ଥିଲେ ଶ୍ରୀଯୁକ୍ତ ଜଗନ୍ନାଥ ରଥ, ବିନୋଦ ବିହାରୀ, କଟକ । ଜଣେ ଲେଖିକା ଭାବରେ ବହିଟିକୁ ନିଜେ ନେଇ ଶ୍ରୀମା'ଙ୍କ କରକମଳରେ ଅର୍ପଣ କରିବାର ସୌଭାଗ୍ୟ ସେ ଲାଭ କରିଥିଲେ । ୨୦·୨·୬୭ ତାରିଖ ଦିନ ସେ ଶ୍ରୀମା'ଙ୍କ ସାମୀପ୍ୟ ଲାଭ କରି ବହିଟିକୁ ତାଙ୍କ ହାତରେ ଦେଇଥିଲେ । ବହିଟି ସହିତ ଗୋଟିଏ ପ୍ରାର୍ଥନା ନିଜେ ଓଡ଼ିଆରେ ଲେଖିଥିଲେ ଓ ଶ୍ରୀଯୁକ୍ତ ନିମାଇଁବାବୁ ତାହାର ଇଂରାଜୀ ଅନୁବାଦ ବହିଟି ଉପରେ ଲେଖିଦେଇ-ଥିଲେ । ସେ ଭାବୁଥିଲେ ଶ୍ରୀମା ଇଂରାଜୀ ପଢ଼ି ତାଙ୍କର ମନକଥା ଜାଣି ପାରିବେ । ନିମାଇଁବାବୁ ମଧ୍ୟ ତାଙ୍କ ଅନୁରୋଧ ରକ୍ଷା କରି ନିଜ ହାତରେ ଲେଖି ଦେଇଥିଲେ । ଧନ୍ୟ, ଭକ୍ତ କବିଙ୍କ ହୃଦୟ କେଡ଼େ ସରଳ ! ଦିବ୍ୟଜନନୀଙ୍କଠାରେ ପହଞ୍ଚିବାକୁ କେତେ ବିକଳ ସେ ! ବିଦ୍ୟୁତ୍‌ପ୍ରଭା ଶ୍ରୀମା'ଙ୍କୁ ଦର୍ଶନ କରିବାକୁ ଓ ବହିଖଣ୍ଡି ଭେଟି ଦେବାକୁ ପଣ୍ଡିଚେରୀ ଧାଇଁ ଯାଇଥିଲେ । ପ୍ରାଣର ନିବେଦନ କବିତା ମାଧ୍ୟମରେ ପ୍ରକାଶ ପାଇଛି । ନିଜକୁ ଶ୍ରୀମା'ଙ୍କ ସଙ୍ଗେ ଓ ଶ୍ରୀମା'ଙ୍କୁ ସାରା ସଂସାର ସଙ୍ଗେ ମିଶାଇ ଦେଇଛନ୍ତି । ପ୍ରେମ ଓ ଭକ୍ତି ଯେ କେଡ଼େ ବ୍ୟାପକ ତାହା ତାଙ୍କର ସେହି ରଚନାରୁ ସ୍ପଷ୍ଟ ଅନୁଭୂତ ହୁଏ—

"ଯେଉଁଠି ଥାଏ ଯହିଁବା ଯାଏ
ଯୁଆଡ଼େ ଅବା ଗୁହେଁ
ମାଆର ହସ ମାଆର ରୂପ
ସବୁଠି ମୁହିଁ ପାଏ ।
ଡର ମୋ ନାହିଁ ଥର ମୋ ନାହିଁ
ଏବକ ଟିକେ ନାହିଁ
ଯୁଆଡ଼େ ଗୁହେଁ ମା'ଙ୍କ ଆଖି
ରହିଛି ମତେ ଗୁହିଁ ।
ମାଆର କୋଳ ଅସଲ ଘର
ଧରମ ନାହିଁ ଲୋଡ଼ା
ପଣତେ ତାର ପଣତ ମୋର
ରହିଛି ସଦା ଯୋଡ଼ା ।"

[ପୁଷ୍ପାଞ୍ଜଳି ପୃ-୨୮, ୨୯]

ସେ ବର୍ଷ ଏପ୍ରିଲ ମାସରେ ମୋ ଦେହ ଖୁବ୍ ଅସୁସ୍ଥ ହୋଇ ପଡ଼ିଲା । ସେ ପ୍ରକାଶ ନକଲେ ମଧ୍ୟ ମୁଁ ଅନୁଭବ କଲି ଯେ ଭବିଷ୍ୟତରେ କୌଣସି ଦୁର୍ଘଟଣା ଘଟିବାର ଆଶଙ୍କାରେ ସେ ଶଙ୍କିତ ହେଉଥିଲେ । ସେ ସମୟରେ ଘରର କେତେକ ଅସୁବିଧା ଯୋଗୁଁ ଓ ତାଙ୍କର ନିଜର ଜିଦ୍ ଯୋଗୁଁ ସେ ଗୁଡ଼ାଏ କଠିନ ଶାରୀରିକ ପରିଶ୍ରମ କରୁଥିଲେ । କାର୍ଯ୍ୟ ମଧ୍ୟରେ ରହି ବେଳେ ବେଳେ ଖାଦ୍ୟ ଓ ପେୟର ନିୟମାନୁ-ବର୍ତ୍ତିତାରେ ମଧ୍ୟ ବ୍ୟତିକ୍ରମ ହୋଇଥିଲା । ଫଳରେ ତାଙ୍କର ଶାରୀରିକ ଅସୁସ୍ଥତା ଆରମ୍ଭ ହେଲା । ସେ ବର୍ଷ ସେ କଣ୍ଟାବାନ ଡାକ୍ତର ବୀଣାଦେବୀଙ୍କ ଚିକିତ୍ସାରେ ଥିଲେ ଓ ପରେ କଟକର ସ୍ତ୍ରୀରୋଗ ବିଶେଷଜ୍ଞ ଡାକ୍ତର ଉମାକାନ୍ତ ନନ୍ଦଙ୍କ ପରାମର୍ଶ ଅନୁସାରେ କଟକ ବଡ଼ ଡାକ୍ତର-ଖାନାରେ ପ୍ରାୟ ଏକ ସପ୍ତାହ ରହିଥିଲେ ଓ ସେତେବେଳେ ତାଙ୍କର ସାମାନ୍ୟ ଧରଣର ଅସ୍ତ୍ରଚିକିତ୍ସା କରାଯାଇଥିଲା । ତାଙ୍କର ଏହି ଶାରୀରିକ ଅସୁସ୍ଥତା ଲାଗି ରହିଲା । ନାନା ପ୍ରକାର ଚିକିତ୍ସାର ବ୍ୟବସ୍ଥା କଲେ ମଧ୍ୟ ବିଶେଷ ଫଳ ହେଲା ନାହିଁ । ଅତ୍ୟଧିକ ଶରୀର ଯନ୍ତ୍ରଣା; ଶ୍ରୀମା ଓ ଶ୍ରୀଅରବିନ୍ଦଙ୍କ ପ୍ରତି ଗଭୀର ଆସକ୍ତି ଓ ତା' ସାଙ୍ଗକୁ କୌଣସି କାରଣରୁ ଧନସମ୍ପତ୍ତି ଓ ସଂସାର ପ୍ରତି ବିତୃଷ୍ଣା ଏ ସବୁ ମିଶି ତାଙ୍କ ଚରିତ୍ରରେ ଏକ ବିରାଟ ପରିବର୍ତ୍ତନ ଆଣି ଦେଇଥିଲା । ତାଙ୍କର ସେତେବେଳଠାରୁ ଏକ ଧାରଣା ହେଲା ଯେ ଯହିଁରୁ କିଛି ଅଶାନ୍ତି ଉପୁଜୁଛି ତାକୁ ଛାଡ଼ି ଦୂରକୁ ଚାଲି ଆସିବା ଭଲ । ଭଗବାନଙ୍କଠାରେ ମନକୁ ସମର୍ପଣ କଲେ ଶାନ୍ତି ମିଳିବ । ଏ ଅସୁସ୍ଥତା ଲାଗି ରହିଲା । ସେହି ସମୟରେ ଥରେ ସେ ବିନ୍ଦୁସାଗରରେ ଆତ୍ମବିସର୍ଜନ ଦେବା ଲାଗି ଝାମ୍ପ ଦେଇଥିଲେ । ଦୈବାତ୍ ଦିନବେଳା ହୋଇଥିବାରୁ ଲୋକେ ଦେଖି ତାଙ୍କୁ ରକ୍ଷା କରିଥିଲେ । ସେ ସବୁବେଳେ କହୁଥିଲେ, ଶ୍ରୀମା'ଙ୍କ ସଙ୍ଗେ ମିଶିଗଲେ ଯନ୍ତ୍ରଣା କମିଯିବ—ସେ ମୋତେ ନିଶ୍ଚୟ ନେବେ ଓ ଆଶ୍ରୟ ଦେବେ ।

୧୯୭୮ ମସିହାରେ ସେ କଣ୍ଟାବାନ ପୁରୀଠାରେ ବନ୍ଧୁ ଶ୍ରୀଯୁକ୍ତ ବିହାରୀଲାଲ ପଟ୍ଟନାୟକଙ୍କ ଘରେ ରହି ଶ୍ରୀଯୁକ୍ତ ଚକ୍ରଧର ମିଶ୍ରଙ୍କର ହୋମିଓପାଥି ଚିକିତ୍ସାରେ ରହିଥିଲେ । ଆତ୍ମହତ୍ୟାରୁ ନିବର୍ତ୍ତି ଆସିଲା ପରେ ତାଙ୍କର ମନୋବଳ ବଢ଼ିଯାଇଥିଲା । ସେ କହିଲେ ଯେ ଶ୍ରୀମା'ଙ୍କର

ଇଚ୍ଛା—ତାଙ୍କୁ ଅଧିକ କିଛି କାର୍ଯ୍ୟ କରିବାକୁ ଅଛି । ଫଳରେ ରୋଗ-ଯନ୍ତ୍ରଣା ଯେ କୌଣସି ମତେ ସହିଯାଉଥିଲେ । ୧୯୬୯ ମସିହାରେ ସେ ପୁଣିଥରେ ପ୍ରାୟ ୧୫ଦିନ ପାଇଁ କଟକ ଡାକ୍ତରଖାନାରେ ଡଃ ଗୋପାଳ ମିଶ୍ରଙ୍କ ଚିକିତ୍ସାରେ ରହିଥିଲେ । ସେଠାରେ ଥିଲାବେଳେ ତାଙ୍କର ବଡ଼ ଧରଣରଅପ୍ରେସନ୍ ପାଇଁ ଡାକ୍ତରମାନେ ପରାମର୍ଶ ଦେଇଥିଲେ । ପିତା ଓ କନ୍ୟା ଏଥିରେ ସମ୍ମତ ହେଲେ ନାହିଁ । ଫଳରେ ସେ ଘରକୁ ଫେରି ଆସିଥିଲେ । ସେମାନେ ଡାକ୍ତରୀ ଚିକିତ୍ସା ତଥା ଅପରେସନକୁ ଆଦୌ ପସନ୍ଦ କରୁ ନଥିଲେ । କିଛିଦିନ ପରେ ତାଙ୍କର ବଡ଼ଭାଇ ଶ୍ରୀଯୁକ୍ତ ବୀର କିଶୋର ଦାସଙ୍କ ପରାମର୍ଶକ୍ରମେ ସେ କଟକର ବିଶିଷ୍ଟ ଡାକ୍ତର ଶ୍ରୀ ରଘୁନାଥ ସାହୁଙ୍କ ଚିକିତ୍ସାରେ ରହିଥିଲେ ଓ ଆଶାତୀତ ଫଳ ପାଇଥିଲେ । ପରେ ପରେ ସେ ପ୍ରାୟ ସମ୍ପୂର୍ଣ୍ଣ ଆରୋଗ୍ୟଲାଭ କରିଥିଲେ କହିଲେ ଚଳେ ।

୧୯୭୦ ମସିହା ଆରମ୍ଭରୁ ସେ ସାନ ପିଲା ଦୁହିଁଙ୍କୁ ନେଇ ଆଶ୍ରମରେ ଛାଡ଼ିବାକୁ ମନସ୍ଥ କଲେ । ଆମକୁ କିଛି ଗୋଟାଏ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିବ ଓ ସେତେବେଳେ ପିଲାମାନେ ଅସୁବିଧା ଭୋଗିବେ ନାହିଁ—ତାହାର ଉପଯୁକ୍ତ ବ୍ୟବସ୍ଥା କରିବା ପାଇଁ ସେ ଯେପରି ସେହିଦିନୁ ସଚେତନ ଥିଲେ ।

ସେହିବର୍ଷ ଭୁବନେଶ୍ୱରଠାରେ ଗୋଟିଏ ଶିକ୍ଷାକେନ୍ଦ୍ର ଖୋଲିବା ପାଇଁ ଶ୍ରୀଅରବିନ୍ଦ ପାଠଚକ୍ରର ବନ୍ଧୁମାନେ ପ୍ରସ୍ତାବ କରିଥିଲେ ଓ ଜୁଲାଇ ମାସଠାରୁ ସ୍କୁଲ ଖୋଲିବା କଥା ଧାର୍ଯ୍ୟ ହୋଇଥିଲା । ସେଠାକାର (ପଣ୍ଡିଚେରୀ) ଶିକ୍ଷାନୁଷ୍ଠାନ ବିଷୟରେ ପ୍ରତ୍ୟକ୍ଷ ଜ୍ଞାନ ଲାଭ କରିବା ପାଇଁ କେତେଜଣ ଶିକ୍ଷୟିତ୍ରୀ ସେଥିର ପଣ୍ଡିଚେରୀ ଯାଉଥିଲେ । ବିଦ୍ୟୁତ୍‌ପ୍ରଭା ସେମାନଙ୍କ ସହିତ ୧୯୭୦ ମସିହା ଜୁନ୍ ମାସରେ ପଣ୍ଡିଚେରୀ ଗଲେ । ସେଠାରେ କିଛିଦିନ ପିଲାଙ୍କ ଗହଣରେ ରହି ସାମାନ୍ୟ ପରିବର୍ତ୍ତନ କରି ଫେରି ଆସିବା ଥିଲା ପ୍ରସ୍ତାବ । ଆଶ୍ରମ ପରିବେଶରେ ଓ ଉତ୍ତମ ଜଳବାୟୁରେ ରହିଲେ ଶରୀରର ଶୀଘ୍ର ଉନ୍ନତି ହେବାର ଆଶା ମଧ୍ୟ ଥିଲା । କିନ୍ତୁ ଦୈବ ବିଧିର ଭିନ୍ନ । ସେହିଦିନଠାରୁ ବିଦ୍ୟୁତ୍-ପ୍ରଭାଙ୍କର ବାନପ୍ରସ୍ଥ ଜୀବନର ଅପୂର୍ବ ଆରମ୍ଭ ହେଲା ।

ଆଶ୍ରମର ଶୃଙ୍ଖଳା, ପରିବେଶ ଓ ପବିତ୍ରତା ତାଙ୍କୁ ଖୁବ୍ ଭଲ ଲାଗିଥିଲା । ଆଶ୍ରମ ବିଷୟରେ ତାଙ୍କର ଧାରଣା ଖୁବ୍ ଉଚ୍ଚ ଥିଲା । ସେ ସେ ସ୍ଥାନକୁ ଭୂସ୍ୱର୍ଗ ବୋଲି କହୁଥିଲେ । ସେଠାକାର ଖାଦ୍ୟ, ଦୁଗ୍ଧ ଓ ଫଳର ପ୍ରାଚୁର୍ଯ୍ୟ ବିଷୟରେ ଏଠାକୁ ଲେଖୁଥିଲେ । ଭାରତର ବିଭିନ୍ନ ପ୍ରାନ୍ତରୁ ଓ ଭାରତ ବାହାରୁ ବହୁ ଲୋକ ସେଠାରେ ସ୍ଥାୟୀ ଭାବରେ ରହୁଥିଲେ, ବିଭିନ୍ନ ଦେଶର ପିଲାମାନେ ସେଠାରେ ପଢ଼ୁଥିଲେ । ସମସ୍ତେ ଶ୍ରୀମା ଓ ଶ୍ରୀଅରବିନ୍ଦଙ୍କ ଆଦର୍ଶରେ ନିଜକୁ ପରିଚାଳିତ କରୁଥିଲେ ଓ ତାହାକୁ ସାଧନା ବୋଲି କହୁଥିଲେ । ସ୍ଥାନୀୟ ଭାଷା ତାମିଲ୍ ହେଲେ ମଧ୍ୟ ଇଂରାଜୀ ଓ ବଙ୍ଗଳା ଜାଣିଥିଲେ ଆଶ୍ରମରେ ଚଳିହୁଏ । ଓଡ଼ିଶାରୁ ମଧ୍ୟ ଅନେକ ଲୋକ ସେଠାରେ ରହୁଥିଲେ । ଓଡ଼ିଶାବାସୀଙ୍କ ଅନୁଷ୍ଠାନ "ନବଜ୍ୟୋତି କାର୍ଯ୍ୟାଳୟ" ଶ୍ରୀଯୁକ୍ତ ପ୍ରପତ୍ତି ଓ ଶ୍ରୀଯୁକ୍ତ ରାମକୃଷ୍ଣ ଦାସଙ୍କ ଦ୍ୱାରା ପରିଚାଳିତ ହୁଏ । ସେମାନେ ସେଠାରେ ବିଦ୍ୟୁତ୍‌ପ୍ରଭାଙ୍କର ରହିବାର ସବୁପ୍ରକାର ବ୍ୟବସ୍ଥା କରିଥିଲେ । ଆଶ୍ରମ ଗୋଟିଏ ସୁସଂଗଠିତ ପ୍ରତିଷ୍ଠାନ—ସମସ୍ତେ କର୍ମତତ୍ପର । ଗୋଷ୍ଠୀବଦ୍ଧ ଜୀବନରେ ଆବଶ୍ୟକ ଅବସର ବିନୋଦନ କାର୍ଯ୍ୟକ୍ରମର ମଧ୍ୟ ବ୍ୟବସ୍ଥା ଥାଏ । ଅନ୍ତେବାସୀମାନେ ମନେକରନ୍ତି ଯେ ସେମାନେ ଶ୍ରୀମା'ଙ୍କର କାର୍ଯ୍ୟ କରୁଛନ୍ତି, ତାଙ୍କର ଖାଦ୍ୟ ଖାଉଛନ୍ତି ଓ ତାଙ୍କର ଘରେ ରହୁଛନ୍ତି । ଏଥର ବିଦ୍ୟୁତ୍‌ପ୍ରଭା ଆଶ୍ରମରୁ ଶୀଘ୍ର ଫେରିଲେ ନାହିଁ । ତାଙ୍କର ଇଚ୍ଛାହେଲା ସେଠାରେ ରହିଯିବାକୁ । ନବଜ୍ୟୋତିର ଗେଷ୍ଟ୍ ହାଉସ୍ "ଓଡ଼ିଆ ନିଳୟମ୍"ଠାରେ ରହୁଥିଲେ ଓ ନିଜର ଖାଦ୍ୟ ଇତ୍ୟାଦିର ବ୍ୟବସ୍ଥା ନିଜେ କରିଥିଲେ । ଆଶ୍ରମର ସାଧକ ଶ୍ରୀଯୁକ୍ତ ଭୋଳେଶ୍ୱର ଭୂୟାଁଙ୍କଠାରୁ ପ୍ରଥମେ ପ୍ରାକୃତିକ ଚିକିତ୍ସା ବିଷୟରେ ସନ୍ଧାନ ପାଇ ସେଠାକାର ଚିକିତ୍ସାବିତ୍ ଶ୍ରୀଯୁକ୍ତ ତାରକନାଥ ବୋଷଙ୍କ ସହିତ ସାକ୍ଷାତ୍ କରିଥିଲେ । ପିଲାଦିନୁ ପ୍ରାକୃତିକ ଚିକିତ୍ସା ବିଷୟରେ ତାଙ୍କର ବିଶେଷ ଆଗ୍ରହ ଥିଲା । ସେଠାରେ ଥିବାବେଳେ ବଙ୍ଗଳା ଭାଷାରେ କେତେଗୁଡ଼ିଏ ପ୍ରାକୃତିକ ଚିକିତ୍ସା ପୁସ୍ତକ କିଣି ନିଜେ ପଢ଼ିଥିଲେ ଓ ନିଜେ ମଧ୍ୟ ସେ ଚିକିତ୍ସା ପଦ୍ଧତି ଅନୁସାରେ ଚଳୁଥିଲେ । ପ୍ରାକୃତିକ ଚିକିତ୍ସାର ଗୋଟିଏ ପ୍ରଧାନ ଅଙ୍ଗ ହେଉଛି "ଆସନ" । ବିଦ୍ୟୁତ୍‌ପ୍ରଭା ଦେବୀ ସେଠାରେ ବିଭିନ୍ନ ପ୍ରକାରର ଆସନର ପଦ୍ଧତି

ଶିଖି ନିଜେ ଅଭ୍ୟାସ କରୁଥିଲେ । ସେଠାରେ ଯେଉଁ ବ୍ୟକ୍ତିମାନେ ଆସନ ବିଷୟରେ ଜାଣିଥିଲେ ତାଙ୍କଠାରୁ ସେ ସେ ବିଷୟରେ ଶିକ୍ଷା କରିଥିଲେ । ନିଜେ ପୁରୁଷଙ୍କ ପରି ପ୍ୟାଣ୍ଟ ଓ ସାର୍ଟ ପିନ୍ଧି ସେ ଆସନ ଓ ବ୍ୟାୟାମ କରୁଥିଲେ । ସେ ଏ ବିଷୟରେ ପୁଙ୍ଖାନୁପୁଙ୍ଖ ଗବେଷଣା କରି କେତେ ଲେଖା ମଧ୍ୟ ଲେଖିଛନ୍ତି ।

ଆଶ୍ରମ ଭୋଜନଶାଳାରେ ଯେଉଁ ପଦ୍ଧତିରେ ଖାଦ୍ୟ ପ୍ରସ୍ତୁତ ହୁଏ ତାହା ସେ ନିଜେ ଦେଖିଥିଲେ । ସବୁକିଛୁ ବାମ୍ପରେ ସିଝେ ତେଣୁ ଖାଦ୍ୟପ୍ରାଣ ନଷ୍ଟ ହୁଏ ନାହିଁ । ନିଜ ଘରେ ସେ କୃତ୍ରିମ ଉପାୟରେ ସେ ପ୍ରକାର ରନ୍ଧାର ବ୍ୟବସ୍ଥା କରିଥିଲେ । ଗୋଟିଏ ବଡ଼ ହାଣ୍ଡି ମଧ୍ୟରେ ଜଳ ରଖି ତାହା ମଧ୍ୟରେ ଆଉ ଗୋଟିଏ ଷ୍ଟ୍ରେଟ ହାଣ୍ଡି ରଖି ତହିଁରେ ସେ ରନ୍ଧନ କରୁଥିଲେ । ଏହି ଭାବରେ ଚନ୍ଦ୍ର ସେଠାରେ କିଛି ଦିନ ରହିଲା ପରେ ତାଙ୍କ ସ୍ୱାସ୍ଥ୍ୟର ଯଥେଷ୍ଟ ପରିବର୍ତ୍ତନ ହୋଇଥିଲା । ଏ ସୁଯୋଗରେ ସେ ପୁଣି ଲେଖାପଢ଼ା କାର୍ଯ୍ୟ ଆରମ୍ଭ କରିଥିଲେ । ୧୯୭୦ ଅକ୍ଟୋବର ମାସଠାରୁ ୧୯୭୧ ମେ ମାସ ମଧ୍ୟରେ ସେ ଜୀବନର ଶେଷ ପର୍ଯ୍ୟାୟର ଲେଖାକାମ ଶେଷ କରିଥିଲେ । ତାଙ୍କ ଜୀବନର ଆରାଧ୍ୟ ଗୁରୁ ଶ୍ରୀମା ଓ ଶ୍ରୀଅରବିନ୍ଦଙ୍କ ବିଷୟରେ, ଆଶ୍ରମ ବିଷୟରେ ଓ ନିଜର ଆଧ୍ୟାତ୍ମିକ ଅନୁଭୂତି ବିଷୟରେ ସେ ଅନେକ କବିତା ରଚନା କରିଥିଲେ । ସେ ସମୟରେ ନିୟମିତ ଭାବରେ ତାଙ୍କର କବିତା ଆଶ୍ରମର ଓଡ଼ିଆ ପତ୍ରିକାରେ ପ୍ରକାଶିତ ହେଉଥିଲା । ପ୍ରାକୃତିକ ଚିକିତ୍ସାର ମୂଳ ଉପାଦାନ ମାଟି, ପାଣି ଓ ପବନର ବ୍ୟବହାର, ତତ୍ସମ୍ପର୍କୀୟ ଦାର୍ଶନିକ ଓ ମନସ୍ତାତ୍ତ୍ୱିକ ଭାବନାସବୁକୁ ନେଇ କେତେଗୁଡ଼ିଏ ଉଚ୍ଚକୋଟୀର କବିତା ମଧ୍ୟ ରଚନା କରିଥିଲେ । ପରେ ସେ ସମୟରେ ଲିଖିତ କବିତାଗୁଡ଼ିକ "ଜ୍ୟୋତିଶିଖା", "ସୂର୍ଯ୍ୟମୁଖୀ" ଓ "ମାଟି-ପାଣି-ପବନ" ନାମରେ ତିନିଖଣ୍ଡି ପୁସ୍ତକ ଆକାରରେ ୧୯୭୩ ଏପ୍ରିଲ, ଅଗଷ୍ଟ ଓ ନଭେମ୍ବର ମାସରେ ଯଥାକ୍ରମେ ପ୍ରକାଶିତ ହୋଇଥିଲା ।

ସେଥରର ପଣ୍ଡିଚେରୀ ରହଣି ମଧ୍ୟରେ ଆଶ୍ରମର ପ୍ରକୃତ ସ୍ୱରୂପ ନିଜେ ଦେଖି ସେ ଉପଭୋଗ କରିଥିଲେ । ଆଶ୍ରମର ବିଭିନ୍ନ ଅନୁଷ୍ଠାନ,

ବ୍ୟକ୍ତିବିଶେଷ ଓ କାର୍ଯ୍ୟକ୍ରମ ସବୁର ସମ୍ପର୍କରେ ଆସି ସେ ମୁଗ୍‌ଧ ହୋଇ ଯାଇଥିଲେ । ସେ ଥିଲେ ଶିଶୁ ପରି ସରଳ—ତେଣୁ କୌଣସି ପ୍ରକାର ସନ୍ଦେହ ବା ଯୁକ୍ତିର ସ୍ଥାନ ତାଙ୍କ ମନରେ ନଥିଲା । ଆଶ୍ରମର ସବୁ କିଛି ତାଙ୍କୁ ଭଲ ଲାଗିଥିଲା । ପଣ୍ଡିଚେରୀକୁ ସେ କେତେ ଉଚ୍ଚ ସ୍ଥାନ ଦେଇଥିଲେ ତାହା ତାଙ୍କ କବିତାରେ ସୁସ୍ପଷ୍ଟ —

ଯାହା ନାହିଁ 'ମହାଭାରତେ' ତା'
ନାହିଁ ଭାରତେ ।
ଖିଳ ମରତେ ଯା' ନାହିଁ ତାହା
ମିଳେ ଏ ପଥେ ।
× × ×
ବିଶ୍ୱର ଗଉରବ
ଭାରତର ସଉରଭ
ତୀର୍ଥର ତୀର୍ଥ ସେ—
ଏଇ ଧରଣୀ ମଉଡ଼ ମଣି ତୁଳନା ତା'ର
ପଣ୍ଡିଚେରୀ
ଏଇ ପଣ୍ଡିଚେରୀ ।
[ଜ୍ୟୋତିଶିଖା]

ଏ ପୁସ୍ତକର 'ଆଶ୍ରମ ବିଦାୟ' କବିତାଟି ଅତ୍ୟନ୍ତ ହୃଦୟସ୍ପର୍ଶୀ । ପ୍ରତ୍ୟେକ ଶବ୍ଦ, ପ୍ରତ୍ୟେକ ଧାଡ଼ି ତାଙ୍କ ଅନ୍ତର ଉଚ୍ଛ୍ୱାସ ପ୍ରକାଶିତ କରେ ।

ବନ୍ଧା ପଡ଼ିଲା ଆତ୍ମା ମୋର ଏ
ମହା ସମାଧିର ପାଶେ
ତେଜି ଆଶ୍ରମ- ଜନ୍ମଭୂମି ମୁଁ
ଯାଏ ଆଜି ପରବାସେ ।
× × ×
ଏକଇ ମାଆର ସନ୍ତାନ ସବୁ
ମିଶି ଅଛେ ଏକ ଠାଇଁ
ମହାମିଳନର ମହା ପରିବାରୁ
ବିରହେ କେ ଗୃହେଁ ଯାଇ ।

ଯାଉଛୁ ଏବେବରେ 'ଓଡ଼ିଆ ନଳସ୍ତ'
ଓଡ଼ିଶା-ନଳସ୍ତେ ମୂହାଁ
ଶେଷ ଥର ପାଇଁ ଚମ୍ପକ ଝରା
ଏଇ ଚୋ' ତୋରଣ ଛୁଇଁ ।
[ଜ୍ୟୋତିଶିଖା, ପୃ ୫୭-୫୮]

ଅନ୍ୟ ପୁସ୍ତକଟି "ସୂର୍ଯ୍ୟମୁଖୀ" । ଏଥିରେ ଶ୍ରୀ ମା ଓ ଶ୍ରୀଅରବିନ୍ଦ ଓ ସେମାନଙ୍କ ଯୋଗ ଅନୁଭୂତି ସମ୍ପର୍କୀୟ ଲେଖା ସନ୍ନିବେଶିତ ହୋଇଛି । ସମଗ୍ର ଲୋକ କପରି ଆଧ୍ୟାତ୍ମିକ ଜୀବନ ଯାପନ କରେ ସେ ବିଷୟରେ ସେ "ଆତ୍ମାହୁତି" କବିତାରେ ଲେଖିଛନ୍ତି—

ମୁଖର ମୋ ବାଣୀ ମା'ଗୋ ! ହେଉ ତୁମ ଜପ ସର
ହସ୍ତର ସକଳ କର୍ମ ସାଧେ ଯେହ୍ନେ ପୂଜା ସର ।
ଭ୍ରମଣର ଗତି ହେଉ ଆଶ୍ରମର ପ୍ରଦକ୍ଷିଣ
ଯଜ୍ଞର ଆହୁତି ପ୍ରାୟ ହେଉ ମୋର ସୁଭୋଜନ ।
ଅଷ୍ଟାଙ୍ଗ ପ୍ରଣାମ ସମ ଶୟନ ଯେ ହେଉ ପ୍ରଭୁ
ଯେତେ ପ୍ରିୟ ଦରବ ମୋ ହେଉ ସେ ତୁମରି ସବୁ ।
ଯେତେ ବିଧି ଧ୍ୟାନ ପର କରେ ସଦା ଆଚରଣ
ସବ ସେବା ପଦେ ତୁମ ହେଉ ଶେଷେ ସମର୍ପଣ ।

× × ×

କରମେ ଜଡ଼ିତ ରହି ନଶ୍ୱରମ ପରି ଚନ୍ଦ୍ରେ
ସେହି ପଦ୍ମ ପାଦେ ମନ ପଡ଼ିଥାଉ ଅବିରତେ ।
[ ସୂର୍ଯ୍ୟମୁଖୀ, ପୃ-୬୬ ]

କବିଙ୍କର ଜୀବନର ଶେଷ ଲେଖା 'ମାଟି-ପାଣି-ପବନ' । ଏ ପୁସ୍ତକଟି ଶ୍ରୀଅରବିନ୍ଦ ଆଶ୍ରମର ବିଶିଷ୍ଟ ସାଧକ ଶ୍ରୀଯୁକ୍ତ ପ୍ରପତ୍ତିଙ୍କ ଯତ୍ନରେ ନବଜ୍ୟୋତି କାର୍ଯ୍ୟାଳୟ ତରଫରୁ ପ୍ରକାଶିତ ହୋଇଥିଲା । ଓଡ଼ିଶା ସାହିତ୍ୟ ଏକାଡେମୀ ମଧ୍ୟ ଏଥିପାଇଁ କିଛି ଆର୍ଥିକ ସାହାଯ୍ୟ ଦେଇଥିଲେ । ପ୍ରାକୃତିକ ଚକଚାକ, ପ୍ରାକୃତିକ ଜୀବନ ଓ ପ୍ରକୃତିର ବିଭିନ୍ନ ଅବସ୍ଥା ବିଷୟରେ କବି ଭାବରେ ସେ ଚିନ୍ତା କରିଛନ୍ତି—ସେହି ପ୍ରକୃତି ମଧ୍ୟରେ

ଭଗବତ୍ ଚେତନାର ଅନୁଭବ ପ୍ରାପ୍ତ କରିଛନ୍ତି । ସବୁଥିରେ କବିଙ୍କର ଗଭୀର ଆଧ୍ୟାତ୍ମିକ ଉପଲବ୍ଧି ସୁସ୍ପଷ୍ଟ । କବିତାଗୁଡ଼ିକର ଭାଷା ସରଳ କିନ୍ତୁ ଭାବ ଗମ୍ଭୀର ଓ ପ୍ରଶାନ୍ତ । ପ୍ରକୃତିର ପ୍ରଧାନ ତିନୋଟି ଉପାଦାନ— ମାଟି, ପାଣି ଓ ପବନକୁ ନେଇ ତିନୋଟି ବିଭିନ୍ନ ବିଭାଗରେ କେତେ-ଗୁଡ଼ିଏ କବିତା ରଚିତ ହୋଇଛି । ଆରମ୍ଭରେ ଯେଉଁ ସୂଚନା ଦିଆ-ଯାଇଛି ସେଥିରୁ ଜଣାଯାଏ ଯେ ମାଟି-ପାଣି-ପବନକୁ ନେଇ ଆମର ଜୀବନଯାତ୍ରା । ସବିଶେଷ ଆଲୋଚନା ଏ ଲେଖାର ପରିସର ମଧ୍ୟରେ ସମ୍ଭବ ନୁହେଁ ।

୧୯୭୦ ମସିହା ଡିସେମ୍ବର ୧ ତାରିଖ ଦିନ ସେ ପଣ୍ଡିଚେରୀ-ଠାରେ ଥିଲାବେଳେ କଟକଠାରେ ତାଙ୍କର ପିତା ବିଶିଷ୍ଟ ଲେଖକ ନିମାଇଁ ଚରଣ ଦାସଙ୍କର ଦେହାନ୍ତ ହେଲା । କିନ୍ତୁ ପ୍ରାଣପ୍ରିୟ ପିତାଙ୍କୁ ହରାଇ ଯେ ପ୍ରକାର ଆଘାତ ପାଇଥାନ୍ତେ ତାହା ହେଲା ନାହିଁ । ଆଶ୍ରମ ପରିବେଶ ତାଙ୍କ ମନରେ ବଳ ଯୋଗାଇଥିଲା । ସେ ଧୀରସ୍ଥିର ଭାବରେ ଅବସ୍ଥାର ସମ୍ମୁଖୀନ ହେଲେ । ଶ୍ରାଦ୍ଧ ଦିନରେ ସେ ସେଠାରେ ଧ୍ୟାନ, ଆଲୋଚନା ଓ ପ୍ରସାଦ ସେବନର ବ୍ୟବସ୍ଥା କରିଥିଲେ ।

ଇତିମଧ୍ୟରେ ଆଶ୍ରମରେ ସ୍ଥାୟୀ ଭାବରେ ରହିବାର ଯୋଜନା କରି ସେଥିପାଇଁ ଆବେଦନ ପତ୍ର ମଧ୍ୟ ଲେଖା ସରିଥିଲା । ୧୯୭୧ ମସିହା ମାର୍ଚ୍ଚ ମାସରେ ଓଡ଼ିଶାରୁ ୩୦ ଜଣ ପିଲାଙ୍କର ଆଶ୍ରମ ଶିକ୍ଷା-କେନ୍ଦ୍ରରେ ଆଡ଼୍‌ମିସନ୍ ହେଲା । ସେଥି ମଧ୍ୟରେ ଆମର ସାନ ପିଲା ଦୁହେଁ ଅନ୍ତର୍ଭୁକ୍ତ ଥିଲେ । ବିଦ୍ୟୁତ୍‌ପ୍ରଭା ଏହାକୁ ଏକ ସୁଯୋଗ ବୋଲି ମଣିଲେ । ପିଲା ଦୁହେଁ ସେଠାରେ ରହିଗଲେ ସେ ସେଠାରେ ଓ ମୁଁ ଏଠାରେ ସୁବିଧାରେ ଚଳିଯାଇ ପାରିବୁଁ । ମୁଁ କିନ୍ତୁ ସମସ୍ତଙ୍କୁ ଛାଡ଼ି ଏକୁଟିଆ ଚଳିବାକୁ ପ୍ରସ୍ତୁତ ନଥିଲି । ସେ ନିଜ ମତରେ ଦୃଢ଼ ଥିଲେ । ବାରମ୍ବାର ମୋତେ ଲେଖି ପିଲା ଦୁଇଜଣଙ୍କୁ ସେଠାରେ ଛାଡ଼ିବାକୁ ମୋତେ ବାଧ୍ୟ କରୁଥିଲେ । ଶେଷରେ ଏପ୍ରିଲ ମାସରେ ମୁଁ ସେମାନଙ୍କୁ ନେଇ ଛାଡ଼ିଲି । ପରେ ବିଦ୍ୟୁତ୍‌ପ୍ରଭାଙ୍କୁ ଓଡ଼ିଶା ଆସିବାକୁ ପ୍ରସ୍ତାବ ଦେଲି । ଏଥିରେ ସେ ଭୀଷଣ କ୍ଷୁବ୍ଧ ହେଲେ । ଅଗତ୍ୟା ସମାଧାନ ପାଇଁ ଆମେ ଶ୍ରୀମା'ଙ୍କଠାକୁ ଲେଖି ଜଣାଇଲୁଁ । ଉତ୍ତର

ମିଳିଲା, "She should go and work in Orissa." —"ସେ ଓଡ଼ିଶା ଯାଆନ୍ତୁ ଓ ସେଠାରେ କାର୍ଯ୍ୟ କରନ୍ତୁ ।" ମା'ଙ୍କ ନିର୍ଦ୍ଦେଶକୁ ସେ ଆନନ୍ଦର ସହିତ ମାନିନେଲେ । ତାଙ୍କର ମନ ବଦଳି ଗଲା ଓ ସେ ମେ ମାସରେ ମୋ ସହିତ ଭୁବନେଶ୍ୱର ଫେରି ଆସିଲେ । ବିଦ୍ୟୁତ୍‌ପ୍ରଭା ସମ୍ପୂର୍ଣ୍ଣ ସୁସ୍ଥ ମନ ଓ ଶରୀରରେ ଶ୍ରୀମା'ଙ୍କ ନିର୍ଦ୍ଦେଶ ମାନି ଓଡ଼ିଶା ଆସୁଥିଲେ ଶ୍ରୀମା'ଙ୍କ କାର୍ଯ୍ୟ କରିବାକୁ । ମୋତେ ବାରମ୍ବାର ଉତ୍ସାହିତ କରି କହୁଥିଲେ, "ଆମର ପରମ ସୌଭାଗ୍ୟ, ଶ୍ରୀମା' ଆମର ପିଲାମାନଙ୍କର ଦାୟିତ୍ୱ ନେଇଛନ୍ତି । ଆମେ ଭଗବାନଙ୍କର କାର୍ଯ୍ୟ କରିବା ପାଇଁ ସୁଯୋଗ ଓ ସୁବିଧା ପାଇବା ।" ଇତ୍ୟାଦି—

ଆଗରୁ ବଡ଼ ପିଲା ଦୁହେଁ ଆଶ୍ରମରେ ରହି ପଢ଼ୁଥିଲେ । ଏଥର ସାନ ଦୁଇଜଣଙ୍କୁ ଛାଡ଼ି ଫେରିଲୁଁ । ପରିସ୍ଥିତିକୁ ମୁଁ କୌଣସି ମତେ ମୋ' ନିଜ ମଧ୍ୟରେ ସମାଧାନ କରିବାକୁ ଚେଷ୍ଟା କରୁଥିଲି । ମୋର ଦୁର୍ବଳତାକୁ ପ୍ରକାଶ କରିବାକୁ ଚାହୁଁ ନ ଥିଲି । ବସ୍ ପଣ୍ଡିଚେରୀ ଛାଡ଼ି ମାଡ୍ରାସ୍ ସହର ଆଡ଼କୁ ଚାଲିଲା—କିଛିକ୍ଷଣ ପରେ ମୁଁ ନିଜକୁ ଆୟତ୍ତ କରି ପାରିଲି ନାହିଁ—ଭୁବନେଶ୍ୱରଠାରେ ଆମ ପାଖରେ କେହି ଜଣେ ହେଲେ ପିଲା ନଥିବେ—ସେମାନେ ଥିବେ ହଜାର ମାଇଲ ଦୂରରେ, ଏ ଦୃଶ୍ୟ ମୁଁ ସହ୍ୟ କରିବାକୁ ପ୍ରସ୍ତୁତ ନଥିଲି । ଚକ୍ଷୁର ଦୁର୍ବଳତା ଝରି ପଡ଼ିଲା । ପାଖରେ ବସିଥିଲେ ବିଦ୍ୟୁତ୍‌ପ୍ରଭା । ହସି ହସି ମୃଦୁଭର୍ତ୍ସନା କଲେ ଓ କହିଲେ, "ଭୂସ୍ୱର୍ଗରେ ପିଲାମାନଙ୍କୁ ଛାଡ଼ିଲ । ନିଜେ ଶ୍ରୀମା' ତାଙ୍କର ଦାୟିତ୍ୱ ନେଲେ । ଏଥିରେ ଦୁଃଖ କରିବାର କ'ଣ ରହିଲା !" ଏତିକି ପ୍ରକାଶ୍ୟରେ କହିଲେ । ଭାବୁଛି ସେତେବେଳେ ସେ ମନେ ମନେ କହୁଥିଲେ, "ଏତିକି ନୁହେଁ—ତୁମକୁ ସମ୍ପୂର୍ଣ୍ଣ ଏକୁଟିଆ ରହିବାକୁ ହେବ – ସେ ଦିନ ମଧ୍ୟ ଆସିବ" କାରଣ ସେ ଥିଲେ ମା—ଚାରୋଟି ସନ୍ତାନଙ୍କର ଜନନୀ, କିନ୍ତୁ ମନରେ ସେଦିନ ତାଙ୍କର ଦୁର୍ବଳତାର ସାମାନ୍ୟ ଲକ୍ଷଣ ଦେଖିବାକୁ ପାଇ ନ ଥିଲି—ଯେପରି କି ସେ ସବୁକିଛି ଜାଣି କାର୍ଯ୍ୟ କରୁଥିଲେ ।

ସମୟ ଓ ଦୂରତା ମୋତେ ସଜାଡ଼ି ନେଲା । ଭୁବନେଶ୍ୱରଠାରେ ପହଞ୍ଚିଲା ପରେ ଗତାନୁଗତିକ ଜୀବନର ସ୍ରୋତରେ ନିଜକୁ ମିଶାଇଦେଲି ।

ଏଣେ ବିଦ୍ୟୁତ୍‌ପ୍ରଭା ଦେବୀ ପଣ୍ଡିଚେରୀ ଆଶ୍ରମକୁ ଭୁଲି ନିଜ ଘରକୁ ଆଶ୍ରମରେ ପରିଣତ କରିବାର ଚେଷ୍ଟାରେ ଲାଗିଗଲେ । ପ୍ରାକୃତିକ ଜୀବନଯାପନ ପ୍ରଣାଳୀ ଅନୁସୃତ ହେଲା । ସେ ରନ୍ଧନ ବ୍ୟବସ୍ଥାର ପରିବର୍ତ୍ତନ କଲେ । ଆଶ୍ରମରେ ଯେପରି ଖାଦ୍ୟର ବ୍ୟବସ୍ଥା କରାଯାଏ ଆମ ଘରେ ଠିକ୍ ସେହିପରି କରାଗଲା । ଉଭୟ ନିୟମିତ ଭାବରେ ଆସନ ଓ ବ୍ୟାୟାମ ଅଭ୍ୟାସ କଲୁଁ । ମୋଟାମୋଟି ଏକ କଠୋର ସଂଯମ ଓ ଶୃଙ୍ଖଳାର ଜୀବନ ।

ସେ କିନ୍ତୁ ସବୁ କିଛିକୁ ନିଜ ଘରର ସୀମା ମଧ୍ୟରେ ଆବଦ୍ଧ ନ ରଖି ଅନ୍ୟମାନଙ୍କୁ ଏ ଦିଗରେ ଜଣାଇବାକୁ ଓ ପ୍ରଭାବିତ କରିବାକୁ ଚେଷ୍ଟା କଲେ । ଏହା ଥିଲା ତାଙ୍କ ଚରିତ୍ରର ଏକ ବିଶେଷତ୍ୱ । ସାଧାରଣତଃ କେହି କିଛି ଭଲ ଜିନିଷ ପାଇଗଲେ ବା ଶିଖିଗଲେ ତାହାକୁ ସହଜେ ଅନ୍ୟକୁ ଜଣାଇବାକୁ ସୁଯୋଗ ଦିଅନ୍ତି ନାହିଁ । ଏହି ସ୍ୱଭାବ ପଶ୍ଚାତରେ ଥାଏ ସ୍ୱାର୍ଥପରତା ଓ ସଂକୀର୍ଣ୍ଣତା । ବିଦ୍ୟୁତ୍‌ପ୍ରଭାଙ୍କର ସ୍ୱଭାବ କିନ୍ତୁ ଭିନ୍ନ । ସେ ଅନ୍ୟମାନଙ୍କୁ ଜଣାଇ ଶିଖାଇ ଅଧିକ ଆନନ୍ଦ ଲାଭ କରନ୍ତି । ସେହି ସମୟରେ ପ୍ରତି ଶନିବାର ଦିନ ପୂର୍ଣ୍ଣାଙ୍ଗ ଶିକ୍ଷା-କେନ୍ଦ୍ର ଠାରେ ପାଠଚକ୍ର ହେଉଥାଏ । ସେ ସେଠାକୁ ନିୟମିତ ଭାବରେ ଯାଉଥିଲେ । ସେହି ପାଠଚକ୍ର ଜରିଆରେ ସ୍ୱାସ୍ଥ୍ୟଶିକ୍ଷା ବିଷୟରେ ଆଲୋଚନା କରାଗଲା ଓ ସମସ୍ତଙ୍କ ଅନୁମୋଦନକ୍ରମେ ୧୯୭୧ ମେ ମାସ ୩୧ ତାରିଖ ଦିନଠାରୁ ପ୍ରତି ସୋମବାର ଦିନ ଏ ବିଷୟରେ ଆଲୋଚନା ପାଇଁ ଆଉ ଥରେ ପାଠଚକ୍ର ହେଲା । ଏକ ନୂତନ କାର୍ଯ୍ୟକ୍ରମ ଗ୍ରହଣ କରାଗଲା । ତାହାର ନାମ ରଖାଗଲା **"Health Education Programme"**— ସ୍ୱାସ୍ଥ୍ୟ-ଶିକ୍ଷା କାର୍ଯ୍ୟକ୍ରମ । ଶ୍ରୀମା'ଙ୍କର ଆଶୀର୍ବାଦ ମଧ୍ୟ ମିଳିଗଲା । ଏହି ସୋମବାର ପାଠଚକ୍ର ୧୯୭୨ ଡିସେମ୍ବର ୭ ତାରିଖ ପର୍ଯ୍ୟନ୍ତ ଚାଲିଥିଲା । ଏଥିରେ ଶ୍ରୀମା' ଓ ଶ୍ରୀଅରବିନ୍ଦଙ୍କ ଲିଖିତ ସ୍ୱାସ୍ଥ୍ୟ-ଶିକ୍ଷା ବିଷୟରେ ନାନା ଆଲୋଚନା ହେଉଥିଲା । ସ୍ୱାସ୍ଥ୍ୟ-ଶିକ୍ଷା କାର୍ଯ୍ୟକ୍ରମ ଅନୁଷ୍ଠାନର ସମ୍ପାଦିକା ଦାୟିତ୍ୱ ତାଙ୍କୁ ଦିଆଯାଇଥିଲା । ସେ ପୂର୍ଣ୍ଣପ୍ରାଣରେ ଏହି ସଙ୍ଗଠନ କାର୍ଯ୍ୟରେ ଲାଗିପଡ଼ିଥିଲେ । ପ୍ରଥମେ ଭୁବନେଶ୍ୱରଠାରେ ଏହି କାର୍ଯ୍ୟକ୍ରମ ଆରମ୍ଭ କରାଯାଇ ପରେ

ଆବଶ୍ୟକମତେ ଓଡ଼ିଶାର ଅନ୍ୟାନ୍ୟ ସ୍ଥାନରେ ଶାଖା ଖୋଲିବାର ପ୍ରସ୍ତାବ ରହିଲା । ପ୍ରଧାନ କାର୍ଯ୍ୟକ୍ରମ ହେଲା—

୧ । ସକାଳ ୫ଟାରୁ ୭ଟା ମଧ୍ୟରେ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ରରେ ଯୋଗାସନ ଓ ବ୍ୟାୟାମ ଶିକ୍ଷାଦାନ ।

୨ । ପ୍ରତି ସୋମବାରଦିନ ସେଠାରେ ଶ୍ରୀମା' ଓ ଅରବିନ୍ଦଙ୍କ ଲିଖିତ ସ୍ୱାସ୍ଥ୍ୟ-ଶିକ୍ଷା ଓ ସମ୍ପର୍କୀୟ ପୁସ୍ତକ ପାଠ ଆଲୋଚନା ।

୩ । ଘର ଘର ବୁଲି ଶ୍ରୀମା' ଓ ଶ୍ରୀ ଅରବିନ୍ଦଙ୍କ ବାର୍ତ୍ତା ବିଷୟରେ, ଗତାନୁଗତିକ ଘର-ସଂସାର ଚଳାଇବାର ପଦ୍ଧତିର ପରିବର୍ତ୍ତନ ବିଷୟରେ ଓ ପ୍ରତ୍ୟେକ ଘରକୁ ଆଶ୍ରମରେ ପରିଣତ କରିବା ବିଷୟରେ ଆଲୋକପାତ କରିବା । ଏହି ଉଦ୍ଦେଶ୍ୟରେ ପ୍ରଥମେ ପାଠଚକ୍ରର ସଭ୍ୟମାନଙ୍କ ଘରକୁ ଓ ସ୍କୁଲର ଛାତ୍ରଛାତ୍ରୀମାନଙ୍କ ଘରକୁ ଯିବାପାଇଁ ସ୍ଥିର କରାଯାଇଥିଲା ।

ବିଦ୍ୟୁତ୍‌ପ୍ରଭାଙ୍କ ତତ୍ତ୍ୱାବଧାନରେ ଏହିସବୁ କାର୍ଯ୍ୟକ୍ରମ ଆରମ୍ଭ କରାଯାଇଥିଲା । ପ୍ରତିଦିନ ସକାଳେ ପ୍ରାୟ ୧୫।୨୦ ଜଣ ଆସନ ଶିକ୍ଷା କରୁଥିଲେ । ପାଠଚକ୍ରମାନଙ୍କୁ ବହୁ ସଂଖ୍ୟାରେ ଲୋକେ ଆସୁଥିଲେ । ବିଦ୍ୟୁତ୍‌ପ୍ରଭା ନିଜେ ଅନେକ ବନ୍ଧୁଙ୍କ ଘରକୁ ଯାଇ ଏ ବିଷୟରେ ଆଲୋଚନା କରିଥିଲେ । ଖାଦ୍ୟର ପରିବର୍ତ୍ତନ, ରନ୍ଧନ ବ୍ୟବସ୍ଥାର ପରିବର୍ତ୍ତନ ଦ୍ୱାରା ଘରେ ମା' ଭଉଣୀମାନେ କିପରି ସମୟ ପାଇପାରିବେ, ବିଶ୍ରାମ କରିପାରିବେ ଓ ବେଳେ ବେଳେ କୌଣସି ସାମାଜିକ କାର୍ଯ୍ୟରେ ନିଜକୁ ସଂପୃକ୍ତ କରିପାରିବେ ଏହି ବିଷୟରେ ସେ ଆଲୋକପାତ କରୁଥିଲେ । ଘରର ପୁରୁଷଲୋକମାନଙ୍କୁ ଏ ଦିଗରେ ସହଯୋଗ କରିବାକୁ ସେ ମଧ୍ୟ ଅନୁରୋଧ କରୁଥିଲେ । ଏ କାର୍ଯ୍ୟକ୍ରମକୁ କ୍ରମେ ବାହାରକୁ ପ୍ରସାରିତ କରିବାପାଇଁ କେତେକ ବନ୍ଧୁ ପରାମର୍ଶ ଦେଲେ ଓ ବିଭିନ୍ନ ଅଞ୍ଚଳର ବନ୍ଧୁମାନେ ଚିଠି ଲେଖି ଅନୁରୋଧ କଲେ ମଧ୍ୟ । ଫଳରେ ବିଦ୍ୟୁତ୍‌ପ୍ରଭା ଦେବୀଙ୍କୁ ଓଡ଼ିଶାର ବିଭିନ୍ନ ସ୍ଥାନକୁ ଯିବାକୁ ପଡ଼ିଥିଲା । ସେହିବର୍ଷ ୧୯୭୧ ଅଗଷ୍ଟ ୧୫ ତାରିଖ ଠାରୁ ୧୯୭୨ ଅଗଷ୍ଟ ୧୫ତାରିଖ

ପର୍ଯ୍ୟନ୍ତ ଶ୍ରୀ ଅରବିନ୍ଦଙ୍କ ଶତବାର୍ଷିକୀ ପାଳିତ ହେଉଥାଏ । ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ଡାକରା ଆସିଲା—ପୁରପଲ୍ଲୀରେ ଶ୍ରୀମା' ଓ ଶ୍ରୀ ଅରବିନ୍ଦଙ୍କ ବାଣୀ କପରି ପହଞ୍ଚିବ । ଆଶ୍ରମର ନବଜ୍ୟୋତି କାର୍ଯ୍ୟାଳୟ ତରଫରୁ ବିଭିନ୍ନ ଅଞ୍ଚଳ ପାଇଁ କର୍ମୀ ନିଯୁକ୍ତ ହୋଇଥିଲେ । ବିଦ୍ୟୁତ୍‌ପ୍ରଭା ସେମାନଙ୍କ ସାହାଯ୍ୟରେ ଓଡ଼ିଶାର ବିଭିନ୍ନ ସ୍ଥାନ ପରିଦର୍ଶନ କରି ସଂଗଠନ କାର୍ଯ୍ୟରେ ଯୋଗ ଦେଇଥିଲେ । ଖରା-ବର୍ଷା, ନଈ-ନାଳ, ପାଣି-କାଦୁଅ ଓ ପାହାଡ଼-ପର୍ବତ ନମାନି ସେ ଶ୍ରୀଅରବିନ୍ଦଙ୍କ ବାଣୀକୁ ନେଇ ଓଡ଼ିଶାର ପୁରପଲ୍ଲୀରେ ପହଞ୍ଚାଇଛନ୍ତି । ସଭାସମିତିରେ ଯୋଗ ଦେବାକୁ ଦିନେ ପିତାଙ୍କର ବାରଣ ଥିଲା । କିନ୍ତୁ ଆଧ୍ୟାତ୍ମିକ କାର୍ଯ୍ୟରେ ତାହା ବାଧା ସୃଷ୍ଟି କଲା ନାହିଁ । ସେ ସଭାସମିତିରେ ଅନର୍ଗଳ ବକ୍ତୃତା ଦେଇ ଚାଲିଲେ ଓ ପୁରପଲ୍ଲୀରେ ଭାଇଭଉଣୀମାନଙ୍କର ଶ୍ରଦ୍ଧାଭାଜନ ହୋଇଉଠିଲେ । ଓଡ଼ିଶାର ବିଭିନ୍ନ ପାଠଚକ୍ର ଆନୁକୂଲ୍ୟରେ ଯୁବ-ଛାତ୍ର-ଶିବିର, ପାଠଚକ୍ର-ସମ୍ମିଳନୀ, ବାର୍ଷିକ ଉତ୍ସବ ଓ ପ୍ରତିଷ୍ଠା ଦିବସ ଇତ୍ୟାଦି ପାଳିତ ହେଉଥିଲା । ଏ ସବୁରେ ଯୋଗ ଦେବାକୁ ତାଙ୍କୁ ନିମନ୍ତ୍ରଣ ଆସୁଥିଲା । ଧାରାବାହିକ ଭାବରେ ୧୯୭୫ ଅକ୍ଟୋବର ମାସ ପର୍ଯ୍ୟନ୍ତ ସେ ଏହି କାର୍ଯ୍ୟ କରିଥିଲେ । ଯେଉଁସବୁ କାର୍ଯ୍ୟକ୍ରମରେ ଯୋଗ ଦେଇ-ଥିଲେ ସେ ବିଷୟ ଲେଖିଲେ ଏକ ସ୍ୱତନ୍ତ୍ର ପୁସ୍ତକ ହେବ । ସେଥିମଧ୍ୟରୁ କେତେକ କାର୍ଯ୍ୟକ୍ରମର ସଂକ୍ଷିପ୍ତ ଟିପ୍‌ପଣୀ ସେହି ସମୟରେ ଆଶ୍ରମରୁ ପ୍ରକାଶିତ ହେଉଥିବା ଓଡ଼ିଆ ପତ୍ରିକା 'ନବପ୍ରକାଶ' ଓ 'ଓଡ଼ିଆ ଆହ୍ୱାନ'ରେ ଦେଖିବାକୁ ମିଳେ । ସଂଗୃହୀତ ବିବରଣୀରୁ ଦେଖାଯାଏ ଯେ ସେ ପ୍ରଥମେ ୨୭.୭.୧୯୭୧ରେ ରାଉରକେଲା ଯାଇ ସେଠାକାର ପାଠଚକ୍ରମାନଙ୍କରେ ଯୋଗ ଦେଇଥିଲେ । ପରେ ପରେ ଓଡ଼ିଶାର ସବୁ ଜିଲ୍ଲାର ବିଭିନ୍ନ ସ୍ଥାନକୁ ଯାଇ ସେଠାକାର କାର୍ଯ୍ୟକ୍ରମ ସବୁରେ ଯୋଗ ଦେଇଥିଲେ । ସେ ଏହି କାର୍ଯ୍ୟ ସଘନ ଭାବରେ ୧୯୭୪ ମସିହା ଶେଷ ପର୍ଯ୍ୟନ୍ତ କରିଥିଲେ ଓ ଶେଷଥର ପାଇଁ ୫।୧୦।୭୫ ଦିନ କଟକ ସହରର ମାତୃଭବନଠାରେ ହୋଇଥିବା ଶ୍ରୀ ଅରବିନ୍ଦ କର୍ମୀ ସମ୍ମିଳନୀରେ ଯୋଗ ଦେଇଥିଲେ ।

୧୯୭୨ ମସିହା ଜାନୁୟାରୀ ୯ ତାରିଖ ଦିନ **All India Radio**ରୁ କଟକ ରେଡ଼ିଓ ଷ୍ଟେସନ ଜରିଆରେ ବିଦ୍ୟୁତ୍‌ପ୍ରଭା ଦେବୀଙ୍କର

ଏକ ଆଲୋଚନା "ନାରୀ ସମସ୍ୟା" ପ୍ରସାରିତ ହୋଇଥିଲା । ସେ ନିଜେ ରେଡ଼ିଓ ଷ୍ଟେସନକୁ ଯାଇ ରେକର୍ଡିଂ କରାଇଥିଲେ । ସେହିବର୍ଷ ଫେବୃୟାରୀ ଓ ଜୁଲାଇ ମାସରେ ସେ ପୁଣି ଆଶ୍ରମକୁ ଯାଇଥିଲେ ଓ ଅଳ୍ପଦିନ ରହି ଫେରି ଆସିଥିଲେ । ତାଙ୍କର ଖାତାପତ୍ର ମଧ୍ୟରୁ ଖଣ୍ଡିଏ କାଗଜରୁ ଦେଖିଲୁ ଯେ ସେ ପଣ୍ଡିଚେରୀଠାରେ ଥାଇ ୫।୮।୭୨ ଦିନ ଗୋଟିଏ କବିତା ଲେଖିଥିଲେ "ଏଇ ପଣ୍ଡିଚେରୀ ତୀରେ" । ଏଇଟି ଏବେ ସୁଦ୍ଧା ଅପ୍ରକାଶିତ ରହିଛି । ସେଥିରୁ କେଇଟି ଧାଡ଼ି ଉଲ୍ଲେଖ କଲୁ—

× × ×

ଆନନ୍ଦମୟ ଏ ନବ ବର୍ଷେ
ଯୋଗାଶ୍ରମର ତୀରେ,
ଶୂନ୍ୟ ହୃଦ ମୋ ପୂର୍ଣ୍ଣ ତା ସୁଖେ
ରହିଁ ମହା ବାରିଧିରେ ।
ଏଇ ପଣ୍ଡିଚେରୀ ତୀରେ
ଏଇ ପଣ୍ଡିଚେରୀ ତୀରେ ॥

ମନେହୁଏ ଶତବାର୍ଷିକୀ ଶେଷରେ କବିତାଟି ଲେଖି ନବ ବର୍ଷ ବୋଲି କହିଛନ୍ତି ।

ଓଡ଼ିଶାରେ ଶ୍ରୀମା ଓ ଶ୍ରୀଅରବିନ୍ଦଙ୍କର କାର୍ଯ୍ୟକ୍ରମ ସକ୍ରିୟ ଭାବରେ ଚାଲୁଥିଲା ବେଳେ ୧୯୭୩ ନଭେମ୍ବର ୧୭ତାରିଖରେ ଶ୍ରୀମା'ଙ୍କର ମହାପ୍ରୟାଣ ହେଲା । ବିଦ୍ୟୁତ୍‌ପ୍ରଭା ସେଦିନ ବ୍ରହ୍ମପୁର ସହରରେ ଏକ ଯୁବ-ପ୍ରଶିକ୍ଷଣ-ଶିବିର ପରିଚାଳନା କରୁଥିଲେ । ଏ ସମ୍ବାଦ ପାଇ ସେ ସେଠାରୁ ବନ୍ଧୁମାନଙ୍କ ସହିତ ପଣ୍ଡିଚେରୀ ଯାଇଥିଲେ ଓ ଶ୍ରାଦ୍ଧ କାର୍ଯ୍ୟକ୍ରମ ଶେଷ ହେଲା ପରେ ଓଡ଼ିଶା ଫେରି ଆସିଥିଲେ । ମୁହଁରେ ପ୍ରକାଶ ନକଲେ ମଧ୍ୟ ଶ୍ରୀମା'ଙ୍କ ଦେହ ତ୍ୟାଗ ପରେ ବିଦ୍ୟୁତ୍‌ପ୍ରଭାଙ୍କ ମନରେ ଏକ ଭୀଷଣ ଆଘାତ ଲାଗିଥିଲା । ଯେଉଁ ସ୍ଥିତିର ନିଶ୍ଚିନ୍ତତା ନେଇ ସେ ଶ୍ରୀମା'ଙ୍କଠାରେ ନିଜକୁ ସମର୍ପଣ କରିଦେଇଥିଲେ ସେହି ନିଶ୍ଚିନ୍ତତା ଉପରେ ଆଘାତ ଦେଲା ଶ୍ରୀମା'ଙ୍କର ମହାପ୍ରୟାଣ । ବୋଧହୁଏ ସେ ମନେ ମନେ ଶ୍ରୀମା'ଙ୍କର ସ୍ଥୂଳ ଉପସ୍ଥିତିକୁ ଖୋଜୁଥିଲେ । ଶରୀର-ରୂପାନ୍ତର କାର୍ଯ୍ୟ କାହିଁକି ଏପରି ନାଟକୀୟ ଭାବରେ ସ୍ଥଗିତ ରହିଗଲା— ଯାହାକି

ଶ୍ରୀମା' ନିଜ ଶରୀରରେ ପ୍ରୟୋଗ କରୁଥିଲେ—ଏ ବିଷୟରେ ନାନା ଆଲୋଚନା ପ୍ରକାଶିତ ହେଲା । ବିଦ୍ୟୁତ୍‌ପ୍ରଭା ଏସବୁ ଆଲୋଚନାରେ ବିଶେଷ ଯୋଗ ଦେଉ ନଥିଲେ । ମନେହେଲା ହୃଦୟର ଆଘାତକୁ କୌଣସିମତେ ଚାପି ରଖୁଥିଲେ । କିନ୍ତୁ ଶ୍ରୀମା ଓ ଶ୍ରୀଅରବିନ୍ଦଙ୍କର ଅନ୍ୟସବୁ କାର୍ଯ୍ୟକ୍ରମରେ ଆଗ ପରି ଯୋଗ ଦେଉଥିଲେ । ସେହି ସମୟରେ ବେଳେ ବେଳେ ତାଙ୍କର ପୂର୍ବ ଅସୁସ୍ଥତାର ଲକ୍ଷଣ ଦେଖାଯାଉଥିଲା ।

୧୯୭୪ ମସିହା ନଭେମ୍ବର ମାସରେ ଶ୍ରୀମା'ଙ୍କର ମହାପ୍ରୟାଣ ଦିବସ କାର୍ଯ୍ୟକ୍ରମରେ ଯୋଗଦେବା ପାଇଁ ସେ ଅନିଚ୍ଛା ସତ୍ତ୍ୱେ ପଣ୍ଡିଚେରୀ ଯାଇଥିଲେ । ସେ ସମୟରେ ବଡ଼ପୁଅ ସେଠାରେ କାମଳ ରୋଗରେ ଆକ୍ରାନ୍ତ ହୋଇ ଚିକିତ୍ସିତ ହେଉଥିଲା । ବିଦ୍ୟୁତ୍‌ପ୍ରଭା ଦେବୀ ସେଠାରେ ଉପସ୍ଥିତ ରହି ତା ଉପରେ ପ୍ରାକୃତିକ ଚିକିତ୍ସା ପ୍ରୟୋଗ କଲେ ଓ ସେ କ୍ରମେ ଆରୋଗ୍ୟ ଲାଭ କଲା । କିନ୍ତୁ ହଠାତ୍ ସେ ନିଜେ ସେଠାରେ ଭୀଷଣ ଅସୁସ୍ଥ ହୋଇପଡ଼ିଲେ । କାହାରି କଥା ନଶୁଣି ପ୍ରାକୃତିକ ଚିକିତ୍ସା ପଦ୍ଧତି ଅନୁସାରେ ସେ ନିଜେ ଚଳୁଥିଲେ ଓ କୌଣସି ଔଷଧ ବ୍ୟବହାର କରୁ ନଥିଲେ । ଚିକିତ୍ସାର ସୁବିଧା ପାଇଁ ସେ କିଛିଦିନ ପ୍ରାକୃତିକ ପରିବେଶ ମଧ୍ୟରେ ରହିବାକୁ ଚାହିଁବାରୁ ଆଶ୍ରମର ବନ୍ଧୁମାନେ ତାଙ୍କୁ ନିକଟବର୍ତ୍ତୀ ଏକ ବଗିଚାରେ ରହିବାର ସୁବିଧା କରିଦେଇଥିଲେ । ସେଠାରେ ଦିନରେ ଏକୁଟିଆ ରହୁଥିଲେ ଓ ରାତି ବେଳକୁ ସହରକୁ ଫେରି ଆସୁଥିଲେ । ଘର ସଂସାରଠାରୁ ଆରମ୍ଭ କରି ଆମ ସମସ୍ତଙ୍କ ଠାରୁ ସେ ଏପରି କ୍ରୂର ଭାବରେ ମୁହଁ ଫେରାଇ ନେଇଥିଲେ ଯେ ସେ କେବଳ ନିର୍ଜନତାକୁ ପସନ୍ଦ କରୁଥିଲେ । ତାଙ୍କର ଦୃଢ଼ ଧାରଣା ଥିଲା ଯେ ପ୍ରାକୃତିକ ପରିବେଶ ମଧ୍ୟରେ ତାଙ୍କର ରୋଗ ଭଲ ହେବ । ନିର୍ଜନତାର ରୂପ ସହିବା ସହଜ ନୁହେଁ । ତାଙ୍କର ସେ ସମୟର କେତେକ ଟିପା ଖାତାରେ ସେ ଯାହା ଯାହା ଲେଖିଥିଲେ ସେଥିରୁ ଅନୁମାନ ହୁଏ ତାଙ୍କର ଧାରଣା ଥିଲା ଶ୍ରୀ ଅରବିନ୍ଦଙ୍କ ସିଦ୍ଧାନ୍ତ ଅନୁସାରେ ମନୁଷ୍ୟ ସର୍ବଶେଷ ସୃଷ୍ଟି ନୁହେଁ—ମାନବ ଶରୀର ଯୋଗପଦ୍ଧତିରେ ରୂପାନ୍ତରିତ ହେବ ଓ ଭଗବାନଙ୍କୁ ପ୍ରକାଶ କରିବାର ଯନ୍ତ୍ର ହେବ ।

ଶ୍ରୀଅରବିନ୍ଦ ଓ ଶ୍ରୀମା ଏହି କାର୍ଯ୍ୟ କରିବାକୁ ଚେଷ୍ଟା କରିଛନ୍ତି । ପ୍ରତ୍ୟେକ ସାଧକଙ୍କର ଏହା କର୍ତ୍ତବ୍ୟ—ସେ ନିଜେ ମଧ୍ୟ ସେ କାର୍ଯ୍ୟ କରୁଛନ୍ତି । ସେ ନିଜକୁ ସ୍ୱର୍ଣ୍ଣଶିଶୁ ବୋଲି ଧାରଣା କରିଥିଲେ ଓ ନିଜର ସଂକଳ୍ପକୁ ସୁବର୍ଣ୍ଣ ସଂକଳ୍ପ ବା **Golden Will** ବୋଲି ଲେଖିଛନ୍ତି ।

ସେ ପଣ୍ଡିଚେରୀଠାରେ ଥିଲାବେଳେ ୧୯୭୫ ମାର୍ଚ୍ଚ ମାସରେ ମୋର ମାତା ଶେଷ ନିଶ୍ୱାସ ତ୍ୟାଗ କଲେ । ଏ ସମ୍ବାଦ ପାଇ ବିଦ୍ୟୁତ୍‌ପ୍ରଭା ଦେବୀ ଆଶ୍ରମରେ ଶାଶୁଙ୍କ ଶ୍ରାଦ୍ଧକାର୍ଯ୍ୟ ଯଥାରୀତି ପାଳନ କରିଥିଲେ । ସେତେବେଳେ ଅସୁସ୍ଥତା ଯୋଗଁକୁ ତାଙ୍କର ମାନସିକ ବ୍ୟତିକ୍ରମ ପରିଲକ୍ଷିତ ହୋଇଥିଲା । ସେ ଏପରି କେତେକ କାର୍ଯ୍ୟ କରିଥିଲେ ଯାହାକି କୌଣସି ସୁସ୍ଥ ମସ୍ତିଷ୍କର ଲୋକ କରି ନଥାନ୍ତା । କିନ୍ତୁ କୌଣସି କାର୍ଯ୍ୟରେ ସେ ଅନ୍ୟ କାହାରି ଅନିଷ୍ଟ ଆଚରଣ କରୁ ନଥିଲେ ଅଥବା ପରିବେଶରେ କୌଣସି ବିଶୃଙ୍ଖଳା ସୃଷ୍ଟି କରୁ ନଥିଲେ । ସବୁଦିନ ପାଇଁ ସେଠାରେ ରହିବାର ଯୋଜନା ମନେ ମନେ ସ୍ଥିର କରିସାରିଥିଲେ । କିନ୍ତୁ ହଠାତ୍ ତାଙ୍କର ମନ ପରିବର୍ତ୍ତନ ହେଲା ଓ ସେ ଏପ୍ରିଲ ୨° ତାରିଖରେ ଓଡ଼ିଶା ଫେରିଆସିଲେ । ମୋର ଅସୁସ୍ଥତାର ଆଶଙ୍କା କରି ସେ ଫେରିଆସିଲେ ବୋଲି କହିଥିଲେ ।

ଏଠାକୁ ଫେରିଲା ପରେ ଧୀରେ ଧୀରେ ସେ ସୁସ୍ଥ ଅନୁଭବ କଲେ । କିନ୍ତୁ ମନର ଅବସ୍ଥା ଭିନ୍ନ ଥିଲା । କାହାରି ସହିତ ମିଶିବାକୁ ସେ ଭଲ ପାଉ ନଥିଲେ । ନିଜ ଘରେ ନିଜେ ପୂଜା ଅର୍ଚ୍ଚନା କରୁଥିଲେ । ପୂର୍ବ ପଦ୍ଧତି ଅନୁସାରେ କଳସ, ଧୂପ, ଚନ୍ଦନ ଓ ସିନ୍ଦୂର ପ୍ରଭୃତି ବ୍ୟବହାର କରି ପୂଜା କରୁଥିଲେ । ଏହା ଥିଲା ଏକ ପ୍ରଧାନ ବ୍ୟତିକ୍ରମ । ଖୁବ୍ କମ୍ କଥାବାର୍ତ୍ତା କରୁଥିଲେ । ଘରର ଅନ୍ୟାନ୍ୟ କାର୍ଯ୍ୟ ସେ ନିଜେ କରୁଥିଲେ । ଖାଦ୍ୟପେୟରେ ମଧ୍ୟ କୌଣସି ବ୍ୟତିକ୍ରମ ବା ପରିବର୍ତ୍ତନ ଲକ୍ଷିତ ହୋଇ ନଥିଲା । ସନ୍ଧ୍ୟା ଓ ସକାଳେ ଭ୍ରମଣ ଓ ନିର୍ଦ୍ଦିଷ୍ଟ ଦିନରେ ପାଠଚକ୍ରରେ ମଧ୍ୟ ଯୋଗ ଦେଉଥିଲେ ।

ଅକ୍ଟୋବର ଶେଷ ସପ୍ତାହରେ ଦିନେ ବାଟରେ ଯାଉ ଯାଉ ହଠାତ୍ ବାତ ରୋଗରେ ଆକ୍ରାନ୍ତ ହେଲେ ଓ କୌଣସି ମତେ ତାଙ୍କୁ

ଘରକୁ ଅଣାଗଲା । ପରେ ପରେ ତାଙ୍କଠାରେ ମାନସିକ ରୋଗର ଲକ୍ଷଣ ଦେଖା ଦେଲା । ବେଳେ ବେଳେ କଥାବାର୍ତ୍ତାରେ ଅସଂଲଗ୍ନତା ଓ କାର୍ଯ୍ୟରେ ମଧ୍ୟ ସେହିପରି ଲକ୍ଷ୍ୟ କରାଗଲା । ବେଳେ ବେଳେ ହଠାତ୍ ବାହାରକୁ ଯିବାକୁ ବାହାରି ପଡ଼ୁଥିଲେ । କାହାରି ପ୍ରତିରୋଧ ମାନୁ ନଥିଲେ । ସଙ୍ଗେ ସଙ୍ଗେ ଡାକ୍ତରଙ୍କ ପରାମର୍ଶ ନଆଯାଇ ଚିକିତ୍ସା କରାଗଲା । କଟକର ମାନସିକ ରୋଗ ବିଶେଷଜ୍ଞଙ୍କ ଚିକିତ୍ସାରେ ତାଙ୍କୁ ରଖାଗଲା । ସେହି ସମୟରେ ସେ କିଛି ଲେଖାଲେଖି ମଧ୍ୟ କରିଥିଲେ । ସେଗୁଡ଼ିକୁ ପଢ଼ିଲେ ଚିନ୍ତା ଓ ଭାବର ଅସଂଲଗ୍ନତା ମଧ୍ୟ ଦେଖିବାକୁ ମିଳେ । ୨୩।୧୦।୭୫ରେ ଲିଖିତ ଗୋଟିଏ କବିତା ଏଠାରେ ଉଲ୍ଲେଖ କରାଯାଉଛି ।

୨୩।୧୦।୭୫

ଶରତ କୁଟୀର

ଓଁ

## ଆନନ୍ଦମୟୀ ଚୈତନ୍ୟମୟୀ ସତ୍ୟମୟୀ ପରମେ
## ହେ ମଧୁର ହିମାଳୟ

ହେ ମଧୁର ହିମାଳୟ ! କର ମତେ ହିମ ବିନ୍ଦୁଟିଏ –
ଯେ ବିନ୍ଦୁରେ ଦେଖିବି ମୁଁ ତୁମରି ସେ ଜ୍ୟୋତିର ସ୍ୱରୂପ ।
ଅନ୍ଧ ମୁହିଁ ଅଣ୍ଡାଳଇ ପଥ ? ହେ ମୋହର ଜ୍ୟୋତିର୍ ନୟନ ।
ତୁମେ ମୋର ଜ୍ୟୋତିର ନୟନ ?— ଅନ୍ଧ ମୁହିଁ
ଅଣ୍ଡାଳଇ ପଥ ? କି ବୋଲିବ ମାନବ ସମାଜ ।
ତୁମକୁ ଏ ଘୋର ଅପମାନ । ପାରିବି ପଛକେ
ମୁହିଁ ସହି ସବୁ କଳଙ୍କ ଗ୍ଲାନିରେ—ମାତ୍ର
ନପାରିବି ସହି କେବେ ତୁମ ଘୋର ଅପମାନ ।
ଅପମାନ—ଅପମାନ । ଓଃ ସେ ଯେ ମୋ ସମ୍ମାନ
ମୋର ଅପମାନ କିନ୍ତୁ ସିନା ମୋ ସମ୍ମାନ
କିନ୍ତୁ ତୁମ ଅପମାନ ତୁମ ପଦତଳେ କରେ ସମର୍ପଣ,
ତୁମେ ତା ବୁଝିବ । ଭଲ ଭେଲ—କିଛି ମୁଁ ବୁଝେନା,
ମୁଁ ତୁମର ଭ୍ରୂଣ ଶିଶୁ ।

ହେ ମଧୁର ହିମାଳୟ
କରିଦିଅ ମୋତେ ତୁମ କରୁଣାର ତୃଷାୟ ଅଧ୍ୟାୟ
ଭ୍ରୂଣ ମୂର୍ତ୍ତି—ସେ ତୃଷାୟ ଅଧ୍ୟାୟ ବିନ୍ଦୁଟିଏ କର
ନ ପାରେ ମୁଁ ସହି ଯେଣ୍ଟ ତେଜୋଦୀପ୍ତ ଆଲୋକ ତୁମର ।
ସେହି ଅପମାନ ଖାଲି ଦୂରିବାର ଲାଗି
ଭିକ୍ଷୁଣୀ ମୁଁ ବୁଲିଥିଲି ଭିକ୍ଷା ମାଗି ମାଗି ।
ହେ ମୋହର ପ୍ରିୟ ବୁଦ୍ଧ ! ରିକ୍ତ ଥାଳି ଧରି
ବାହୁଡ଼ିଲି ତୁମ ପାଶେ ଯଶୋଧାରା ପରି
ରିକ୍ତ ହସ୍ତେ, ନଗ୍ନ ପଦେ କେତେ ମରୁବାଲି
ତୁମ ନାମ ସ୍ମରି ସ୍ମରି ପାରି ହେଲି ଖାଲି ।
ଯଥାଯୋଗ୍ୟ ଦାନ ତୁମ ନ ପାଇଲି କାହୁଁ
ତୁମେ ଦେଲ ତୁମ ଦାନ ଟେକ ମହାବାହୁ ।
ପ୍ରଣୟର ଶେଫାଳିକା—ପ୍ରୀତିର ବଉଳ
ସେହି ପୂର୍ଣ୍ଣ ଥାଳି ମୋର ଗୌରବ ଅତୁଳ ।

ଔଷଧ ବ୍ୟବହାର କଲା ପରେ ସେ ଅନେକ ସମୟ ଶୋଇ ରହୁଥିଲେ । କ୍ରମେ କ୍ରମେ ସେ ସୁସ୍ଥ ହେଲେ ଓ ସ୍ୱାସ୍ଥ୍ୟର ବେଶ୍ ପରିବର୍ତ୍ତନ ହେଲା । ତାଙ୍କର ପୂର୍ବ ସ୍ୱାସ୍ଥ୍ୟ ପ୍ରାୟ ଫେରି ପାଇଲେ । ଚାଲିଚଳନରେ ବିଶେଷ ପରିବର୍ତ୍ତନ ଲକ୍ଷ୍ୟ କରାଗଲା । ସେ ଯେପରି ଏକ ନୂତନ ମଣିଷ । ତାଙ୍କର ଆଗ ସ୍ୱଭାବ ଓ ଚଞ୍ଚଳତା ସମ୍ପୂର୍ଣ୍ଣ ଲୋପ ପାଇଥିଲା । ସେ ମାଟିପିଣ୍ଡୁଳା ପରି ସ୍ଥିର ହୋଇଯାଇଥିଲେ । ଖାଇବା, ଶୋଇବା ଓ ଏକ ସ୍ଥାନରେ ବସିବା ଛଡ଼ା ଅନ୍ୟ କୌଣସି କାର୍ଯ୍ୟ କରୁ ନଥିଲେ । ପଢ଼ା, ଲେଖା ଓ ଅନ୍ୟାନ୍ୟ ବିଷୟ ପ୍ରତି ଆଦୌ ମନ ଦେଉ ନଥିଲେ । କାହାରି ସହିତ କଥାବାର୍ତ୍ତା କରିବା ବା କାହା ଘରକୁ ଯିବାକୁ ଚାହୁଁ ନଥିଲେ । ମନେହେଲା ଅନ୍ୟ ଆଗରେ ମୁହଁ ଦେଖାଇବାକୁ ବା କଥା କହିବାକୁ ସେ ଆଦୌ ଚାହୁଁ ନଥିଲେ । ବେଳେବେଳେ ପାଠଚକ୍ରକୁ ଓ ପ୍ରତିଦିନ ପ୍ରାୟ ଶ୍ରୀ ଅରବିନ୍ଦ ଭବନକୁ ମୋ ସହିତ ଯାଉଥିଲେ । ସେ ଯିବା କେବଳ ଯନ୍ତ୍ର ପରି । ସ୍ୱାସ୍ଥ୍ୟର ଏ ଅବସ୍ଥାରେ ମଧ୍ୟ ସେ ମୋତେ

ଯଥାଶକ୍ତି ପରାମର୍ଶ ଦେଉଥିଲେ ଓ ହିନେହେଲେ କାହାର ଅନିଷ୍ଟ ଚିନ୍ତା କରି ନଥିଲେ ବା କୁପରାମର୍ଶ ଦେଇ ନଥିଲେ । ଏହିପରି କିଛିଦିନ ଚାଲିଲା ପରେ ୧୯୭୭ ମଧ୍ୟଭାଗରୁ ତାଙ୍କଠାରେ ନାନାପ୍ରକାର ରୋଗ ଉପକ୍ରମ ହେଉଥିବାର ପ୍ରକାଶ କଲେ । ପେଟରେ ଭୀଷଣ ଯନ୍ତ୍ରଣା ଅନୁଭବ କରୁଥିଲେ । ଖାଇବା ଖୁବ୍ କମାଇ ଦେଇଥିଲେ । ସେ ଖୁବ୍ ବେଗରେ ଚାଲିପାରନ୍ତି, କିନ୍ତୁ ଏବେ ଆଦୌ ଚାଲିପାରୁ ନଥିଲେ । ବେଳେ ବେଳେ ଛାତି ଥରିବା ଓ ମୁଣ୍ଡ ଘୂରାଇବା ମଧ୍ୟ ଆରମ୍ଭ ହୋଇଥିଲା । ଡାକ୍ତରୀ, କବିରାଜୀ ଓ ହୋମିଓପାଥି ନାନାପ୍ରକାର ଚେଷ୍ଟା କରାଯାଉଥିଲା । ସେମାନେ ଯେଉଁ ଔଷଧ ଦେଉଥିଲେ ସେଥିରେ ବିଶେଷ ଫଳ ମିଳୁ ନଥିଲା । କ୍ରମେ ବାମ ହସ୍ତର ଉପରିଭାଗ ଅଚଳ ହୋଇଉଠିଲା ଓ ସେଠାରେ ଭୀଷଣ ଯନ୍ତ୍ରଣା ଅନୁଭବ କଲେ । କୌଣସି ପ୍ରକାର ଚିକିତ୍ସା ନକରି ଅଧିକାଂଶ ସମୟ ଖଟରେ ମୁହଁ ମାଡ଼ି ପଡ଼ି ରହୁଥିଲେ । ବେଳେ-ବେଳେ ବ୍ୟସ୍ତ ହୋଇ ସମୟ କଟାଇବା ଅସମ୍ଭବ ବୋଲି କହୁଥିଲେ ଓ ତାଙ୍କ ପାଇଁ ଆମ୍ଭେମାନେ ଅସୁବିଧା ଭୋଗୁଛୁ ବୋଲି ଦୁଃଖ କରୁଥିଲେ । ଖଟ ଉପରେ ଶୋଇରହିଲେ ମଧ୍ୟ ମୋର ସୁବିଧା-ଅସୁବିଧା ପ୍ରତି ସବୁବେଳେ ପ୍ରଯତ୍ନ କରୁଥିଲେ ଓ ଅନ୍ୟମାନଙ୍କୁ ଏବଂ ମୋତେ ସେଥିପାଇଁ ଆବଶ୍ୟକ ନିର୍ଦ୍ଦେଶ ଦେଉଥିଲେ । ସେ ସମୟରେ ଯେଉଁମାନେ ତାଙ୍କୁ ଦେଖିବାକୁ ଆସୁଥିଲେ ସେମାନେ ତାଙ୍କର ସକରୁଣ ଚାହାଣି ଦେଖି ବ୍ୟଥିତ ହେଉଥିଲେ । ହିନେ ହଠାତ୍ ପ୍ରତ୍ୟୁଷରୁ ଘରୁ ବାହାରି ଯାଇ-ଥିଲେ । ଅନେକ ସମୟ ପରେ ଘରକୁ ଫେରିଆସିଥିଲେ ଓ ସରଳ ଶିଶୁଟି ପରି ଆତ୍ମହତ୍ୟା କରିବାକୁ ଯାଉଥିଲେ ବୋଲି କହିଥିଲେ । ସେ ଘଟଣା ପରଠାରୁ ଆମେ ଖୁବ୍ ସାବଧାନ ହୋଇଥିଲୁଁ ।

ଘରେ କେହି ପିଲା ନଥିବାରୁ ମାନସିକ ଅଶାନ୍ତି ବଢ଼ୁଛି, ତେଣୁ କେହି ପିଲା ଏଠାକୁ ଆସିଲେ ଭଲ ହେବ, ଏହା ଭାବି ବଡ଼ ଝିଅ ଯେ କି ପ୍ରାୟ ଏଗାର ବର୍ଷ ହେଲା ଏଠାକୁ ଆସି ନଥିଲା ତାକୁ ଏଠାକୁ ଆସିବାକୁ ଲେଖିଲି । ସେ ଆସିଲା ୧୯୭୭, ଜାନୁୟାରୀ ୨୫ ତାରିଖରେ । ବହୁ୍ୟତ୍ପ୍ରଶ୍ନ ଦେଖି ଖୁସି ହେଲେ ଓ ତା' ପାଇଁ ଭଲ ଖାଇବା ଇତ୍ୟାଦିର କରିବାକୁ କହିଲେ । ଦୁଇ, ତିନି ଦିନ ତା' ସହିତ ଭଲରେ

କଟାଇଲେ । ଆମେ ଆଶ୍ୱସ୍ତ ହେଲୁଁ । କିନ୍ତୁ ହଠାତ୍ ୨୮ ତାରିଖ ଦିନ ସକାଳୁ ତାଙ୍କୁ ଆମେ ଘରେ ଦେଖିବାକୁ ପାଇଲୁ ନାହିଁ । ତା'ପରେ ତାଙ୍କ ସହିତ ଆଉ କାହାରି ସାକ୍ଷାତ ହୋଇ ନାହିଁ । ସେ ଆମକୁ ପଛ କରି ଚାଲିଗଲେ—ଆଉ ଫେରିଲେ ନାହିଁ । ସକାଳ ହେଉ ହେଉ ସହରରେ ଖବର ବ୍ୟାପିଗଲା—ବିଦ୍ୟୁତ୍‌ପ୍ରଭା ଦେବୀ ରେଲ୍ ତଳେ ପଡ଼ିଯାଇଛନ୍ତି । କି ଅବସ୍ଥାରେ ଏହି ଘଟଣା ଘଟିଲା କହିବା ଅସମ୍ଭବ । କାହିଁକି ବା ସେ ଏପରି କଲେ ତାହା ମଧ୍ୟ କହିବା ସମ୍ଭବ ନୁହେଁ । ମନସ୍ତତ୍ତ୍ୱବିତ୍ ବନ୍ଧୁମାନେ କହିଲେ ଆତ୍ମହତ୍ୟାର କାମନା ଏକ ମାନସିକ ବ୍ୟାଧି । ସାଧକ ବନ୍ଧୁମାନେ କହିଲେ ଯୋଗରେ ପଥଭ୍ରଷ୍ଟ ହେଲେ ଏପରି ହୁଏ । ଅପଶକ୍ତି ଏପରି ଘଟଣା ଘଟାନ୍ତି । ବହୁ ଲୋକ ବହୁ କଥା କହିଲେ । ଆଜି ପର୍ଯ୍ୟନ୍ତ ମୁଁ ଏ ଘଟଣାର ମୂଳ ଖୋଜି ପାଇ ନାହିଁ । ତେବେ ମୋ ବିଚାରରେ ଏ ଘଟଣା ଉପରେ କୌଣସି ଗୁରୁତ୍ୱ ଦେବା ଅନାବଶ୍ୟକ—ଏ ସୌର ସଂସାରରେ ନାନା ଘଟଣା ପ୍ରତିନିୟତ ଘଟୁଛି । ସ୍ୱାଭାବିକ ଓ ଅସ୍ୱାଭାବିକ ସେ ମନୁଷ୍ୟ ବିଚାରର କଥା । ଆମର ସ୍ଥୂଳ ଦୈନନ୍ଦିନ ସାଧାରଣ ବିଚାର ସଂପୂର୍ଣ୍ଣ ଭ୍ରମାତ୍ମକ ଗତାନୁଗତିକ । ଯୁକ୍ତିସମର୍ଥିତ ବିଚାରର ସପକ୍ଷରେ ଓ ବିପକ୍ଷରେ ବେଶ୍ କୁହାଯାଇ ପାରେ । ଯୁକ୍ତି କେବେ ସମସ୍ୟାର ସମାଧାନ ଆଣିପାରେ ନାହିଁ । ଆଧ୍ୟାତ୍ମିକ ବା ଯୋଗଲବ୍‌ଧ ବିଚାର ଯଥାର୍ଥ ସମାଧାନ ଆଣିଦିଏ । କିନ୍ତୁ ମନୁଷ୍ୟର ସୀମିତ ଜ୍ଞାନରେ ସେ ସମାଧାନ ବିଷୟ ଚିନ୍ତା କରିବା ଅସମ୍ଭବ । ତେଣୁ ମାନିନେବାକୁ ହେବ ସବୁଠାରୁ ଯାହା ଭଲ ବୋଲି ପରମେଶ୍ୱର ଭାବିଛନ୍ତି ତାହା ସେ କରାଇଛନ୍ତି । ଆମ ଦୃଷ୍ଟିରେ ଓ ପରମ୍ପରା ବିଚାରରେ ଯାହା ଅଶୁଦ୍ଧ ପରମ୍ପରଙ୍କ ବିଚାରରେ ତାହା ଶୁଦ୍ଧ ହୋଇପାରେ । ସବୁର ମୂଳରେ ସେହି ଭଗବାନ ବିଦ୍ୟମାନ—ତେଣୁ ଭଲ ଓ ମନ୍ଦର ବିଚାର କେବଳ କପୋଳକଳ୍ପିତ ।

କବି ସ୍ୱର୍ଗର ଅଭିଶପ୍ତା କନ୍ୟା । ବିଦ୍ୟୁତ୍‌ପ୍ରଭା ନାମକୁ ସାର୍ଥକ କରି ଆଷାଢ଼ର ଏକ ଝଡ଼ଦିନରେ ଆକାଶରେ ଉଦିତ ହୋଇ ଦିଗନ୍ତରେ ଲୀନ ହୋଇଗଲେ । ଯେତିକି ସମୟ ଆକାଶରେ ରହିଲେ ଦୁନିଆ ଆଲୋକିତ ହେଲା ଓ ସେ ତାହାରି ମଧ୍ୟରେ ଯେତେ ପାରିଲେ ଦେଖିଗଲେ

ଓ ସୃଷ୍ଟି କରିଗଲେ । ଶାଠ ମୁକ୍ତିର ବେଳ ଆସିଲା । ସହଯାତ୍ରୀର ମୋହ ତୁଟାଇ ପଥ ଭାଙ୍ଗି ସେ ଚାଲିଗଲେ । ରଙ୍ଗମଞ୍ଚରେ ସଚେତନ ଭାବରେ ନିଜର ଭୂମିକା ସେ ଅଭିନୟ କରିଛନ୍ତି । ଶେଷ ବିଦାୟ ନେଇ ଗଲାବେଳେ ଅଭିନୟ ତାଙ୍କ ଉପରେ କିଛି ପ୍ରଭାବ ପକାଇ ପାରି ନାହିଁ । ମୁକ୍ତ ଓ ଉଚ୍ଚତର ଆତ୍ମା ବଞ୍ଚିବା ପାଇଁ କେବଳ ଘୁଷୁରି ଘୁଷୁରି ବଞ୍ଚେ ନାହିଁ । ସେ ବଞ୍ଚିବା କେବଳ ଗୋଟାଏ ମୋହ । ଆତ୍ମା ବା ବିବେକ ଅଗ୍ରଗତିର ସମ୍ଭାବନା ନ ଦେଖିଲେ ନିଜ ବାଟ କାଟି ଚାଲିଯାଏ । ମୋହ-ଗ୍ରସ୍ତ ସ୍ୱାମୀ, ସ୍ତ୍ରୀ, ପିତା ବା ପୁତ୍ର ଅଜ୍ଞାନବଶତଃ କ୍ରନ୍ଦନ କରନ୍ତି । ନୀତି ବାକ୍ୟରେ କୁହାଯାଇଛି—

"ତ୍ୟଜେଦେକଂ କୁଳସ୍ୟାର୍ଥେ
ଗ୍ରାମସ୍ୟାର୍ଥେ କୁଳଂ ତ୍ୟଜେତ୍ ।
ଗ୍ରାମଂ ଜନପଦସ୍ୟାର୍ଥେ
ଆତ୍ମାର୍ଥେ ପୃଥିବୀଂ ତ୍ୟଜେତ୍ ॥

ନିଜର ଆତ୍ମାକୁ ରକ୍ଷା କରିବା ପାଇଁ ଅର୍ଥାତ୍ ବିବେକକୁ ରକ୍ଷା କରିବା ପାଇଁ ଯଦି ପୃଥିବୀ ତ୍ୟାଗ କରିବାକୁ ହୁଏ ତେବେ ତାହା କରିବା କର୍ତ୍ତବ୍ୟ ।

ତେବେ ବନ୍ଧୁ ଜନ ଆଗରୁ କବି ମୋ ପାଇଁ କବିତାଟିଏ ଲେଖି ଦେଇ ଯାଇଛନ୍ତି । ସେଇଟିକୁ ମୁଁ ଏକୁଟିଆ ବେଳେ ବେଳେ ପଢ଼ୁଛି—

ତୁମେ ଓ ମୁଉଁ ପକ୍ଷୀ ଥିଲେଁ
ଏଇ ଜନମ ପୂର୍ବତଟେ
ଛଇଳ ଏକ ପଲ୍ଲୀ ଗ୍ରାମେ
ନିରମି ନୀଡ ଜୀର୍ଣ୍ଣବଟେ ।

ଦୋଳାୟମାନ କୁଳାୟ-ବୁକେ
ଚଞ୍ଚୁ ପରେ ଚଞ୍ଚୁ ରଖି
ତନ୍ଦ୍ରାବେଳେ କି ସୁଖେ ଆମେ
ସ୍ୱପ୍ନେ ବୁଡ଼ି ଥିଲେଁଟି ସଖି ।

ଅନେକ ଯେବେ ଉଆଁସୀ ନଭେ
ନଠୁର ଝଡ଼ ଉଠିଲା ମାତି
ନୀଡ଼ଟି ଆମ ଭାଙ୍ଗି ପଡ଼ୁଁ
ଚମକ ମୋରେ ଡାକିଲ ସାଥି ।

ବତାସେ ଯେବେ ଉତ୍ତରିଲ
ଉଠାଇ କୋହ, ଝରାଇ ପାଣି
ତାମସୀ ବୁକେ ଗଲ ସେ ହଜି
ନ ପାରି ଶୁଣି ମୋ ଡାକ ରାଣି !

ସେଇ ନଶୀଥେ ବିହଗ-କୁଳୁଁ
ଚିର ମେଲାଣି ନେଇଗୋ ଆମେ
ଆବର ଧନେ ନୂଆ ଜନମେ
ମୂର୍ତ୍ତି ହେଲେଁ କୁମୁଦ ନାମେ ।

ଗତ ଜୀବନ-ପ୍ରଣୟ ସୁଖ
ପରାଣ ଭରି ଭୋଗିବା ପାଇଁ
ଶାନ୍ତ ସରେ ରହିଲେଁ ବାସ
ଝଡ଼ର ଯହିଁ ଶଙ୍କା ନାହିଁ ।

ମନ୍ଦ ବାତେ ଦୋହଲି ପୁଣି
ରହିଲ ଲଗି ପାଖକୁ ପାଖ
ଯେସନେ ଆମେ ପାରିବା ଶୁଣି
ଉଭୟ ମୁଖୁଁ ଉଭୟେ ଡାକ ।

ଶୁଭ୍ର ସ୍ବଚ୍ଛ ଜ୍ୟୋଦୁଅ ରାତେ
ଚନ୍ଦ୍ରକାର ବିତାନ ତଳେ
ହସିଲେଁ ଆମେ ଦୁଇଟି କଇଁ
ଶତ ସମ ସରସୀ ଜଳେ ।

ପ୍ରଭାତେ ଏକ ପଲ୍ଲୀବଧୂ
ଦେବତା-ପଦେ ଭେଟିବା ଲାଗି
କୋମଳ କରେ ଫରଣି ତନୁ
ତନ୍ଦ୍ରା ଆମ ଦେଲାଟି ଭାଙ୍ଗି ।

ମାଟିର ଘର ଦୋହଳୀ ତଳେ
ଆପଣା ରୂପ ସୋହାଗେ ମାତ
ନୟନ ପରେ ନୟନ ଢାଳ
ଛନ୍ଦ ହେଲେ ଫୁଲାଇ ଗାତ ।

ରଙ୍ଗ ଢାଳ ସଞ୍ଜବାଳୀ
ଧରାରେ ପାଦ ପକାଉଁ ଥିବ
ସ୍ତିମିତ କ୍ଷୀଣ ପ୍ରଦୀପ ସମ
ଚେତନା ଆମ ଆସିଲା ମର ।

ସେଦିନୁଁ ଆଉ ଦେଖିନ ବାରେ
ସପନେ ତୁମ ରୂପର ଛାଇ
ଆଉକ ସଖି, ଭବା ଜନମେ
ମିଳନ ଆମ ଘଟିବ ନାହିଁ ?

—ଶ୍ରୀ ପଞ୍ଚାନନ ମହାନ୍ତି

